# ବୋଲଗଡ଼ ଇତିହାସ

ଲେଖକ : ରବୀନ୍ଦ୍ର କୁମାର ପରିଡ଼ା

ପ୍ରକାଶିକା : ଶକୁନ୍ତଳା ପରିଡ଼ା, ବୋଲଗଡ଼, ଖୋର୍ଦ୍ଧା
ମୁଦ୍ରଣ : ଶୋଭନ, ଆଚାର୍ଯ୍ୟ ବିହାର, ଭୁବନେଶ୍ୱର
ପ୍ରଚ୍ଛଦ : ବଳଦେବ ମହାରଥା
ପ୍ରଥମ ପ୍ରକାଶ : ଜାନୁଆରୀ ୨୬, ୨୦୦୮
ମୂଲ୍ୟ : ଦୁଇ ଶହ ପଚାଶ ଟଙ୍କା ମାତ୍ର

# BOLGARH ITIHASH

By Rabindra Kumar Parida

Publisher : Shakuntala Parida, Bolgarh, Khurda
Printed at : Shovan, Acharya Vihar, Bhubaneswar
Cover Design : Baladev Maharatha
1st Edition : 26th January, 2008
Price : Rs. 250/-





(ରବୀନ୍ଦ୍ର କୁମାର ପରିଡା)

ନିରଳସ ସ୍ୱାଧୀନତା ସଂଗ୍ରାମୀ ୰ ଗଣେଶ୍ୱର ପରିଡା ଏବଂ ମାତା ୰ ସୁରଙ୍ଗୀ ଦେବୀଙ୍କ କୋଳରେ ୧୯୪୫ ମସିହା ମାଘମାସ ତ୍ରିବେଣୀ ଅମାବାସ୍ୟା ତା୧୪.୦୧.୧୯୪୫ରିଖରେ ଜନ୍ମଗ୍ରହଣ କରିଥିଲେ । ବୋଲଗଡ ବାମନ ହାଇସ୍କୁଲ, ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରୁ ପାଠପଢା ଶେଷକରି ନୟାଗଡର ଦର୍ପନାରାୟଣପୁର ହାଇସ୍କୁଲ ଏବଂ ଇକିରୀ ଅଚ୍ୟୁତାନନ୍ଦ ଏକାଡେମୀରେ ଶିକ୍ଷକତା କରୁଥିଲାବେଳେ ସେଥିରୁ ସବୁଦିନ ପାଇଁ ଅବସର ନେଇ ସକ୍ରୀୟ ରାଜନୀତିରେ ଅଂଶଗ୍ରହଣକରି ବୋଲଗଡ ଗ୍ରା.ପ.ର ଦୁଇଥର ସରପଞ୍ଚ, ଥରେ ବୋଲଗଡ ପଞ୍ଚାୟତ ସମିତିର ଉପାଧ୍ୟକ୍ଷ ତଥା କାର୍ଯ୍ୟନିର୍ବାହୀ ଅଧ୍ୟକ୍ଷ ଭାବରେ ଦାୟୀତ୍ୱ ତୁଲାଇ ଥିଲେ । ସେତେବେଳେ ଖୋର୍ଦ୍ଧା ସମବାୟ ବ୍ୟାଙ୍କ ଏବଂ ଜଟଣୀ R.C.M.S. ର ପରିଚାଳନା କମିଟିର ନିର୍ଦ୍ଦେଶକ ଥିଲେ । ଅବିଭକ୍ତ ପୁରୀଜିଲ୍ଲା ଯୁବ କଂଗ୍ରେସ କମିଟି ଏବଂ ଜିଲ୍ଲା କଂଗ୍ରେସ କମିଟିର ସାଧାରଣ ସଂପାଦକ ଥିଲେ । ୧୯୮୯ ମସିହାରେ ବିଜେପିରେ ଯୋଗଦେଇ ରାଜ୍ୟ କାର୍ଯ୍ୟକାରିଣୀ ସଦସ୍ୟ ଏବଂ ଖୋର୍ଦ୍ଧା ଜିଲ୍ଲାର ୧୦ବର୍ଷ ଧରି ବରିଷ୍ଠ ଉପସଭାପତି ଥିଲେ । ସେ ରାଜ୍ୟ ମତ୍ସ୍ୟଜୀବି ଉନ୍ନୟନ ସଂଘର ମଧ୍ୟ ନିର୍ଦ୍ଦେଶକ ଥିଲେ । ସଂପ୍ରତି ସେ କେନ୍ଦ୍ରୀୟ ଭାରତ ସେବକ ସମାଜ ଓଡିଶା ଶାଖାର ଅଧ୍ୟକ୍ଷ ଅଛନ୍ତି । ଦୀର୍ଘ ୫୦ବର୍ଷ ଧରି ସ୍ଥାନୀୟ ଜନଜୀବନ ସହ ତାଙ୍କର ସଂପୃକ୍ତି ଆଜି 'ବୋଲଗଡ ଇତିହାସ' କୁ ସାକାର କରିଛି ।



## ଉତ୍ସର୍ଗ

ସଂଜୟ,

ତୁ କହିଥିଲୁ, "ବାପା ତୁମେ ବୋଲଗଡ ବିଷୟରେ ବିଭିନ୍ନ ସଭା ସମିତିରେ ଯାହା ସବୁ ଭାଷଣ ଦେଉଛ ତାକୁ ଏକାଠି କରି ଏକ ବହି ଲେଖିଦିଅ । ମୁଁ ତାକୁ ଛପାଇ ତୁମର ସମସ୍ତ ରାଜନୈତିକ ବନ୍ଧୁ ଏବଂ ଶୁଭେଚ୍ଛୁମାନଙ୍କୁ ଭୁବନେଶ୍ୱରରେ ଏକତ୍ରିତ କରି ସେ ବହିର ଶୁଭ ଉଦଘାଟନ କରିବି । ଯେତେ ଟଙ୍କା ଖର୍ଚ୍ଚ ହେବ, ସବୁ ମୁଁ ବହନ କରିବି" ।

ଏକଥା କହିବାର ଅଳ୍ପ ଦିନ ପରେ ୨୦୦୪ ଜୁନ୍ ୩୦ ତାରିଖ ଦିନ ପୁରୀରୁ ପ୍ରଭୁ ଜଗନ୍ନାଥଙ୍କ ସୁନାବେଶ ଦେଖି ଘରକୁ ଫେରିଲା ବେଳେ ତୋର ପ୍ରିୟ ସାଙ୍ଗ ଲକ୍ଷ୍ମୀଧର ସହ ଏକ ମର୍ମନ୍ତୁଦ ସଡକ ଦୁର୍ଘଟନାରେ ଆରପାରିକୁ ଚାଲିଗଲୁ । ତୋ ଦୁଃଖରେ ଭାଙ୍ଗିପଡି ବର୍ଷକ ପାଇଁ ମୋର ସମସ୍ତ ରାଜନୈତିକ ଏବଂ ସାମାଜିକ କାର୍ଯ୍ୟକଳାପରୁ ନିଜକୁ ଦୂରେଇ ରଖି 'ବୋଲଗଡ ଇତିହାସ' ଲେଖିଦେଲି । ହେଲେ ତୁ ଦେଇଥିବା କଥା କଥାରେ ରହିଗଲା ଏବଂ ତୁ ଇତିହାସ ବହି ଦେଖି ପାରିଲୁ ନାହିଁ । ଶେଷରେ ବୋଲଗଡ ମହୋତ୍ସବର ପ୍ରାରମ୍ଭ ବର୍ଷରେ ଓଡିଶାର ପ୍ରଖ୍ୟାତ ଯଶା, ସାହିତ୍ୟକ ଏବଂ ଦେଶର ବର୍ତ୍ତମାନ ଯୁଗର ଆଗଧାଡିର ରାଷ୍ଟ୍ରନୀତିଜ୍ଞ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ କର କୋମଳରେ ଏହାକୁ ଉନ୍ମୋଚନ କରିବାପାଇଁ ବୋଲଗଡ ମହୋତ୍ସବର ମୁଖ୍ୟ ଶ୍ରଦ୍ଧେୟ ଜାନକୀ ବଲ୍ଲଭ ପାଢୀ ଉଦ୍ୟମ କରି ବୋଲଗଡ ଇତିହାସକୁ ଭୁବନେଶ୍ୱରସ୍ଥ ମିଡିଆ ପ୍ରେସରେ ଛପାଇବାପାଇଁ ଦେଇଥିବା ବେଳେ ଯାନ୍ତ୍ରିକ ତୃଟି ଯୋଗୁଁ ତାହା ହୋଇପାରି ନଥିଲା । ବୋଲଗଡ ମହୋତ୍ସବରେ ହଜାର ହଜାର ଲୋକଙ୍କ ସମ୍ମୁଖରେ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ 'ବୋଲଗଡ ଇତିହାସ' ଏବଂ ମୋର ଶତପ୍ରଶଂସା କରି ଏହାର ପ୍ରକାଶନରେ କୌଣସି ପ୍ରତିବନ୍ଧକ ସୃଷ୍ଟି ହେବନାହିଁ ବୋଲି ବଜ୍ର ଗମ୍ଭୀର ସ୍ୱରରେ ଘୋଷଣା କରିଥିଲେ । ତାରି ଫଳସ୍ୱରୂପ ଆଜି ତାଙ୍କରି ଆନ୍ତରିକତା ଯୋଗୁଁ 'ସମ୍ବାଦ' ର ସଂପାଦକ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କର ସମ୍ପୂର୍ଣ୍ଣ ସହଯୋଗରେ ତାହା ପ୍ରକାଶ ହୋଇପାରିଛି । ହେଲେ ତୁ ଦେଖି ପାରିଲୁ ନାହିଁ । ତୋର ଅସୀମ ପ୍ରେରଣା ମୋତେ ଏହା ଲେଖିବାକୁ ବାଧ୍ୟ କରିଥିଲା । ଏହି ପରିପ୍ରେକ୍ଷୀରେ ତୋର ଅମର ଆତ୍ମାର ନିକଟରେ ଏହାକୁ ଉତ୍ସର୍ଗ କଲି ।

।।ଇତି।।

ତୋର ବାପା

## ବୋଲଗଡ଼ ଇତିହାସ

### ରଚନାର ପୃଷ୍ଠଭୂମୀ

ଛାତ୍ରାବସ୍ଥାରେ ଇତିହାସ ପ୍ରତି ପ୍ରବଳ ଆଗ୍ରହ ପରବର୍ତ୍ତୀ କାଳରେ ବୋଲଗଡ ତଥା ଅତୀତର ପାଞ୍ଚଗଡ ଅଞ୍ଚଳର ଇତିହାସ ସଂଗ୍ରହ କରିବାରେ ଅପୂର୍ବ ପ୍ରେରଣା ସୃଷ୍ଟି କରିଥିଲା । ଏ ଦିଗରେ ମୋର ପ୍ରଥମ ପଥ ପ୍ରଦର୍ଶକ ତଥା ବାଲ୍ୟ ଗୁରୁ ୰ ସାଧୁ ଚରଣ ଚୌଧୁରୀ ଏବଂ ତାଙ୍କ ପାଖେ ପାଖେ ରହି 'ବୋଲଗଡ ଇତିହାସ' ପାଣ୍ଡୁଲିପିକୁ ଲେଖୁଥିବା ଖଦୀ କର୍ମୀ ୰ ତାରାପ୍ରସନ୍ନ ରଥ (ଦୁଙ୍ଗ ଭାଇନା)ଙ୍କ ପ୍ରେରଣାରେ ଆଜି ଏହା ସମ୍ଭବ ହୋଇପାରିଛି । ଏହି ଲେଖାରେ ମୋର ନିଜସ୍ୱ କିଛି ନାହିଁ । 'ମାଦଳାପାଞ୍ଜି' ଠାରୁ ଆରମ୍ଭ କରି ୬୦ରୁ ଉର୍ଦ୍ଧ୍ୱ ଇତିହାସ ସମ୍ପର୍କୀତ ବହିରେ ବୋଲଗଡ ବିଷୟରେ ଯାହା ଅଛି ତାହା କେବଳ ଏହାର କଳେବର ମଣ୍ଡନ କରିଅଛି । ୧୯୬୪ ମସିହାରେ ପୁରୀ କଲେଜରେ ଅଧ୍ୟୟନ କଲାବେଳେ ବୋଲଗଡରୁ ସଂଗୃହିତ ପଣ୍ଡିତ ୰ ସଦାଶିବ ରଥ ଶର୍ମାଙ୍କ ଦ୍ୱାରା ପ୍ରକାଶିତ 'ପାଇକଖେଦା' ପୁରୀ ରଘୁନନ୍ଦନ ଲାଇବ୍ରେରୀରେ ପାଠ କରିବାର ସୁଯୋଗ ପାଇଥିଲି । ତାହା ମୋତେ ଅପୂର୍ବ ପ୍ରେରଣା ଦେଇଥିଲା । ଏହାପରେ ସ୍ଥାନୀୟ ଜନଜୀବନ ସହ ଅଙ୍ଗାଙ୍ଗୀ ଭାବରେ ଜଡିତ ହେଲାପରେ ଏ ଅଞ୍ଚଳର ବିଭିନ୍ନ କଥା ସଂଗ୍ରହ କରିବାପାଇଁ ଆଗ୍ରହ ସୃଷ୍ଟି ହେଲା । ବିଶେଷକରି ୧୭୩୩ ମସିହାରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କର ବୋଲଗଡରେ ଆତ୍ମଗୋପନ ଏବଂ ସେତିକିବେଳେ ପ୍ରଭୁ ଜଗନ୍ନାଥଙ୍କର ଏଠାରେ ପାତାଳି ହେବା ସହ ଏଠାରେ ତତକାଳୀନ ମୋଗଲ ପ୍ରତିନିଧି ନାଏବ ନିଜାମ୍ ତକି ଖାଁ, ଗଜପତି ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ଦ୍ୱାରା ପରାଜିତ ହେବା ଏକ ଅଭିନବ ଐତିହାସିକ ଘଟଣା । ଏହାପରେ ୧୮୧୭ ପାଇକ ବିଦ୍ରୋହ ବେଳେ ବକ୍ସି ଜଗବନ୍ଧୁ ବୋଲଗଡରେ ପହଞ୍ଚି ଏହିଠାରୁ ପାଞ୍ଚ ହଜାର ପାଇକ ନେଇ ଖୋର୍ଦ୍ଧା ଆକ୍ରମଣ କରିବା ପ୍ରଭୃତି ଐତିହାସିକ ଘଟଣା ବୋଲଗଡକୁ ବହୁ ଉଚ୍ଚକୁ ନେଇଅଛି । ସେତିକିବେଳେ ବାଙ୍କୋଇ ଗଡର ପାଇକ ସର୍ଦ୍ଦାର କାଳିଆ ମଙ୍ଗରାଜ (ଭୂଇଁମୂଳ) ଓରଫ ପର୍ଶୁରାମ ରାଉତରାୟ ପ୍ରକାଶ୍ୟ ଦିବାଲୋକରେ ଅତ୍ୟାଚାରୀ ଦେଓ୍ୱାନ ସଦାଶିବ ରାୟଙ୍କୁ ହତ୍ୟାକରି ପରେ ବ୍ରିଟିଶ୍ ଶାସକମାନଙ୍କ ଦ୍ୱାରା ଧରାହୋଇ ବିଚାର ଶେଷରେ ୧୮୧୯ ଏପ୍ରିଲ ଛଅ ତାରିଖ ଦିନ ବୋଲଗଡର ଐତିହାସିକ ଆୟତୋଟାରେ ଫାଶୀ ପାଇବା ଏକ ଯୁଗାନ୍ତକାରୀ ଐତିହାସିକ ଘଟଣା । ଏହା ଉପରେ ଓଡିଶାର କୌଣସି ଐତିହାସିକ ଏପର୍ଯ୍ୟନ୍ତ ବିସ୍ତୃତ ଆଲୋଚନା କରିନାହାନ୍ତି । ଶେଷରେ ସ୍ୱାଧୀନତା ଆନ୍ଦୋଳନ ବେଳେ

୧୯୨୭ ମସିହାରେ ମହା ମାନବ ମହାତ୍ମାଗାନ୍ଧୀଙ୍କର ବୋଲଗଡ ଠାରେ ତିନି ଦିନ ଅବସ୍ଥାନ ଏ ମାଟିକୁ ଧନ୍ୟ କରିଅଛି । ବୋଲଗଡ ଠାରେ ଗାନ୍ଧିଜୀଙ୍କ ଅବସ୍ଥାନ ସମ୍ପର୍କୀତ ତଥ୍ୟ ସଂଗ୍ରହ କଲାବେଳେ ଡଃ. ହରେକୃଷ୍ଣ ମହତାବଙ୍କ ଦ୍ୱାରା ଲିଖିତ "ଗାନ୍ଧୀଜୀ ଏବଂ ଓଡ଼ିଶା", 'ଜ୍ଞାନମଣ୍ଡଳ'ର ରଚୟିତା ୰ ବିନୋଦ କାନୁନଗୋଙ୍କ ସୁପୁତ୍ର ଡଃ. ପାବକ କାନୁନଗୋଙ୍କର "ଓଡିଶା ଏବଂ ଗାନ୍ଧୀ" ପୁସ୍ତକର ବିସ୍ତୃତ ବିବରଣୀ ଦିଆଯାଇଅଛି । ଉଭୟ ପୁସ୍ତକରୁ ଦିଆଯାଇଥିବା ବିବରଣୀ କେତେକାଂଶରେ ମିଶିଯାଉଥିବାରୁ ବୋଲଗଡ ଠାରେ ଗାନ୍ଧିଜୀଙ୍କର ଅବସ୍ଥାନର ବିସ୍ତୃତ ବିବରଣୀ ନିମନ୍ତେ ପାଠକ ମାନଙ୍କ ଅବଗତି ପାଇଁ ଏହା ସ୍ଥାନୀତ ହୋଇଛି । ଏହିସବୁ ପ୍ରମୁଖ ଐତିହାସିକ ଘଟଣାବଳୀ ସହ ଏଠାରେ ସଂଗଠିତ ସ୍ୱାଧୀନତା ସଂଗ୍ରାମ, କୃଷକ ଆନ୍ଦୋଳନ ଓ ସତ୍‌ମାର୍ଗ ଆନ୍ଦୋଳନ ସ୍ଥାନୀୟ ଜନଜୀବନକୁ ବହୁ ଭାବରେ ଅନୁପ୍ରାଣିତ କରିଅଛି । ଏହିସବୁ ଘଟଣାକୁ ଛାଡିଦେଲେ ଅଷ୍ଟାଦଶ ଶତାବ୍ଦୀରେ ଓଡିଆ ପାଠ୍ୟ ପୁସ୍ତକର ପ୍ରଚଳନର ବହୁ ପୂର୍ବରୁ ଏ ଅଞ୍ଚଳର କବି ଭକ୍ତଚରଣଙ୍କର 'ମଥୁରାମଙ୍ଗଳ' ଏବଂ ଦନେଇ ଦାସଙ୍କର 'ଗୋପୀଭାଷା'କୁ ମାଟିବଂଶର ଅବଧାନମାନେ ଗ୍ରାମ୍ୟ ଚାଟଶାଳୀରେ ଓଡିଆ ଭାଷା ଏବଂ ସାହିତ୍ୟର ମାଧ୍ୟମ ରୂପେ ଚାଟମାନଙ୍କୁ ଶିକ୍ଷା ଦେଉଥିଲେ । ବାଙ୍କୋଇ ଗଡର ଗଣକବି ଅନଙ୍ଗ ନରେନ୍ଦ୍ରଙ୍କର 'ଶ୍ରୀରାମଲୀଳା' ସହସ୍ର ବର୍ଷ ଧରି ଓଡିଶାର ଗ୍ରାମାଞ୍ଚଳରେ ନାଟ୍ୟରୂପ ନେଇ ସାଂସ୍କୃତିକ କ୍ଷେତ୍ରରେ ଏକ ମହାନ ପରମ୍ପରା ସୃଷ୍ଟି କରିଅଛି । ଏଥିପାଇଁ ଏ ମାଟି ଅଧିକ ଭାବରେ ଗୌରବାନ୍ୱିତ । ଏହି ସମସ୍ତ କଥା ସହ ଇଂରେଜୀ ଶାସନ ସମୟର କେତେକ ଦୃଷ୍ଟାନ୍ତ ଏବଂ ସ୍ୱାଧୀନୋତ୍ତର ସମୟର ରାଜନୀତି, ସାମାଜିକ ଅବସ୍ଥା ଉପସ୍ଥାପନ କରିବା ପାଇଁ ଯତ୍‌ପରୋନାସ୍ତି ଚେଷ୍ଟା କରିଅଛି । ବୋଲଗଡ ଅଞ୍ଚଳରେ ଜନ୍ମଗ୍ରହଣ କରି ବିଭିନ୍ନ କ୍ଷେତ୍ରରେ ସୁଖ୍ୟାତି ଅର୍ଜନ କରିଥିବା ଅତୀତ ଏବଂ ବର୍ତ୍ତମାନର କବି ଏବଂ ଲେଖକଙ୍କର ସହ ବହୁ ପ୍ରତିଭାଙ୍କର ନାମ ଏଥିରେ ଦିଆଯାଇଛି । ଯାହା ଭବିଷ୍ୟତ ପୀଢିପାଇଁ ପ୍ରେରଣା ଦାୟକ ହେବ । ଏହାଛଡା ସ୍ଥାନୀୟ ସମସ୍ତ ମଠ, ମନ୍ଦିର, ଯାନୀଯାତ୍ରା, ପର୍ଯ୍ୟଟନସ୍ଥଳୀ ଏବଂ ସାଂସ୍କୃତିକ ପରମ୍ପରାର ବିଶେଷ ଅଂଶ ସ୍ୱରୂପ ମାଣିକାଗୋଡା ଐତିହାସିକ ଦଶହରା ପର୍ବରେ ହିନ୍ଦୁ ମୁସଲମାନ ସଂସ୍କୃତିର ଅପୂର୍ବ ମିଳନ ସଂକ୍ଷେପରେ ସ୍ଥାନୀତ ହୋଇଛି । ସ୍ୱାଧୀନତା ଆନ୍ଦୋଳନର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ବିଷୟରେ ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ୰ ପର୍ଶୁରାମ ପଦାତିକ ରାୟ ଏବଂ ୰ ସୁଦର୍ଶନ ମହାପାତ୍ରଙ୍କର ଦୁଇଟି ପ୍ରବନ୍ଧ ପାଠକମାନଙ୍କର ଗୋଚରାର୍ଥେ ଦିଆଯାଇଛି । ଶିକ୍ଷାର କ୍ରମବିକାଶ ସହ ଏବଂ ଏ

ଅଞ୍ଚଳର ଦୁଇଟି ପ୍ରମୁଖ ବାଣୀପୀଠ ବୋଲଗଡ ବାମନ ହାଇସ୍କୁଲ ଏବଂ ମାଣିକାଗୋଡା ଗଦାଧର ଏକାଡେମୀର ପ୍ରତିଷ୍ଠାତା ପ୍ରଧାନ ଶିକ୍ଷକ ୰ ଆନନ୍ଦ ଚନ୍ଦ୍ର ରଥ ଏବଂ ୰ ରାଜକିଶୋର ପଟ୍ଟନାୟକଙ୍କର ନିଜସ୍ୱ ଲେଖାକୁ ନିଆଯାଇଛି । ସ୍ଥାନୀୟ ପଞ୍ଚାୟତରାଜ ବ୍ୟବସ୍ଥା ଏବଂ ସମବାୟ ଆନ୍ଦୋଳନର ସଂକ୍ଷିପ୍ତ ଇତିହାସ ସ୍ଥାନିତ ହୋଇଛି । ଏହାଛଡା ଏ ଅଞ୍ଚଳର ନଦୀନାଳ, ପର୍ବତ ପାହାଡ, ଜଳ ବିଭାଜିକା ଓ ବନାନୀର ବିସ୍ତୃତ ବିବରଣୀ ଦିଆଯାଇଛି । ଏହି ନିର୍ବାଚନ ମଣ୍ଡଳୀର ୧୯୫୨ ମସିହା ଠାରୁ ୨୦୦୪ ପର୍ଯ୍ୟନ୍ତ ଅନୁଷ୍ଠିତ ବିଧାନସଭା ନିର୍ବାଚନର ବିବରଣୀ ଏଥିରେ ରହିଅଛି । ଏହାପରେ ଆଉକିଛି ତଥ୍ୟ ରହିଥାଇପାରେ । ଭବିଷ୍ୟତରେ ଏହାକୁ ଅବଲମ୍ବନ କରି ଉତ୍ତରପୀଢି ନୂତନ ଇତିହାସ ଲେଖିପାରିବେ । ବୋଲଗଡ ଇତିହାସ ସମ୍ପର୍କରେ ପ୍ରଖ୍ୟାତ ଯଶା ଧୀମନ୍ତ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ, ଡଃ. ବୈଦ୍ୟନାଥ ମିଶ୍ର, ଐତିହାସିକ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ, ଶ୍ରୀଯୁକ୍ତ ଫକୀର ହରିଚନ୍ଦନ, ଶିକ୍ଷାବିତ୍ ଡଃ. ଲକ୍ଷ୍ମୀନାରାୟଣ ରାୟସିଂହ ଏବଂ ବିଶିଷ୍ଟ କବି ତଥା ଭୁବନେଶ୍ୱରର ସାଂସଦ ଡଃ. ପ୍ରସନ୍ନ ପାଟଶାଣୀ ସେମାନଙ୍କର ସୁଚିନ୍ତିତ ଅଭିମତ ଏବଂ ଶୁଭେଚ୍ଛା ପ୍ରଦାନ କରିଥିବାରୁ ସେମାନଙ୍କ ନିକଟରେ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଛି । ଶେଷରେ ୰ ରାଜକିଶୋର ପଟ୍ଟନାୟକ, ୰ ରଘୁନାଥ ସେଠୀ, ପ୍ରାଧ୍ୟାପକ ପ୍ରଫୁଲ୍ଲ କୁମାର ସୁବୁଦ୍ଧି, ବିଶିଷ୍ଟ କବି ଡଃ. ଭଗବାନ ଜୟସିଂହ, 'ସଚିତ୍ର ବିଜୟା'ର ସଂପାଦକ ସୁନୀଲ କୁମାର ପୃଷ୍ଟି, ଇଂ. ଅକ୍ଷୟ କୁମାର ପଟ୍ଟନାୟକ, ଭାସ୍କର ଚନ୍ଦ୍ର ମହାପାତ୍ର, କୃଷ୍ଣମୋହନ ପାଲଟାସିଂହ, ଡା. ବିମଳ ଚନ୍ଦ୍ର ରଥ, ଜଗତଚନ୍ଦ୍ର ଦାଶ, ବାସୁଦେବ ପଟ୍ଟନାୟକ, ହରିବନ୍ଧୁ ସାହୁ, ବାଲ୍ମିକୀ ବଳିୟାର ସିଂହ, ଗୋପୀନାଥ ଖାଡେଙ୍ଗା, ସର୍ବୋପରି ଜାନକୀ ବଲ୍ଲଭ ପାଢୀ, ବରିଷ୍ଠ ମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱଭୂଷଣ ହରିଚନ୍ଦନ, ପୂର୍ବତନ ମନ୍ତ୍ରୀ ତଥା ପ୍ରଖ୍ୟାତ ଚଳଚ୍ଚିତ୍ର ଅଭିନେତା ଓ ନିର୍ଦ୍ଦେଶକ ପ୍ରଶାନ୍ତ ନନ୍ଦ, ଶ୍ରୀକାନ୍ତ ପାଇକରାୟ (ଆଇ.ଏ.ଏସ.), ଶ୍ୟାମସୁନ୍ଦର ସୁବୁଦ୍ଧି, ନବକିଶୋର ପଟ୍ଟନାୟକ, ତାରାପ୍ରସାଦ ପଟ୍ଟନାୟକ, ଭାଗରଥି ବଡଜେନା(ମିଟୁ), କୈଳାସ ଚନ୍ଦ୍ର ମହାପାତ୍ର, ସୁରେନ୍ଦ୍ର ନାଥ ମିଶ୍ର (ଉଭୟେ ପୂର୍ବତନ ବିଧାୟକ), ଶିବାଜୀ ପଟ୍ଟନାୟକ (ପୂର୍ବତନ ଏମ.ପି), ପୂର୍ବତନ ଖୋର୍ଦ୍ଧା ବିଧାୟକ ଡଃ. ଦିଲ୍ଲୀପ ଶ୍ରୀଚନ୍ଦନ ଏବଂ ପୂର୍ବତନ ନୟାଗଡ ବିଧାୟକ ଶ୍ରୀ ବଂଶୀଧର ସାହୁ, ଯୁବନେତା ସଞ୍ଜୀବ ପାଇକରାୟ, ଲୋତକ ବିନ୍ଦୁ ପଟ୍ଟନାୟକ, କାଳି ଚରଣ ଜୟସିଂହ, ସୁମନ୍ତ ଛୋଟରାୟ, ଅଧ୍ୟାପକ ଡଃ. ସୁନୀଲ କୁମାର ରଥ, ଅଧ୍ୟାପକ ଡଃ. ରବୀନ୍ଦ୍ର ପଣ୍ଡା, ଡଃ. ପ୍ରଫୁଲ୍ଲ କୁମାର ଯତି, ଐତିହାସିକ ସତ୍ୟବାଦୀ ବଳିୟାରସିଂହ ଏବଂ

ଶିକ୍ଷକ ସଂଗଠକ ବୈକୁଣ୍ଠ ନାଥ ମହାରଣା ଓ କୈଳାସ ଚନ୍ଦ୍ର ରାଉତଙ୍କର ଅଶେଷ ପ୍ରେରଣା ଓ ସାହାଯ୍ୟ ସହଯୋଗ ସବୁଦିନପାଇଁ ଅଭୁଲା ସ୍ମୃତି ହୋଇରହିବ । ପରିଶେଷରେ ଏ 'ବୋଲଗଡ ଇତିହାସ' ପ୍ରକାଶ କରିବାପାଇଁ ପ୍ରଖ୍ୟାତ ଯଶା, ସାହିତ୍ୟକ, ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ତଥା ବର୍ତ୍ତମାନ ବିରୋଧି ଦଳ ନେତା ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଆନ୍ତରିକତା ଏବଂ 'ସମ୍ବାଦ'ର ସଂପାଦକ ତଥା ପୂର୍ବତନ ସାଂସଦ୍ ଶ୍ରୀଯୁକ୍ତ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କର ସମ୍ପୂର୍ଣ୍ଣ ସହଯୋଗ ସହ 'ସମ୍ବାଦ'ର ସ୍ଥାନୀୟ ସାମ୍ବାଦିକ ଏବଂ ବୋଲଗଡ ପଞ୍ଚାୟତ ସମିତିର ଅଧ୍ୟକ୍ଷ ରଘୁନାଥ ଷଡଙ୍ଗୀଙ୍କର ଅବଦାନ ଅତୁଳନୀୟ । ଏହି ବହିର ପ୍ରୁଫ ସଂଶୋଧନ କରିବାରେ ବୋଲଗଡ ପରମାନନ୍ଦ ମହାବିଦ୍ୟାଳୟର ସଂସ୍କୃତ ଅଧାପିକା ଶ୍ରୀମତୀ ଅନୁସୟା ପୃଷ୍ଟି, ବୋଲଗଡ ଶ୍ରୀମତୀ ସଂସ୍କୃତ ଟୋଲର ହେଡ ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଓଝା ଏବଂ ସ୍ଥାନୀୟ ବିଶିଷ୍ଟ କଣ୍ଠଶିଳ୍ପୀ ତଥା ଶିକ୍ଷକ ପ୍ରଫୁଲ୍ଲ କରଙ୍କର ସହଯୋଗ ଉଲ୍ଲେଖଯୋଗ୍ୟ । ବାମନ ହାଇସ୍କୁଲ ଶିକ୍ଷକ ଶରତ ଚନ୍ଦ୍ର ସ୍ୱାଇଁ ବାମନ ହାଇସ୍କୁଲ ଲାଇବ୍ରେରୀରୁ ଏଥିପାଇଁ ବହୁ ପୁରାତନ ବହି ଯୋଗାଇ ଦେଇଥିବାରୁ ସେ ଧନ୍ୟବାଦର ପାତ୍ର । ଶ୍ରୀ ସଞ୍ଜୟ କୁମାର ପଟ୍ଟନାୟକ ଦିନରାତି ପରିଶ୍ରମ କରି ଏହାକୁ ଡି.ଟି.ପି. କରି ଆଗେଇ ନେଇ ଥିବାରୁ ସେ ଧନ୍ୟବାଦର ପାତ୍ର ।

ଏହା ପାଠକ ମାନଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେବ ବୋଲି ଆଶା କରୁଅଛି ।

ପବିତ୍ର ସାଧାରଣତନ୍ତ୍ର ଦିବସ
୨୬.୦୧.୨୦୦୮ ରବୀନ୍ଦ୍ର କୁମାର ପରିଡା



ଜାନକୀ ବଲ୍ଲଭ ପଟନାୟକ
ବିରୋଧୀଦଳ ନେତା
ଓଡ଼ିଶା ବିଧାନସଭା



ସଂଖ୍ୟା.................................

ଭୁବନେଶ୍ୱର
ତାରିଖ.................................

## ଅଭିମତ

କିମ୍ବଦନ୍ତୀ ଓ ଇତିହାସ ଉଭୟ ଦୃଷ୍ଟିରୁ ବୋଲଗଡ ଓଡିଶାର ଏକ ପ୍ରସିଦ୍ଧ ଅଂଚଳ । ଖୋର୍ଦ୍ଧା ଜିଲ୍ଲା ଅନ୍ତର୍ଗତ ବହୁ ଇତିହାସ ପ୍ରସିଦ୍ଧ ଘଟଣାର ମୂକସାକ୍ଷୀ । ନିଜର ବୀରତ୍ୱ ଓ ସାହସିକତା ଏବଂ ସାହିତ୍ୟ ଓ କଳାରେ ନିଜର ଅବଦାନ ପାଇଁ ଏହି ଅଂଚଳର ନାମ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ରହିବ । ୧୯୨୭ ମସିହାରେ ମହାତ୍ମାଗାନ୍ଧି ତୃତୀୟବାର ଓଡିଶା ଆସିବାବେଳେ ବୋଲଗଡରେ ତିନିଦିନ ଅବସ୍ଥାନ କରିଥିଲେ ଏବଂ ସେଠାରେ ସୂତାକଟା ଓ ଖଦୀର ପ୍ରସାର ଉପରେ ଗୁରୁତ୍ୱ ଦେଇଥିଲେ । ଲୋକମାନଙ୍କୁ ବିଶେଷତଃ ଛାତ୍ରଙ୍କୁ 'ଈଶ୍ୱରଙ୍କ ଛଡା କାହାକୁ ଭୟ କରନାହିଁ' ବୋଲି ଉପଦେଶ ଦେଇଥିଲେ । ସ୍ୱରାଜ୍ୟ ଆନ୍ଦୋଳନରେ ବୋଲଗଡ ଏକ ବିଶିଷ୍ଟ ଖଦୀକେନ୍ଦ୍ର ଓ ସ୍ୱାଧୀନତା ସଂଗ୍ରାମର ପୀଠ ରୂପେ ପରିଚିତ ହୋଇଥିଲା । ବୋଲଗଡର ବହୁ ବରପୁତ୍ର ସ୍ୱାଧୀନତା ସଂଗ୍ରାମରେ ଝାସଦେଇ କାରାବରଣ କରିଥିଲେ । ୧୯୨୫ ମସିହାରେ ବୋଲଗଡଠାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ପ୍ରବୀଣ କଂଗ୍ରେସ ନେତା ୰ ଭାଗୀରଥି ମହାପାତ୍ର ସେଥିରେ ସଭାପତିତ୍ୱ କରିଥିଲେ ।

ଖୋର୍ଦ୍ଧା ପାଇକ ବିଦ୍ରୋହ ସମୟରେ ବୋଲଗଡର ଭୂମିକା ଗୁରୁତ୍ୱପୂର୍ଣ୍ଣ । ବିଦ୍ରୋହୀ ପାଇକମାନଙ୍କର ଏହା ଏକ କେନ୍ଦ୍ରସ୍ଥଳ ଥିଲା । ଖୋର୍ଦ୍ଧା ରାଜାଙ୍କର ବହୁ ଗଡ ଓ ଦୁର୍ଗ ମଧ୍ୟରେ ବୋଲଗଡ ଥିଲା ଅନ୍ୟତମ । ଯେଉଁ ପାଞ୍ଚଗଡକୁ ନେଇ ସେତେବେଳେ ବୋଲଗଡ କୁହାଯାଉଥିଲା, ସେଠାରେ ପାଇକ ବିଦ୍ରୋହର ବହ୍ନି ଜଳି ଉଠିଥିଲା । ଏହାର ନେତା କାଳିଆ ଭୂଇଁମୂଳ ଧରାପଡି ଫାଶି ପାଇଥିଲେ ଓ ବିଦ୍ରୋହୀ କୋଠକରଣ ବଂଶରୁ ୨୧ ଜଣ ଦ୍ୱୀପାନ୍ତରିତ ହୋଇଥିଲେ । ବୋଲଗଡକୁ କରାୟତ୍ତ କରି ରଖିବା ପାଇଁ ଇଂରେଜମାନେ ଏଠାରେ ଏକ ଥାନାର ପ୍ରତିଷ୍ଠା କରିଥିଲେ । ମାଦଳାପାଞ୍ଜି ଓ ଅନ୍ୟ ଐତିହାସିକ ଗ୍ରନ୍ଥରୁ ମିଳିଥିବା ତଥ୍ୟ ଅନୁଯାୟୀ ଓଡିଶା ବା ତତକାଳୀନ ଖୋର୍ଦ୍ଧାରେ ଭୋଇବଂଶ ଶାସନ ସମୟରେ ଛ'ଜଣ ଗଜପତି ରାଜା ବୋଲଗଡ ଓ

ଏହାର ନିକଟବର୍ତ୍ତୀ ଅନ୍ୟତମ ମୁଖ୍ୟ ଗଡ ଗଡମାଣିତ୍ରିରେ ଅବସ୍ଥାନ କରିଥିଲେ ଓ ଶ୍ରୀଜୀଉଙ୍କ ବିଗ୍ରହକୁ ଗୋପନରେ ରଖିଥିଲେ । ଶ୍ରୀ ଜଗନ୍ନାଥଙ୍କ ବିଭିନ୍ନ ବିଜେସ୍ଥଳୀ ମଧ୍ୟରେ ଗଡମାଣିତ୍ରିକୁ ଅନ୍ୟତମ ରୂପେ ଧରାଯାଏ । ଖୋର୍ଦ୍ଧା-ବାଙ୍କି ଯୁଦ୍ଧ, ଖୋର୍ଦ୍ଧା-ରଣପୁର ଯୁଦ୍ଧ ଓ ଖୋର୍ଦ୍ଧା-ଖଣ୍ଡପଡା ଯୁଦ୍ଧ ବୋଲଗଡ ପାଞ୍ଚଗଡରୁ ଭୋଇବଂଶୀୟ ରାଜାମାନେ ପରିଚାଳନା କରିଥିଲେ ।

ହିନ୍ଦୁ ମୁସଲମାନ ମଧ୍ୟରେ ବୋଲଗଡରେ ଯେଉଁ ଭାଇଚାରା ଦେଖାଯାଏ ତାହା ଅନନ୍ୟ । ମାଣିକାଗୋଡାରେ ଏବେ ମଧ୍ୟ ମୁସଲମାନ ଦଳବେହେରାଙ୍କ ନେତୃତ୍ୱରେ ଦୁର୍ଗାପୂଜା ଓ ଦଶହରା ପର୍ବ ପାଳନ କରାଯାଏ ।

ସାହିତ୍ୟ କ୍ଷେତ୍ରରେ ବୋଲଗଡର ସ୍ଥାନ ଅଦ୍ୱିତୀୟ । 'ମଥୁରାମଙ୍ଗଳ' କବି ଭକ୍ତଚରଣ ଦାସ, ବସନ୍ତରାସର କବି ପିଣ୍ଡିକ୍ ଶ୍ରୀଚନ୍ଦନ, ଗୋପୀଭାଷାର କବି ଦନେଇ ଦାସ, ରାମଲୀଳାର ଗଣକବି ଅନଙ୍ଗ ନରେନ୍ଦ୍ର ଆଦି ବହୁ ଖ୍ୟାତନାମା କବି ବୋଲଗଡ ଅଂଚଳରେ ଜନ୍ମଗ୍ରହଣ କରି ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି ।

ଇତିହାସ ସବୁବେଳେ ଉତ୍ତର ପିଢିର ମାର୍ଗଦର୍ଶକ ଭାବରେ କାର୍ଯ୍ୟକରେ । ଖୋର୍ଦ୍ଧାର ପ୍ରତ୍ୟେକ ଅଂଚଳରେ ବୀରତ୍ୱର ରକ୍ତ ରଞ୍ଜିତ ଇତିହାସ ଉତ୍ତରପିଢି ପାଇଁ ପ୍ରେରଣାଦାୟକ । ଏ ପର୍ଯ୍ୟନ୍ତ ବୋଲଗଡର ଏକ ପ୍ରାମାଣିକ ଇତିହାସ ନଥିଲା । ଶ୍ରୀ ରବୀନ୍ଦ୍ର କୁମାର ପରିଡା ବହୁ ଅଧ୍ୟୟନ ଓ ଗବେଷଣା କରି ଯେଉଁ "ବୋଲଗଡ ଇତିହାସ" ଲେଖିଛନ୍ତି ସେଥିପାଇଁ ମୁଁ ତାଙ୍କୁ ଧନ୍ୟବାଦ ଦେଉଛି । ଏହାର ରଚନାରେ ତାଙ୍କର ଆନ୍ତରିକତା, ନିଷ୍ଠା, ଅଧ୍ୟବସାୟ ଓ ନିରପେକ୍ଷତା ଐତିହାସିକମାନଙ୍କ ମଧ୍ୟରେ ତାଙ୍କୁ ଏକ ସ୍ୱତନ୍ତ୍ର ଆସନର ମର୍ଯ୍ୟାଦା ଦେବ ।

(ଜାନକୀ ବଲ୍ଲଭ ପଟ୍ଟନାୟକ)



## ବୋଲଗଡ ଇତିହାସକୁ ଶୁଭେଚ୍ଛା

ପ୍ରୀୟ ରବୀନ୍ଦ୍ର ବାବୁ,

ଆପଣଙ୍କ ଚିଠି ପାଇଛି । ଆପଣ ବୋଲଗଡର ଇତିହାସ ଲେଖି ଗୋଟିଏ ବଡ ଅଭାବ ପୂରଣ କରିଛନ୍ତି ଏହାକୁ ସମସ୍ତେ ନିଶ୍ଚୟ ସ୍ୱୀକାର କରିବେ । ସେ ବହିର ମୁଖବନ୍ଧ ଜାନକୀ ବାବୁ ଲେଖିଲେ ଭଲ ହେବ । ବୋଲଗଡ ଇତିହାସ ବିଷୟରେ ମୁଁ ପୂରାପୁରୀ ଅଜ୍ଞ । ପୁଣି ଭିନ୍ନ ଭିନ୍ନ ସଭାସମିତିକୁ ଯିବାକୁ ମୋର ବଳ ପାଉନାହିଁ । ତେଣୁ ଦୂରକୁ ଯାଉନାହିଁ । ଏପରିକି ଆମ ଗାଁକୁ ଯିବା ମଧ ମୋତେ କଷ୍ଟ ହେଉଛି । ତେଣୁ ଆପଣଙ୍କ ବୈଠକକୁ ଯାଇପାରିବି କି ନାହିଁ ସନ୍ଦେହ ।

ଆଶା, ଭଲ ଥିବେ ।

ଆପଣଙ୍କର

ତା ୧୦.୦୩.୨୦୦୬

ଡଃ. ବୈଦ୍ୟନାଥ ମିଶ୍ର
ପୂର୍ବତନ କୁଳପତି, ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ
ଏବଂ ପୂର୍ବତନ ଉପାଧକ୍ଷ, ରାଜ୍ୟ ଯୋଜନା ବୋର୍ଡ, ଓଡିଶା
୧୭, ଶହୀଦ ନଗର, ଭୁବନେଶ୍ୱର



## ଆମୁଖ

ବୋଲଗଡ ଗ୍ରାମ ନିବାସୀ ଶ୍ରଦ୍ଧେୟ ରବୀନ୍ଦ୍ର କୁମାର ପରିଡାଙ୍କ ଦ୍ୱାରା ରଚିତ ବୋଲଗଡ ଇତିହାସର ପାଣ୍ଡୁଲିପି ପାଠକରି ଖୁସି ହେଲି । ଏଥିରେ ଲେଖକ ପୌରାଣିକ ଉପଖ୍ୟାନ ସହ ଖ୍ରୀ.ପୂ. ତୃତୀୟ ଶତାବ୍ଦୀର ପ୍ରାଚୀନ କଳିଙ୍ଗ ଦେଶ କାଳରୁ ବୋଲଗଡର ଅବସ୍ଥିତି ସମ୍ବନ୍ଧରେ ପ୍ରାଚୀନତାର ତଥ୍ୟ ଆଧାରିତ ଏକମୁଖୀ ପ୍ରବେଶ ଦ୍ୱାର ବଳଦୁର୍ଗରୁ ବୋଲଗଡର ନାମକରଣ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଅଛନ୍ତି ଏବଂ ସେହି କାଳରୁ ଆଧୁନିକ କାଳ ଯାଏଁ ବହୁ ବିଶିଷ୍ଟ ଐତିହାସିକ ଓ ଗବେଷକମାନଙ୍କ ଦ୍ୱାରା ରଚିତ ଅର୍ଦ୍ଧଶତରୁ ଊର୍ଦ୍ଧ୍ୱ ଗ୍ରନ୍ଥ ଓ ପତ୍ର ପତ୍ରିକାଦିରୁ ଆବଶ୍ୟକ ତଥ୍ୟ ଉଦ୍ଧାର କରି ଏହିସବୁ ତଥ୍ୟ ଭିତ୍ତିରେ ନିଜସ୍ୱ ସୃଜନଶୀଳତାର ପରିଭାଷାରେ ରଚନା କରିଥିବା ଏହି ଗ୍ରନ୍ଥଟି ସୁଖପାଠ୍ୟ ହୋଇଛି । ଗ୍ରନ୍ଥରେ ଇଂରେଜମାନେ ପ୍ରାଚୀନ ଖୋର୍ଦ୍ଧା ରାଜ୍ୟ ଅଧିକାର କରିବା ସମୟରେ ୧୮୦୪ ଖ୍ରୀ. ରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ ଓ ତାଙ୍କ ମନ୍ତ୍ରୀ ଦେୱାନ ତଥା ରାଜଗୁରୁ ଜୟକୃଷ୍ଣ ମହାପାତ୍ର (ଜୟୀ ରାଜଗୁରୁ)ଙ୍କର ଇଂରେଜମାନଙ୍କ ବିରୁଦ୍ଧରେ ଯୁଦ୍ଧ ଏବଂ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବରଙ୍କର ୧୮୧୭-୧୮୨୫ ଖ୍ରୀ. ଯାଏଁ ଦୀର୍ଘ ୮ ବର୍ଷ ଧରି ଇଂରେଜ ସରକାରଙ୍କ ବିରୁଦ୍ଧରେ ଖୋର୍ଦ୍ଧା ପାଇକ ବିଦ୍ରୋହର ବିସ୍ତୃତ ବିବରଣୀ ସନ୍ନିବେଶିତ ହୋଇଛି । ବିଶେଷତଃ ୧୯୨୫ ମସିହାରେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନିଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାସଙ୍କ ଭଳି ଓଡିଶାର ସର୍ବଜନ ପୂଜ୍ୟ ସତ୍ୟବାଦୀ ପଞ୍ଚସଖା ପୀଠର ମହାନ ନେତା ଏବଂ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ସତ୍ୟବାଦୀ ନନ୍ଦ ପ୍ରମୁଖ କଂଗ୍ରେସ ନେତୃବର୍ଗଙ୍କ ଦ୍ୱାରା ବୋଲଗଡରେ ରାଜ୍ୟ କଂଗ୍ରେସର ୨ୟ ଅଧିବେଶନ ଅନୁଷ୍ଠିତ ଏବଂ ଖଦୀକେନ୍ଦ୍ର ସ୍ଥାପନ ହେବାପରେ ସାରା ଓଡିଶାରେ ସତ୍ୟବାଦୀ ପଛକୁ ବୋଲଗଡ ରାଜ୍ୟ କଂଗ୍ରେସର ଦ୍ୱିତୀୟ କେନ୍ଦ୍ରସ୍ଥଳୀର ମାନ୍ୟତା ଲାଭକରିଥିବା ପ୍ରତିପାଦିତ ହୋଇଛି । ସର୍ବୋପରି ୧୯୨୭ ମସିହାରେ ଜାତିର ପିତା

ମହାତ୍ମା ଗାନ୍ଧୀଙ୍କର ୩ୟ ଥର ଓଡିଶା ଆସିବା ସମୟରେ ୧୯୨୭ ଡିସେମ୍ବର ୯ ତାରିଖରେ ମହାତ୍ମା ଗାନ୍ଧୀଙ୍କ ଗହଣରେ ମହାଦେବ ଦେଶାଇ, ପ୍ୟାରେଲାଲ୍, ଦୀନବନ୍ଧୁ ଆଣ୍ଡ୍ରୁଜ୍, କାକା କାର୍ଲେକର, ମୀରା ବେନ୍, ଡଃ. କୈଳାସ ନାଥ କାଟ୍ଜୁଙ୍କ ଭଳି ସର୍ବଭାରତୀୟ ମହାନ ନେତୃତ୍ୱଙ୍କ ବୋଲଗଡ ଆଗମନରେ ବୋଲଗଡର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇଛି । ଗାନ୍ଧିଜୀଙ୍କ ଡିସେମ୍ବର ୯,୧୦,୧୧ତାରିଖରେ ବୋଲଗଡରେ ରହଣି କାଳର ବିସ୍ତୃତ ବିବରଣୀ ସହ ଲେଖକ ନିଜ ଅଞ୍ଚଳ ବୋଲଗଡ ନିକଟ ସାନପଦର ଗ୍ରାମର ପ୍ରାଚୀନ କବି 'ମଥୁରାମଙ୍ଗଳ'ର ପ୍ରଣେତା ଭକ୍ତଚରଣ ଦାସ, ଓଡିଆ ଲିପି ଓ ବଙ୍ଗଳା ଭାଷାରେ ଲିଖିତ 'ବସନ୍ତ ରାସ'ର ପ୍ରଣେତା ଦନେଇ ଦାସଙ୍କ ଠାରୁ ପରବର୍ତ୍ତୀ ଯୁଗର ବହୁ କବି, ସାହିତ୍ୟକ, ଶିକ୍ଷାବିତ୍, କଳାକାର ମାନଙ୍କ ସମ୍ପର୍କିତ ତଥ୍ୟ ସଂଯୁକ୍ତ କରିଛନ୍ତି । ଶିକ୍ଷାର କ୍ରମ ବିକାଶ ଅଧ୍ୟାୟରେ ଚାହାଳୀ ଠାରୁ ଆରମ୍ଭ କରି ବୋଲଗଡର ମହାବିଦ୍ୟାଳୟ ପ୍ରତିଷ୍ଠା ଯାଏଁ ବିବରଣୀ ଦିଆଯାଇଛି । ଶ୍ରଦ୍ଧେୟ ପରିଡା ନିଜ ଜନ୍ମମାଟି ମାଆର ଐତିହ୍ୟ, କଳା, ସଂସ୍କୃତି ଆଦିର ଗୌରବ ଗାଥା ସ୍ୱ-ରଚିତ ବୋଲଗଡ ଇତିହାସରେ ବର୍ଣ୍ଣନା କରିଛନ୍ତି । ଏହା ଗୋଟିଏ ଅଞ୍ଚଳର ଇତିହାସ ହୋଇଥିଲେ ମଧ ପାଣ୍ଡୁଲିପିଟି ପୁସ୍ତକ ଆକାରରେ ପ୍ରକାଶ ପାଇବା ପରେ ଲେଖକ ନିଜକୁ ନୂତନ ଯୁବପୀଢିଙ୍କର ଜଣେ ଗବେଷକ ଭାବରେ ପାଠକ ପାଠିକା ମାନଙ୍କ ପାଖରେ ପରିଚିତ କରାଇପାରିବେ ବୋଲି ମୁଁ ଆଶା କରୁଅଛି ।

ଐତିହାସିକ ଫକୀର ହରିଚନ୍ଦନ
(ଓଡିଶା ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ)



## ବୋଲଗଡ ଇତିହାସ ସଂପର୍କରେ

ଓଡିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ଆଞ୍ଚଳିକ ଇତିହାସ ରଚନା ବିନା ସମ୍ଭବ ନୁହେଁ । ଖୋର୍ଦ୍ଧା, ବାଙ୍କୀ, ନୟାଗଡ, ରଣପୁର, ଖଣ୍ଡପଡା, ଘୁମୁସର, ମୟୁରଭଞ୍ଜ, ବେଗୁନିଆଁ, ବାଣପୁର ପ୍ରଭୃତି ଅଞ୍ଚଳର ଇତିହାସ ଏବେ ରଚିତ ହୋଇସାରିଲାଣି । ବୋଲଗଡ ଖୋର୍ଦ୍ଧାର ଏକ ଅଂଶବିଶେଷ ହୋଇଥିଲେ ମଧ ବୋଲଗଡ ଅଞ୍ଚଳର ଏକ ସ୍ୱାତ୍ୟନ୍ତ ରହିଅଛି । ଖୋର୍ଦ୍ଧାର ୧୮୧୭ ମୁକ୍ତି ଆନ୍ଦୋଳନରେ ବୋଲଗଡର ଭୂମିକା ମଧ କମ ନୁହେଁ । ସେହିକାଳରୁ ରବୀନ୍ଦ୍ର କୁମାର ପରିଡାଙ୍କ ବୋଲଗଡ ଇତିହାସ ରଚନା ଏକ ଐତିହାସିକ ଆବଶ୍ୟକତାକୁ ଯେ ପୂର୍ଣ୍ଣ କରିଛି ଏଥିରେ ସନ୍ଦେହ ନାହିଁ । ୧୮୧୭ ମସିହାରେ ବୋଲଗଡ ଅଞ୍ଚଳର ବୀର ପାଇକ ଦଳେଇ ଦଳବେହେରାମାନେ ବାଙ୍କୋଇଗଡର କାଳିଆ ଭୋଇମୂଳଙ୍କ ନେତୃତ୍ୱରେ ବିଦ୍ରୋହରେ ଯୋଗଦେଇ ଇଂରେଜ କୁଶାସନ ସଙ୍ଗେ ଓତଃପ୍ରତଃ ଭାବେ ଜଡିତ ଥିବା ଦେୱାନ ସଦାଶିବ ରାୟଙ୍କୁ ହତ୍ୟା କରିଥିଲେ । ଏଥିପାଇଁ ଇଂରେଜୀ ଶାସକ ମାନେ ଉତକ୍ଷିପ୍ତ ହୋଇ କାଳିଆ ଭୋଇଁମୂଳଙ୍କୁ ବୋଲଗଡ ଆମ୍ବତୋଟାରେ ଫାଶି ଦେଇଥିଲେ । କେବଳ ସେତିକି ନୁହେଁ, ବିଚାର ପ୍ରହସନ କରି ତାଙ୍କ ବଂଶର ୨୧ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ ଦେଇଥିଲେ । ଖୋର୍ଦ୍ଧା ବିଦ୍ରୋହର ଏହି ଅଜ୍ଞାତ ଅଧାୟଟି ରବୀନ୍ଦ୍ର ବାବୁ ନିଜସ୍ୱ ଶୈଳୀରେ ଲୋକଲୋଚନକୁ ଆଣିପାରିଥିବାରୁ କିପରି ଭାବେ ଯେ ତାଙ୍କୁ ଅଭିନନ୍ଦନ ଜଣାଇବି ତାହା ଜାଣିପାରୁନାହିଁ । ବୋଲଗଡ ଇତିହାସର ସବୁଠାରୁ ସ୍ମରଣୀୟ ଘଟଣା ହେଉଛି ମହତ୍ମା ଗାନ୍ଧୀଙ୍କର ବୋଲଗଡ ଗସ୍ତ । ଏହି ଗ୍ରସ୍ତ ଦ୍ୱାରା ଖଦୀକେନ୍ଦ୍ରକୁ ଦୃଢ କରିବା ଓ ଦୀନ ରୟତ ମାନଙ୍କର ଦୂରବସ୍ଥା ଦେଖିବା ଗାନ୍ଧୀଙ୍କର ଲକ୍ଷ୍ୟଥିଲା । ବୋଲଗଡ ଅଞ୍ଚଳର ରୟତମାନଙ୍କର ଦୁଃଖ, ଦାରିଦ୍ର୍ୟ ଗାନ୍ଧିଜୀଙ୍କୁ ମ୍ରିୟମାଣ କରିଦେଇଥିଲା । ରବୀନ୍ଦ୍ରବାବୁ ଗାନ୍ଧିଜୀଙ୍କ ବୋଲଗଡ ଭ୍ରମଣ ବୃତାନ୍ତ ପୁଙ୍ଖାନୁପୁଙ୍ଖ ଭାବରେ ବର୍ଣ୍ଣନା କଲାବେଳେ ବହୁ ଜ୍ଞାତ ଓ ଅଜ୍ଞାତ ତଥ୍ୟମାନ ଯେପରି ଦେଇଛନ୍ତି ତାହା ଅତି ମନୋଜ୍ଞ

ହୋଇପାରିଛି । ଶ୍ରୀଯୁକ୍ତ ପରିଡା ବୋଲଗଡ ଅଞ୍ଚଳର ଦେଇଥିବା ବିବରଣୀ ଅତୀତରୁ ବର୍ତ୍ତମାନ ପର୍ଯ୍ୟନ୍ତ ବ୍ୟାପ୍ତ । ସ୍ୱାଧୀନତା ପର ବୋଲଗଡ ଅଞ୍ଚଳର ଘଟଣାମାନ ମଧ ସେ ଆଲୋକପାତ କରିଛନ୍ତି । ବିଶେଷତଃ ବୋଲଗଡ ଅଞ୍ଚଳର ପ୍ରଖ୍ୟାତ ନେତା ଗଙ୍ଗାଧର ପାଇକରାୟଙ୍କ ଭାଗଚାଷୀ ଆନ୍ଦୋଳନ ଉପରେ ସବିଶେଷ ତଥ୍ୟ ପ୍ରକାଶ କରିଛନ୍ତି । ଏହା ଆଗାମୀ ଦିନର ଯୁବ ସମାଜକୁ ଯେ ଉତ୍ସାହ ଓ ପ୍ରେରଣା ଯୋଗାଇବ ଏଥିରେ ସନ୍ଦେହ ନାହିଁ ।

ପରିଶେଷରେ ବୋଲଗଡ ଅଞ୍ଚଳର ପ୍ରାଚୀନ ଗଡ, ମନ୍ଦିର, ମସଜିଦ୍, ନଦ ନଦୀ, ପୁଷ୍କରଣୀ, ଝରଣା, ସାମରିକ ପରମ୍ପରା, ସାରସ୍ୱତ ସାଧନା ଓ ସେହି ଅଞ୍ଚଳର ମହାନ ବ୍ୟକ୍ତି ବିଶେଷଙ୍କ କୃତି ଗୁଡିକୁ ବର୍ଣ୍ଣନା କରି ପୁସ୍ତକକୁ ସମୃଦ୍ଧ କରିଥିବାରୁ ସେ ବାସ୍ତବିକ ସମସ୍ତଙ୍କର ପ୍ରଶଂସାର ପାତ୍ର ହେବେ । ବାବୁ ରବୀନ୍ଦ୍ର କୁମାର ପରିଡାଙ୍କ ଉଜ୍ଜ୍ୱଳ ଭବିଷ୍ୟତ କାମନା କରୁଅଛି ।

ଐତିହାସିକ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ
ଅବସରପ୍ରାପ୍ତ ଅଧ୍ୟକ୍ଷ
ବରୁଣେଇ ଲେନ୍, ଖୋର୍ଦ୍ଧା

## ଆଞ୍ଚଳିକ ଇତିହାସ ରଚନାପାଇଁ ପ୍ରେରଣାଦାୟକ ଉଦ୍ୟମ

ସାମ୍ରାଜ୍ୟବାଦୀ ବ୍ରିଟିଶ୍ ଶାସନ କବଳରୁ ମୁକ୍ତିଲାଭ ପାଇଁ ଜାତି ଆନ୍ଦୋଳନ ଇତିହାସ ଚର୍ଚ୍ଚାର ଆବଶ୍ୟକତାରୁ ଆଞ୍ଚଳିକ ଇତିହାସ ରଚନା ଅବହେଳିତ ହୋଇ ରହିଯାଇଥିଲା । ଏହି ଗତାନୁଗତିକ ଧାରଣାର ବିପରୀତରେ ଶ୍ରୀ ରବୀନ୍ଦ୍ର କୁମାର ପରିଡା ସ୍ୱାଧୀନୋତ୍ତର କାଳରେ ଆଞ୍ଚଳିକ ଇତିହାସ ରଚନା ପର୍ଯ୍ୟାୟରେ "ବୋଲଗଡ ଇତିହାସ"କୁ ସଂଯୋଜିତ କରିଛନ୍ତି । ବୋଲଗଡ ଅଞ୍ଚଳର ସମସ୍ତ ଜନପଦର ଅତୀତ ଏବଂ ବର୍ତ୍ତମାନର ନିଜସ୍ୱ କୃଷ୍ଟି ଓ କୃତିତ୍ୱର ଏକ ଅନନ୍ୟ ଐତିହ୍ୟ ସମ୍ପନ୍ନ ବିଷୟ ସଂକଳନ ସମୃଦ୍ଧ ଏହି ଗ୍ରନ୍ଥ ରଚନା, ଓଡିଶାର ଅନ୍ୟାନ୍ୟ ଆଞ୍ଚଳିକ ଇତିହାସ ରଚକମାନଙ୍କ ପାଇଁ ପ୍ରେରଣା ଦାୟକ ହେବ । ଏହି ଇତିହାସ ପୃଷ୍ଠା ପାଠକଲେ ଜାଣିହୁଏ ଯେ, ଏଥିପାଇଁ ଶ୍ରୀଯୁକ୍ତ ରବୀନ୍ଦ୍ର ବାବୁ ମଧ ବହୁ ସାଧ, ସାଧନା କରି ବୋଲଗଡ ସମ୍ପର୍କୀୟ ତଥ୍ୟମାନ ଥିବା ରେକର୍ଡ, ପତ୍ରପତ୍ରିକା ଓ ପୁସ୍ତକମାନ ଅଧ୍ୟୟନ ଏବଂ ଅଧ୍ୟବସାୟ ସହ ନିଜସ୍ୱ ଅଭିଜ୍ଞତା ଲବ୍ଧ ତଥ୍ୟ ସମୃଦ୍ଧ ଏହି ଫଳଶୃତି ସାର୍ଥକ ହୋଇଛି ।

ମୋ ଜାଣିବାରେ ରବୀନ୍ଦ୍ର ବାବୁ ସାମ୍ପ୍ରତିକ ସମାଜ ଜୀବନର ଗତି ସହ ନିଜକୁ ସଂପୃକ୍ତ କରିଥିବାରୁ ଏପରି ଏକ ମହତ ଏବଂ ମୂଲ୍ୟବାନ କାର୍ଯ୍ୟକରିବାରେ ସଫଳ ହୋଇପାରିଛନ୍ତି । ସେଥିପାଇଁ ମୁଁ ତାଙ୍କୁ ସଶ୍ରଦ୍ଧ ଅଭିନନ୍ଦନ ଜଣାଉଛି ।

ତା୦୨.୧୦.୨୦୦୭
(ଗାନ୍ଧି ଜୟନ୍ତୀ)

ଡଃ. ଲକ୍ଷ୍ମୀନାରାୟଣ ରାୟସିଂହ
ପ୍ରାକ୍ତନ ଅଧ୍ୟକ୍ଷ, କଲେଜ ଲେନ୍, ଖୋର୍ଦ୍ଧା

## ବୋଲଗଡ ଇତିହାସର ମହାନତା

ସୁସାହିତ୍ୟିକ, ସୁଲେଖକ, ଗବେଷକ ବନ୍ଧୁ ରବୀନ୍ଦ୍ର କୁମାର ପରିଡାଙ୍କ ସ୍ୱରଚିତ ବୋଲଗଡର ଇତିହାସ ଏକ ଅନନ୍ୟ ଅସଧାରଣ ସୃଷ୍ଟି ସମ୍ପଦ । ଏହାର ପାଣ୍ଡୁଲିପି ପଢି ମୁଁ ମୁଗ୍ଧ ହେଲି । ରବି ପରିଡା ମଧ୍ୟ ଜଣେ ଭଲ ରାଜନୈତିକ ନେତା ଯେ କି ରାଜନୀତିରେ ଗୁଣାତ୍ମକ ମୂଲ୍ୟବୋଧ ଉପରେ ସଦାବେଳେ ଆଦର୍ଶଗତ ରାଜନୀତି କରିଆସିଛନ୍ତି । ରାଜନୈତିକ ଜୀବନର କର୍ମକ୍ଲାନ୍ତି, ସଂଘର୍ଷ ଓ ସଂଗ୍ରାମମୟ ଜୀବନ ଭିତରେ ଏପରି ଏକ ଗବେଷଣାତ୍ମକ ପୁସ୍ତକ ରଚନା କରିବା ଏକାନ୍ତ ଭାବେ କଷ୍ଟକର ଅଧ୍ୟବସାୟ ଏବଂ ସାଧନା ସାପେକ୍ଷ । ବୋଲଗଡ ଇତିହାସ, ଖୋର୍ଦ୍ଧା ଐତିହ୍ୟ, ସଂସ୍କୃତି ଓ ପରମ୍ପରା ସହିତ ଏକାନ୍ତ ଭାବରେ ନିବିଡ ସଂପର୍କ ଯୁଗ ଯୁଗ ଧରି ରହିଆସିଅଛି । ରକ୍ତ ତୀର୍ଥ ଖୋର୍ଦ୍ଧା ଶତକୋଟି ବୀର ପାଇକର ତ୍ୟାଗପୂତ ଭୂମୀ ଖୋର୍ଦ୍ଧା ଓ ବୋଲଗଡ ଗୋଟିଏ ବୃନ୍ତର ଦୁଇଟି ଫୁଲ । ଖୋର୍ଦ୍ଧା ଉପରେ ବହୁ ଇତିହାସ ରଚନା ହୋଇଛି କିନ୍ତୁ ବୀର ମାଟିର ଗଡ ଖୋର୍ଦ୍ଧା ସହ ବୋଲଗଡର ସଂପର୍କ ନଖ ସହିତ ଅଙ୍ଗୁଳିର ସଂପର୍କ ପରି ଚିର ଯାଜ୍ଜ୍ୱଲ୍ୟମାନ । ଏପର୍ଯ୍ୟନ୍ତ ବୋଲଗଡ ଉପରେ ସ୍ୱତନ୍ତ୍ର ଭାବରେ ଏଭଳି ପୁସ୍ତକ ରଚନା ହୋଇନାହିଁ । ଏପରିକି ଏ ଦିଗରେ କେହି ଉଦ୍ୟମ କରିନାହାନ୍ତି । ବୋଲଗଡ ମାଟି ଖୋର୍ଦ୍ଧା ପରି ବୀରପ୍ରସବିନୀ ବହୁ ପ୍ରତିଭାକୁ ଜନ୍ମ ଦେଇ ଧନ୍ୟ ହୋଇଅଛି । ଜୟୀ ରାଜଗୁରୁଙ୍କ ପରେ ପାଇକ ବିଦ୍ରୋହ ସମୟରେ ଏ ମାଟିର ବାଙ୍କୋଇ ଗଡର ମହାନ ଦେଶଭକ୍ତ ଭୂଇଁମୂଳ କାଳିଆ ମଙ୍ଗରାଜ ଓରଫ ପର୍ଶୁରାମ ରାଉତରାୟଙ୍କର ବଳିଦାନ ଏପର୍ଯ୍ୟନ୍ତ ଲୋକଲୋଚନକୁ ଆସିପାରି ନଥିଲେ ମଧ୍ୟ ତାହାକୁ ଶ୍ରୀ ପରିଡା ବୋଲଗଡ ଇତିହାସରେ ସ୍ଥାନୀତ କରି ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଛନ୍ତି । ଏହି ମାଟି ଉପରେ ମାଟି ମା'କୁ ନେଇଁ ଯେତେସବୁ ଆତ୍ମଦାନ ଏବଂ ବଳିଦାନ ତ୍ୟାଗପୂତ ପ୍ରତିଭା ଅନ୍ୟତ୍ର ବିରଳ । ଏହି ସକଳ ତଥ୍ୟ ଉପରେ ଗବେଷଣା କ୍ରରି ସତ୍ୟକୁ ଲିପିବଦ୍ଧ କରିବା ଏକ ଧୁରିଣ ସ୍ରଷ୍ଟା । ରାଜନୀତି ନେତା ଓ ସେବକ

ରବୀନ୍ଦ୍ର କୁମାର ପରିଡାଙ୍କ ପରି ବହୁ ନେତା ଆସିବେ ଓ ଯିବେ, ହେଲେ ଐତିହାସିକ ଗବେଷକ ଦିଗ୍‌ଦର୍ଶୀ ରବୀନ୍ଦ୍ର କୁମାର ପରିଡାଙ୍କ ପରି ପ୍ରତିଭା ଜନ୍ମ ହେବେ ନାହିଁ । ଏହି ପୁସ୍ତକ ପାଠକଲେ ଯେକେହି ସହଜରେ ଜାଣିପାରିବ ଗବେଷଣାତ୍ମକ ସୃଜନଶୀଳ କ୍ରାନ୍ତିକାରୀ ଐତିହାସିକ ମହାପୁରୁଷ ମାନଙ୍କ ଆତ୍ମୋତ୍ସର୍ଗକୁ ନେଇ ରଚନା କରାଯାଇଥିବା ଐତିହାସିକ ପୁସ୍ତକ "ବୋଲଗଡ ଇତିହାସ" ଲେଖିବା ଏତେ ସହଜ ଏବଂ ସରଳ ନୁହେଁ । ସାଧନା କଲେ ସିଦ୍ଧି ଆସେ । ହେ ସିଦ୍ଧହସ୍ତ ଗବେଷକ ଶିଳ୍ପୀ, ତୁମ ରଚନାର ଅସୀମ କାରୁକାର୍ଯ୍ୟ ଭବିଷ୍ୟତ ବଂଶଧର ମାନଙ୍କୁ ନିଶ୍ଚିତ ଭାବରେ ପ୍ରେରଣା ଯୋଗାଇବ ଏହାହିଁ କାମନା ।

ତା ୧୮.୧୦.୨୦୦୭ (ମହାସପ୍ତମୀ)

ଡଃ. ପ୍ରସନ୍ନ କୁମାର ପାଟଶାଣୀ
ସାଂସଦ, ଭୁବନେଶ୍ୱର



## ବିଷୟ ସୂଚୀ

ଓଁ ଶ୍ରୀ ଗଣେଶ

## ପ୍ରାଚୀନତା

ବୋଲଗଡ଼ ବର୍ତ୍ତମାନ ଅବିଭକ୍ତ ପୁରୀ ଜିଲ୍ଲାର ପୂର୍ବତନ ଖୋର୍ଦ୍ଧା ଉପଖଣ୍ଡ ତଥା ନୂତନ ଖୋର୍ଦ୍ଧା ଜିଲ୍ଲାର ପଶ୍ଚିମ ପାର୍ଶ୍ୱର ଏକ ଅଂଶ ବିଶେଷ । ପ୍ରତ୍ୟେକ ଅଂଚଳର ସ୍ଥାନୀୟ ବିଭବକୁ ନେଇ ସ୍ମରଣାତୀତ କାଳର ବିସ୍ମୃତ ତଥ୍ୟ, ଜନଶ୍ରୁତି, କିମ୍ବଦନ୍ତୀ ଏବଂ ଅଭିଲେଖ ଜନମାନସରେ ଇତିହାସ ହୋଇଯାଏ । ତାକୁ ନେଇ ଉତ୍ତର ପୁରୁଷ ଗର୍ବ କରେ । ଏହି ପରିପ୍ରେକ୍ଷୀରେ ଆବାହମାନ କାଳରୁ ବୋଲଗଡ଼ ଅଂଚଳର ସାମଗ୍ରିକ ଇତିହାସ ଏକ ସ୍ୱତନ୍ତ୍ର ଗୌରବର ଅଧିକାର ବହନ କରିଆସିଅଛି ।

ଅଦ୍ୟାବଧି ଏହାର ପ୍ରାଚୀନତା ବିଷୟରେ ସଂଗୃହୀତ ତଥ୍ୟ ଅନୁଯାୟୀ ବିଶ୍ୱକର୍ମାଙ୍କ ଦ୍ୱାରା ରଚିତ ସଂସ୍କୃତ ଗ୍ରନ୍ଥ 'ବାସ୍ତୁ ପ୍ରକାଶ'ରେ ପ୍ରାଚୀନ ଭାରତର ଆଭ୍ୟନ୍ତରୀଣ ସୁରକ୍ଷା ପାଇଁ ୩୪ ପ୍ରକାର ଦୁର୍ଗ ଗଠନର ପ୍ରଣାଳୀ ବର୍ଣ୍ଣିତ ହୋଇଅଛି । ତନ୍ମଧ୍ୟରୁ ଉତ୍ତର କଳିଙ୍ଗର ଏକ ମୁଖୀ ପ୍ରବେଶ ଦ୍ୱାର ବିଶିଷ୍ଟ ଚକ୍ରାକାର ଦୁର୍ଗ 'ବଳଦୁର୍ଗ' ପରେ ବଳଗଡ ଅଧୁନା ବୋଲଗଡ଼ ନାମରେ ନାମିତ । ମହାଭାରତ ସମୟର ଗୋସିଙ୍ଘଦୈତ୍ୟର ଖଣ୍ଡପତନ (ଖଣ୍ଡପଡ଼ା) ଦୁର୍ଗ ଏବଂ ରଣାସୁରର ରଣପୁର ଏବଂ ବାଣାସୁରର ବାଣପୁର ଦୁର୍ଗ ମଧ୍ୟରେ ଏହା ରହିଥିଲା । ଏକ ମୁଖୀ ପ୍ରବେଶଦ୍ୱାର ଦୁର୍ଗର ମୁଖ୍ୟ ସଂଯୋଗକାରୀ ରାସ୍ତା ବର୍ତ୍ତମାନର ବୋଲଗଡ଼-ଖଣ୍ଟୁରିଆ ରାସ୍ତା ଯାହା ଅତୀତରେ ନାଗାପଲ୍ଲୀ ପାହାଡ (ମୁଣ୍ଡିଆ ପଡା) ପାଦ ଦେଶରେ ମଣ୍ଡନଗିରୀ ଘାଟିକୁ ସଂଯୋଗକାରୀ ରାସ୍ତାଥିଲା । କେଶରୀବଂଶ ଶାସନ ସମୟରେ ପୂର୍ବରୁ ପଶ୍ଚିମ ଦିଗକୁ ଏହା ତୋଷାଳୀ ଦୁର୍ଗରୁ ମଧ୍ୟ ଭାରତର ଉଜ୍ଜୟିନୀ ନଗର ପର୍ଯ୍ୟନ୍ତ ଗମନାଗମନର ସୁବିଧା ନିମନ୍ତେ ନିର୍ମିତ ରାସ୍ତାଥିଲା । ଏହା ପରବର୍ତ୍ତୀ ଯୁଗରେ ଗଜପତି ଶାସନରେ ଅଧିକ ଉନ୍ନତ ହେବା ସଂଗେ ନୟାଗଡ, ଖଣ୍ଡପଡା ପ୍ରଭୃତି ଗଡଜାତର ସୃଷ୍ଟି ପରେ ଏହି ରାସ୍ତା ଜଗନ୍ନାଥ ପୁରୀକୁ ପଶ୍ଚିମ ଓଡିଶା ଏବଂ ମଧ୍ୟ ଭାରତ ସହ ମୁଖ୍ୟ ସଂଯୋଗକାରୀ ରାସ୍ତା ରୂପେ ମାନ୍ୟତା ଲାଭ କରିଥିବାର ଅନୁମିତ ହୁଏ । ପରବର୍ତ୍ତୀ କାଳରେ ମହାନଦୀ କୂଳର ପୁରାତନ ଜଗନ୍ନାଥ ସଡକକୁ ଏହା ମୁଣ୍ଡିଆପଡା ଘାଟି ଦେଇ ଯୋଡି ହୋଇ ଯାଇଥିଲା । ବର୍ତ୍ତମାନ ଏହା ରାଜ୍ୟର ୧ ନମ୍ବର ରାଜ୍ୟ ରାଜପଥ ଥିଲା ବେଳେ ନିକଟରେ ଏହା ଜାତୀୟ ରାଜପଥ ୨୨୪ ନମ୍ବର ମାନ୍ୟତା ଲାଭ କରିଅଛି ।

ଏହି ଅଂଚଳର ପ୍ରାଚୀନତା ବିଷୟରେ ଡଃ ୰ ସତ୍ୟନାରାୟଣ ରାଜଗୁରୁ ଏବଂ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଦ୍ୱାରା ପଠିତ ଏକ ଶିଳା ଲେଖର ତଥ୍ୟକୁ ଆଧାର କରି ଓଡିଶା ଇତିହାସ କଂଗ୍ରେସର ବରିଷ୍ଠା ସଭ୍ୟା ଅଧାପିକା ଗୀତା ସିଂହ ଏକ ତଥ୍ୟ ଉଦ୍ଧାର

କରିଛନ୍ତି । ଏହି ଶିଳା ଲେଖ ବର୍ତ୍ତମାନ ନୟାଗଡର ଗୋବିନ୍ଦପୁର ଗ୍ରାମ ଶିବ ମନ୍ଦିରରେ ରହିଅଛି ।

ତାହାର ସାରାଂଶ 'କେଶରୀ ବଂଶ' ର ଜନୈକ ରାଜା କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇଥିଲେ । ସେ ଅନନ୍ତ କେଶରୀ ବର୍ମା (ଖ୍ରୀ.ଅ. ୬୧୭-୩୧) ହୋଇଥିବା ଅନୁମାନ । ସେ ରୋଗ ନିବାରଣ ନିମନ୍ତେ ଯେଉଁ ଠାରେ ସ୍ୱପ୍ନାଦେଶ ମିଳିବ ସେଠାରେ ପଶ୍ଚିମାଭିମୁଖୀ ଶିବ ମନ୍ଦିର ନିର୍ମାଣ କରିବାକୁ ଆଦେଶ ପାଇଲେ । ରାଜା ପାଦରେ ଚାଲି କରି ଆସିଲେ । ପାଞ୍ଚଗଡ ସୀମା ଦିବ୍ୟସିଂହପୁରରେ ସ୍ୱପ୍ନାଦେଶ ପାଇ ପଶ୍ଚିମାଭିମୁଖୀ ସୋମନାଥ ଶିବ ମନ୍ଦିର ପ୍ରତିଷ୍ଠା କରି ପୂଜାର ବ୍ୟବସ୍ଥା କଲେ । ବର୍ତ୍ତମାନ ଏହି ସୋମନାଥ ଦେବ ପଶ୍ଚିମ ବୋଲଗଡ ଅଂଚଳର ୬ ବିଶ୍ୱାର ମୁଖ୍ୟ ଦେବତା । ମାଳିସାହି ମୌଜାରେ ଏହି ମନ୍ଦିର ଅବସ୍ଥିତ । ମାତ୍ର ଉକ୍ତ ଶିବ ମନ୍ଦିର ପୂର୍ବମୁଖୀ । ପୁନରାୟ ରାଜା ପଶ୍ଚିମ ଦିଗକୁ ଯାତ୍ରାକରି ନୟାଗଡର ଗୋବିନ୍ଦପୁର ଗ୍ରାମରେ ଏକ ଶିବ ମନ୍ଦିର ଏବଂ କାଉଁରୀ ଠାକୁରାଣୀଙ୍କ ମନ୍ଦିର ନିର୍ମାଣ କରିଥିଲେ । ତାଙ୍କ ପୁତ୍ର ଉଦ୍ୟୋତ କେଶରୀ ସେଠାରେ ଏକ ପୋଖରୀ ଖୋଳାଇବା କଥା ଏହି ଶିଳା ଲେଖରେ ରହିଛି । ଏହି ଶିଳାଲେଖର ପ୍ରତିଲିପି କଲିକତା ବିଶ୍ୱବିଦ୍ୟାଳୟର ପ୍ରାକ୍ତନ ମୁଖ୍ୟ ଓଡିଆ ଅଧ୍ୟାପକ ନୟାଗଡ ନିବାସୀ ପଣ୍ଡିତ ୰ ବିନାୟକ ମିଶ୍ର ସଂଗ୍ରହ କରିଥିବା ଉକ୍ତ ତଥ୍ୟ ଡଂ. ପ୍ରାଣକୃଷ୍ଣ ଆଚାର୍ଯ୍ୟ ତାଙ୍କର 'ନୟାଗଡ ଇତିହାସ'ରେ ବର୍ଣ୍ଣନା କରିଛନ୍ତି । ଏହଛଡା ଡଂ. ଆଚାର୍ଯ୍ୟ ନୟାଗଡ ରାଜ୍ୟ ସ୍ଥାପନ ପୂର୍ବର ରାଜନୈତିକ ପରିସ୍ଥିତି ବିଷୟରେ ଉଲ୍ଲେଖ କରିଥିବା ବିଷୟ ଯାହା ତାଙ୍କ ପ୍ରଣୀତ 'ନୟାଗଡ ଇତିହାସ' ର ୬୬ ପୃଷ୍ଠା ଏବଂ ୭୮ ପୃଷ୍ଠାରେ ଦିଆଯାଇଛି, ଯଥାକ୍ରମେ ତାହା ନିମ୍ନରେ ପ୍ରଦାନ କରାଗଲା ।

ବର୍ତ୍ତମାନ ଅନୁଧ୍ୟାନରୁ ଜଣାଯାଇଛି ଜଟଣୀ ନିକଟସ୍ଥ ବୁଢାପଡ଼ା ସୋମନାଥ ମନ୍ଦିର, ଉତ୍ତର ବେଗୁନିଆ ସିମର ନିକଟସ୍ଥ ଗଁପୁର ସୋମନାଥ ମନ୍ଦିର, ପଶ୍ଚିମ ବୋଲଗଡର ମାଳିସାହି ସୋମନାଥ ମନ୍ଦିର ଏବଂ ନୟାଗଡ଼ ଗୋବିନ୍ଦପୁର ସୋମନାଥ ମନ୍ଦିରର ଅବସ୍ଥିତି ଗୋଟିଏ ସରଳ ରେଖାରେ ଥିଲାପରି ମନେହୁଏ । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ।

*******

ପୃଷ୍ଠା - ୬୬

ଏହା ବ୍ୟତୀତ ଇଟାମାଟି ଠାରୁ ପଞ୍ଚୁସର ଦେଇ ଦିଘିରି ଯାଏଁ ଅଂଚଳ ଓଡିଶା ରାଜାଙ୍କ ଅଧୀନରେ ଥିଲା ।

*******

ରଘୁନାଥ ସିଂହ ଦ୍ୱାଦଶ ରାଜା (୧୫୬୫ -୯୫) ନୟାଗଡ ଥାନାର ଇଟାମାଟି ଅଂଚଳ ଦଖଲ କଲେ । ଗୋକୁଳେଶ୍ୱର ସିଂହ (୧୪ତମ ରାଜା) (୧୬୩୦-୧୬୯୦) ଉପରେ ଓଡିଶା ରାଜା ସନ୍ତୁଷ୍ଟ ହୋଇ ଇଟାମାଟି ଠାରୁ ଦିଘିରି ଯାଏ ଅଂଚଳ ଦେଲେ ।

ଏ ସମସ୍ତ ତଥ୍ୟରୁ ସୂଚୀତ ହେଉଛି ଯେ କେଶରୀ ବଂଶ ସମୟରୁ ପୂର୍ବ ନୟାଗଡର ସମତଳ ଅଂଚଳ ସିଧା ସଳଖ ଓଡିଶା ରାଜାଙ୍କ କର୍ତ୍ତୃତ୍ୱରେ ଥିଲା ।

ଏତଦ୍‌ବ୍ୟତୀତ ବୋଲଗଡ ଅଂଚଳର ପ୍ରାଚୀନତା ନେଇ ବୋଲଗଡ ଇତିହାସର (ପାଣ୍ଡୁଲିପି) ସର୍ବପ୍ରଥମ ଲେଖକ ୰ ସାଧୁଚରଣ ଚୌଧୁରୀ ବହୁବର୍ଷ ପୂର୍ବେ ପଣ୍ଡିତ ନୀଳକଣ୍ଠ ଦାଶଙ୍କ ଦ୍ୱାରା ସଂପାଦିତ 'ନବଭାରତ'ଏବଂ ୰ ବାଳକୃଷ୍ଣ କରଙ୍କ ଦ୍ୱାରା ସଂପାଦିତ 'ସହକାର' ପତ୍ରିକାରୁ ସଂଗ୍ରହ କରିଥିବା ତଥ୍ୟ ନିମ୍ନରେ ଦିଆଗଲା ।

ଏକଦା ୬ଷ୍ଠ ଶତାବ୍ଦୀରେ କଙ୍ଗୋଦ ରାଜ୍ୟରୁ ଜନୈକ ବ୍ରାହ୍ମଣ ରାଜା ଜଗନ୍ନାଥ ଦର୍ଶନ କରିବାକୁ ପୁରୀ ଆସିଥିଲା ବେଳେ ସେ ବାଣପୁରକୁ କେନ୍ଦ୍ରକରି ଶୈଳୋଦ୍‌ଭବ ରାଜବଂଶ ପ୍ରତିଷ୍ଠା କରିଥିଲେ । ଏହି ରାଜ୍ୟର ୩ୟ ରାଜା ମାଣିକ୍ୟଦେବ ବୋଲଗଡ଼କୁ କେନ୍ଦ୍ରକରି ଯେଉଁ ରାଜ୍ୟ ସ୍ଥାପନ କରିଥିଲେ ଯାହାର ସୀମା ପୂର୍ବରେ ବରୁଣେଇ ପାହାଡଠାରୁ ପଶ୍ଚିମରେ ଇଟାମାଟି ନିକଟସ୍ଥ ଡେଙ୍ଗରାଗୋଡୀ ଏବଂ ପ୍ରତାପ ପ୍ରସାଦ ଗ୍ରାମ ନିକଟ ପାହାଡ ଏବଂ ଉତ୍ତରରେ ନାଗାପଲ୍ଲୀ (ମୁଣ୍ଡିଆପଡା) ପାହାଡ ଏବଂ ଦକ୍ଷିଣରେ ଶୁକରମଲ୍ଲ (ନୟାଗଡସ୍ଥ ବିରୁଡା ଗ୍ରାମର ଦକ୍ଷିଣ ପୂର୍ବରେ ଅବସ୍ଥିତ) ପାହାଡ । ଏହାର ଐତିହାସିକ ପ୍ରାସଙ୍ଗିକତା ଯାହା ଥାଉ ପଛକେ ବର୍ତ୍ତମାନ ବୋଲଗଡ଼ ଚାରିପାଖରେ ଥିବା ସମସ୍ତ ପାହାଡ ସମୁହକୁ ଅବଲୋକନ କଲେ ଉକ୍ତ ତଥ୍ୟ ସହ ବର୍ତ୍ତମାନର ଏ ସମସ୍ତ ପାହାଡ ମାନଙ୍କ ଅବସ୍ଥିତି ମେଳ ଖାଇଯାଉଅଛି । ଶୈଳୋଦ୍‌ଭବ ରାଜବଂଶ ଓଡିଶାର ଏକ ପ୍ରାଚୀନ ରାଜବଂଶ । ଡଃ ହରେକୃଷ୍ଣ ମହତାବ 'ଓଡିଶା ଇତିହାସ'ରେ ଏହି ରାଜବଂଶ ବିଷୟରେ ବହୁ ତଥ୍ୟ ଦେଇଛନ୍ତି ।

ମାଣିକ୍ୟଦେବଙ୍କର ଏହି ସ୍ମୃତି ବହନକରି ଅଧୁନା ବୋଲଗଡ ଥାନା ତଥା ମଧ୍ୟଯୁଗର ପାଞ୍ଚଗଡର ପୂର୍ବଗଡ ମାଣିବଂଧ ଏବଂ ପଶ୍ଚିମ ଗଡ ମାଣିକାଗୋଡା ନାମରେ ନାମିତ । ମାଣିବନ୍ଧର ଆରାଧ୍ୟ ଦେବତା ମାଣିକେଶ୍ୱର ଏବଂ ମାଣିକାଗୋଡାର ପ୍ରାଚୀନ ଦେବୀ ମାଣିକ ଭୂଁୟା ଓ ମାଣିକ ସାଗର ନାମରେ ଏକ ପୋଖରୀ ଏଠାରେ ରହିଅଛି । ମୁସଲମାନ ଶାସନ ସମୟରେ ମାଣିକାଗୋଡା ଏବଂ ପାଞ୍ଚଗଡ ନାମରେ ୨ଟି ଜିଲ୍ଲା ସୃଷ୍ଟି କରାଯାଇଥିଲା । ଏହାର ପ୍ରମାଣ ପ୍ରାଚୀନ ରାଜସ୍ୱ ରେକର୍ଡରେ ମିଳୁଅଛି । ମାଣିକ୍ୟଦେବଙ୍କ ସ୍ମୃତିର ଏହିସବୁ ନାମ ବହନ କରୁଅଛି ।

# ବୋଲଗଡ ନାମକରଣ

୧. ବଳଦୁର୍ଗ -

ଯେପରି ନବଦୁର୍ଗ ନୟାଗଡ, ଖଣ୍ଡପତ୍ତନଦୁର୍ଗ ଖଣ୍ଡପଡା ଗଡ ଅଷ୍ଟଦୁର୍ଗ ଆଠଗଡ ସେହିପରି ବୋଲଗଡ ପ୍ରଥମେ ବଳଦୁର୍ଗ ପରେ ବଳଗଡ ନାମରେ ନାମିତ ହୋଇଥିଲା । ମୋଗଲ ସମୟର ସମସ୍ତ ରାଜସ୍ୱ ନଥିପତ୍ରକୁ ଆଧାରକରି ଷ୍ଟାର୍ଲିଙ୍ଗ ସାହେବଙ୍କର ଓଡିଶା ଇତିହାସ Starling's Orissa ନାମରେ ପରିଚିତ । ଖୋରଧା ରାଜ୍ୟ ସ୍ଥାପନ ବେଳେ ଗଜପତି ରାମଚନ୍ଦ୍ର ଦେବଙ୍କର ଖୋରଧା ରାଜ୍ୟର ଯେଉଁ ୭୧ ଗଡର ନାମ ତାଲିକା ପ୍ରକାଶ ପାଇଅଛି, ସେଥିରେ ୭୧ ତମ ଗଡର ନାମ ବୋଲଗଡ ବୋଲି ଉଲ୍ଲେଖ ରହିଛି ।

ଏହାଛଡା ଏହି ଗଡ ତାଲିକାରେ ୧୮ ନମ୍ବର ଗଡ ମାଣିବଂଧ, ୧୯ ନମ୍ବର ଗଡ ମାଣିକାଗୋଡା, ୨୦ ନମ୍ବର ଗଡ ମଙ୍ଗୋଇ (ଏହା ଅନୁମାନ ବାଙ୍କୋଇ ଗଡ), ୨୨ ନମ୍ବର ଗଡ କଳାମାଟିଆ (ରାଜସ୍ୱନାମ ମଣ୍ଡଳସିଂହ), ୩୮ ନମ୍ବର ଗଡ ବିନ୍ଧ୍ୟଗିରି ଯାହା ସାନପଦରକୁ ବୁଝାଇଅଛି ଏବଂ ୫୫ ନମ୍ବର ଗଡ କଳାପଥର ବର୍ତ୍ତମାନ ଏହ ବୋଲଗଡ଼ ବ୍ଳକର ଉତ୍ତର ସୀମାର ଧଳାପଥର ସଲଗ୍ନ ପୂର୍ବତନ ବାଙ୍କୀ ରାଜ୍ୟ ବର୍ତ୍ତମାନ କଟକ ଜିଲ୍ଲାରେ ଅବସ୍ଥିତ ।

୨. ବଗଲଗଡ ବା ବଙ୍କଗଡ -

ବୋଲଗଡ ନାମକରଣ ବିଷୟରେ ବୋଲଗଡର ପାଇକ ଆଖଡା ଗୁରୁ ଶ୍ରୀ ବାନାମ୍ବର ମହାରଣା ଏକ ଡାକ ପାଇକ ଆଖଡା ଆରମ୍ଭରେ ପ୍ରଣାମୀ ସ୍ୱରୂପ ଯେଉଁ ଡାକ ଦିଅନ୍ତି । ସେଥିରେ ବଗଲ ପାଇଛା ନାମରେ ଏକ ଶବ୍ଦ ଅଛି । ବୋଲଗଡ ଦଳବେହେରା ବଂଶର ସ୍ୱର୍ଗତ ରାଜକିଶୋର ଦଳବେହେରା (ପଶ୍ଚିମକବାଟ) ଏବଂ ବର୍ତ୍ତମାନର ଦଳବେହେରା ରାମଚନ୍ଦ୍ର ପଶ୍ଚିମକବାଟ କହନ୍ତି, ତାଙ୍କ ପୂର୍ବ ପୁରୁଷ ପରାଶର ହରିଚନ୍ଦନ ଖୋର୍ଦ୍ଧା ନିକଟସ୍ଥ ଷଢେଇଗଡରୁ ଆସି ଏଠାରେ ଥିବା କନ୍ଧ ରାଜା ବଗଲ ପାଇଛା ବଳୀକୁ ବିତାଡିତ କରି ଦଳବେହେରା ଭାବରେ ଅଧିଷ୍ଠିତ ହୋଇଥିଲେ । ତେଣୁ ଏହାର ନାମ ବଗଲଗଡ ଥିଲା । ଖୋରଧା ଗଜପତି ଏଠାରେ ଗଡ ସ୍ଥାପନ କଲାବେଳେ ତାଙ୍କର ପୂର୍ବପୁରୁଷଙ୍କୁ ଏଠାକୁ ପଠାଇଥିଲେ ।

ବୋଲଗଡ ପାଇକଗୁରୁ ଶ୍ରୀ ମହାରଣାଙ୍କର ଡାକ ନିମ୍ନରେ ଦିଆଗଲା ।

'ବୀରଶ୍ରୀ ଗଜେଶ୍ୱର
ବୀରାଧି ବୀରବର ମହିରେ ମହିପତି ଅଯୋଧ୍ୟା ନୃପତି
ତଳେ ବସୁମାତା ଉପରେ ଧର୍ମଦେବତା

ବଗଲ ପାଇଛା ଖଣ୍ଡା କଳିଯୁଗ ଷଣ୍ଡ
ହସ୍ତୀମେ ଅମାରୀ ଘୋଡା ମେ ସବାରୀ
ଢାଲ ତଲବାର ବାମେ ବାହୁବନ୍ଧ ଚାରିପାଶେ ଅନେକ ସେବାକାରୀ
ଅଠର ଗଡ ଜାତ ମଧ୍ୟରୁ
ପୁରୀ ମହାରାଜାଙ୍କ ପାଇକ ଆସିଅଛୁ
ହଜୁରଙ୍କ ପାଶେ ଡାକ ଦେଉଅଛୁ
ଜୁହାର ଦେଉଅଛୁ ............'

ଶେଷରେ ପାଇକ ଗୁରୁ ବୋଲିଛନ୍ତି, "ଆମେ ଅଠର ଗଡ ଜାତ ମଧ୍ୟରୁ ପୁରୀ ମହାରାଜାଙ୍କ ପାଇକ ଆସିଅଛୁ" । ଇତିହାସ କହେ ସୂର୍ଯ୍ୟବଂଶର ପ୍ରତାପୀ ଗଜପତି ପ୍ରତାପରୁଦ୍ର ଦେବଙ୍କର ଅଠର ପୁଅ ଥିଲେ । ତାଙ୍କ ଅନ୍ତେ ପୁରୁଷୋତ୍ତମ ଦେବ (କାଞ୍ଚି ଅଭିଯାନ କରିଥିବା ଗଜପତି) ଓଡିଶାର ସିଂହାସନ ଆାରୋହଣ କରିବା ବେଳେ ୧୮ ଭାଇଙ୍କୁ ୧୮ଟି ଛୋଟ ରାଜ୍ୟ ପ୍ରଦାନ କରି ସେମାନଙ୍କର ଥଇଥାନର ବ୍ୟବସ୍ଥା କରିଥିଲେ । ପରବର୍ତ୍ତୀ କାଳରେ ଖୋରଧା ରାଜ୍ୟ ସ୍ଥାପନ ବେଳେ ଗଜପତି ରାମଚନ୍ଦ୍ର ଦେବଙ୍କୁ ୧୮ ଗଡଜାତର ରାଜା ମାନେ ସହାୟତା କରିଥିଲେ । ଏଣୁ ଖୋରଧାର ସମସ୍ତ ଗଡ ସ୍ଥାପନ ବେଳେ ପୁରୀ ମହାରାଜାଙ୍କ ପାଇକ ଅଠର ଗଡଜାତ ମଧ୍ୟରୁ ଆସିଥିବାର ମନେହୁଏ । ଏହି ତଥ୍ୟକୁ ଆଧାରକରି ପାଇକ ଡାକ ହୋଇଥିବାର ଅନୁମାନ କରାଯାଏ । ନିକଟରେ ହରପ୍ରସାଦ ଦାସଙ୍କ ଦ୍ୱାରା ଦୈନିକ ସମ୍ବାଦରେ ପ୍ରକାଶ ପାଉଥିବା ଓଡିଆ ଜନଜୀବନ କଥା ଶୀର୍ଷକ ଧାରାବାହିକ ପ୍ରବନ୍ଧର "ଓଡିଆ ହାତୀ" ଅଧ୍ୟାୟରେ "ଓଡିଶାରେ ଗଜପତି ଶାସନର ଅଭ୍ୟୁଦୟ" ବିଷୟରେ ଏକ ପ୍ରବନ୍ଧ ପ୍ରକାଶ ପାଇଅଛି । ଶ୍ରୀଯୁକ୍ତ ଦାସ ଉକ୍ତ ପ୍ରବନ୍ଧରେ ବୋଲଗଡ ପାଇକଙ୍କର ନିମ୍ନୋକ୍ତ ପାଇକ ଡାକ ସ୍ଥାନ ଦେଇଛନ୍ତି ।

* * *

ସମ୍ବାଦ, ଶନିବାର, ମାର୍ଚ୍ଚ ୧୦, ୨୦୦୭ :
ଓଡିଆଙ୍କ ହାତୀ : ଓଡିଆ ଜାତିର ଜୀବନ କଥା

ଗଜପତି ରାଜାଙ୍କୁ ବୋଲଗଡ ପାଇକର ଅଭିନନ୍ଦନ ଏହିପରି :-

ଶ୍ରୀ ଶ୍ରୀ ଗଜପତି ଗଜଈଶ୍ୱର, କର୍ଣ୍ଣାଟୀ କଳେବର, ବିରାଧୀ ବୀରବର । ମହୀରେ ମହୀପତି, ତଳେ ବାସୁମତି, ଉପରେ ଧର୍ମ ଦେବତୀ, କଳିଯୁଗ ଶଣ୍ଢା, ଝାଡ ପାଇସା ଖଣ୍ଡା, ହସ୍ତମେ ଅମାରୀ, ଗୋଡମେ ସୁଆରୀ, ବାହାମେ ବାଜବନ୍ଧ, ଡାହାଣେ କଟାରୀ, ଆଲଟ ଚାମର ଢାଳ ତରୁଆରୀ, ଚାରି ପାରୁଶରେ ଅନେକ ସେବାକାରୀ,

ବୀରମାନଙ୍କ ଶିରୋମଣୀ, ଦେବଙ୍କ ମସ୍ତକେ ଖିଡ଼ିକିଦାର ପାଗ, ଶତ୍ରୁ ନରହେ ଆଗ ।

ଶ୍ରୀଯୁକ୍ତ ଦାସଙ୍କ ସଂଗୃହିତ ଏହି ଲୋକବାଣୀ ସହ ବୋଲଗଡ ପାଇକ ଗୁରୁଙ୍କ ଡାକର ସାମଞ୍ଜସ୍ୟ ଅଛି ।

* * *

ପୂର୍ବେ ବୋଲଗଡ ଅଞ୍ଚଳ ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ଏହାକୁ କନ୍ଧତା ମୁଲକ ଏବଂ କନ୍ଧ ଦଣ୍ଡପାଟ ବୋଲି ମଧ କୁହାଯାଉଥିଲା । ପର୍ଣ୍ଣିମା ଯାତ୍ରୀମାନେ ଜଗନ୍ନାଥ ଦର୍ଶନ କରିବାକୁ ଆସୁଥିଲା ବେଳେ ସେମାନଙ୍କର ଏବଂ ଖୋରଧାର ଧନବନ୍ତ ଲୋକଙ୍କର ସମ୍ପତ୍ତି ସ୍ଥାନୀୟ କନ୍ଧ ଏବଂ ପାଣ ମାନେ ଲୁଟ କରୁଥିବାରୁ ପର୍ଣ୍ଣିମା ଯାତ୍ରୀଙ୍କର ସୁରକ୍ଷା ଏବଂ ଖୋରଧା ଅଞ୍ଚଳରୁ ଚୋରି ଡକାୟତ ବନ୍ଦ କରିବାକୁ ଗଜପତି ମୁଣ୍ଡିଆପଡା ଘାଟିକୁ କେନ୍ଦ୍ରକରି ମାଣିକାଗୋଡା ଠାରୁ ମାଣିବନ୍ଧ ଯାଏ ପାଞ୍ଚଗଡ ପରେ ମୁଣ୍ଡିଆପଡା ଘାଟିକୁ ଅଧିକ ସୁଦୃଢ଼ କରିବାକୁ ସଂପୁର ଏବଂ ଗୋଡିଆଳୀ ଆଦି ଆଉ ୨ ଗଡ ସୃଷ୍ଟି କରିଥିବା କଥା ଖୋରଧା ଦର୍ପଣରେ ୰ ଦିଗମ୍ବର ଶ୍ରୀଚନ୍ଦନ ଲେଖିଛନ୍ତି । ପୁଣି ରଣପୁର ରାଜା କନ୍ଧ ଥିବାରୁ ତାଙ୍କର ଏହି କନ୍ଧ ପାଣଙ୍କ ସହ ପୂର୍ବ ସମ୍ପର୍କ ଥିଲା । ଏଣୁ ଏଠାରେ ବଗଲ ନାମରେ କନ୍ଧ ମୁଖ୍ୟ ଥାଇପାରନ୍ତି ଏବଂ ତାଙ୍କ ସ୍ତ୍ରୀଙ୍କ ନାମ ପାଇଛା ହୋଇଥାଇପାରେ । ସେହି ଦୃଷ୍ଟିରୁ ବୋଲଗଡକୁ ବଗଲଗଡ ବା ବଳଗଡ କୁହାଯାଇପାରିଥାଏ ।

୩. ବାକ୍ୟଦୁର୍ଗ -

ବୋଲଗଡର ପ୍ରମୁଖ ବ୍ୟକ୍ତି ତଥା ପୂର୍ବତନ ସର୍ବରାକାର ୰ ଘନଶ୍ୟାମ ପଟ୍ଟନାୟକ ତାଙ୍କ ରଚିତ 'ଗରୁଡ ପୁରାଣ'ରେ ବୋଲଗଡକୁ ବାକ୍ୟଦୁର୍ଗ ବୋଲି ବର୍ଣ୍ଣନା କରିଛନ୍ତି । ଏହି ତଥ୍ୟକୁ ଅନୁଧ୍ୟାନ କରିବାରେ ଜଣାଯାଇଛି ଯେ, ବୋଲଗଡର ଗ୍ରାମଦେବତୀଙ୍କ ନାମ 'ବାଉତୀ' ବା 'ବାକ୍‌ଦେବୀ' । ଏଣୁ ଏହାର ନାମ ବାକ୍ୟଦୁର୍ଗ ନାମରେ ସେ ବର୍ଣ୍ଣନା କରିଥିବା ଅନୁମିତ ହୁଏ । ଏଠାରେ ୰ ଘନଶ୍ୟାମ ପଟ୍ଟନାୟକଙ୍କ ଦ୍ୱାରା ଗରୁଡ ପୁରାଣରେ ଏ ସମ୍ପର୍କରେ ଲିଖିତ ଉକ୍ତି ଉଦ୍ଧାର କରାଗଲା ।

ବାକ୍ୟଦୁର୍ଗ ଗ୍ରାମେ ମୋହର ଆବାସ<br>
ବଦତି ଘନଶ୍ୟାମ ମୁଦ ଗଲା ବଂସ

୪. ବୋଲଗଡ଼ -

ବୋଲଗଡର ମୁଖ୍ୟ ଠାକୁର ବ୍ରଜମୋହନ ଦେବଙ୍କ ନାମର ପ୍ରଥମ ଅକ୍ଷର 'ବ' ଏବଂ ବୋଲଗଡର ବ୍ରଜମୋହନ ଦେବଙ୍କ ମଠର ପ୍ରଥମ ମହନ୍ତ ୰ ବିନୋଦ

ଦାସଙ୍କ ନାମର ପ୍ରଥମ ଅକ୍ଷର 'ବ' ଏବଂ ସ୍ଥାନୀୟ ଶିବ ବାଲୁକେଶ୍ୱରଙ୍କର ପ୍ରଥମ ଅକ୍ଷର 'ବ' ଏବଂ ଗ୍ରାମଦେବତୀ ବାଉତିଙ୍କର ପ୍ରଥମ ଅକ୍ଷର 'ବ' ଥିବାରୁ ଏହାର ନାମ ବୋଳଗଡ ହୋଇଥିବାର ଏହି ବ୍ରଜମୋହନ ଦେବଙ୍କ ମଠର ପୂର୍ବତନ ମହନ୍ତ ୰ ରାମଗୋପାଳ ଦାସଙ୍କ ଠାରୁ ପ୍ରକାଶ ।

ଇଂରେଜ ଶାସନ ସମୟରୁ ବୋଲଗଡରେ ପୋଲିସ ଥାନା ଏବଂ ବନ ବିଭାଗ କାର୍ଯ୍ୟାଳୟ, ଡାକଘର ସ୍ୱାଧୀନତା ପରେ ବୋଲଗଡ ବ୍ଲକ ଏବଂ ନିକଟ ଅତୀତରେ ଏଠାରେ ତହସିଲ କାର୍ଯ୍ୟାଳୟ ଏବଂ ସବରେଜିଷ୍ଟ୍ରାର କାର୍ଯ୍ୟାଳୟ ପ୍ରତିଷ୍ଠା ହୋଇଥିବାରୁ ଏହା ବୋଲଗଡ ଅଞ୍ଚଳର ସଦର ମହକୁମାର ମାନ୍ୟତା ଲାଭ କରିଅଛି ।



## ଭୌଗୋଳିକ ପରିସ୍ଥିତି

### (ନଦୀ, ପର୍ବତ,ବନ ଏବଂ ଜଳ ବିଭାଜିକା)

ନଈ ନାଳ

ବୋଲଗଡ ଅଞ୍ଚଳରେ ସୃଷ୍ଟିର ଆରମ୍ଭରୁ କୌଣସି ବଡ ନଦୀ ନାହିଁ । ଜଳସେଚନର ସୁବ୍ୟବସ୍ଥା ମଧ୍ୟ ନାହି । ଖୋରଧା ଅଞ୍ଚଳର ସର୍ବ ପ୍ରଥମେ ମରୁଡି ଏଠାରୁ ଆରମ୍ଭ ହେବା କଥା 'ଖୁରୁଧା ଦର୍ପଣ'ରେ ୰ ଦିଗମ୍ବର ଶ୍ରୀଚନ୍ଦନ ଲେଖିଛନ୍ତି ।

ହଡାନଈ-

ଏହି ଅଞ୍ଚଳର ମୁଖ୍ୟ ନଦୀ ହଡା ନଈ । ଏହା ଖରସ୍ରୋତା ଏବଂ ଚିରସ୍ରୋତା । ଏହି ନଈ ରଣପୁର ନଅପଲ୍ଲୀ ଅଂଚଳର ସାତଭାୟା ପର୍ବତରୁ ଉତ୍ତରାଭିମୁଖୀ ହୋଇ ବୋଲଗଡ ବ୍ଲକର ଗୋପାଳିପଡା ଗ୍ରାମଠାରେ ପ୍ରବେଶ କରି ରୋଳସିଂହ, ନୟାପାଟଣା, ବେଲପଦର, ଖଉରୁଣୀ, ସାନକୁମାରୀ, ମାଣ୍ଡୁରା ଦେଇ ବହିଯାଇଅଛି । ଏହା ବାଙ୍କୋଇ ଗ୍ରା.ପ.ର ବାରବାଟି ସହଜପୁର ଗ୍ରାମ ପରେ ଆରିକମା ଏବଂ ସାଗରଗାଁ ଗ୍ରା.ପ. ରେ କାଳୀଗିରି ନାମ ଧାରଣ କରି ଖଣ୍ଡପଡା ପୂର୍ବଦିଗରେ ଯାଇ ମହାନଦୀରେ ପଡିଅଛି । ଏହା ବୋଲଗଡ ବ୍ଲକର ଗଙ୍ଗା ନଦୀ ସଦୃଶ୍ୟ । ବଡକୁମାରୀ ଗ୍ରା.ପ.ର ବିଲଖଉରୁଣୀ, ଡିହଖଉରୁଣୀ, ବଡକୁମାରୀ, ସାନକୁମାରୀ ଗ୍ରାମର ଚାଷୀ ମାନେ ବର୍ଷସାରା ଏହାର ପାଣି ନେଇ ବିଭିନ୍ନ ପ୍ରକାରର ପନିପରିବା ଉତ୍ପାଦନ କରିଥାଆନ୍ତି । ଏହି ସବୁ ଗ୍ରାମ ବୋଲଗଡ ବ୍ଲକର ଉଦ୍ୟାନ ସଦୃଶ୍ୟ ଏବଂ

ବର୍ଷ ସାରା ଚିରହରିତ । ପ୍ରତ୍ୟେକ ଦିନ କୁମ୍ଭାରୀ ଛକ ଠାରେ ଜାତୀୟ ରାଜ ପଥ ଉପରେ ଶହ ଶହ ଭାର କଞ୍ଚା ପରିବା ବଜାର ସ୍ଥାନୀୟ ଅର୍ଥନୀତିକୁ ଅଭିବୃଦ୍ଧି କରିଅଛି । ସ୍ୱତନ୍ତ୍ର ଭାବେ ଏକ ପ୍ରାଥମିକ ଫଳ (ପରିବା) ସମବାୟ ସମିତି ଏଥିପାଇଁ ସରକାର ଗଠନ କରିବା ସଂଗେ ଏକ କୃଷକ ବଜାର ସ୍ଥାପିତ ହୋଇଅଛି । ହଡା ନଈ ବାହାରିଥିବା ସ୍ଥାନର ଦକ୍ଷିଣ ପୂର୍ବ ଦିଗରେ ମନ୍ଦାକିନୀ ନଦୀ (ମଲାଗୁଣୀ ନଈ) ବାହାରି ରଣପୁର ରାଜ୍ୟ ଦେଇ ଖୋର୍ଦ୍ଧାର ତଳ ଅଞ୍ଚଳ ଅତିକ୍ରମ କରି ବ୍ରହ୍ମଗିରି ଅଞ୍ଚଳରେ ଚିଲିକାରେ ପଡିଅଛି । କବିବର ରାଧାନାଥ ତାଙ୍କ 'ଚିଲିକା' କାବ୍ୟରେ 'ନଦୀ ମନ୍ଦାକିନୀ ଅମନ୍ଦଗାମିନୀ । ରଣପୁର ରାଷ୍ଟ୍ର ବନ ବିହାରିଣୀ' ବୋଲି ବର୍ଣ୍ଣନା କରିଛନ୍ତି ।

ହଡା ନଦୀ ବ୍ୟତୀତ ବୋଲଗଡ ପଶ୍ଚିମ ଦିଗରେ ଦୁଇଟି ଛୋଟ ନାଳ ଲୁଣିଆ ନାଳ ଏବଂ ହସ୍ତୁରୀ ନାଳ୍ ମୁଣ୍ଡିଆ ପଡା ପାହାଡରୁ ବାହାରି ଦକ୍ଷିଣ ଦିଗକୁ ଗତିକରି ଖଣ୍ଡୁରିଆ, ବୋଲଗଡ, କଳାଙ୍ଗ ଏବଂ ଦଳେଇସାହି ଗ୍ରା.ପ.ରେ ପ୍ରବାହିତ ହୋଇ ପୂର୍ବ ନୟାଗଡର ସାଲୁଣୀ ଗ୍ରାମ ନିକଟରେ କୁସୁମୀ ନଦୀରେ ପଡିଅଛି । ଏଥିରେ ବର୍ଷାପରେ ଆଉ ପାଣି ରହେ ନାହିଁ । ଏହାଛଡା ମୁଣ୍ଡିଆପଡା ପାହାଡର ପୂର୍ବଦିଗରେ ଏକ ନାଳ ପାଟବନ୍ଧ ସିଂହନାଦ ଜଳଭଣ୍ଡାର ଠାରୁ ବାହାରି ସାଗରଗାଁ ଗ୍ରା.ପ. ଦେଇ କାଙ୍କୀଗିରି ନଈରେ ମିଶିଅଛି । ସାନପଦର ବିନ୍ଧ୍ୟଗିରିରୁ ଏକ ନାଳ ବାହାରି ମାଗୁରା ନିକଟରେ ହଡା ନଈରେ ପଡିଅଛି । ବୋଲଗଡ ବ୍ଲକର ଦକ୍ଷିଣ ପୂର୍ବ ଦିଗରେ ଗୋପାଳପୁର ଗ୍ରା.ପ.ର ଦେଉଳୀ ନିକଟସ୍ଥ ଜାମୁସାହି ଏବଂ ରଣପୁର ଅନ୍ତର୍ଗତ କୁଳାଶର ଗ୍ରାମ ମଧ୍ୟଭାଗରେ ବାଜିନାଳ ଏହି ଅଞ୍ଚଳର ମୁଖ୍ୟ ନାଳ । ଏହି ନାଳ ଦକ୍ଷିଣ ପାରିକ୍ଷେତା ଦେଉଳି, ସୀମାପଲ୍ଲୀ, ନାରାୟଣୀ ପଡା ଦେଇ ଦକ୍ଷିଣକୁ ବହିଯାଇ ମଲାଗୁଣୀ ନଦୀରେ ମିଶିଅଛି । କଡବ ଠାରୁ ଏକ ନାଳ ବାହାରି ନୟାପଲ୍ଲୀ ଏବଂ ତାଳତୁମ୍ବ ଦେଇ ବାରବାଟି ନିକଟରେ ବାଲି ନାଳରେ ମିଶିଅଛି । ଏଥିରେ କଇଁଆବନ୍ଧ ଏବଂ ଗଦଗଦି ନାମରେ ୨ଟି ଛୋଟ ବନ୍ଧ ପକାଯାଇ ବର୍ଷା ଜଳକୁ ଅଟକାଯାଇଥାଏ । ଆଉ ଏକ ନାଳ ବୋରିକ ଟାଙ୍ଗିରୁ ବାହାରି ମୁଗୁମଣ୍ଡା, ବାରବାଟି ଦେଇ ବେଗୁନିଆଁ ବ୍ଲକର ଅଠରଙ୍ଗ ଏବଂ ଗଡମାଣିତ୍ରୀ ନିକଟରେ ବାଲି ନାଳରେ ମିଶିଅଛି ।

ଏହି ସବୁ ନାଳରୁ ସ୍ଥାନୀୟ ଚାଷୀମାନେ ପାଣି ନେଇ ମରୁଡି ବେଳେ ଧାନଫସଲ ରକ୍ଷା କରିବା ସହ ସାମୂହିକ ଭାବରେ ପରିବା ଚାଷ କରିଥାନ୍ତି ।

ବନ୍ୟାବେଳେ ସାଗର ଗାଁ ଗ୍ରା.ପ.ର ବାଳସିଂ, ବାଳସିଂ ପାଟଣା ଏବଂ ସିଂହପୁର ପ୍ରଭୃତି ଗ୍ରାମ ଚାରିପାଖେ ସପ୍ତାହ ବ୍ୟାପି ବନ୍ୟାଜଳ ଜମି ରହିଥାଏ । ଏଣୁ ଏ ଗ୍ରାମର ପାଣି କାଳକ୍ରମେ ଫ୍ଲୋରାଇଡ ଯୁକ୍ତ ହେବା ହେତୁ କିଛିବର୍ଷ ପୂର୍ବରୁ ଏଥିପାଇଁ

ସ୍ଥାନୀୟ ଲୋକେ ଏକ ଉତ୍କଟ ବ୍ୟାଧିର ସମ୍ମୁଖୀନ ହୋଇଛନ୍ତି । ସରକାର ଏହାର ପ୍ରତିକାର ପାଇଁ ପିଇବା ପାଣି ଯୋଗାଇବା ସଙ୍ଗେ ସଙ୍ଗେ ଗ୍ରାମବାସୀଙ୍କୁ ସ୍ଥାନାନ୍ତର କରିବାକୁ ପ୍ରୟାସ ଜାରି ରଖିଛନ୍ତି । ଏହାଛଡା ବନ୍ୟାବେଳେ ହଡା ନଈ ଦ୍ୱାରା ବାଙ୍କୋଇ ଗ୍ରା.ପ.ର ସହଜପୁର, ବାରବାଟୀ, ପାଟପୁର ଶାସନ ଗ୍ରା.ପ.ର ବିଧାରପୁର, ପିଚୁକୁଳି ଗ୍ରା.ପ.ର ମାଗୁରା ଗ୍ରାମ ସମେତ ସାଗର ଗାଁ, ଆରିକମା ଏବଂ ବାଙ୍କୋଇ ଗ୍ରା.ପ.ର ଅଧିକାଂଶ ଚାଷ ଜମି ବାଲିଚର ହୋଇ କ୍ଷତିଗ୍ରସ୍ତ ହୋଇଥାଏ ।

## ବନ ଓ ପାହାଡ

ଇଂରେଜ ସରକାର ଦେଶରେ ସର୍ବପ୍ରଥମେ ରାଜସ୍ୱ ଏବଂ ବନବିଭାଗ ସୃଷ୍ଟି କରିଥିଲେ । ଇଂରେଜ ଶାସନ ଅମଳରୁ ବୋଲଗଡ ଠାରେ ପ୍ରତିଷ୍ଠିତ ବନ ବିଭାଗ କାର୍ଯ୍ୟାଳୟ ଅଧୀନରେ ସମଗ୍ର ବୋଇଗଡ ବେଗୁନିଆଁ ଅଞ୍ଚଳ ସହ ଖୋରଧା ନିକଟସ୍ଥ ଜୟମଙ୍ଗଳ ଜଙ୍ଗଲ ଥିଲା । ଏହି ଅଞ୍ଚଳର ୩ ଗୋଟି ମୁଖ୍ୟ ଅଟକ ଜଙ୍ଗଲ ଯଥା -(୧) ପାଞ୍ଚଗଡ ଅଟକ ଜଙ୍ଗଲ । ଏହାର କ୍ଷେତ୍ରଫଳ ୭୩୫ ହେକ୍ଟର । (୨) ନାଗାପଲ୍ଲୀ ଅଟକ ଜଙ୍ଗଲ । ଏହାର କ୍ଷେତ୍ରଫଳ ୫୫୧ ହେକ୍ଟର (୩) ମାଣିବନ୍ଧ ଅଟକ ଜଙ୍ଗଇ । ଏହାର କ୍ଷେତ୍ରଫଳ ୩୦୯ ହେକ୍ଟର । ପାଞ୍ଚଗଡ ଅଟକ ଜଙ୍ଗଲର ଦକ୍ଷିଣ ପୂର୍ବରେ ରଣପୁର ସୀମାର ମର୍ଦ୍ଦାବାଡି ଠାରୁ ପଶ୍ଚିମ ଦିଗକୁ ମଣ୍ଡଳ ସିଂହ, କାଉତରା ପର୍ଯ୍ୟନ୍ତ ଲାଗିଅଛି । ଶାଳ, ପିଆଶାଳ, ଅସନ, କୁରୁମ ଏବଂ ଅନ୍ୟସବୁ ପ୍ରକାର ମୂଲ୍ୟବାନ ଗଛରେ ପରିପୂର୍ଣ୍ଣ ଜଙ୍ଗଲ ବର୍ତ୍ତମାନ ଲୁପ୍ତ ପ୍ରାୟ । ପଶ୍ଚିମ ବୋଲଗଡର ସମସ୍ତ ଗରିବ ଲୋକଙ୍କର ଏହା ଜୀବିକା ଅର୍ଜନ ସ୍ଥଳ ଥିଲା । ବର୍ତ୍ତମାନ ଏହାର ପୂର୍ବଶିରି ନାହିଁ । ମଣ୍ଡଳସିଂହ, କୁଶୁପଲା, ଶ୍ୟାମସୁନ୍ଦରପୁର ଗ୍ରାମବାସୀମାନେ ଜଙ୍ଗଲ ସୁରକ୍ଷା କମିଟି ଗଠନ କରି ଏହାର ରକ୍ଷଣାବେକ୍ଷଣ କରନ୍ତି । ଏହି ପାହାଡ ଉପରେ ମଣ୍ଡଳସିଂହ ଏବଂ କୋଟପଲ୍ଲୀ ଗ୍ରାମ ନିକଟରେ ଝିକିମିକି ଆଶ୍ରମ ସମଗ୍ର ନୟାଗଡ ଏବଂ ବୋଲଗଡ ଅଞ୍ଚଳରେ ଏକ ତୀର୍ଥ ସ୍ଥଳୀ ସଦୃଶ । ଏଠାରେ ଶ୍ରୀରାମଙ୍କର ଏକ ଆଶ୍ରମ ଓ ତହିଁରେ ଜଣେ ସାଧୁ ଅଛନ୍ତି । ଏହି ଉଚ ପାହାଡ ଉପରେ ଏକ ବିରାଟ ଜଳ ଭଣ୍ଡାର ଅଛି ଏବଂ ୧୨ ଏକରରୁ ଉର୍ଦ୍ଧ୍ୱ ଚାଷ ଜମି ଅଛି । ଏଥିରେ ଆଶ୍ରମର ବର୍ଷସାରା ପରିଚାଳନା କାର୍ଯ୍ୟ ହୋଇଥାଏ । ବିଶେଷ କରି କାର୍ତ୍ତିକ ମାସରେ ବହୁ ଜନ ସମାବେଶ ହୁଏ । ଏହି ପାଞ୍ଚଗଡ ଅଟକ ଜଙ୍ଗଲ ପରିସର ମଧ୍ୟରେ ବଡ ଟାଙ୍ଗର, କଇଁଫୁଲିଆ, ଚୋର କୋରଡ ପ୍ରଭୃତି ସ୍ଥାନରେ ଖରାଦିନେ ପାଣି ମିଳେ ।

ଏହାର ଗୋଜୀ ପାହାଡରେ ଅଭ୍ର ଏବଂ ଲୁହାପଥର ଥିବାର ଜଣାଥିଲେ ମଧ୍ୟ ବୈଷୟିକ ଅନୁସନ୍ଧାନ ଅଦ୍ୟାବଧି ହୋଇନାହିଁ । ଏହାଛଡା ପ୍ରଚୁର ପରିମାଣରେ

ମୂଲ୍ୟବାନ ଲାଲ ରଙ୍ଗର ବଉଳମାଳା ପଥର ଏଠାରେ ଗଚ୍ଛିତ ଅଛି । ଲୋକମୁଖରୁ ଜଣାଯାଏ ବୋଲଗଡ ମଠ ବ୍ରଜମୋହନ ଦେବଙ୍କ ମନ୍ଦିର ନିର୍ମାଣ ପାଇଁ ଏହି ଗୋକୀ ମୁଣ୍ଡିଆରୁ ବଉଳମାଳା ପଥର ଆସିଥିଲା । ବର୍ତ୍ତମାନ ଆଧୁନିକ ବିଳାସପୂର୍ଣ୍ଣ ଗୃହରେ ବିଭିନ୍ନ ରଙ୍ଗର ପଥର ଲାଗୁଥିବାର ଦେଖାଯାଉଅଛି । ଯଦି ଉକ୍ତ ଗୋକି ମୁଣ୍ଡିଆରୁ ଏହି ଲାଲ ରଙ୍ଗର ପଥର ଉଦ୍ଧାର କରାଯାଇ ଏ ପ୍ରକାର ଗୃହନିର୍ମାଣ କାର୍ଯ୍ୟରେ ଲଗାଯାଇପାରନ୍ତା । ତେବେ ସ୍ଥାନୀୟ ଲୋକଙ୍କର କର୍ମସଂସ୍ଥାନ ହେବା ସଙ୍ଗେ ସଙ୍ଗେ ସରକାର ପ୍ରଚୁର ରାଜସ୍ୱ ପାଇପାରନ୍ତେ । ପୂର୍ବେ ବହୁ ପ୍ରକାର ବନ୍ୟପ୍ରାଣୀ ଥିଲେ । ବର୍ତ୍ତମାନ ସେମାନେ ଲୁପ୍ତପ୍ରାୟ । ଏହି ଜଙ୍ଗଲ ମଧ୍ୟରେ ଥିବା (ମର୍ଦ୍ଦାବାଡି) ବଡ ବନ୍ଧ, କୁଣ୍ଡୁପଲ୍ଲୀ ଗୋଜିବନ୍ଧ ଏବଂ କୋଟପଲ୍ଲୀ ଯୋଗି ବନ୍ଧରୁ ସ୍ଥାନୀୟ ଚାଷୀ ମାନେ ଜଳ ସେଚନ ବ୍ୟବସ୍ଥା କରିଥାଆନ୍ତି । ଏହଛଡା ବୋଲଗଡ ଗ୍ରାମ ଦକ୍ଷିଣ ଦିଗରେ ଥିବା ପାହାଡକୁ ଢୁବୁରୀ ପାହାଡ କୁହାଯାଏ । ଏହାର ପୂର୍ବ ଦିଗରେ ଅବସ୍ଥିତ ଡାବରଧୁଆ ଏବଂ ଡାବରଧୁଆ ପାଟଣା ଗ୍ରାମ ସହ ଡାବୁରିଆ ଖୋଲ ପାହାଡର ପାଦ ଦେଶରେ ଥିବାରୁ ଏହାର ନାମକରଣ ଏପରି ହୋଇଥିବାର ଅନୁମିତ । ଏହି ପାହାଡ ତଳେ ବୋଇଗଡ ଭୂୟାଁ ଠାକୁରାଣୀଙ୍କ ପୀଠ, ବର୍ଷସାରା ଏକ ବଣଭୋଜି ସ୍ଥଳ ଭାବରେ ପରିଗଣିତ । ଢୁବୁରୀ ପାହାଡ ପାଦଦେଶରେ ଛଞ୍ଚାଣିଆ ବନ୍ଧ, ଶିଆଳିଆ , ଡାବୁରିଆ ଖୋଲ ବନ୍ଧ ଓ ଗୋରଡି ବନ୍ଧ ନାମରେ ୪ଟି ଜଳାଶୟ ଅଛି । ମରୁଡି ବେଳେ ସ୍ଥାନୀୟ ଜମିକୁ ଏହା ଜଳ ଯୋଗାଇଥାଏ । ଏହି ଢୁବୁରି ପାହାଡର ଦକ୍ଷିଣ ଦିଗ ମର୍ଦ୍ଦାବାଡି ଗ୍ରାମ ନିକଟରେ ବହୁ କାଳ ପୂର୍ବେ ଏକ ମଠ ଥିଲା । ବର୍ତ୍ତମାନ ସେହି ସ୍ଥାନ ମଠ ପଡିଆ ନାମରେ ବିଦିତ । ନିକଟରେ ମର୍ଦ୍ଦାବାଡି ଗ୍ରାମର ଜଣେ ଆଦିବାସୀ ଲୋକ ଏଠାର ମାଟିତଳୁ ଅଷ୍ଟଧାତୁ ନିର୍ମିତ ରାଧାକୃଷ୍ଣ ମୂର୍ତ୍ତି ପାଇଥିଲେ । ଏହାଛଡା ଏହି ମାଟିତଳୁ ବିଭିନ୍ନ ପ୍ରକାର ପାତ୍ର, ଅନ୍ୟାନ୍ୟ ଜିନିଷ ମିଳୁଅଛି । ସ୍ଥାନୀୟ ଲୋକଙ୍କ ଠାରୁ ଜଣାଯାଏ ଏହି ମଠର ବିଗ୍ରହ ସେତେବେଳେ ରଣପୁରର ରମାବିଲ ମଠକୁ ସ୍ଥାନାନ୍ତରିତ ହୋଇଥିଲେ । ତେଣୁ ଢୁବିରି ମୁଣ୍ଡିଆକୁ ଲୋକମାନେ ମଠ ମୁଣ୍ଡିଆ ବୋଲି କହନ୍ତି ।

ଜଗନ୍ନାଥ ଦର୍ଶନାର୍ଥୀ ଯାତ୍ରୀଙ୍କୁ ସୁରକ୍ଷା ଦେବାକୁ ମୁଣ୍ଡିଆ ପଡା ଠାରୁ ଛଞ୍ଚାଣିଆ ବନ୍ଧ ପର୍ଯ୍ୟନ୍ତ ୧୮ ଟି ଗୋଡା ଖୋରଧା ଗଜପତିଙ୍କର ଥିଲା । ବର୍ତ୍ତମାନ ଏହି ଐତିହାସିକ ତଥ୍ୟକୁ ଅନୁଧ୍ୟାନ କଲେ ଜଣାପଡେ ଯେ, ମାଣିକା ଗୋଡା ଏବଂ ବୋଲଗଡ ଛଞ୍ଚାଣିଆ ବନ୍ଧ ଉପରେ ଢୁବୁରୀ ପାହାଡ ତଳେ ଗୋରଡି ବନ୍ଧ ଅଛି । ଏହିସବୁ ଗୋଡାରେ ମହାରାଜାଙ୍କ ସୈନ୍ୟ ସାମନ୍ତ ରହନ୍ତି । ରଣପୁର ରାଜା ଓ ଖୋର୍ଦ୍ଧା ମହାରାଜଙ୍କର ଏଠାରେ ଭେଟ ହୁଏ । ରଣପୁର ରାଜା ସେ ସମୟରେ ମାଳିସାହି ସୋମନାଥ ଦେବଙ୍କୁ

ଦର୍ଶନ କରିବାକୁ ଲୁଣିଆ ନାଳରେ ପଷ୍ଟୁକୋଟ ଗ୍ରାମ ପାଖରେ ଏକ ବନ୍ଧ ନିର୍ମାଣ କରିଥିଲେ । ତାହା ଲୋକ ମୁଖରେ ଅଦ୍ୟାବଧି ନରେନ୍ଦ୍ର ବନ୍ଧ ନାମରେ ନାମିତ । କାରଣ ରଣପୁର ରାଜାଙ୍କ ଉପାଧି ନରେନ୍ଦ୍ର ଥିଲା ।

ଏହାଛଡା ରୋଳସିଂହ ବେଲପଦର ଗ୍ରାମର ଦକ୍ଷିଣଦିଗରେ ମଧ ପାହାଡ ରହିଅଛି । ସାନପଦର ରାସୋଳ ଗ୍ରାମ ନିକଟରେ ଥିବା ପାହାଡ ମଧରେ ବିନ୍ଧ୍ୟଗିରି ମଧ ଏକ ପ୍ରାଚୀନ ଗଡର ଭଗ୍ନାବଶେଷ । ଏହ ଲୋକମୁଖରେ ବେଗୁନିଆ ଥଇ । ମାଟିତଳୁ ପୁରୁଣା ଘରକରଣା ଜିନିଷ ଏବଂ ବିଭିନ୍ନ ଭଗ୍ନ ପାତ୍ର ବାହାରୁ ଥିବାର ସ୍ଥାନୀୟ ଲୋକମାନେ କହନ୍ତି । ଖୋର୍ଦ୍ଧାର ୭୧ ଗଡ ମଧରେ ବିନ୍ଧ୍ୟଗିରୀର ନାମ ଅଛି । ବୋଧହୁଏ କୌଣସି ଅଘଟଣରୁ ସେଠାରୁ ଜନବସତି ଉଠିଯାଇ ପରେ ସାନପଦରକୁ ସ୍ଥାନାନ୍ତରିତ ହେଲା । ଏହାଛଡା ଦକ୍ଷିଣ ପାରିକ୍ଷେତା ଏବଂ ନାରାୟଣପଡା ଏବଂ ତାଳଦୁମ୍ବ ଗ୍ରାମ ପାଖରେ ଛୋଟ ଛୋଟ ପାହାଡ ଅଛି । ତାଳଦୁମ୍ବ ଗ୍ରାମ ନିକଟସ୍ଥ ପାହାଡ ଉପରେ ଶ୍ରୀ ପଞ୍ଚିମେଶ୍ୱର ମହାଦେବଙ୍କ ମନ୍ଦିର ରହିଅଛି ।

ବୋଲଗଡର ଉତ୍ତର ପୂର୍ବରେ ପାଟବନ୍ଧ ଖଲିକୋଟ ଗ୍ରାମଠାରୁ ପଶ୍ଚିମରେ ସଂପୁର ଖଣ୍ଡପଡା ସୀମା ପର୍ଯ୍ୟନ୍ତ ନାଗାପଲ୍ଲୀ ଅଟକ ଜଂଗଲ ଅବସ୍ଥିତ । ମୁଣ୍ଡିଆପଡା (ମଣ୍ଡନଗିରି) ଏହାର ଶୋଭା ବର୍ଦ୍ଧନକାରୀ ସ୍ଥଳ । ଏଠାରେ ବହୁ କାଳରୁ ବାଙ୍କୋଇ ତାରେଶ୍ୱରଦେବ ବିଜେ ପ୍ରତିମା ଭାବରେ ଶିବଙ୍କର ପୂଜା ହେବାସହ ସୁନ୍ଦର ରାମ ମନ୍ଦିର ଅଛି । ଏହା ବୋଲଗଡ ଅଂଚଳର ମୁଖ୍ୟ ପର୍ଯ୍ୟଟନ କେନ୍ଦ୍ର । ବୋଲଗଡ, ଖଣ୍ଡପଡା, ନୟାଗଡ ଏବଂ ଭାପୁର ବ୍ଲକର କେନ୍ଦ୍ର ସ୍ଥଳରେ ଏହି ମୁଣ୍ଡିଆପଡା ଆଶ୍ରମ ପ୍ରତିଷ୍ଠିତ । ଏଠାରୁ ମହାନଦୀର ଦୃଶ୍ୟ ଏବଂ ସକାଳର ସୂର୍ଯ୍ୟୋଦୟ, ସଂଧ୍ୟାରେ ସୂର୍ଯ୍ୟାସ୍ତ ଜନମନ ହରଣ କରେ । ଷଣ୍ଢ ଗଡା ପଥର ନାମରେ ନାମିତ ବିରାଟ କଳାମୁଗୁନି ପଥର ତାସେରି ତଳେ ସୀତା ବନବାସ କୋରଡ ଏବଂ ଭୀମଙ୍କ ପାଦ ଚିହ୍ନ ଥିବାର ଜନଶ୍ରୁତି କହେ । କାଠଚମ୍ପା ଗଛରେ ଆଚ୍ଛାଦିତ ଏହି ସ୍ଥାନରେ ବର୍ତ୍ତମାନ ଠାକୁରଙ୍କ ମନ୍ଦିର, ଛୋଟ ପୋଖରୀ, ଧର୍ମଶାଳା ପ୍ରଭୃତି ନିର୍ମିତ ହୋଇଅଛି । ଏହା ଏକ ସିଦ୍ଧ ପୀଠ । ଲେଖକ ଆସାମ କାମାକ୍ଷା ପୀଠ ଦେଖିଲା ପରେ ମୁଣ୍ଡିଆପଡା କାମାକ୍ଷା ଠାରୁ କୌଣସି ଗୁଣରେ କମ ନୁହେଁ ବୋଲି ଉପଲବ୍ଧି କରିଅଛି । ଆମର ଦୁର୍ଭାଗ୍ୟ ଏପରି ସ୍ଥାନଟି ଓଡିଶାରେ । ଏଣୁ ଅଲୋଡା ହୋଇ ରହିଅଛି । ଏହାର ଏକମାତ୍ର କାରଣ ରାଜନୈତିକ ଇଚ୍ଛାଶକ୍ତିର ଅଭାବ । ତଥାପି ମୁଣ୍ଡିଆ ପଡାକୁ ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ଦେବା ପାଇଁ ସଂପୁର ଗ୍ରାମର ଯୁବ ନେତା ବିଜୟ ମହାନ୍ତିଙ୍କର ଅବିରତ ଉଦ୍ୟମ ଏବଂ ଏଥିପାଇଁ ବର୍ତ୍ତମାନର ସ୍ଥାନୀୟ ଜନ ପ୍ରତିନିଧି ଓଡିଶାର ସର୍ବମାନ୍ୟ ନେତା ପୂର୍ବତନ ମୁଖ୍ୟ ମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଆଶୀର୍ବାଦ

ରହିଥିବାର ଜଣାଯାଏ । ଏହାର ଐତିହାସିକ ଗୁରୁତ୍ୱ ଅଧିକ । 'ଖୋରଧା ଦର୍ପଣ'ରେ ଏହି କ୍ଷେତ୍ର ବିଷୟରେ ବହୁ ତଥ୍ୟ ରହିଅଛି ଯାହା ପରବର୍ତ୍ତୀ ଅଧ୍ୟାୟରେ ସ୍ୱତନ୍ତ୍ର ଭାବରେ ବର୍ଣ୍ଣିତ ହେବ । ଖୋରଧା ରାଜ୍ୟର ପଶ୍ଚିମ ପାର୍ଶ୍ୱର ଏହା ସାମରିକ ଘାଟି । ପଶ୍ଚିମା ଯାତ୍ରୀମାନେ ଦଶପଲ୍ଲା ବଡମୁଳ ଘାଟ ପାର ହେଲା ପରେ ମୁଣ୍ଡିଆପଡା ଘାଟି ଦେଇ ପୁରୀ ଯାଇଥାନ୍ତି । ଏହାର ସୁରକ୍ଷା ପାଇଁ ଗଜପତି ମହାରାଜା ୫ ଗଡ କୁ ମିଶାଇ ଏହାର ଦକ୍ଷିଣରେ ସଂପୁର ଏବଂ ପୂର୍ବରେ ଗୋଡିଆଳି ଗଡ ସ୍ଥାପନ କରିଥିଲେ । ଏଠାରେ ବର୍ତ୍ତମାନ ସର୍ବଜନପ୍ରିୟ 'ଅକୁ ବାବା' ଆଶ୍ରମର ମୁଖ୍ୟ । ସେ ବୋଲଗଡ ଅଂଚଳର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ବାଙ୍କୋଇ ଗ୍ରାମ ନିବାସୀ ୰ ଦୟାନିଧି ପଟ୍ଟନାୟକଙ୍କର ସୁପୁତ୍ର । ରାମଚରିତ ମାନସର ଜଣେ ଅସାଧାରଣ ପ୍ରବକ୍ତା । ଏହି ପାହାଡର ପାଦ ଦେଶରେ ଦକ୍ଷିଣ ଦିଗରେ ସଂପୁର ଗଡ ଦୁଆର ବନ୍ଧ ଏବଂ ପୂର୍ବ ଦିଗରେ ପାଟବନ୍ଧ ସିଂହନାଦ ବନ୍ଧ ବ୍ଲକର ମୁଖ୍ୟ ଜଳସେଚନ ପ୍ରକଳ୍ପ ।

ନାଗାପଲ୍ଲୀ ଜଂଗଲ ମଧ୍ୟରେ ହରିପୁର ନିକଟରେ ଶୁଳିଆ ପାହାଡ ଓ ଜକଲା ଅରଖପଲ୍ଲୀ ନିକଟରେ ବାଲିପଦା ପାହାଡ ଓ ଭାଲୁଖାଇ ପାହାଡ ବିଦ୍ୟମାନ । ପୂର୍ବ ଖଣ୍ଡପଡା ଅଂଚଳକୁ ଯିବାକୁ ଏଠାରେ ଅଙ୍ଗାର ବଣି ଘାଟି ରାସ୍ତା ଅଛି । ବର୍ଷାଭାବ ବେଳେ ହରିପୁର ଗ୍ରାମର ଆଦିବାସୀ ମହିଳାମାନେ ଶୁଳିଆଦେବୀଙ୍କୁ ଏକ ସ୍ୱତନ୍ତ୍ର ପୂଜା କରିବାର ବ୍ୟବସ୍ଥା ବହୁପୂର୍ବରୁ ପରମ୍ପରା କ୍ରମେ ପ୍ରଚଳିତ । ଶୁଣାଯାଏ କେବଳ ଆଦିବାସୀ ମହିଳାମାନେ ବର୍ଷାଭାବ ସମୟରେ ଶୁଳିଆ ପାହାଡ ଶିଖର ଦେଶକୁ ଉଠି ଶୁଳିଆ ଦେବୀଙ୍କୁ ଆଦିମ ଉପଚାରରେ ପୂଜା କରିବାର ପରମ୍ପରା ବହୁ ପୂର୍ବରୁ ପ୍ରଚଳିତ । ବର୍ଷା ନ ହେବା ପର୍ଯ୍ୟନ୍ତ ଫେରନ୍ତି ନାହିଁ । ପୂଜା ଶେଷରେ ପ୍ରବଳ ବର୍ଷା ମଧ୍ୟରେ ପୁନର୍ବାର ଆଦିବାସୀ ମହିଳାମାନେ ବର୍ଷାରେ ଭିଜି ଭିଜି ଫେରିଥାଆନ୍ତି । ଏହଛଡା ୧୯୮୦ ମସିହା ପୂର୍ବରୁ ଯୋଡାପଡା ଗ୍ରାମବାସୀଙ୍କ ସହଯୋଗରେ ଏହି ପାହାଡ ପାଦଦେଶରେ ପ୍ରାଚୀନ ବୈଦ୍ୟରାଜ କ୍ଷେତ୍ର ନିକଟରେ ରାମମନ୍ଦିର ନିର୍ମାଣ କରାଯାଇଅଛି । ଏହାର ମୁଖ୍ୟ ବିନ୍ଧାଣୀ ରାମନାରାୟଣ ବାବା । ସେ ଜଣେ କର୍ମ ଯୋଗୀ । ରାମମନ୍ଦିର ପୂର୍ଣ୍ଣାଙ୍ଗ ହେଲା ପରେ ତାର ଅନତି ଦୂରରେ ଜକଲାଠାରେ ଏହି ବାବା ସ୍ଥାନୀୟ ଖଲୁରିଆ, ହରିପୁର, ଗବଡିହପଟଣା ଲୋକଙ୍କ ସହଯୋଗରେ ମହାବୀର ଆଶ୍ରମ ନିର୍ମାଣ କରିଛନ୍ତି । ଏହାର ଦ୍ରୁତ ପ୍ରଗତି ହେଉଅଛି । ଟାଙ୍ଗରା ପାହାଡ ଆଜି ବୃକ୍ଷରାଜିରେ ପରିପୂର୍ଣ୍ଣ । ଯୋଡାପଡା ବୈଦ୍ୟରାଜ ଏକ ପୁରାତନ ଧର୍ମକ୍ଷେତ୍ର । ଜନଶ୍ରୁତି କହେ ଏକଦା କୌଣସି ଗଜପତିଙ୍କର ସାନ ଭାଇ କୁଷ୍ଠ ରୋଗରେ ଆକ୍ରାନ୍ତ ହୋଇ ଏଥିରୁ ଆରୋଗ୍ୟ ଲାଭ ନିମନ୍ତେ ଭ୍ରମରମାରୀ ଔଷଧର ଅନୁସନ୍ଧାନ ପାଇଁ ବୈଦ୍ୟରାଜ କ୍ଷେତ୍ରରେ କେତେକ ଦିନ ଅବସ୍ଥାନ କରି ଉକ୍ତ ଔଷଧ ଦ୍ୱାରା ଆରୋଗ୍ୟ

ଲାଭ କରିଥିଲେ । ସେ ସମୟରେ ସେ ନିର୍ମାଣ କରିଥିବା ବାସଗୃହ ପରବର୍ତ୍ତୀ କାଳରେ ଧ୍ୱଂସ ହୋଇଯିବା ପରେ ଏବେ ତାହା ତଳୁ ଅନେକ ଘର କରଣା ଜିନିଷ ବାହାରିଥିବାର ଲୋକମାନେ କହନ୍ତି । ଜନବସତି ସ୍ଥାପନ କାଳରୁ ଏଠାରେ ବସବାସ କରୁଥିବା ପାଟରା ଜାତିର ଲୋକମାନେ ଗୁପ୍ତ ଭାଗବତ ମେଳା ପ୍ରତିବର୍ଷ ବୈଶାଖ ମାସ ଶୁକ୍ଳ ଚତୁର୍ଦ୍ଦଶୀ ତିଥିରେ କରିଥାନ୍ତି । ଏହା ଏକ ସ୍ୱତନ୍ତ୍ର ଧରଣର ଉତ୍ସବ ।

ଏହାଛଡ଼ା ଫାସିଓଦା ଗ୍ରାମ ପାର୍ଶ୍ୱ ପାହାଡ଼ରେ ଶିଖରବାସିନୀ ପୀଠ ଏକ ପୁରାତନ ଶକ୍ତିପୀଠ । ମାଣିକାଗୋଡ଼ାର ପଶ୍ଚିମ ଏବଂ ଖଣ୍ଡପଡ଼ା ସରହଦରେ ଥିବା ପାହାଡ଼ କିଛି ବର୍ଷ ପୂର୍ବେ ଟାଙ୍ଗରା ହୋଇଯାଇଥିଲା । ଅଂଚଳବାସୀଙ୍କ ଉଦ୍ୟମରେ ବର୍ତ୍ତମାନ ତାହା ସବୁଜିମାରେ ପରିପୂର୍ଣ୍ଣ । ଏଠାରେ ଏକ ସ୍ୱତନ୍ତ୍ର ଥଳି ଅଛି, ଯେଉଁଠାରେ ମାଣିକାଗୋଡ଼ା ଗ୍ରାମର ମୁସଲମାନ ମାନେ ବର୍ଷାଭାବ ବେଳେ ଯାଇ ବର୍ଷା ପାଇଁ ପ୍ରାର୍ଥନା କରିବା ପରେ ବର୍ଷା ହୋଇଥିବାର ପ୍ରବାଦ ଅଛି । ଏହା ତଳେ ଭାଲୁମୁଣ୍ଡିଆ ଏବଂ ଆମ୍ବଖୋଲ ବନ୍ଧ ପ୍ରଭୃତି କ୍ଷୁଦ୍ର ଜଳଯୋଜନା ଅଛି । ମରହଟା ଶାସନ ବେଳେ ପଶ୍ଚିମ ଦିଗରୁ ବର୍ଗୀ ଆକ୍ରମଣକୁ ପ୍ରତିହିତ କରିବା ପାଇଁ ଏହି ପାହାଡ଼ମାଳାର ବାତରା ପାହାଡ଼ ଉପରେ ମାଣିକାଗୋଡ଼ା ଦଳବେହେରାଙ୍କ ଦ୍ୱାରା ଏକ ଘାଟି ନିର୍ମାଣ କରାଯାଇଥିଲା । ଏହି ଘାଟିରେ ପାଇକମାନେ ରାତିରେ ଉଜାଗର ରହି ବର୍ଗୀ ଆକ୍ରମଣ ପୂର୍ବରୁ ନିଆଁ ହୁଳା ଜାଳିବା ସହ ବିରାଟ ଦମାଲୁ ବାଜା ବଜାଇ ମାଣିକାଗୋଡ଼ାର ଦଳବେହେରା ଏବଂ ପାଇକମାନଙ୍କୁ ସତର୍କ କରାଉଥିଲେ । ଏ ଖବର ପାଇଲା ପରେ ମାଣିକାଗୋଡ଼ା ଦଳବେହେରା ନିଜର ଅଶ୍ୱାରୋହୀ ସୈନ୍ୟଙ୍କ ସାହାଯ୍ୟରେ ତୁରନ୍ତ ପାଞ୍ଚଗଡ଼ର ସମସ୍ତ ମୁଖ୍ୟ ମାନଙ୍କୁ ଖବର ଦେଇ ବର୍ଗୀ ଆକ୍ରମଣରୁ ପାଞ୍ଚଗଡ଼କୁ ରକ୍ଷା କରିବାରେ ସହାୟକ ହେଉଥିଲେ ।

ମାଣିବନ୍ଧ ଅଂଚଳରେ ଆରିକମା କୋଶଳାଶୁଣୀ ଜଙ୍ଗଲ ମାଣିବନ୍ଧ ଅଟକ ଜଙ୍ଗଲର ପରିସରଭୁକ୍ତ । ଏହି ଜଙ୍ଗଲରେ ଅତୀତରେ ସ୍ଥାନୀୟ ପାଇକ ସୈନ୍ୟମାନେ ଲୁଚିରହି ଗରିଲା ଯୁଦ୍ଧ କରୁଥିବାରୁ ବହୁବାର ରଣପୁର ରାଜା ଶତ ଚେଷ୍ଟା କରି ମାଣିବନ୍ଧ ଗଡ଼କୁ ଦଖଲ କରି ପାରିନଥିଲେ । ଏଠାରେ ଏକ ବିରାଟ ଶାଳ ଜଙ୍ଗଲ ଥିଲା । ବର୍ତ୍ତମାନ ଏ ସମସ୍ତ ଜଙ୍ଗଲ ଲୁପ୍ତପ୍ରାୟ ଅଟେ । ଏହି ମାଣିବନ୍ଧ ଅଟକ ଜଙ୍ଗଲ ଅଧୀନସ୍ଥ ଆରିକମା କୋଶଳାଶୁଣୀ ଜଙ୍ଗଲ ପାର୍ଶ୍ୱରେ ଆରିକମା ଗ୍ରାମବାସୀ ଘରୋଇ ଭାବରେ ଶାଳ ଜଙ୍ଗଲ ଏବଂ କାଜୁ ବଗିଚା ସୃଷ୍ଟି କରି ଏହାଦ୍ୱାରା ଉପକୃତ ହେଉଛନ୍ତି । ଏଠାରେ ପ୍ରତିଷ୍ଠିତ କୋଶଳାଶୁଣୀ ଶକ୍ତି ପୀଠ ଏକ ପ୍ରସିଦ୍ଧ ସ୍ଥାନ । ବୋଲଗଡ଼ ଅଞ୍ଚଳର ଶକ୍ତିପୀଠ ଆଲୋଚନା ପ୍ରସଙ୍ଗରେ ଏହାର ବିଶଦ ବିବରଣୀ ଦିଆଯିବ ।

ଜଳ ବିଭାଜିକା

ବୋଲଗଡ଼ର ଭୌଗୋଳିକ ପରିସ୍ଥିତି ଅନୁଧ୍ୟାନ କଲେ ବୋଲଗଡ ଗ୍ରାମ ପୂର୍ବଦିଗରେ ଅବସ୍ଥିତ ଆମ୍ବ ତୋଟାର ମଧ୍ୟଭାଗ ବର୍ତ୍ତମାନ ବସଷ୍ଟାଣ୍ଡ ଠାରେ ଏହାର ମୁଖ୍ୟ ଜଳ ବିଭାଜୀକା । ଏଠାରୁ ବର୍ଷାଜଳ ପୂର୍ବଦିଗକୁ ବହିଯାଇ ଶିଆଳିଆ ବନ୍ଧ ଦେଇ ବୁଡା ଗ୍ରାମ ମଧ୍ୟରେ ପ୍ରବେଶ କରି ହଡା ନଦୀରେ ମିଶେ । ଏହି ଆମ୍ବ ତୋଟାର ପଶ୍ଚିମ ଦିଗକୁ ଜଳ ବହିଯାଇ ବୋଲଗଡ ଗ୍ରାମ ଦେଇ ଲୁଣିଆ ନାଳରେ ମିଶି ପଶ୍ଚିମକୁ ବହିଯାଇ କୁସୁମୀ ନଦୀରେ ମିଶିଥାଏ । ଅନ୍ୟ ଏକ ଜଳ ବିଭାଜିକା ଟିକାତାଳ ଠାରେ ଅଛି । ପୂର୍ବ ବୋଲଗଡ ଅଂଚଳର ବର୍ଷା ଜଳ ସେଠାରେ ୨ ଭାଗରେ ବିଭକ୍ତ ହୋଇଥାଏ । ଟିକାତାଳ ଦକ୍ଷିଣ ଦିଗର ବର୍ଷାଜଳ ଦେଉଳୀ ବାରବାଟୀ ଦେଇ ମଲାଗୁଣୀ ନଦୀରେ ମିଶିଲା ବେଳେ ଉତ୍ତର ଦିଗର ବର୍ଷାଜଳ ପୂବଦିଗକୁ ବେଗୁନିଆ ବ୍ଲକର ସୁଆଁଳ ଧାନଘର ନୂଆଗାଁ ଦେଇ ଯାଇଥିବା ନାଳରେ ପଡିଥାଏ । ଏହି ନାଳ ପୂର୍ବ ଦିଗକୁ ବହି ଯାଇ ବାଘମାରି ଉତ୍ତର ପାର୍ଶ୍ୱରେ ରଣନଈରେ ମିଶି ମହାନଦୀକୁ ଯାଇଥାଏ । ଏହାର ପଶ୍ଚିମ ଦିଗର ପାଣି ସାନପଦର ନାଳରେ ପଡି ହଡାନଦୀରେ ମିଶିଥାଏ । ବୋଲଗଡ-ବେଗୁନିଆ ଅଂଚଳ ଚିର ମରୁଡିଗ୍ରସ୍ତ ଅଂଚଳ ହୋଇଥିବାରୁ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏଠାରୁ ବିଧାୟକ ହୋଇ ୧୯୯୫-୧୯୯୯ ପର୍ଯ୍ୟନ୍ତ ରାଜ୍ୟ ମୁଖ୍ୟମନ୍ତ୍ରୀ ଥିଲାବେଳେ ଟିକାତାଳ ଗ୍ରାମର ଉଚ୍ଚ ଡିପ ସ୍ଥାନରେ ମହାନଦୀରୁ ଜଳ ଆଣି ସ୍ଥାୟୀ ଭାବରେ ସମଗ୍ର ବୋଲଗଡ ବେଗୁନିଆକୁ ପାଣି ଯୋଗାଇବାକୁ ଏକ ଯୋଜନା ଘରୋଇ ସ୍ତରରେ ଏକ ସ୍ୱେଚ୍ଛାସେବୀ ସଂଗଠନ ଦ୍ୱାରା ପ୍ରାଥମିକ କାର୍ଯ୍ୟ ଆରମ୍ଭ କରିଥିଲେ । ତାହା ରାଜନୈତିକ ଇଚ୍ଛା ଶକ୍ତି ଅଭାବରୁ ଧୀମେଇ ଯାଇଅଛି ।



## ପାଞ୍ଚଗଡ ଆଲୋଚନା

ବର୍ତ୍ତମାନ ବୋଲଗଡ ପୋଲିସ ଥାନା ପରିସର ଅଞ୍ଚଳ ପୂର୍ବେ ପାଞ୍ଚଗଡ ନାମରେ ବିଖ୍ୟାତ । ମାଣିକାଗୋଡା ଠାରୁ ମାଣିବନ୍ଧ ଅଞ୍ଚଳକୁ ପାଞ୍ଚଗଡ କୁହାଯାଏ । ପାଞ୍ଚଗଡ ମଧ୍ୟରୁ ପୂର୍ବ ଗଡ ମାଣିବନ୍ଧ ବର୍ତ୍ତମାନ ବେଗୁନିଆ ଥାନା ଏବଂ ବୋଲଗଡ ପଞ୍ଚାୟତ ସମିତି ଅଞ୍ଚଳର ପରିସରଭୁକ୍ତ । ଏହି ପାଞ୍ଚଗଡ କେତେକଙ୍କ ମତରେ ୧- ମାଣିକାଗୋଡା, ୨- ବୋଲଗଡ, ୩- ବାଙ୍କୋଇ, ୪- ମାଣିବନ୍ଧ, ୫- ମଣ୍ଡଳସିଂହ (କଳାମାଟିଆ) । ଷ୍ଟାର୍ଲିଙ୍ଗଙ୍କ ଲିଖିତ Starling's Orissa ରେ ଭୋଇବଂଶର ପ୍ରତିଷ୍ଠାତା ଗଜପତି ପ୍ରଥମ ରାମଚନ୍ଦ୍ର ଦେବଙ୍କର ଖୋର୍ଦ୍ଧା ରାଜ୍ୟରେ ଥିବା ୭୧ ଗଡ

ମଧ୍ୟରେ ବୋଲଗଡ ଅଞ୍ଚଳର ଉପରୋକ୍ତ ପାଞ୍ଚଟି ଗଡର ନାମ ଅଛି । ଏହାଛଡା କେତେକ ଐତିହାସିକ ତଥା ଗବେଷକଙ୍କ ମତରେ ହଳଦୀପଦା ଗ୍ରାମରେ ଥିବା ରାମଚଣ୍ଡୀ ଠାକୁରାଣୀଙ୍କ ସମ୍ମୁଖରେ ଦୁଇଟି ବିରାଟ ମାଟିକୁଦ ରହିଅଛି । ସେଠାରେ ଏକ ପ୍ରାଚୀନ କୂଅ ମଧ୍ୟ ଅଛି । ଏହି ମାଟିକୁଦ ଲୋକମୁଖରେ ଜଗତି ନାମରେ ପରିଚିତ । ଏଠାରେ ଏକ ଗଡ ଡାହଳ ଗଡ ନାମରେ ଥିବାର ଜଣାଯାଏ । ଏହାଛଡା 'ଖୁରୁଧା ଇତିହାସ'ର ଲେଖକ ୰ ଦିଗମ୍ବର ଶ୍ରୀଚନ୍ଦନଙ୍କ ତଥ୍ୟ ଅନୁସାରେ ସଂପୁର ଏବଂ ଗୋଡିଆଳି ଦୁଇଟି ଗଡକୁ ମିଶାଇ ସାତଗଡ ମୁଣ୍ଡିଆପଡା ଘାଟିକୁ ଘେରି ରହିଥିଲା । ସ୍ଥାନୀୟ ଗବେଷକ ଅଧ୍ୟାପକ ରବୀନ୍ଦ୍ରନାଥ ପଣ୍ଡା ପାଞ୍ଚଗଡ ଉପରେ ଗବେଷଣା ଜାରି ରଖିଛନ୍ତି । ତାଙ୍କ ଦ୍ୱାରା ସଂଗୃହୀତ ଇଂରେଜୀ ରାଜତ୍ୱ ସମୟର ଏକ ନକ୍ସା ମିଳିଅଛି । ଯେଉଁଥିରେ ବୋଲଗଡ ଅଞ୍ଚଳର ନାମ ପାଞ୍ଚଗଡ ନାମରେ ନାମିତ ହୋଇଅଛି ।

ମାତ୍ର ମୋଗଲ ଶାସନ କାଳର ତତ୍କାଳୀନ ଫାର୍ସୀ ଭାଷାରେ ଲିଖିତ ନଥିପତ୍ରରୁ ତତ୍କାଳୀନ ଇଂରେଜ ସରକାରଙ୍କ କମିଶନରଙ୍କ ସେକ୍ରେଟାରୀ ଷ୍ଟାର୍ଲିଙ୍ଗ ସାହେବ ତାଙ୍କର ଐତିହାସିକ ଗ୍ରନ୍ଥ Starling's Orissa ରେ ଖୋରଧା ଭୋଇ ବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କର ଯେଉଁ ଖୋର୍ଦ୍ଧା ରାଜ୍ୟର ବିବରଣୀ ଉପସ୍ଥାପନା କରିଛନ୍ତି, ସେଥିରେ ୭୧ଟି ଗଡର ନାମ ଅଛି । ତାର ପୂର୍ଣ୍ଣ ବିବରଣୀ ପ୍ରଖ୍ୟାତ ଐତିହାସିକ ୰ କେଦାରନାଥ ମହାପାତ୍ର 'ଖୁରୁଧା ଇତିହାସ' ରେ ବର୍ଣ୍ଣନା କରିଛନ୍ତି ଏବଂ ଭୋଇବଂଶର ପ୍ରତିଷ୍ଠା କାଳରୁ ସମସ୍ତ ଗଜପତିଙ୍କର ବଂଶାବଳୀ ଉଦ୍ଧାର କରିଛନ୍ତି । ଏହି ସବୁ ଗଡ ତାଲିକାରେ ବାଙ୍କୋଇ ବଦଳରେ ମଙ୍ଗୋଇ ନାମ ରହିଅଛି । ଏବଂ କଳାମାଟିଆ ଏବଂ କଳାପଥର ଗଡର ନାମ ମଧ୍ୟ ଅଛି । ସେହି ତାଲିକାରେ ଗୋଡିଆଳି, ସଂପୁର, ହଳଦୀପଦାର ନାମ ନାହିଁ । ଏଥିରେ ଲିଖିତ କଳାମାଟିଆ ଗଡର ରାଜସ୍ୱ ଗ୍ରାମ ନାମ ମଣ୍ଡଳସିଂହ । ଏହା ବୋଲଗଡର ପଶ୍ଚିମ ଦକ୍ଷିଣ କୋଣରେ ନୟାଗଡ ସୀମାରେ ଅବସ୍ଥିତ । ପାଠକଙ୍କ ଅବଗତି ନିମନ୍ତେ ପାଞ୍ଚଗଡର ସ୍ଥିତି ଆକଳନ ପାଇଁ 'ଖୁରୁଧା ଇତିହାସ'ରେ ବର୍ଣ୍ଣିତ ରାମଚନ୍ଦ୍ର ଦେବଙ୍କର ଖୋରଧା ରାଜ୍ୟ ବିବରଣୀ ପ୍ରଦତ୍ତ କରାଗଲା ।

*ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠାର ପୂର୍ବସ୍ଥିତି*

ଓଡିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦ ଦେବ (ହରିଚନ୍ଦନ) ନିଜର ବିଶ୍ୱସ୍ତ ରାଜକର୍ମଚାରୀ ଶିଖି ମନେଇ ଏବଂ ସାରଙ୍ଗଗଡର ରାଜାଙ୍କ ବିଶ୍ୱାସଘାତକତାର ଶୀକାର ହୋଇ ଗୋହିରୀ ଟିକିରୀ ଯୁଦ୍ଧରେ ନିହତ ହୋଇଥିଲେ । ଓଡିଶାର ଏହି

ରାଜନୈତିକ ଘଡିସଂଧି ବେଳେ ଦକ୍ଷିଣାଞ୍ଚଳର ଶାସନ ଦାୟିତ୍ୱରେ ଥିବା ଦନେଇ ବିଦ୍ୟାଧରଙ୍କ ବଂଶ ମହେନ୍ଦ୍ର ପର୍ବତ ସନ୍ନିକଟ ଟୋଟମା ଗଡରେ ଆଶ୍ରୟ ନେଇଥିଲେ ।

ଏହି ସଂକଟ ଜନକ ପରିସ୍ଥିତିରେ ଖୋର୍ଦ୍ଧାର ୩ ଜଣ ପାଇକବୀର ମଳିପଡା ଗଡର ସରଣୀ ପାତ୍ର, କୋକଳ ଗଡର ବାଘୁ ପାତ୍ର ଏବଂ ଗଡ ଘୋରଡିଆର ଝାଡୁ ପରିଡା ମନ୍ତ୍ରଣା କରି ଟୋଟମା ଗଡରୁ ଦନେଇ ବିଦ୍ୟାଧରଙ୍କ ପୁତ୍ର ରାମଚନ୍ଦ୍ର ରାଉତ ରାୟଙ୍କୁ ଆଣି କଟକ ବାରବାଟୀ ଦୁର୍ଗ ଏବଂ ଜଗନ୍ନାଥ ପୁରୀର କେନ୍ଦ୍ରସ୍ଥଳ ଖୋରଧା ବରୁଣେଇ ପାହାଡ ତଳେ ଖୋରଧା ଗଡ ନିର୍ମାଣ କରି ଗଜପତି ଭାବରେ ଅଭିଷିକ୍ତ କରିଥିଲେ । ଏହି ନୂତନ ଗଡକୁ ଅଭିନବ କଟକ ଆଖ୍ୟା ଦିଆଯାଇ ଓଡିଶାର ରାଜଧାନୀ ରୂପେ ପରିଗଣିତ କରାଗଲା । ରାମଚନ୍ଦ୍ର ଦେବ ହେଲେ ଓଡିଶାର ପ୍ରତିଷ୍ଠିତ ଭୋଇ ବଂଶର ପ୍ରଥମ ଗଜପତି ।

ଏଠାରୁ ଖୋରଧା ରାଜ୍ୟର ସୃଷ୍ଟି ହେଲା । ଏହାର ବିସ୍ତୃତ ବିବରଣୀ ମାଦଳା ପାଞ୍ଜୀ ଚକଡା ପୋଥିରେ ବର୍ଣ୍ଣିତ ହୋଇଅଛି ।

## ଷ୍ଟାର୍ଲିଙ୍ଗଙ୍କ ବର୍ଣ୍ଣିତ ଖୋରଧା ରାଜ୍ୟ

### ଗଜପତି ରାମଚନ୍ଦ୍ରଦେବଙ୍କ ରାଜ୍ୟ (ଖୁରୁଧା ଇତିହାସ)

ଓଡିଶାର ପତନ ପରେ ଏହାର ଉପକୂଳ ଅଞ୍ଚଳ ୩ଟି ଶାସନର ଅଧିନରେ ରହିଲା । ଗୋଦାବରୀ ଠାରୁ ଇଛାପୁର ପର୍ଯ୍ୟନ୍ତ ଗୋଲକୁଣ୍ଡା ସୁଲତାନ ପୁରୀ ଜିଲ୍ଲା କୋଠ ଦେଶ ଅଂଚଳ ସମେତ କାଠଯୋଡୀ ଠାରୁ ହୁଗୁଳୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଭୂଖଣ୍ଡ ପ୍ରଥମେ ଆଫଗାନ ଏବଂ ପରେ ମୋଗଲ ମାନଙ୍କ ଶାସନାଧୀନ ରହିଲା । ଅବଶିଷ୍ଟ ଉପକୂଳ ଅଂଚଳ ଖୋରଧା ରାଜାଙ୍କ ଅଧିକାର ହେଲା । ରାଜା ମାନସିଂ ୯୯୦ ଅମଲି ୧୫୯୩ ଖ୍ରୀଷ୍ଟାବ୍ଦରେ ବନ୍ଦୋବସ୍ତ ଦ୍ୱାରା ମୋଗଲ ବାଦଶାହଙ୍କ ସେଷ ଦେବା ସର୍ତ୍ତରେ ଉପଭୋଗ କରୁଥିବା ଜମିଦାରୀ ମାନଙ୍କର ଯେଉଁ ସୀମା ନିର୍ଦ୍ଧାରଣ କରାଯାଇଥିଲା ତାର ଏକ ବିଶଦ ଏବଂ ବିଶ୍ୱାସଯୋଗ୍ୟ ବିବରଣୀ ଓଡିଶା କମିଶନରଙ୍କ ସେକ୍ରେଟାରୀ ଷ୍ଟାର୍ଲିଙ୍ଗ ସାହେବ ୧୮୨୨ ମସିହାରେ କଟକରେ ଥିବା ଫାର୍ସୀ କାଗଜପତ୍ରରୁ ଉଦ୍ଧାରକରି ସ୍ୱଗ୍ରନ୍ଥରେ ଲିପିବଦ୍ଧ କରିଛନ୍ତି । ସେଥି ମଧ୍ୟରୁ ଖୋରଧା ରାଜ୍ୟର ବିବରଣୀ ନିମ୍ନରେ କରାଗଲା ।

ଖୁରୁଧା ରାଜା ୩୫୦୦ ସୈନ୍ୟର ମନ ସୁବେଦାର ଥିଲେ । ଅର୍ଥାତ ୩୫୦୦ ସୈନ୍ୟ ରଖିବା ପାଇଁ ରାଜାଙ୍କର ଅଧିକାର ଥିଲା । ତାଙ୍କର ପ୍ରତ୍ୟକ୍ଷ ଶାସନରେ ଖୋରଧା ରାଜ୍ୟର ୭୧ଟି ଗଡ ବା କିଲ୍ଲା ଥିଲା । ଏହା ବ୍ୟତୀତ ଖୋରଧା ରାଜାଙ୍କ ଅଧିନସ୍ଥ ୩୧ଟି ଜମିଦାରୀରେ ୧୨୯ଟି କିଲ୍ଲା ବା ଗଡ ଥିଲା ।

ଖୋରଧା ରାଜ ମଧ୍ୟରେ ୭୧ଟି ଗଡ ବା କିଲ୍ଲାର ନାମ ହେଉଛି -

୧. ଖୁର୍ଦ୍ଧା  ୨. ରଥିପୁର  ୩. ବରଗଡ  ୪. ଶିଶୁପାଳଗଡ
୫. ଝାରପଡା  ୬. କପିଳପ୍ରସାଦ  ୭. ପାତ୍ରପଡା  ୮. ନେଳାପୁର
୯. ଜାମୁକୋଳି  ୧୦. ଚାପଙ୍ଗ  ୧୧. ଛତ୍ରମା  ୧୨. ଲଳସିଂହ
୧୩. ଗଙ୍ଗପଡା  ୧୪. ମଳିପଡା  ୧୫. ଦୁମୁଦୁମା  ୧୬. ପଲ୍ଲୀ
୧୭. ରାମେଶ୍ୱର  ୧୮. ମାଣିବନ୍ଧ  ୧୯. ମାଣିକାଗୋଡା
୨୦. ମାଙ୍ଗୋଇ (ବାଙ୍କୋଇ)  ୨୧. କୋରମଟି
୨୨. କଳାମାଟିଆ (ମଣ୍ଡଳସିଂହ)  ୨୩. କନ୍ଦଳଗଡ
୨୪. ମଙ୍ଗଳାଯୋଡି  ୨୫. ଜରିପଡା  ୨୬. ରୋଡଙ୍ଗ
୨୭. କରମ  ୨୮. ମଳିପଡା  ୨୯. ନରସିଂହ ପ୍ରସାଦ
୩୦. ନରନଗଡ  ୩୧. କେରଙ୍ଗ  ୩୨. ମୃତ୍ୟୁଞ୍ଜୟ ଗଡ  ୩୩. କାଇମାଟିଆ
୩୪. ଉପ୍ପୁନା  ୩୫. ବାଇଣ୍ଡା  ୩୬. ବଳଭଦ୍ରପ୍ରସାଦ  ୩୭. ନଉଲୀ
୩୮. ବିନ୍ଧ୍ୟଗିରି (ସାନପଦର)  ୩୯. ତରକାଇ  ୪୦. ସେରଣଗଡ
୪୧. କାଉମାଟିଆ  ୪୨. ବଙ୍ଗୋର  ୪୩. ଭିଙ୍ଗୋର  ୪୪. କୋକଲ
୪୫. କରକ  ୪୬-୫୩. ଲେମ୍ବାଇରେ ଆଠଟି କିଲ୍ଲା  ୫୪. ଅନ୍ଧାରୁଆ
୫୫. କଳାପଥର  ୫୬-୬୮. ତେରଟି ଶୈରୀ ଖଣ୍ଡାୟତ ଗଡ  ୬୯. ନଖିକୋଟ
୭୦. କାଇପଦର  ୭୧. ବୋଲଗଡ  ୭୨. ଗଙ୍ଗପଡା  ୭୩. ମୁଳଝରା

Straling's Orissa Page 44-45

(ଏହି ଗଡ ତାଲିକାରେ ମଳିପଡା, କାଇମାଟିଆ ଏବଂ ଗଙ୍ଗପଡାର ନାମ ଦୁଇ ଥର ରହିଅଛି)

ବୋଲଗଡ ଅଂଚଳରେ ଉକ୍ତ ଗଡମାନଙ୍କ ମଧ୍ୟରେ ବୋଲଗଡ, ମାଣିବନ୍ଧ, ମାଣିକାଗୋଡା ଏବଂ କଳାମାଟିଆ ଗଡର ନାମ ନିର୍ଦ୍ଦିଷ୍ଟ ଭାବରେ ଉଲ୍ଲେଖ ଅଛି । ମଙ୍ଗୋଇ ନାମରେ ଗଡକୁ ବାଙ୍କୋଇ ବୁଝାଏ । ବର୍ତ୍ତମାନ କଳାମାଟିଆ (ମଣ୍ଡଳସିଂହ) ଗଡ ବୋଲଗଡ ଥାନାର ଦକ୍ଷିଣ ପଶ୍ଚିମ କୋଣରେ ପୂର୍ବତନ ନୟାଗଡ ରାଜ୍ୟକୁ ଲାଗି ରହିଅଛି । ଏହଛଡା କଡବ ଗଡ, ଟିକାତାଳ ଗଡ ପୂର୍ବେ ବେଗୁନିଆ ଅଞ୍ଚଳର କୁଶପଲ୍ଲୀ କିଲା ପରିସରଭୁକ୍ତ ଥିଲେ ମଧ୍ୟ ବର୍ତ୍ତମାନ ଏହି ୨ଟି ଗଡ ବୋଲଗଡ ପଞ୍ଚାୟତ ସମିତି ଅଞ୍ଚଳରେ ରହିଅଛି । ବିନ୍ଧ୍ୟଗିରି ଗଡ ପରବର୍ତ୍ତୀ କାଳରେ ସାନପଦରକୁ ସ୍ଥାନାନ୍ତରିତ ହେଲା । ପରେ ସାନପଦର ଗଡର ମାନ୍ୟତା ପାଇଥିଲା । ମୂଳତଃ ସାନପଦର ସେତେବେଳେ ଖୋର୍ଦ୍ଧାର ତତ୍‌କାଳୀନ ମୁଖ୍ୟ ଗଡ ରାମେଶ୍ୱର କିଲ୍ଲା ଅଧିନରେ ଥିଲା । ଏଥିରେ କଳାପଥର ଗଡର ନାମ ରହିଅଛି । ଏହି କଳାପଥର ଗଡ ବର୍ତ୍ତମାନ

ବୋଲଗଡ ବ୍ଲକ ସୀମା ଧଳାପଥର ଗ୍ରାମର ସମୀପବର୍ତ୍ତୀ ଗ୍ରାମ ଅଟେ । ଏହା ପୂର୍ବତନ ବାଙ୍କୀ ରାଜ୍ୟରେ ରହିଅଛି । ଏହାଛଡା ତାଙ୍କର ୩୧ଟି ଜମିଦାରୀ ମଧ୍ୟରେ ୧୨୯ ଟି ଗଡ ବା କିଲ୍ଲା ଥିବାର ଏହି ରିପୋର୍ଟରେ ସୂଚୀତ ହୋଇଅଛି ।

ବୋଇଗଡ -

ଏହା ବର୍ତ୍ତମାନ ପାଞ୍ଚଗଡର ସଦର ମହକୁମା । ଗଡଭିତର ଉତ୍ତର ପାର୍ଶ୍ୱରେ ବୈରିଗଂଜନ, ପାଟଶାଣୀ, ବଲବନ୍ତରାୟ ପଦବୀ ଧାରୀ ଖଣ୍ଡାୟତ ପାଇକ ଦକ୍ଷିଣ ପାର୍ଶ୍ୱରେ ବାହୁବଳେନ୍ଦ୍ର, ରଣସିଂହ, ଚମ୍ପତି, ପାଲଟାସିଂହ ଏବଂ ପଣ୍ଡିମକବାଟ ବଂଶ ଅବସ୍ଥାନ କରନ୍ତି । ଗଡର କେନ୍ଦ୍ରରେ ଗଡ ଠାକୁରାଣୀ ରାମଚଣ୍ଡୀ ବିରାଜମାନ କରିଛନ୍ତି । ଏହି ଠାକୁରାଣୀଙ୍କ ପ୍ରତିଷ୍ଠା ସମ୍ପର୍କରେ ଇତିହାସ ନୀରବ ଥିଲେ ମଧ୍ୟ ବୋଇଗଡ ପ୍ରତିଷ୍ଠା ବେଳେ ରାମଚନ୍ଦ୍ର ଦେବ ପ୍ରତିଷ୍ଠା କରିଥିବାର ଅନୁମିତ ହୁଏ । ଆକବରଙ୍କ ସମୟରେ ମାନସିଂହ ଓଡିଶା ଆସିଥିଲେ । ତାଙ୍କ ସହ ଆସିଥିବା ରାଜପୁତ ସର୍ଦ୍ଦାର ହଜାରୀ ସିଂହ ଏବଂ ତାଙ୍କ ଅନୁଗତ ମାନେ ଗଡଭିତରେ ରାମଚଣ୍ଡୀ ଠାକୁରାଣୀଙ୍କ ନିକଟରେ ବାସ କରୁଥିଲେ । ତାଙ୍କ ପରେ ତାଙ୍କର ବଂଶଧର ମାନଙ୍କ ମଧ୍ୟରୁ କେତେକ ସେମାନଙ୍କର ସହଯୋଗୀଙ୍କ ସହ ନିକଟସ୍ଥ ପଙ୍କାଳସାହି ଗ୍ରାମରେ ବାସ କରିଥିଲେ । ଅଦ୍ୟାବଧି ପଙ୍କାଳସାହିରେ ହଜାରୀ ସିଂହଙ୍କ ବଂଶଧରମାନେ ବାସ କରନ୍ତି । ସ୍ୱର୍ଗତ ଭୁବନେଶ୍ୱର ସିଂହ ଏବଂ ହରିହର ସିଂହ ତାଙ୍କର ଦାୟାଦ ଅଟନ୍ତି । ଗଡ ଦ୍ୱାର ନିକଟରେ ମାର୍ଥା, ଡିଆଁବାଘ, ଶତ୍ରୁଶଲ୍ୟ ପ୍ରଭୃତି ପାଇକଙ୍କ ସହ କେତେକ ବିଶ୍ୱକର୍ମା ପରିବାର ବାସ କରନ୍ତି । ଏହାଛଡା କେତେକ କରଣ ପରିବାର ମଧ୍ୟ ଏଠାରେ ବାସ କରୁଛନ୍ତି । ଗଡକୁ ଛାଡିଦେଲେ ବୋଲଗଡ ଗ୍ରାମରେ ସମସ୍ତ ଜାତିର ଲୋକ ମାନେ ବସବାସ କରନ୍ତି । ବୋଇଗଡ, ତୃତୀୟାପଡା ଏବଂ ଝାନସୀପଟଣା ମୌଜାକୁ ନେଇ ବୋଇଗଡ ଗ୍ରାମ । ବୋଲଗଡ ବାରପଲ୍ଲୀ ଅଂଚଳ ବୋଇଗଡ, ଖଣ୍ଡୁରିଆ, ଡାବରଧୂଆ ପାଟଣା ଗ୍ରା.ପ. ସମେତ ସଂପୂର ଗ୍ରାମ ସଲଗ୍ନ ହରିରାଜପୁର ବାରପଲ୍ଲୀ (ଦଶବିଶ୍ୱା) ଏହି ଗଡର ପରିସର ଭୁକ୍ତ ଥିଲା । ଏହି ଗଡର ଦକ୍ଷିଣପୂର୍ବ କୋଣରେ ଐତିହାସିକ ଅନ୍ଧାରୁଆ ବର ଏବଂ ଆଖଡା ବର ଅବସ୍ଥିତ ଯେଉଁଠାରେ ବର୍ତ୍ତମାନ ରାମଚଣ୍ଡୀଙ୍କର ରଜଯାତ୍ରା ଅନୁଷ୍ଠିତ ହେଉଛି । ପୂର୍ବକାଳରୁ ଅଦ୍ୟାବଧି ପାଇକ ଆଖଡା ପ୍ରଶିକ୍ଷଣ ଏହି ଆଖଡା ବର ଠାରେ ଦିଆଯିବା ସଙ୍ଗେ ସଙ୍ଗେ କିଛି ବର୍ଷହେଲା ଗଡର ଯୁବକ ମାନଙ୍କ ଉଦ୍ୟମରେ ପ୍ରତ୍ୟେକ ବର୍ଷ ଗହ୍ମାପୂର୍ଣ୍ଣିମା ଦିନ ଗହ୍ମାଡିଆ ପ୍ରତିଯୋଗିତା ହେଉଅଛି । ବୋଇଗଡରେ ଭୋଇବଂଶର ଦ୍ୱିତୀୟ ଗଜପତି ରାମଚନ୍ଦ୍ର ଦେବଙ୍କ ଅବସ୍ଥାନ, ଏଠାରେ ସଙ୍ଗଠିତ ଯୁଦ୍ଧରେ ଗଜପତିଙ୍କ ଦ୍ୱାରା ତକି ଖାଁର ପରାଜୟ, ସେହି

ଯୁଦ୍ଧ ଭୂଇଁ ଗ୍ରାମର ପୁରାତନ ଦଶହରା ପଡିଆ ଏବଂ ବର୍ତ୍ତମାନର ଦଶଦୋଳ (ପନ୍ଦରଦୋଳ) ପଡିଆ ସହ ଅସୁରଢିପ ଏହାର ମୂକସାକ୍ଷୀ । ଏହାପରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଙ୍କ ପୁତ୍ର ବୀରକେଶରୀ ଦେବଙ୍କ ବୋଲଗଡ ଆଗମନ ଏବଂ ମଠକୁ ୯ ବାଟି ଜମି ଦାନ ପ୍ରଭୃତି ଐତିହାସିକ ଘଟଣାବଳୀ ସହ ପାଇକ ବିଦ୍ରୋହ ସମୟରେ ବୋଲଗଡ ଆମ୍ବ ତୋଟା ପାଇକ ମେଳିରେ ଅତ୍ୟାଚାରୀ ଦେୱାନ ସଦାଶିବଙ୍କୁ ହତ୍ୟା ଏବଂ ପାଇକ ମେଳିର ନେତା ପର୍ଶୁରାମ ରାଉତରାୟ ଓରଫ କାଳିଆ ମଙ୍ଗରାଜ ଭୂଇଁମୂଳଙ୍କୁ (ବାଙ୍କୋଇ ଗଡ) ଏଥିପାଇଁ ଫାଶୀ ଦଣ୍ଡାଦେଶ ସହ ସ୍ୱାଧୀନତା ଆନ୍ଦୋଳନ ସମୟରେ ଏଠାରେ ଅନୁଷ୍ଠିତ ଦ୍ୱିତୀୟ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ସହ ଖଦୀ ଆନ୍ଦୋଳନ ପାଇଁ ମହତ୍ମା ଗାନ୍ଧୀଙ୍କର ଏଠାରେ ୩ ଦିନ ଅବସ୍ଥାନ ପ୍ରଭୃତି ରାଜନୈତିକ ଘଟଣା ବଳୀ ଯୋଗୁଁ ବୋଲଗଡର ମାନ୍ୟତା ଯଥେଷ୍ଟ ବୃଦ୍ଧି ପାଇଅଛି ।

ବୋଲଗଡ ସମ୍ପର୍କରେ ଉତ୍କଳ ପ୍ରସଙ୍ଗରେ ଦିଆଯାଇଥିବା ତଥ୍ୟ ଏଠାରେ ଦିଆଗଲା ।

*ଉତ୍କଳ ପ୍ରସଙ୍ଗ ଅଗଷ୍ଟ ୧୯୯୯*
*ବିଷୟ:-ଖୋରଧା ରାଜବଂଶର ଐତିହାସିକ ଗଡ*
*ଲେଖକ-ଡଃ ଚନ୍ଦ୍ରେଜୟ ଚୌଧୁରୀ*

ବୋଲଗଡ-

ଏହି ଗଡ ଖୋର୍ଦ୍ଧା ରାଜ୍ୟର ପଶ୍ଚିମ ପାର୍ଶ୍ୱରେ ବିଦ୍ୟମାନ । ଉତ୍ତର ଦକ୍ଷିଣର ଏକମୁଖୀ ପ୍ରବେଶଦ୍ୱାର ବିଶିଷ୍ଟ ଚକ୍ରାକାର ଦୁର୍ଗ । ଷଷ୍ଠ ଶତାବ୍ଦୀରେ ଶୈଳୋଦ୍ଭବ ରାଜବଂଶର ଅନ୍ୟତମ ରାଜା ମାଣିକ୍ୟଦେବ ବାଣପୁରରୁ ଆସି ଏଠାରେ ରାଜବଂଶ ପ୍ରତିଷ୍ଠା କରିବା ପରେ ପୁରୁଷାନୁକ୍ରମେ ତାହା କେଶରୀବଂଶ ପର୍ଯ୍ୟନ୍ତ ନିଜର ଖ୍ୟାତି ବଜାୟ ରଖିଥିଲେ । ଓଡିଶାରେ ଗଙ୍ଗବଂଶ ପ୍ରତିଷ୍ଠା ହେବାଠାରୁ ଉକ୍ତ ଅଞ୍ଚଳ ଗଙ୍ଗବଂଶର ପ୍ରତ୍ୟକ୍ଷ ଶାସନାଧୀନରେ ରହିଥିଲା । ଭୋଇବଂଶର ଶାସକ ଦ୍ୱିତୀୟ ରାମଚନ୍ଦ୍ର ଦେବ ୧୭୩୩ଖ୍ରୀ.ଅ.ରେ ଏହି ସ୍ଥାନରେ ଆତ୍ମଗୋପନ କରିଥିଲେ । ତତ୍କାଳିନ ମୋଗଲ ଶାସକ ତକିଖାଁଙ୍କୁ ଦଳବେହେରାଙ୍କ ନେତୃତ୍ୱରେ ଖଣ୍ଡାୟତ ପାଇକମାନେ ବୋଲଗଡର ପଶ୍ଚିମକୁ ଥିବା ଅସୁରଢିପାଠାରେ ପରାସ୍ତକରି ଖୋର୍ଦ୍ଧା ସିଂହାସନ ପୁନର୍ବାର ଦଖଲ କରିବାରେ ରାଜାଙ୍କୁ ସାହାଯ୍ୟ କରିଥିଲେ । ଏହି ଗଡର ଦଳବେହେରା ବଂଶର ପୂର୍ବଜ ଖୋର୍ଦ୍ଧା ନିକଟସ୍ଥ ଷଢେଇଗଡରୁ ଆସି ଗଜପତିଙ୍କଠାରୁ ୧୨୦ ବାଟି ଜମି ଜାଗିରି ପାଇ ଏଠାରେ ଅବସ୍ଥାପିତ ହୋଇଥିଲେ । ଏହାଙ୍କୁ ସାହାଯ୍ୟ କରବା ପାଇଁ ଦଳେଇ, ବାହୁବଳେନ୍ଦ୍ର, ଚମ୍ପତି, ପାଲଟାସିଂହ ଓ ରଣଜିତ୍ ଆଦି ଉପାଧିଧାରୀ ବ୍ୟକ୍ତିମାନେ ଗଜପତିଙ୍କ ଦ୍ୱାରା ନିଯୁକ୍ତି ପାଇଥିଲେ । ଏହି ଦଳବେହେରାଙ୍କ

ଦ୍ୱାରଦେଶରେ ହରିକାଠ ଥିଲା ଓ ସେ ଗଡର ନ୍ୟାୟ ନିଷ୍ପତ୍ତି କରି ଦଣ୍ଡ ବିଧାନ କରୁଥିଲେ ।

ମାଣିକାଗୋଡା -

ଖୋରଧା ଇତିହାସରେ ମାଣିକାଗୋଡା ଗଡର ମାନ୍ୟତା ପାଇଥିଲେ ମଧ ମାଣିକାଗୋଡା ନାମରେ କୌଣସି ରାଜସ୍ୱ ଗ୍ରାମ ନାହିଁ । ଦଳେଇସାହି. କୁମୁଟି ସାହି, ହାଟସାହି, ଜାହାନାବାଦ, ଚଣ୍ଡୀପାଟଣା, ଖକୁରୀପାଟଣା ଓ ରାମଚନ୍ଦ୍ର ସୁବୁଦ୍ଧି ପାଟଣାକୁ ନେଇ ମାଣିକାଗୋଡା ଗ୍ରାମ । ଏହା ଅଭିଭକ୍ତ ପୁରୀ ଜିଲ୍ଲା ତଥା ଓଡିଶାର ଏକ ସୁବୃହତ ଗ୍ରାମ । ଗଜପତି ଶାସନ ସମୟରୁ ଏହାର ମୁଖ୍ୟ ଦଳବେହେରା ମୁସଲମାନ । ଦଳବେହେରାଙ୍କ ନିବାସ ଦଳେଇ ସାହି ମୌଜାରେ । ଅଦ୍ୟାବଧି ତାଙ୍କ ନିବାସ ସମ୍ମୁଖରେ ଗଡ ପ୍ରାଚୀର ଏବଂ ଗଡଖାଇ ଅଛି । ହିନ୍ଦୁ ମୁସଲମାନଙ୍କ ମଧରେ ଭାଇଚାରା ଏବଂ ସଦଭାବ ପାଇଁ ମାଣିକାଗୋଡା ସାରା ଦେଶରେ ସୁଖ୍ୟାତି ଲାଭ କରିଅଛି । ବହୁକାଳରୁ ପ୍ରତ୍ୟେକ ବର୍ଷ ଦଶହରା ପର୍ବରେ ସମସ୍ତ ହିନ୍ଦୁ ଦେବ ଦେବୀଙ୍କ ମିଳନରେ ଅନୁଷ୍ଠିତ ଅପରାଜିତା ହୋମରେ ମୁସଲମାନ ଦଳବେହେରା ପୁରୋଧା ହୁଅନ୍ତି । ଏହାର ସବିଶେଷ ବିବରଣୀ ସାଂପ୍ରଦାୟୀକ ସଂପ୍ରିତି ଅଧ୍ୟାୟରେ ବର୍ଣ୍ଣନା କରାଯିବ । ସେତେବେଳେ ଶାସନ ପରିଚାଳନା ପାଇଁ ପଶ୍ଚିମ ବୋଲଗଡର ୬ ବିଶ୍ୱା ବର୍ତ୍ତମାନ ଦଳେଇସାହି, କଳାଙ୍ଗ, ଫାସିଓଦା ଏବଂ (ସଂପୁର ଗ୍ରାମର ହରିରାଜପୁର) ବ୍ୟତୀତ ମାଣିକାଗୋଡା ଗଡ ଅଧିନରେ ଥିଲା । ଏହି ଗଡରେ ପାଞ୍ଚଗଡ ସ୍ଥାପନ ବେଳେ ଗଜପତି ଦିବ୍ୟସିଂହ ଦେବଙ୍କ ସାନଭାଇଙ୍କ ଅବସ୍ଥାନ ଗଡର ଗୁରୁତ୍ୱକୁ ବଢାଇବା ସଙ୍ଗେ ସଙ୍ଗେ ମୁସଲମାନ ଶାସନ ବେଳେ ସମଗ୍ର ପାଞ୍ଚଗଡ ମାଣିକାଗୋଡା ଏବଂ ପାଞ୍ଚଗଡ ନାମରେ ଦୁଇଟି ଜିଲ୍ଲାରେ ବିଭକ୍ତ ହୋଇଥିଲା । ମାଣିକାଗୋଡାରେ ମୁସଲମାନ ଦେଳବେହାରାଙ୍କ ହାତରେ ସମଗ୍ର ପାଞ୍ଚଗଡର ଦେଓ୍ୱାନୀ ବିଭାଗ ଥିବାରୁ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ କଟକ ଲାଲବାଗ ସହିତ ଥିଲା । ଏଥିଯୋଗୁଁ ମାଣିକାଗୋଡା ସେତେବେଳେ ପାଞ୍ଚଗଡର କେନ୍ଦ୍ରବିନ୍ଦୁ ରୂପେ ପରିଗଣିତ ହେଉଥିଲା । ଏଠାର ଐତିହାସିକ ଦଶହରା ପର୍ବ ସହ ସ୍ୱାଧୀନତା ସଂଗ୍ରାମରେ ବହୁ ସଂଗ୍ରାମୀଙ୍କର ଯୋଗଦାନ ପରବର୍ତ୍ତୀ କାଳରେ କୃଷକ ଆନ୍ଦୋଳନ ସ୍ଥାନୀୟ ଅଧିବାସୀଙ୍କୁ ନିର୍ଭୀକ କରିଥିଲା ଏବଂ ଗଡଜାତ ଆନ୍ଦୋଳନ ବେଳେ ଏହା ଖଣ୍ଡପଡା ନୟାଗଡ ସରହଦରେ ଥିବାରୁ ପ୍ରଜାମଣ୍ଡଳ ସଂଗ୍ରାମୀ ମାନଙ୍କର ମୁଖ୍ୟ ଆଶ୍ରୟସ୍ଥଳ ଥିଲା ।

ବାଙ୍କୋଇ -

ବାଙ୍କୋଇ ଗଡ ବାଙ୍କୋଇ ଗ୍ରାମର ଉତ୍ତର-ପୂର୍ବ ଦିଗରେ ଏକ ସ୍ୱତନ୍ତ୍ର ଅଂଶରେ ଅବସ୍ଥିତ । ଏଠାରେ ଦଳ ବେହେରା ବଂଶଧର ବାସ କରନ୍ତି । ପାଞ୍ଚଗଡର ମୁଖ୍ୟ ଶିବପୀଠ ବାଙ୍କୋଇର ତାରେଶ୍ୱର ଦେବ ମନ୍ଦିର । ୧୮ ଜଣ ଜାଜୀ ବହୁ କାଳରୁ ଗଜପତିଙ୍କ ଦ୍ୱାରା ନିଯୁକ୍ତ ହୋଇ ମନ୍ଦିର ପରିଚାଳନା କରନ୍ତି । ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କ ୩୬ ନିଯୋଗର ପ୍ରଚଳନ ଏଠାରେ ପ୍ରଚଳିତ ଅଛି । ବଡଦେଉଳ ପରମ୍ପରା ଅନୁସାରେ ଏଠାରେ ମାହାରୀ ନାଚ ହୁଏ । ସେମାନଙ୍କ ବଂଶଧର ଏହି ଗ୍ରାମରେ ଅଛନ୍ତି । ଏଠାରେ କଚେରୀ ଘର ଠାରେ ହରିକାଠ ଶିକୁଳୀ ଥିବାର କଥିତ ଅଛି । ଉଚ୍ଚ କୁଳୀନ ଖଣ୍ଡାୟତ ଏବଂ ଅନ୍ୟ ଜାତିର ଲୋକ ଏଠାର ଅଧିବାସୀ । ସାରା ଓଡିଶାରେ ସର୍ବଜନାଦୃତ ଶ୍ରୀରାମଲୀଳାର ଅମରକବି ୰ ଅନଙ୍ଗ ନରେନ୍ଦ୍ର ଙ୍କର ବାଙ୍କୋଇ ଜନ୍ମସ୍ଥାନ । ତାଙ୍କ ବ୍ୟତିତ ସାରଙ୍ଗକବିର ନାମରେ ଜଣେ କବି ଅଷ୍ଟାଦଶ ଶତାବ୍ଦୀ ପ୍ରାରମ୍ଭରେ ଏଠାରେ ଜନ୍ମ ଗ୍ରହଣ କରିଥିଲେ । 'କଳି ପୁରାଣ' ତାଙ୍କର ଅମରକୃତୀ । ଏହି ଗଡ ପାଞ୍ଚଗଡର ମଧ୍ୟବର୍ତ୍ତୀ ଗଡ ଏବଂ ଖଣ୍ଡପଡା ବାଙ୍କୀ ରାଜ୍ୟକୁ ଯିବାକୁ ମୁଖ୍ୟ ରାସ୍ତା ଉପରେ ଥିବାରୁ ରାଜନୈତିକ, ସାମରିକ ଏବଂ କୁଟନୈତିକ କ୍ଷେତ୍ରରେ ବାଙ୍କୋଇ ଗଡର ଭୂମିକା ଯଥେଷ୍ଟ ଉଚ୍ଚରେ ଥିଲା । ଏ ଗଡର ପାଇକମାନେ ଅନ୍ୟମାନଙ୍କର ପ୍ରାଦୁର୍ଭାବ ସହି ପାରନ୍ତି ନାହିଁ। ଏଠାରୁ ଆରିକିମା ଦେଇ ବାଙ୍କୀ ରାଜ୍ୟର କଳାପଥରକୁ ଏବଂ ସାଗର ଗାଁ ଦେଇ ଖଣ୍ଡପଡା ରାଜ୍ୟର ତରବାଲୁଅ ଗଡକୁ ସଂଯୋଗକାରୀ ରାସ୍ତା ବହୁ ପୂର୍ବରୁ ରହିଅଛି । ବର୍ତ୍ତମାନର ବାଙ୍କୋଇ, ଆରିକମା, ଅସରଳା, ବଡକୁମାରୀ ଏବଂ ସାଗର ଗାଁ ଗ୍ରା.ପ. ର ୨୭ ମୌଜା ଏହି ଗଡର ପରିସରଭୁକ୍ତ ଥିଲା । ତାରେଶ୍ୱର ଦେବଙ୍କର ପରିଛା ମ୍ୟାନେଜିଂ ଟ୍ରଷ୍ଟି ତଥା ବୋଲଗଡ ବ୍ଲକର ପ୍ରଥମ ଅଧ୍ୟକ୍ଷ ଗୌରୀଶ୍ୟାମ ପଟ୍ଟନାୟକଙ୍କର ଘର ଏହି ଗ୍ରାମରେ ଏବଂ ବୋଲଗଡ ବ୍ଲକର ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଏଠାରେ ଅଛି ।

ମାଣିବନ୍ଧ -

ପାଞ୍ଚଗଡର ପୂର୍ବରେ ମାଣିବନ୍ଧ ଗଡ । ଏହା ଉତ୍ତର ଖଣ୍ଡପଡା ଏବଂ ବାଙ୍କୀ ରାଜ୍ୟ ସହ ଅତୀତରେ ଖୋରଧା ରାଜ୍ୟର ଯୋଗସୂତ୍ର କାରୀ ଗଡର ମାନ୍ୟତା ଲାଭ କରିଥିଲା । ଖୋରଧା ବାଙ୍କୀ ଯୁଦ୍ଧ ବେଳେ ଗଜପତି ଗୋପୀନାଥଦେବ ଏହି ଗଡର ଖୁଣ୍ଟିଆ ଛାଉଣୀରେ ରହୁଥିବାର ବାଙ୍କୀ ଇତିହାସରେ ପ୍ରକାଶ ପାଇଛି ଏବଂ ଖୋରଧା-ଖଣ୍ଡପଡା ସମର ବେଳେ ଗଜପତି ୨ୟ ଦିବ୍ୟସିଂହ ଦେବ ଏହି ମାଣିବନ୍ଧ ଗଡରୁ ଯୁଦ୍ଧ ପ୍ରସ୍ତୁତି ଆରମ୍ଭ କରିଥିଲେ । ଏହି ଗଡର ପାଇକ ମାନେ ଗରିଲା ଯୁଦ୍ଧରେ ପାରଙ୍ଗମ

ଥିଲେ । ଏକଦା ରଣପୁର ରାଜା ପାଞ୍ଚଗଡର ବାଙ୍କୋଇ ଅଞ୍ଚଳ ଦଖଲ କରିଥିଲେ ମଧ୍ୟ ମାଣିବନ୍ଧ ଗଡକୁ ଦଖଲ କରିପାରି ନଥିଲେ । ତତ୍‌କାଳୀନ ଶାସନ ପରିଚାଳନା ଦୃଷ୍ଟିରୁ ପଞ୍ଚପଲ୍ଲୀ (ଗୋଡିଆ ପଲ୍ଲୀ, ବଡନୂଆ ପଲ୍ଲୀ, ସାନନୂଆ ପଲ୍ଲୀ, ଛାମୁଚିଆ ପଲ୍ଲୀ, ବାଙ୍କ ପଲ୍ଲୀ) ଏହାର ଅଧୀନରେ ଥିଲେ । ଗଜପତି ଗୋପୀନାଥ ଦେବଙ୍କ ପୁତ୍ର ଏହି ଗଡରେ ବସନ୍ତ ରୋଗରେ ମୃତ୍ୟୁବରଣ କରିଥିବାରୁ ତାହାର ସ୍ମାରକୀ ସ୍ୱରୂପ ଏକ ଶିବ ମନ୍ଦିର ପ୍ରତିଷ୍ଠିତ ହୋଇଥିବା କଥା ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନଙ୍କ ଲିଖିତ 'ଖୁର୍ଦ୍ଧା ଦର୍ପଣ'ରୁ ଜଣାଯାଏ । ଗଡର ଦଳବେହେରା ମୁଖ୍ୟ ଅଟନ୍ତି । ତାଙ୍କର ବଂଶଧରଙ୍କ ପ୍ରତିଷ୍ଠା ଅଦ୍ୟାବଧି ରହିଅଛି ।

କଳାମାଟିଆ - (ମଣ୍ଡଳସିଂହ)

ଷ୍ଟାର୍ଲିଙ୍ଗଙ୍କ ବର୍ଣ୍ଣିତ ଖୋରଧାର ୭୧ ଗଡ ମଧ୍ୟରେ କଳାମାଟିଆର ନାମ ଅଛି । ଏହା ବୋଲଗଡର ପଶ୍ଚିମ ଦକ୍ଷିଣ କୋଣରେ ଅବସ୍ଥିତ । ଏଠାର ଦଳବେହେରା ଗୋପାଳ ଜାତିର । ପୂର୍ବେ ଘଞ୍ଚ ବାଉଁଶ ବଣରେ ମଇଁଷି ଗୋଠ ରଖିଥିବା ଗୋପାଳ ଜାତିର ପରବର୍ତ୍ତୀ ବଂଶଧର ଦଳବେହେରା ଭାବରେ ମାନ୍ୟତା ଲାଭ କରିଥିଲେ । ଏମାନେ ପରମ୍ପରା କ୍ରମେ ସୁନ୍ଦରାୟ ଏବଂ ମାର୍ଥା ପଦବୀ ଗ୍ରହଣ କରିଅଛନ୍ତି । ଏହି ଗଡର ଗଡସାହିରେ ସଂଭ୍ରାନ୍ତ ଖଣ୍ଡାୟତ ଜାତିର ଲୋକମାନେ ବାସ କରନ୍ତି । ଏହି ଗ୍ରାମର ଏକତା ପାଇଁ ଏହା ସୁଖ୍ୟାତି ଲାଭ କରିଅଛି । ଏଠାରେ ଏକ ପୁରାତନ ଶିବ ମନ୍ଦିର ଅଛି । ବହୁ ପୋଖରୀ ସହ ନିକଟସ୍ଥ ଝିକିମିକି ଆଶ୍ରମର ସମୀପବର୍ତ୍ତୀ ରାସ୍ତା ଏହି ଗ୍ରାମ ଦେଇ ଯାଇଅଛି । ଏହି ଗଡରେ ପ୍ରତିଷ୍ଠିତ ଶିବ ମନ୍ଦିର ଏବଂ ଏହାର ସନ୍ନିକଟ ବାମ୍ଫିର ଐତିହାସିକ ଗୁରୁତ୍ୱ ରହିଅଛି । ମହାସମାରୋହରେ ଏହି ଗଡର ଅଧିବାସୀଙ୍କ ସହଯୋଗରେ ଗତ କିଛି ବର୍ଷ ହେଲା ଏଠାରେ କାର୍ତ୍ତିକ ପୂର୍ଣ୍ଣମୀ ଯାତ୍ରା ଅନୁଷ୍ଠିତ ହେଉଅଛି । ଏହା ପାଞ୍ଚଗଡ ଏବଂ ନୟାଗଡ ସୀମାରେ ଥିବାରୁ ଏହା ଏକ ଗୁରୁତ୍ୱପୂର୍ଣ୍ଣ ଗଡ ଭାବରେ ପରିଚିତ ।

ଏହି ସବୁ ଗଡ ବ୍ୟତୀତ ମୁଣ୍ଡିଆପଦା ଘାଟିର ସୁରକ୍ଷା ପାଇଁ ଗଜପତି ମହାରାଜା ସଂପୁର ଏବଂ ଗୋଡିଆଳି ନାମରେ ଦୁଇଟି ଗଡ ସ୍ଥାପନ କରିଥିଲେ ।

ହଳଦୀପଦା (ଡାହଳ ଗଡ) -

ହଳଦୀପଦା ଏବଂ ବାରଦାଣ୍ଡୀ ଗ୍ରାମର ମଧ୍ୟ ଭାଗରେ ସହଜପୁର ଗ୍ରାମକୁ ଯିବା ରାସ୍ତା ପାର୍ଶ୍ୱରେ ୨ଟି ବଡ ମାଟି କୁଦ ଅଛି । ଲୋକମୁଖରେ ଏହାକୁ ଜଗତି କୁହାଯାଏ । ଏହିଠାରେ ଗଡ ଥିଲା । ନିକଟରେ ରାମଚଣ୍ଡୀ ଠାକୁରାଣୀ ଅଛନ୍ତି । ଏହି

ଗଡ ଖଣ୍ଡପଡା ବାଙ୍କୀ ସରହଦରେ ଥିବାରୁ ଏହାର ଗୁରୁତ୍ୱ ଯଥେଷ୍ଟ ଥିଲା । ଖୋରଧା-ଖଣ୍ଡପଡା ସମର ବେଳେ ଏହିଗଡରୁ ଖଣ୍ଡପଡାକୁ ଯୁଦ୍ଧ ପରିଚାଳନା ହୋଇଥିବା କଥା 'ଖଣ୍ଡପଡା ମାରୁ' ତାଳପତ୍ର ପୋଥିରେ ଦର୍ଶାଯାଇଛି । ମୁଖ୍ୟତଃ ଗୋଡିଆଳି, ଜରିପଡା, ସହଜପୁରର ଖଣ୍ଡାୟତ ପାଇକମାନେ ଏହି ଗଡର ସୁରକ୍ଷା ଦାୟୀତ୍ୱ ବହନ କରିଥିବାର ଅନୁମିତ ହୁଏ । ଅଦ୍ୟାବଧି ହଳଦୀପଦା ଗ୍ରାମରେ ସିଂହ ଉପାଧି ଧାରୀ ବହୁ ସମ୍ଭ୍ରାନ୍ତ ପ୍ରତିଷ୍ଠିତ ପରିବାର ବାସ କରନ୍ତି ।

ଉକ୍ତ ଇତିହାସ ରଚନା କାଳରେ ପାଞ୍ଚଗଡ ଉପରେ ଗବେଷଣା ରତ ମାଣିକାଗୋଡା ଗ୍ରାମର ଶିକ୍ଷକ ବିରଞ୍ଚି ପ୍ରସାଦ ପ୍ରଧାନ ଲେଖକର ଅନୁରୋଧରେ ହଳଦିପଦା ଗଡର ପ୍ରାଚୀନ ତଥ୍ୟ ସଂଗ୍ରହ କରିବାକୁ ଯାଇଥିଲେ । ତାଙ୍କ ଦ୍ୱାରା ସଦ୍ୟ ସଂଗୃହୀତ ତଥ୍ୟ ଅନୁଯାୟୀ ରଣପୁର ରାଜ୍ୟର ପୂର୍ବତନ ରାଜା ନୃସିଂହ ନରେନ୍ଦ୍ରଙ୍କ ଦ୍ୱାରା ଏକଦା ଏହି ଅଞ୍ଚଳ ଅଧିକାର କରାଯାଇଥିଲା । ବର୍ତ୍ତମାନ ହଳଦୀପଦା ନିକଟସ୍ଥ ବାରଦାଣ୍ଡି ମୌଜାରେ ଅବସ୍ଥିତ ପୁରାତନ ମଠର ଠାକୁର ନୃସିଂହ ଅଟନ୍ତି । ଏଣୁ ଅନୁମାନ କରାଯାଉଛି ସେତେବେଳେ ରଣପୁର ରାଜା ନୃସିଂହ ନରେନ୍ଦ୍ର ଏଠାରେ ଏହି ଠାକୁରଙ୍କ ପ୍ରତିଷ୍ଠା କରିଥିଲେ । ତାପରେ ପାଞ୍ଚଗଡ ପାଇକମାନେ ସେ ଗଡ ଅଧିକାର କରିବା ସଂଗେ ସଂଗେ ସେ ଗଡରୁ ରଣପୁର ରାଜାଙ୍କୁ ହଟାଇ ବାଙ୍କୋଇ ଗଡ ସହ ହଳଦୀପଦାକୁ ସାମିଲ କରିଥିଲେ । ପରେ ହଳଦୀପଦା ଗଡର ଜଗତି ନଷ୍ଟ ହୋଇଯାଇଥିଲା । ଅଦ୍ୟାବଧି ସେଠାରେ ରାଣୀ ଗାଧୁଆ ପୋଖରୀ ଏବଂ ଗଡର ଗଡଚଣ୍ଡୀ ରାମଚଣ୍ଡୀ ଦେବୀଙ୍କ ପ୍ରାଙ୍ଗଣରେ ଏକ ପୁରାତନ କୂଅ ରହିଅଛି । ଏହି ତଥ୍ୟ ସହ ୰ ସାଧୁଚରଣ ଚୌଧୁରୀଙ୍କ ସଂଗୃହୀତ ନିମ୍ନ ଲିଖିତ ତଥ୍ୟର ସାମଞ୍ଜସ୍ୟ ରହୁଅଛି ।

୰ ଚୌଧୁରୀଙ୍କ ତଥ୍ୟ ଅନୁସାରେ ଗଙ୍ଗ ବଂଶର ଗଜପତି ଲାଙ୍ଗୁଳା ନରସିଂହ ଦେବଙ୍କ ସମୟରେ ପୂର୍ବରୁ ରଣପୁର ରାଜାଙ୍କ ଅଧିନରେ ଥିବା ପାଞ୍ଚଗଡର ଉକ୍ତ ଅଞ୍ଚଳକୁ ସ୍ଥାନୀୟ ଲୋକମାନେ ମେଳି କରି ରଣପୁର ରାଜାଙ୍କ ଠାରୁ ଛଡାଇ ଆଣିଥିଲେ ଏବଂ ଏହା ସିଧାସଳଖ ଗଙ୍ଗ ବଂଶର ଗଜପତି ନରସିଂହ ଦେବଙ୍କ ଅଧୀନରେ ରହିଲା । ଏବଂ ସେ ବିବାହ କରିଥିବା କାଶ୍ମୀର ରାଜକନ୍ୟାଙ୍କର ରାଣୀ ମହଲ ରୂପେ ଚିହ୍ନଟ କରାଗଲା । ଅଦ୍ୟାବଧି ଏ ଅଞ୍ଚଳର ଗର୍ଭଣୀପଡା, ବେଣାଗାଡିଆ, ସାନକୁମାରୀ, ବଡକୁମାରୀ, ଢୋଲପଥର ଗ୍ରାମର କେତେକ ଜମି ପୁରୀ ଜଗନ୍ନାଥ ମହାପ୍ରଭୁଙ୍କ ଜମି ଭାବରେ ସେହି କାଳରୁ ରହିଅଛି । ଏଥିରୁ ଅନୁମାନ କରାଯାଏ ଏହି ଅଞ୍ଚଳ କିଛି ଦିନ ପାଇଁ ରଣପୁର ରାଜାଙ୍କ ଅଧୀନରେ ଥିବାରୁ ତାହାର ସ୍ମୃତି ସ୍ୱରୂପ ବାଙ୍କୋଇ ତାରେଶ୍ୱର ଦେବଙ୍କ ଜାଗର ଯାତ୍ରା ସମୟରେ ମନ୍ଦିର ଚୂଡାକୁ ମହାଦୀପ ଉଠିଲା ବେଳେ ପୁରୀ ଗଜପତି ମହାରାଜାଙ୍କ ନାମରେ ଡାକ ଦିଆଯିବା ପରେ ରଣପୁର

ରାଜାଙ୍କ ନାମରେ ଡାକ ଦିଆଯାଇଥାଏ ।

ସଂପୁର -

ସଂପୁର ଗଡରେ ମରହଟ୍ଟା ଶାସନ ବେଳେ ଖୋର୍ଦ୍ଧା ଗଜପତି ଦିବ୍ୟସିଂହ ଦେବ ଦ୍ୱିତୀୟଙ୍କର ଭଉଣୀ ତଥା ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କର ଅବସ୍ଥାନ ଏହି ଗଡର ମହତ୍ତ୍ୱ ବୃଦ୍ଧି କରିଥିଲା । ଏହି ଗଡରେ ତାଙ୍କର ଦେଓ୍ୱାନ ସଦାଶିବ ଦେଓ୍ୱାନଙ୍କର ମଧ ଆବାସସ୍ଥଳୀ ଥିଲା । ଏହାର ଅନତି ଦୂରରେ ମୁକ୍ତାଦେଈଙ୍କ ଉଆସ ଅଦ୍ୟାବଧି ଲୋକମୁଖରେ ନହରପଦା ବିଶେଷ କରି ସଂପୁରର ଉତ୍ତର ଦିଗରେ ଅବସ୍ଥିତ ଖୋର୍ଦ୍ଧା ରାଜ୍ୟର ଗୁରୁତ୍ୱପୂର୍ଣ୍ଣ ମୁଣ୍ଡିଆପଡା ଘାଟି ଏବଂ ତାହାର ପାଦଦେଶରେ ଗଡଦ୍ୱାର ଗଜପତି ମହାରାଜା ମାନଙ୍କର ଆପଦ କାଳୀନ ଗୁପ୍ତ ମନ୍ତ୍ରଣା ସ୍ଥଳ ଥିଲା । ଖୋର୍ଦ୍ଧା ରାଜ୍ୟ ଉପରେ ବାହ୍ୟ ଆକ୍ରମଣର ସମ୍ଭାବନା ବେଳେ ଏଠାରେ ଖୋର୍ଦ୍ଧା ସମସ୍ତ ଗଡାଧୀଶ ଏବଂ ଗଜପତିଙ୍କର ଅନୁଗତ ଅଠର ଗଡଜାତ ରାଜାମାନଙ୍କର ଗୁପ୍ତ ବୈଠକ ହେଉଥିଲା । ଏ ବିଷୟରେ ବିଶେଷ ତଥ୍ୟ 'ଖୋରଧା ଦର୍ପଣ'ରେ ଦିଆଯାଇଛି । ତାହା ପରବର୍ତ୍ତୀ ଅଧ୍ୟାୟରେ ଆଲୋଚନା କରାଯିବ । ମାନସିଂହ ଏହି ଗଡର ଗଡାଧୀଶ ଥିଲେ । ଏଠାରେ ପ୍ରତିଷ୍ଠିତ ବାଲୁଙ୍କେଶ୍ୱର ଦେବଙ୍କ ମନ୍ଦିର ଦେଓ୍ୱାନ ସଦାଶିବଙ୍କର ଅମରକୀର୍ତ୍ତି ଏବଂ ଏହା ନିକଟରେ ଏହି ଗଡରେ ଏକ ଜଗନ୍ନାଥ ମନ୍ଦିର ମଧ ରହିଅଛି । ବୀରମାଳ ଠାକୁରାଣୀ ଏହି ଗ୍ରାମର ଗ୍ରାମ ଦେବତୀ । ପ୍ରତ୍ୟେକ ଦଶହରା ସମୟରେ ସ୍ଥାନୀୟ ପାଇକ ଏବଂ ଗୋପାଳମାନେ ଏହାଙ୍କର ସ୍ୱତନ୍ତ୍ର ପୂଜା କରିଥାଆନ୍ତି । ଏହି ଗ୍ରାମର ଦକ୍ଷିଣ ଦିଗରେ ଥିବା ଚତରା ପୋଖରୀ ନିକଟରେ ହରିଣସୁଆ ନାମରେ ଥିବା ଅଞ୍ଚଳ ପୂର୍ବେ ଘଞ୍ଚ ଜଙ୍ଗଲ ଥିଲା । ହରିଣ ପ୍ରଭୃତି ବନ୍ୟ ପ୍ରାଣୀ ମାନେ ଏଠାରେ ବସବାସ କରୁଥିବାରୁ ଏହାର ନାମକରଣ ଏପରି ହୋଇଅଛି । ଏହି ଗ୍ରାମ ସଂପୁର, ଛୋଟରାୟପୁର, ଶିଖରପଡା, ଚନ୍ଦ୍ରଶେଖରପୁର, ନୟପାଟଣା, ଗୋବିନ୍ଦପୁର, ଗୋପାଳପୁର ଏବଂ ବାଉତିପାଟଣା ମୌଜା ସମଷ୍ଟିରେ ଗଠିତ । ହରିରାଜପୁର ଏହି ଗ୍ରାମର ଅଂଶବିଶେଷ ହୋଇଥିଲେ ମଧ ଏହା ପୂର୍ବକାଳରେ ବୋଲଗଡ ଦଶବିଶ୍ୱା ସାଥିରେ ସାମିଲ ହୋଇଂ ରହିଥିଲା ।

ଗୋଡିଆଳୀ -

ଗୋଡିଆଳୀ ଗଡ ମୁଣ୍ଡିଆ ପଡା ପାହାଡର ପୂର୍ବ ଦିଗରେ ଅବସ୍ଥିତ । ଏହି ଖଣ୍ଡାୟତ ବ୍ୟଷ୍ଟିତ ଗଡର ମୁଖ୍ୟ ଦଳେଇ ଏବଂ ଗ୍ରାମ ମଧରେ ରଘୁନାଥ ମନ୍ଦିର ବିଦ୍ୟମାନ । ଖୋର୍ଦ୍ଧା ଖଣ୍ଡପଡା ସମର ବେଳେ ଗୋଡିଆଳୀ ଗଡ ଏକ ଗୁରୁତ୍ୱପୂର୍ଣ୍ଣ

ଭୂମିକା ବହନ କରିଥିଲା । ୧୭ ଶତାବ୍ଦୀର ଶେଷ ଭାଗ ଏବଂ ଅଷ୍ଟାଦଶ ଶତାବ୍ଦୀର ପ୍ରାରମ୍ଭରେ ଖଣ୍ଡପଡାରେ ତତକାଳୀନ ରାଜା ନରସିଂହ ଭ୍ରମର ବର ଏବଂ ଖୋର୍ଦ୍ଧା ଗଜପତି ଦିବ୍ୟସିଂହ ଦେବ ୩ୟ ଙ୍କ ସମୟରେ ସାମାନ୍ୟ ଅବୁଝାମଣାରୁ ସଂଗଠିତ ଯୁଦ୍ଧ ଏହି ଗଡରୁ ଆରମ୍ଭ ହୋଇଥିଲା । ଏହାର ଅଦୂରରେ ଖଣ୍ଡପଡା ଅଧୀନସ୍ଥ ତରବାଲୁଅ ଗଡ ଏବଂ ଗଡ ଖୋଲ ଗ୍ରାମ ଥିବାରୁ ଏହି ଯୁଦ୍ଧ ସମୟରେ ଖଣ୍ଡପଡା ରାଜାଙ୍କର ଯୁଦ୍ଧ ଚାଳନା ତରବାଲୁଅ ଏବଂ ଗଡଖୋଲରୁ ହୋଇଥିଲା ବେଳେ ଖୋର୍ଦ୍ଧା ରାଜାଙ୍କର ଯୁଦ୍ଧ ଚାଳନା ହଳଦୀପଦା ଏବଂ ଗୋଡିଆଳୀ ଗଡରୁ ହୋଇଥିବା କଥା ଖଣ୍ଡପଡା ମାରୁ (ଖୋର୍ଦ୍ଧା-ଖଣ୍ଡପଡା ସମର) ତାଳପତ୍ର ପୋଥିରେ ଏହାର ରଚୟିତା ୰ ଭିକାରୀ କର ବର୍ଣ୍ଣନା କରିଛନ୍ତି ।

ଅତୀତର ଏହି ସାତଗଡ ଛଡା ବର୍ତ୍ତମାନ ବୋଲଗଡ ବ୍ଲକ ପରିସର ମଧ୍ୟରେ ଥିବା ଖୋର୍ଦ୍ଧା ରାଜ୍ୟର ପୂର୍ବତନ ପ୍ରସିଦ୍ଧ ଗଡ ମାନଙ୍କ ମଧ୍ୟରେ ଟିକାତାଳ, ସାନପଦର ଏବଂ କଡବ ମୁଖ୍ୟ ଗଡ ଅଟେ ।

ଟିକାତାଳ -

ଟିକାତାଳ ଗଡ ବର୍ତ୍ତମାନ ପିତ୍ରୁକୁଳୀ ଗ୍ରାମ ପଞ୍ଚାୟତରେ ଅବସ୍ଥିତ । ଏହି ଗଡ ମାଣିବନ୍ଧ, ସାନପଦର, କଡବ ଏବଂ ବାଙ୍କୋଇର ମଧ୍ୟଭାଗରେ ଥିବାରୁ ଏହାର ଗୁରୁତ୍ୱ ଯଥେଷ୍ଟ ଉଚ୍ଚରେ ଥିଲା । ପରମ୍ପରା କ୍ରମେ ଏ ଗଡର ଦଳବେହେରା ଜଗଦେବ, ମାନସିଂହ ପଦରେ ଭୂଷିତ । ଏଠାରେ ଏକ ପୁରାତନ ଶିବ ମନ୍ଦିର ରହିବା ସହ କିଛି ବର୍ଷ ପୂର୍ବେ ଟିକାତାଳ ଠାରେ ପ୍ରତିଷ୍ଠିତ ରାମକୃଷ୍ଣ ଆଶ୍ରମ ଏ ଅଞ୍ଚଳର ଗୁରୁତ୍ୱ ବଢାଇ ଅଛି । ଏହି ଆଶ୍ରମ ଜରିଆରେ ବାବା ଭଗବତା ନନ୍ଦ ପୁରୀ ସମାଜସେବା କ୍ଷେତ୍ରରେ ସମଗ୍ର ଖୋର୍ଦ୍ଧା ଏବଂ ନୟାଗଡ ଜିଲ୍ଲାରେ ଏକ ପ୍ରମୁଖ ଭୂମିକା ଗ୍ରହଣ କରିଛନ୍ତି ।

ସାନପଦର -

ଅତୀତରେ ସାନପଦର ଗ୍ରାମର ଦକ୍ଷିଣ ଦିଗରେ ପ୍ରାଚୀନ ବିନ୍ଧ୍ୟଗିରି ଗଡ ଖୋରଧା ରାଜାଙ୍କର ୭୧ ଗଡ ମଧ୍ୟରେ ଅନ୍ୟତମ ଗଡ । କୌଣସି କାରଣରୁ ଏହା ଧ୍ୱଂସ ପାଇଯିବା ପରେ ସାନପଦର ଗଡର ମାନ୍ୟତା ଲାଭ କରିଥିଲା । ଏହା ପାଞ୍ଚଗଡର ମୁଖ୍ୟ ସାରସ୍ୱତ ପୀଠ । ସମଗ୍ର ଓଡିଶାରେ ପ୍ରସିଦ୍ଧି ଲାଭ କରିଥିବା ୩ ଜଣ ଅମର କବି ଯଥା - 'ମଥୁରା ମଙ୍ଗଳ'ର କବି ଭକ୍ତଚରଣ, 'ଗୋପୀ ଭାଷା'ର କବି ଦନେଇ ଦାସ ଏବଂ 'ବସନ୍ତ ରାସ'ର କବି ପିଣ୍ଡିକି ଶ୍ରୀଚନ୍ଦନ ଏହି ଗ୍ରାମର ନିବାସୀ ଅଟନ୍ତି । ଏମାନଙ୍କ ଛଡା ନେତ୍ରମଣୀ ଦେବୀ ନାମରେ ଜଣେ ପ୍ରସିଦ୍ଧ ନାରୀ କବି ଏଠାରେ ଜନ୍ମ ଗ୍ରହଣ

କରିଥିଲେ । ଖୋର୍ଦ୍ଧା ରଣପୁର ଯୁଦ୍ଧ ବେଳେ ସାନପଦର ଗଡର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । କଙ୍କାଳୀ ଦେବୀ ଏବଂ ଦୁର୍ଗା ଦେବୀ ଗ୍ରାମର ଆରାଧ୍ୟା ଦେବୀ ରୂପେ ପୂଜିତା । ଦଶହରା ସମୟରେ କଙ୍କାଳୀ ଠାକୁରାଣୀଙ୍କୁ ଆବାହନ କରାଯାଏ । ସମାଜର ପ୍ରତ୍ୟେକ ବର୍ଗର ଲୋକମାନେ ଆବହମାନ କାଳରୁ ସମସ୍ତ ପୂଜା ଉପକରଣ ସ୍ୱ-ସ୍ୱ ଖର୍ଚ୍ଚରେ ଯୋଗାଇଥାନ୍ତି । ଏହି ପରମ୍ପରା ଅନ୍ୟତ୍ର ବିରଳ । ପ୍ରାକ ସ୍ୱାଧୀନତା କାଳରେ ଏଠାରେ ସଂଘଠିତ କୃଷକ ଆନ୍ଦୋଳନ ଏବଂ ସ୍ୱାଧୀନତା ପରେ ଏହି ଗ୍ରାମର ସ୍ୱର୍ଗତ ଗଙ୍ଗାଧର ପାଇକରାୟ ସ୍ଥାନୀୟ ବିଧାୟକ ଭାବରେ ୪ ଥର ନିର୍ବାଚିତ ହୋଇଥିଲେ । ଏହି ଗ୍ରାମ ବୟନଶିଳ୍ପ, କଳା ସଙ୍ଗୀତ ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଏହାର ଦଳବେହେରା ପରମ୍ପରା ଅନୁସାରେ ଗ୍ରାମର ସମସ୍ତ ଧାର୍ମିକ ଅନୁଷ୍ଠାନରେ ପୁରୋଧା ସ୍ଥାନ ଗ୍ରହଣ କରିଥାନ୍ତି । ଏଠାରେ ଭକ୍ତ ଚରଣଙ୍କ ଦ୍ୱାରା ପ୍ରତିଷ୍ଠିତ ମଠ ସହ ତୃତୀୟା ଦେବ (ଜଗନ୍ନାଥ) ଙ୍କର ପ୍ରାଚୀନ ମନ୍ଦିର ଅଛି ।

କଡବ -

କଡବ ଗଡ ବୋଲଗଡ ବ୍ଲକର ଦକ୍ଷିଣ ପୂର୍ବ କୋଣରେ ଅବସ୍ଥିତ । ଏହାର ଦଳବେହେରା ମୁସଲମାନ ଅଟନ୍ତି । ସେମାନଙ୍କର ପୂର୍ବ ପୁରୁଷ ହାଇଦ୍ରାବାଦ ନିଜାମଙ୍କ ବଂଶଧର ବୋଲି ସେମାନେ କହନ୍ତି । ଖୋର୍ଦ୍ଧା ରଣପୁର ଯୁଦ୍ଧ ବେଳେ ଏହି ଗଡ଼ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ଏହି ଗ୍ରାମର ଐତିହାସିକ ବଉଳ ଗଛ ମଣ୍ଡପ ଅଦ୍ୟାବଧି ରହିଅଛି । ଗଡରେ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ଅଧିବାସୀ ମାନେ ରହିଥିଲେ ମଧ୍ୟ ଗଡ ଉପରେ ଅନ୍ୟମାନଙ୍କର ଆଧିପତ୍ୟକୁ ଏମାନେ ପ୍ରତିହତ କରିବାରେ ଯେଭଳି ଏକତା ପ୍ରଦର୍ଶନ କରନ୍ତି ତାହା ସମଗ୍ର ବୋଲଗଡ ବେଗୁନିଆ ଅଞ୍ଚଳରେ ଏକ ଦୃଷ୍ଟାନ୍ତ ହୋଇରହିଅଛି । ଦୁଆର ଶୁଣୀ ଠାକୁରାଣୀ ଗଡର ମୁଖ୍ୟ ଦେବୀ । ଉଚ୍ଚ କୁଳୀନ ଖଣ୍ଡାୟତ ବର୍ଗଙ୍କ ଛଡା ଅନ୍ୟ ଜାତିର ଲୋକମାନେ ଏଠାରେ ବାସ କରନ୍ତି । ନିକଟରେ ଥିବା ସ୍ୱପ୍ନେଶ୍ୱର ମହାଦେବ ଏହି ଗଡର ମୁଖ୍ୟ ଶିବ ରୂପେ ପୂଜିତ । ଭୋଇ ବଂଶର ଦ୍ୱିତୀୟ ଗଜପତି ପୁରୁଷୋତ୍ତମ ଦେବ ସ୍ୱଳ୍ପ ସମୟ ପାଇଁ ଏହି ଗଡ ପରିସର ଭୁକ୍ତ ଖଣନ୍ତି ଗ୍ରାମରେ ଅବସ୍ଥାନ କରିଥିବା କଥା ମାଦଳା ପାଞ୍ଜିରୁ ଜଣାଯାଏ । ଖଣନ୍ତି ଗ୍ରାମରେ ଗଜପତିଙ୍କ ଦ୍ୱାରା ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିର ଏବଂ ରାଜପୁରୋହିତଙ୍କ ଘରେ ଅଦ୍ୟାବଧି ସେହି କାଳରୁ ଗଜପତିଙ୍କର କନକ ଦୁର୍ଗା ପୂଜା ପାଉଛନ୍ତି । ଏ ଯୁଗର ସର୍ବଶ୍ରେଷ୍ଠ ଜଗନ୍ନାଥ ପ୍ରେମୀ ଗୀତିକାର ଏବଂ କଣ୍ଠଶିଳ୍ପୀ ଶ୍ରୀ ଅରବିନ୍ଦ ମୁଦୁଲିଙ୍କର ଏହା ବାସସ୍ଥାନ ଅଟେ ।

ଖଙ୍ଗୁରିଆ -

ସର୍ବୋପରି ଖଙ୍ଗୁରିଆ ଗ୍ରାମରେ ଜଗଦ୍ଦେବ ପରିବାରର ଅଭ୍ୟୁଥାନ ପରେ ଲୋକମୁଖରେ ଖଙ୍ଗୁରିଆ ଖଙ୍ଗୁରିଗଡ ନାମରେ ଅବିହିତ । ବୋଲଗଡ ବାରପଲ୍ଲୀର ମୁଖ୍ୟ ଶିବ ପୀଠ ଅମୃତେଶ୍ୱର ମହାଦେବଙ୍କ ଆସ୍ଥାନ ଏଠାରେ ଅବସ୍ଥିତ । ଏହି ଗଡର ମଧ ଭାଗରେ ପରିବେଷ୍ଟିତ ସଂଭ୍ରାନ୍ତ ଖଣ୍ଡାୟତ ଏବଂ କ୍ଷତ୍ରିୟ (କରଣ) ସାହି ମଧ୍ୟରେ ଜଗନ୍ନାଥ ମନ୍ଦିର ବିଦ୍ୟମାନ । ଏଠାରେ ଜଗନ୍ନାଥଙ୍କ ନାମ ଦଧିବାମନ । ଜଗଦ୍ଦେବ ପରିବାରର ପୂର୍ବଜ ମାନଙ୍କ ଦ୍ୱାରା ନିର୍ମିତ ରାଧାକାନ୍ତ ଦେବଙ୍କ ମନ୍ଦିର ବୋଲଗଡ ବ୍ଲକର ସର୍ବଶ୍ରେଷ୍ଠ କାରୁକାର୍ଯ୍ୟ ଖଚିତ ମନ୍ଦିର । ନିକଟରେ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଆର୍ଥିକ ସହାୟତାରେ ଏହାର ପୁର୍ନରୁଦ୍ଧାର କରାଯାଇଅଛି ।

ମୋଗଲ ଶାସନ ବେଳେ ଏହି ଅଞ୍ଚଳକୁ ପାଞ୍ଚଗଡ ଏବଂ ମାଣିକାଗୋଡା ୨ଟି ଜିଲ୍ଲାରେ ବିଭକ୍ତ କରାଯାଇଥିଲା । ମାଣିକାଗୋଡା ଠାରୁ ମାଣିବନ୍ଧ ଯାଏ ପାଞ୍ଚଗଡ ଏବଂ କେତେକଙ୍କ ମତରେ କଳାମାଟିଆ ଠାରୁ ଅତ୍ରି ଏବଂ ବଡପଦା ଗଡ ଯାଏଁ ଆଠଗଡ ସୃଷ୍ଟି ହୋଇଥିବାର ଜଣାଯାଇଥିଲେ ମଧ୍ୟ କୌଣସି ଇତିହାସ ନଥିପତ୍ରରେ ଏ ବିଷୟରେ ଲିଖିତ ତଥ୍ୟ ଏ ପର୍ଯ୍ୟନ୍ତ ହସ୍ତଗତ ହୋଇନାହିଁ । ଏଣୁ ଅଧିକ ଅନୁସନ୍ଧାନ ଆବଶ୍ୟକ ।



## ଜନଶ୍ରୁତିରେ ପାଞ୍ଚଗଡ

ଏକ ମହାନ ଐତିହାସିକ ଗୌରବକୁ ପାଥେୟକରି ପୁରାତନ କାଳରୁ ପାଞ୍ଚଗଡର ଲୋକମାନେ ନିଜକୁ ପାଞ୍ଚଗଡର ଅଧିବାସୀ ବୋଲି ସ୍ୱତନ୍ତ୍ର ଗର୍ବ କରନ୍ତି । ଖଣ୍ଡାୟତ ଜାତିର ଗୋଟିଏ ଗୋଷ୍ଠୀକୁ ପାଞ୍ଚଗଡିଆ ଚଷା କୁହାଯାଉଥିଲା ବେଳେ ନୟାଗଡ ଖଣ୍ଡପଡା ଅଞ୍ଚଳରେ ଦୁଇ ମୁଖ୍ୟ ଖଣ୍ଡାୟତ ଗୋଷ୍ଠୀ ପାଞ୍ଚଗଡିଆ ଏବଂ ବେଣାଟିଆ ଭାବରେ ରହିଥିବାର ଜଣାଯାଏ । ପାଞ୍ଚଗଡ ବିଷୟରେ ଦୁଇଟି ପ୍ରବନ୍ଧ ଲେଖକର ଦୃଷ୍ଟିକୁ ଆସିଅଛି । ପ୍ରଥମ ପ୍ରବନ୍ଧର ଲେଖକ ଅଧ୍ୟାପକ ରବୀନ୍ଦ୍ରନାଥ ପଣ୍ଡା, ଗ୍ରାମ ସାନ ନୟାପଲ୍ଲୀ (ଆରିକମା) । ତାଙ୍କ ପ୍ରବନ୍ଧରେ ଗଡର ଅକ୍ଷରିକ ବ୍ୟାକରଣୀୟ ଅର୍ଥ ବୁଝାଇବା ସଙ୍ଗେ ନିକଟସ୍ଥ ନୟାଗଡ, ଖଣ୍ଡପଡା, ରଣପୁର, ବାଙ୍କୀ ଏବଂ ଖୋର୍ଦ୍ଧା ରାଜ୍ୟରୁ ଖଣ୍ଡେ ଖଣ୍ଡେ ଅଞ୍ଚଳ ମିଶ୍ରଣରେ ଏହି ପାଞ୍ଚଗଡ ସ୍ଥାପିତ ହୋଇଥିବାର ଦର୍ଶାଇ ଅଛନ୍ତି । ହଳଦୀପଦା ଏବଂ ବାଙ୍କୋଇ ଗଡକୁ ବିଶେଷ ପ୍ରାଧାନ୍ୟ ଦେଇଛନ୍ତି । ବୋଲଗଡ ଅଞ୍ଚଳର ପ୍ରାଚୀନତା ବିଷୟରେ ଅଦ୍ୟାବଧି ମିଳିଥିବା ତଥ୍ୟ ଅନୁଯାୟୀ ଅଧ୍ୟାପକ ପଣ୍ଡାଙ୍କ ଯୁକ୍ତି ମେଳ ହେଉନାହିଁ ।

ଦ୍ୱିତୀୟ ପ୍ରବନ୍ଧଟି ବାଙ୍କୋଇ ହାଇସ୍କୁଲର ପ୍ରଧାନ ଶିକ୍ଷକ ତଥା ବାଙ୍କୋଇ କଲେଜ ଏବଂ ସି.ଟି. ସ୍କୁଲର ପ୍ରତିଷ୍ଠାତା ଶ୍ରୀ କାଳୀଚରଣ ଜୟସିଂହଙ୍କ ଦ୍ୱାରା ଲିଖିତ । ସେ ସମସ୍ତ ଗଡର ବର୍ଣ୍ଣନା ବିଭିନ୍ନ ଦୃଷ୍ଟି କୋଣରୁ କରିବା ସଙ୍ଗେ ବୋଲଗଡ ଗଡକୁ ସମ୍ପୂର୍ଣ୍ଣ ଭାବରେ ବାଦ ଦେଇଛନ୍ତି । ଏହା ତାଙ୍କର ନିଜସ୍ୱ ମତ ହୋଇପାରିଥାଏ । ବାଙ୍କୋଇ ଗଡର ପ୍ରାଧାନ୍ୟକୁ ଅଧିକ ଗୁରୁତ୍ୱ ଦେଇଅଛନ୍ତି । ଉକ୍ତ ପ୍ରବନ୍ଧରେ ସେ ସ୍ଥାନୀୟ ଖଣ୍ଡାୟତ ମାନଙ୍କର ଗୌରବ ଗାଥା ସହ ମୁଣ୍ଡିଆପଡା, ବାଙ୍କୋଇ ଏବଂ ତାରେଶ୍ୱର ମହାଦେବଙ୍କ ବିଷୟ ବିଶେଷ ଭାବରେ ସ୍ଥାନ ଦେଇଛନ୍ତି । ଏତଦ୍ ବ୍ୟତୀତ ପାଞ୍ଚଗଡ ଅଞ୍ଚଳର ବହୁ ପ୍ରାଚୀନ କବି ଏବଂ ସେମାନଙ୍କର କାବ୍ୟ କୃତି ବିଷୟରେ ସେ ବର୍ଣ୍ଣନା କରିଛନ୍ତି ।

ଏହାଛଡା ପାଞ୍ଚଗଡ ସ୍ଥାପନ ବିଷୟରେ ଗୋଟିଏ ପ୍ରକାର ଲୋକକଥା ମାଣିକାଗୋଡା ଏବଂ ବାଙ୍କୋଇ ଅଂଚଳରୁ ଶୁଣାଯାଏ । ମାଣିକାଗୋଡା ସଂଭ୍ରାନ୍ତ କରଣ ବଂଶର ଦାୟାଦ ପ୍ରବୀଣ ଶିକ୍ଷକ ନେତା ଶ୍ରୀ ରାଜକିଶୋର ପଟ୍ଟନାୟକ ଏବଂ କଳାଙ୍ଗ ଗ୍ରା.ପ.ର ପୂର୍ବତନ ସରପଞ୍ଚ ଏବଂ ସାମ୍ପ୍ରଦାୟୀକ ସଂପ୍ରିତୀ ହିନ୍ଦୁ ମୁସଲମାନ ମିଳନର ମହାନ ପରମ୍ପରା ମାଣିକାଗୋଡା ଦଶହରା ପର୍ବରେ ଅନୁଷ୍ଠିତ ଅପରାଜିତା ହୋମର ପୁରୁଷାନୁକ୍ରମେ ପୁରୋହିତ ଶ୍ରୀ ଦିବାକର ହୋତାଙ୍କର ଏହି କଥା ବାଙ୍କୋଇ ଗ୍ରାମର ପୂର୍ବତନ ଶିକ୍ଷକ ଶ୍ରୀ ଭଗବାନ ପଟ୍ଟନାୟକ ଏବଂ ପୂର୍ବତନ ସରପଞ୍ଚ ଶ୍ରୀ ଉଦୟନାଥ ଉତ୍ତର କବାଟଙ୍କ ବକ୍ତବ୍ୟ ସହ ମିଶିଯାଏ । ଏହି ଲୋକକଥା ଏପରି -

ଭୋଇବଂଶର ଗଜପତି ପ୍ରଥମ ଦିବ୍ୟସିଂହ ଦେବଙ୍କର ସାନଭାଇ ପ୍ରତ୍ୟେକଦିନ ଜଗନ୍ନାଥଙ୍କ ପାଇଁ ଫୁଲମାଳ ଗୁନ୍ଥି ଠାକୁରଙ୍କୁ ଅପର୍ଣ କରିଥାଆନ୍ତି । ଥରେ ଗୋଟିଏ ଫୁଲମାଳ ବଳିପଡିବାରୁ ସ୍ନେହରେ ମହାରାଣୀଙ୍କୁ ପ୍ରଦାନ କରିଥିଲେ । ରାଣୀ ହଂସପୁରରେ ରାଜା ତାଙ୍କ ସାନଭାଇଙ୍କ ଦ୍ୱାରା ଗୁନ୍ଥାଯାଇଥିବା ଫୁଲମାଳକୁ ଦେଖି ରାଣୀଙ୍କ ସହ ସାନ ଭାଇଙ୍କର ସମ୍ପର୍କକୁ ନେଇ ସନ୍ଦେହ କଲେ । ପ୍ରତିଶୋଧ ପରାୟଣ ହୋଇ ସଙ୍ଗେ ସଙ୍ଗେ ସାନଭାଇଙ୍କୁ ହତ୍ୟାକରି ରକ୍ତ ଦେଖାଇବାକୁ ମନ୍ତ୍ରୀଙ୍କୁ ଆଦେଶ ଦେଲେ । ଚତୁର ମନ୍ତ୍ରୀ ରାଜାଙ୍କ ସାନଭାଇଙ୍କୁ ଆଣି ରଣପୁର ରାଜାଙ୍କ ପାଖରେ ରଖି ଏକ ପକ୍ଷୀର ରକ୍ତକୁ ଗଜପତିଙ୍କୁ ଦେଖାଇ ତାଙ୍କର ରୋଷ ଶାନ୍ତ କରିଥିଲେ । ପୂର୍ବରୁ ରଣପୁର ରାଜାଙ୍କର ଗଜପତିଙ୍କ ସହ ଘନିଷ୍ଠ ସମ୍ପର୍କ ଥିଲା । ସେ ପୁରୀ ଯାଇ ସମସ୍ତ ଘଟଣାର ଅନୁସନ୍ଧାନ କରି ରଣପୁର ଫେରିଆସିଥିଲେ । ଏହାପରେ ରଣପୁର ରାଜା, ନୟାଗଡ, ଖଣ୍ଡପଡା, ବାଙ୍କୀ ଏବଂ ବଡମ୍ବା ରାଜାଙ୍କୁ ଏକାଠି କରି ପ୍ରତ୍ୟେକଙ୍କର ରାଜ୍ୟରୁ ଖଣ୍ଡିଏ ଖଣ୍ଡିଏ ଅଂଚଳ ନେଇ ମାଣିକାଗୋଡା ଠାରେ ଗଜପତିଙ୍କ ସାନ ଭାଇଙ୍କୁ ରଖିଥିଲେ । ସେ ମାଣିକାଗୋଡା ଠାରେ ରହିବା ସହ ସମସ୍ତ ଗଡକୁ ସାମୟିକ

ଆବାସସ୍ଥଳୀରେ ପରିଣତ କରିଥିଲେ । ଏହି ପାଞ୍ଚୋଟି ଗଡଜାତ ରାଜାଙ୍କର ନିଷ୍ପତ୍ତି ବୋଲଗଡ ନିକଟସ୍ଥ ପଞ୍ଚୁକୋଟ ପାହାଡ ନିକଟରେ ହୋଇଥିବାରୁ ତାହାର ସ୍ମୃତି ବହନ କରି ଏହି ଗ୍ରାମର ନାମ ପଞ୍ଚୁକୋଟ ରହିଅଛି । କିଛି ବର୍ଷପରେ ଏକଦା ଦଶପଲ୍ଲା ରାଜା କେତେକଙ୍କ ମତରେ ବାଙ୍କୀ ରାଜା ତାଙ୍କ ସାନ ଭାଇଙ୍କ ସହ ପୁରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ ଯାଇଥିଲେ । ଗଜପତି ଏହି ଦୁଇ ଭାଇଙ୍କୁ ଦେଖି ନିଜର ସାନ ଭାଇ କଥା ମନେ ପକାଇ କାନ୍ଦି ପକାଇଥିଲେ । ଦଶପଲ୍ଲା ରାଜା ଏହାର କାରଣ ରାଜାଙ୍କୁ ପଚାରିବାରୁ ସେ ପୂର୍ବକଥା କହିଥିଲେ । ସାନଭାଇଙ୍କ ବିଚ୍ଛେଦରେ ଅନୁତପ୍ତ ଗଜପତିଙ୍କ କଥାଜାଣି ମନ୍ତ୍ରୀ ଲୁଚାଇ ଥିବା କଥା ପ୍ରକାଶ କରିଥିଲେ । ରଣପୁର ରାଜାଙ୍କ ସହ ଯୋଗାଯୋଗ କରିବାରେ ସାନଭାଇ ପାଞ୍ଚଗଡରେ ଥିବାର ଖବର ପାଇଲେ । ଗଜପତି ସାନଭାଇଙ୍କୁ ଫେରାଇ ନେବାକୁ ଇଚ୍ଛାକରିବାରୁ ରଣପୁର ରାଜା ନୟାଗଡ, ଖଣ୍ଡପଡା, ବାଙ୍କୀ ଏବଂ ବଡମ୍ବାର ରାଜାଙ୍କୁ ଏକାଠି କରି ଏ ବିଷୟରେ ଆଲୋଚନା କଲେ । ସମସ୍ତେ ଏଥିରେ ଆନନ୍ଦିତ ହୋଇ ଗଜପତି ଏବଂ ତାଙ୍କ ସାନଭାଇଙ୍କର ଭେଟ ପାଇଁ ଏକ ମଧ୍ୟବର୍ତ୍ତୀ ସ୍ଥାନ ସ୍ଥିରୀକୃତ କଲେ । ଯେଉଁଠାରେ ଉଭୟଙ୍କର ଭେଟ ହୋଇଥିଲା ତାହା ରଣପୁର ପୂର୍ବଦିଗରେ ଅବସ୍ଥିତ ଭେଟବର ଗ୍ରାମ । ଏହା ଅଧାବଧି ଲୋକମୁଖରେ ଶୁଣାଯାଏ । ଏହି ତଥ୍ୟ ଶ୍ରୀ ରାଜକିଶୋର ପଟ୍ଟନାୟକ ମଣ୍ଡଳସିଂହ ଗ୍ରାମର ବିଶିଷ୍ଟ ବ୍ୟକ୍ତି ତଥା ପୂର୍ବତନ ସରପଞ୍ଚ ସ୍ୱର୍ଗତ କପିଳ ଜେନାଙ୍କ ଠାରୁ ଶୁଣିଥିବାର ପ୍ରକାଶ କରିଥିଲେ ।

ପାଞ୍ଚଗଡ ଅଂଚଳର ମୁଖ୍ୟ ବ୍ରାହ୍ମଣ ଶାସନ ଦିବ୍ୟସିଂହପୁର ଶାସନ । ଏହା ସେହି ଦିବ୍ୟସିଂହ ଦେବଙ୍କ ଦ୍ୱାରା ସ୍ଥାପିତ କରାଯାଇଥିଲା । ସେ ସୋମନାଥ ଦେବଙ୍କ ସେବା ପୂଜାପାଇଁ ଜମିଦାନ କରିଥିବା କଥା ଖୋରଧା ଇତିହାସରେ ଲିଖିତ ଦିବ୍ୟସିଂହ ଦେବଙ୍କ ୧୦ମ ଦାନ ପତ୍ରରୁ ଜଣାଯାଏ ।

ସେହି ସମୟରେ ଗଜପତିଙ୍କ ପ୍ରତିନିଧି ରୂପେ ମାଣିକାଗୋଡାର ଦଳବେହେରା ମୁସଲମାନ ହେଲେ । ହିନ୍ଦୁ ଧର୍ମର ସମସ୍ତ ଜାତିର ଦେବାଦେବୀଙ୍କର ମିଳନରେ ବହୁପୂର୍ବରୁ ଅନୁଷ୍ଠିତ ଦଶହରା ପର୍ବରେ ମୁସଲମାନ ଦଳବେହେରା ପୁରୋଧା ଭାବରେ ବସି ଅପରାଜିତା ହୋମ ଅଦ୍ୟାବଧି ସମ୍ପୂର୍ଣ୍ଣ କରିଆସୁଛନ୍ତି ।

୰ କେଦାରନାଥ ମହାପାତ୍ରଙ୍କ ଲିଖିତ ଖୁର୍ଦ୍ଧା ଇତିହାସରେ ଖୋରଧା ଭୋଇ ବଂଶର ସମସ୍ତ ଗଜପତିଙ୍କର ଏକ ତାଲିକା ରହିଅଛି । ସେଥିରେ ବର୍ତ୍ତମାନ ପୁରୀ ଗଜପତି ଦିବ୍ୟସିଂହ ଦେବଙ୍କୁ ମିଶାଇଲେ ୪ ଜଣ ଦିବ୍ୟସିଂହ ଦେବଙ୍କ ନାମ ଅଛି । ଦିବ୍ୟସିଂହପୁର ଶାସନ ଏବଂ ମହାଦେବଙ୍କୁ ଯେଉଁ ଦାନପତ୍ରର ବର୍ଣ୍ଣନା ଏଥିରେ ଅଛି ସେହି ତଥ୍ୟ ଅନୁସାରେ ୧୬୮୮-୧୭୧୭ ପର୍ଯ୍ୟନ୍ତ ଗଜପତି ଥିବା ଦିବ୍ୟସିଂହ ଦେବଙ୍କ

ସମୟର ଏହି ଘଟଣା ବୋଲି ଜଣାଯାଏ । ଏହାର ବିଶଦ ଆଲୋଚନା ପରବର୍ତ୍ତୀ 'ଖୋରଧା ଗଜପତିଙ୍କର ପାଞ୍ଚଗଡରେ ଅବସ୍ଥାନ' ଅଧ୍ୟାୟରେ କରାଯିବ । ଏ ସମ୍ପର୍କରେ ଲେଖକ ଦିବ୍ୟସିଂହପୁର ନିବାସୀ ସଂସ୍କୃତିପ୍ରେମୀ ସ୍ୱନାମଧନ୍ୟ ପୂଜ୍ୟ ହରେକୃଷ୍ଣ ହୋତାଙ୍କ ସହ ଆଲୋଚନା କରିଥିଲେ । ସେ କହିଥିଲେ ତାଙ୍କ ଗ୍ରାମର ହୋତାଙ୍କ ଘରେ ଏକ ଦାନପତ୍ର (ତମ୍ବାପଟ୍ଟା) ଥିଲା । ଇଂରେଜ ମାନେ ଖୋରଧା ଦଖଲ କଲାପରେ ଖଜଣା ଆଦାୟ କରିବାକୁ ଜଣେ ଇଂରେଜ ଅଧିକାରୀ ଘୋଡାରେ ବସି ତାଙ୍କ ଗ୍ରାମକୁ ଆସିଥିଲେ । ଭୟରେ ସେତେବେଳେ ଉକ୍ତ ଦାନପତ୍ର ନିକଟସ୍ଥ ଖଣ୍ଡପଡା ରାଜ୍ୟର କୁଆହରା ଗ୍ରାମର ପୋଖରୀରେ ଫିଙ୍ଗି ଦେଇଥିଲେ । ଏହାଛଡା ବୋଲଗଡ ବାରପଲ୍ଲୀ ଅଂଚଳର ମୁଖ୍ୟ ଶିବପୀଠ ବିଜେ ଅମୃତେଶ୍ୱର ବିଜେ ଖଇରିଆକୁ ଦିବ୍ୟସିଂହ ଦେବ ପ୍ରତିଷ୍ଠା କରିଥିବା କଥା ସେହି ଗ୍ରାମର ପୁରାତନ ଲୋକଙ୍କ ଠାରୁ ଶୁଣାଯାଏ ।

ଏହିପରି ଅଧାବଧି ପାଞ୍ଚଗଡ ଉପରେ ସଂଗୃହୀତ ବିଭିନ୍ନ ତଥ୍ୟ ଉପସ୍ଥାପନା କରାଯାଇଥିଲେ ମଧ ଏ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ ବୋଲି ଲେଖକ ହୃଦ୍‌ବୋଧ କରୁଅଛି ।



## ପୁରାତନ ଶାସନ ପ୍ରଣାଳୀ

ଦଳବେହେରା ଗଡର ମୁଖ୍ୟ ଥିଲା ବେଳେ ତତ୍‌କାଳୀନ ବ୍ୟବସ୍ଥା ଅନୁସାରେ ସ୍ଥାନୀୟ ଶାସନର ପରିଚାଳନା ପାଇଁ ଗଜପତିଙ୍କଠାରୁ ଉପାଧି ଏବଂ କ୍ଷମତା ପ୍ରାପ୍ତ ଭୂଇଁମୁଳ (ଭୂମୀ ମାପକାରୀ) କଉଡୀଭଗିଆ (ଭଣ୍ଡାର ରକ୍ଷକ) ଦେଓ୍ୱାନ ମାନେ ରହିଥିଲେ । ସେମାନେ ମୁଖ୍ୟତଃ ଉଚ୍ଚକୁଳ କ୍ଷେତ୍ରିୟ ଏବଂ କରଣ କୁଳୀନ ଅଟନ୍ତି । ଅଧିକାଂଶ ମୁଖ୍ୟ ଗ୍ରାମରେ ଏମାନଙ୍କର ବାସସ୍ଥାନ ଅଛି । ଏପରି ଭାବରେ ପାଞ୍ଚଗଡର ପ୍ରତ୍ୟେକ ଗଡ ସମେତ କୋଟପଲ୍ଲୀ, ଆରିକମା, ବୁଡା, ବାରବାଟି, ଖଇରିଆ, ଘୋରଡିଆ, ରୋଳସିଂହ, ସୀମାପଲ୍ଲୀ, ନାରାୟଣୀପଡା, ବଡପଦର, ବୃନ୍ଦାବନପୁର, ଦିଘିରି, ପୁଆଣିଆ, ସାଗରଗାଁ, ପାଟବନ୍ଧ, ପିତୁକୁଳି ଏବଂ ବଡପଦର ଗ୍ରାମରେ ଭୂଇଁମୁଳ, କଉଡିଭଗିଆ ଏବଂ ଭୋଇ ଆଦି କୁଳୀନ କରଣ ପରିବାର ପାରମ୍ପରିକ ପ୍ରଥାରେ ଶାସନ କାର୍ଯ୍ୟରେ ସହଯୋଗୀ ଥିଲେ ।

ସବୁଗଡରେ ଦଳବେହେରାଙ୍କୁ ଦଳେଇ, ଦଣ୍ଡକାର ମାନେ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ମୁସଲମାନ ଶାସନରେ ୬ କାର୍ଜୀ ଶାସନର ପ୍ରଚଳନ ପ୍ରଥା ଥିଲା ।

୬ କାର୍ଜୀ ହେଲେ -

୧. ଦଳବେହେରା　　２. ଦେଓ୍ୱାନ　　୩. ଦଳେଇ

୪. କରଣ　　୫. ଭୂଇଁମୁଳ　　୬. କଉଡୀଭଗିଆ

ସମସ୍ତ ଗଡରେ ଦଳବେହେରା, ଦଳେଇ ଏବଂ କରଣଙ୍କ ନିବାସ ଥିଲା । କଳାଙ୍ଗ ଗ୍ରାମରେ ସେତେବେଳେ ଦେଓ୍ୱାନ ରହୁଥିବାରୁ ଏହାର ଏକ ଅଂଶ ଦେଓାନୀ ପାଟଣା ନାମରେ ଅଦ୍ୟାବଧି ରାଜସ୍ୱ ରେକର୍ଡରେ ଅଛି । ଏହାଛଡା ରାଣୀ ମୁକ୍ତାଦେଈଙ୍କ ଶାସନରେ ସଂପୁର ପାଇକସାହିରେ ୰ ଲକ୍ଷଣ ପଟ୍ଟନାୟକଙ୍କ ପୂର୍ବଜ ସଦାଶିବ ଦେଓ୍ୟାନ ପଟ୍ଟନାୟକ ଥିଲେ । ତାଙ୍କ ବିଷୟ ମୁକ୍ତାଦେଈ ଅଧାୟରେ ବର୍ଣ୍ଣିତ ହେବ । ଏ ସମ୍ପର୍କରେ ୰ ସାଧୁଚରଣ ଚୌଧୁରୀ ଏକ ତଥ୍ୟ ପ୍ରଦାନ କରିଥିଲେ । ପାଞ୍ଚଗଡର ଏକତା ନଷ୍ଟ କରିବାକୁ ମୋଗଲ ଶାସନ ବେଳେ ଏକ ସୁଚିନ୍ତିତ ବ୍ୟବସ୍ଥା ଅବଲମ୍ବନ କରାଯାଇଥିଲା । ୧୭୩୩ରେ ବୋଲଗଡ ଠାରେ ଗଜପତି ୨ୟ ରାମଚନ୍ଦ୍ର ଦେବ ତକୀ ଖାଁକୁ ପରାସ୍ତ କଲାପରେ ପରବର୍ତ୍ତୀ ମୋଗଲ ପ୍ରତିନିଧି ନାଏବ ନିଜାମ ମୁର୍ଷିଦ କୁଲ୍ଲୀ ଖାଁ ପାଞ୍ଚଗଡକୁ ୨ଟି ଜିଲ୍ଲା ପାଞ୍ଚଗଡ ଏବଂ ମାଣିକାଗୋଡା ନାମରେ ସୃଷ୍ଟିକରିଥିଲା । ପାଞ୍ଚଗଡ ଜିଲ୍ଲା ଏବଂ ମାଣିକାଗୋଡା ଜିଲ୍ଲାରେ ସାମିଲ ହୋଇଥିବା ସମସ୍ତ ଗ୍ରାମର ବିବରଣୀ ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କର ଲିଖିତ 'ଖୋରଧା ଦର୍ପଣ' ରେ ବର୍ଣ୍ଣନା କରିଛନ୍ତି । ତାହା ଏଥିରେ ସ୍ଥାନୀତ ହୋଇଅଛି ।

ପାଞ୍ଚଗଡରେ ପ୍ରତିଷ୍ଠିତ ବ୍ରାହ୍ମଣ ଶାସନ ମଧ୍ୟରେ ଦିବ୍ୟସିଂହପୁର ଶାସନ, ହରିପୁର ଶାସନ, ସାଗର ଗାଁ ଶାସନ, ବଗଦିହ ଶାସନ, ଖଣନ୍ତି ଶାସନ, ବୋରିକ ଶାସନ ମୁଖ୍ୟ ବ୍ରାହ୍ମଣ ଶାସନ । ଚୁଡା ଗ୍ରାମର ପୂର୍ବନାମ ଚୁଡାମଣିପୁର ଶାସନ ଥିଲେ ମଧ ରାମଚଣ୍ଡୀଙ୍କ ପ୍ରକୋପରୁ ବ୍ରାହ୍ମଣ ବଂଶ ସେଠାରେ ରହିପାରିନଥିବାର ଜନମୁଖରୁ ଶୁଣାଯାଏ । ଏହାଛଡା ବୋଲଗଡ ସମେତ ଅନ୍ୟ ମୁଖ୍ୟ ଗ୍ରାମ ମାନଙ୍କରେ କୁଳୀନ ବାହ୍ମଣମାନେ ବାସ କରନ୍ତି ।

କୌଣସି ସମୟରେ ପଶ୍ଚିମ ଓଡିଶାର ବଲାଙ୍ଗିର, କଳାହାଣ୍ଡି ଅଂଚଳକୁ ଦିବ୍ୟସିଂହପୁରୁ ଶାସନରୁ ବ୍ରାହ୍ମଣମାନେ ଯାଇ ରାଜାନୁଗ୍ରହ ଲାଭ କରି ବସ ବାସ କରି ରହିଥିଲେ । ସେଠାକାର ହୋତା, ଓତା ଏବଂ ଉଦଗାତା ସଂଜ୍ଞାଧାରୀ ବ୍ରାହ୍ମଣମାନେ ଏମାନଙ୍କର ବଂଶଧର । ବର୍ତ୍ତମାନ ସୁଦ୍ଧା ଏହି ଦିବ୍ୟସିଂହପୁର ଶାସନର ପାରିବାରିକ ସମ୍ପର୍କ ସେମାନଙ୍କ ସହ ଅଛି । ଚଳିତ ଅବଧିର ସୁପ୍ରତିଷ୍ଠିତ ସାହିତ୍ୟକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା ଏବଂ ଶ୍ରୀନିବାସ ଉଦଗାତାଙ୍କର ପୂର୍ବଜ ଦିବ୍ୟସିଂହପୁର ଶାସନର ଅଧିବାସୀ ଥିଲେ ।

ଏହାଛଡା ପାଞ୍ଚଗଡ ଅଂଚଳରେ ଖଣ୍ଡାୟତ, କରଣ, କ୍ଷେତ୍ରିୟ, ମହାନାୟକ

ଶୁଦ୍ର, ଓଡ ଚଷା ଏବଂ ଚଷା ପ୍ରଭୃତି ଜାତି ଭୁକ୍ତ ଲୋକ ଅଧିକାଂଶ ଗ୍ରାମରେ ବସବାସ କରନ୍ତି । ତାପରେ ତୈଳିକ ବଣ୍ୟ (ତେଲି) ଜାତିର ଲୋକମାନଙ୍କର ସଂଖ୍ୟା ଅଟେ । ଆରିକମା ଅଂଚଳରେ ଆଠଗଡିଆ ବାହ୍ମଣ ବସବାସ କରିଛନ୍ତି । ଏହାଛଡା ବିଭିନ୍ନ ବର୍ଣ୍ଣ ମଧରେ ବଢେଇ, କମାର, ତନ୍ତୀ, ବଣିଆ (ବସ୍ୟ ବଣିଆ ଏବଂ ସୁନାରୀ ବଣିଆ), ରାଜପୁତ, ଥୋଡିଆ, ଗୌଡୀୟ ଗୋଳା, ଗୁଡିଆ, ଗୋପାଳ, ଭଣ୍ଡାରି, ଶୁଣ୍ଡି, ଯୋଗୀ, କାଳେନ୍ଦୀ, କେଉଟ, ତିଅର, ହାଡି, ପାଣ, ଡମ, କଣ୍ଡରା, ଧୋବା, ତର୍ଓଁଳା, କନ୍ଧ, ଶବର (ଶଅର) ପ୍ରଭୃତି ଜାତି ସହ ମୁସଲମାନ ସଂପ୍ରଦାୟର ଲୋକ ବସବାସ କରୁଛନ୍ତି । ବେଣାଗାଡିଆ ଗ୍ରାମରେ ଯୋଗୀ ଶ୍ରେଣୀର ଏବଂ ଅସରଳାରେ କାଳେନ୍ଦୀ ଜାତିର ଲୋକମାନେ ବାସକରିଥାଆନ୍ତି । ସଂପୁର ଗ୍ରାମରେ କେଳା ଜାତିର ଲୋକମାନେ ବସବାସ କରନ୍ତି । ବୈଦିକ ବ୍ରାହ୍ମଣ ମାନଙ୍କ ଛଡା ପଣ୍ଡା ବ୍ରାହ୍ମଣଙ୍କ ସମେତ ସମସ୍ତ ଶିବ ମନ୍ଦିରକୁ କେନ୍ଦ୍ର କରି ମାଳୀ, ମହାପାତ୍ରଙ୍କ ସହ ଅଳ୍ପ କେତେକ ଗ୍ରାମରେ ଜ୍ୟୋତିଷ ଜାତିର ଲୋକମାନେ ବାସ କରୁଅଛନ୍ତି ।



## ପାଞ୍ଚଗଡରେ ଗଜପତିମାନଙ୍କର ଅବସ୍ଥାନ

'ଖୁରୁଧା ଇତିହାସରେ' ୰ କେଦାରନାଥ ମହାପାତ୍ର ଖୋରଧା ରାଜବଂଶର ଏକ ବଂଶାନୁବଳୀ ପ୍ରଦାନ କରିଛନ୍ତି । ତାହା ପାଠକମାନଙ୍କ ଅବଗତି ନିମନ୍ତେ ଏଠାରେ ସ୍ଥାନୀତ ହେଲା ।

୧. ଗଜପତି ରାମଚନ୍ଦ୍ର ଦେବ (ଅଭିନବ ଇନ୍ଦ୍ରଦ୍ୟୁମ୍ନ) ଖ୍ରୀ.ଅ. ୧୫୬୮-୧୬୦୦
୨. ଗଜପତି ପୁରୁଷୋତ୍ତମ ଦେବ ଖ୍ରୀ.ଅ. ୧୬୦୦-୧୬୨୧
୩. ନରସିଂହ ଦେବ ଖ୍ରୀ.ଅ. ୧୬୨୧-୧୬୪୭
୪. ବଳଭଦ୍ର ଦେବ ଖ୍ରୀ.ଅ. ୧୬୪୭-୧୬୫୬
୫. ମୁକୁନ୍ଦ ଦେବ ଖ୍ରୀ.ଅ. ୧୬୫୭-୧୬୮୯
୬. ଦିବ୍ୟସିଂହ ଦେବ (୧ମ) ଖ୍ରୀ.ଅ. ୧୬୮୯-୧୭୧୬
୭. ହରେକୃଷ୍ଣ ଦେବ ଖ୍ରୀ.ଅ. ୧୭୧୬-୧୭୨୦
୮. ଗୋପୀନାଥ ଦେବ ଖ୍ରୀ.ଅ. ୧୭୨୦-୧୭୨୭
୯. ରାମଚନ୍ଦ୍ର ଦେବ (୨ୟ) ଖ୍ରୀ.ଅ. ୧୭୨୭-୧୭୩୭
୧୦. ବୀରକେଶରୀ ଦେବ (୧ମ) (ଭାଗୀରଥି ଦେବ) ଖ୍ରୀ.ଅ. ୧୭୩୭-୧୭୯୩
୧୧. ଦିବ୍ୟସିଂହ ଦେବ (୨ୟ) ଖ୍ରୀ.ଅ. ୧୭୯୩-୧୭୯୮

୧୨. ମୁକୁନ୍ଦ ଦେବ (୨ୟ) (ପାଇକବିଦ୍ରୋହ ସମୟ) ଖ୍ରୀ.ଅ. ୧୭୯୮-୧୮୧୭
୧୩. ରାମଚନ୍ଦ୍ର ଦେବ (୩ୟ) ଖ୍ରୀ.ଅ. ୧୮୧୭-୧୮୫୫
୧୪. ଦିବ୍ୟସିଂହ ଦେବ (୩ୟ)(ନଅଙ୍କ ଦୁର୍ଭିକ୍ଷ) ଖ୍ରୀ.ଅ. ୧୮୫୫-୧୮୮୮
୧୫. ମୁକୁନ୍ଦ ଦେବ (୩ୟ) ଖ୍ରୀ.ଅ. ୧୮୮୮-୧୯୨୭
୧୬. ରାମଚନ୍ଦ୍ର ଦେବ (୪ର୍ଥ) ଖ୍ରୀ.ଅ. ୧୯୨୭-୧୯୫୭
୧୭. ବୀରକିଶୋର ଦେବ (୩ୟ) ଖ୍ରୀ.ଅ. ୧୯୫୭-୧୯୭୧
୧୮. ଦିବ୍ୟସିଂହ ଦେବ (୪ର୍ଥ) ଖ୍ରୀ.ଅ. ୧୯୭୧-ଅଦ୍ୟାବଧି

ପାଇକ ବିଦ୍ରୋହ ପରେ ଗଜପତି ମୁକୁନ୍ଦଦେବଙ୍କ ଠାରୁ ପରବର୍ତ୍ତୀ ସମସ୍ତ ଗଜପତି ପୁରୀ ଠାରେ ଅବସ୍ଥାନ କରୁଛନ୍ତି ।

ମାଦଳାପାଞ୍ଜି ଏବଂ ଅନ୍ୟ ଐତିହାସିକ ଗ୍ରନ୍ଥରୁ ମିଳିଥିବା ତଥ୍ୟ ଅନୁଯାୟୀ ଭୋଇବଂଶ ଶାସନ ସମୟରେ ମୋଗଲ ଏବଂ ଅନ୍ୟାନ୍ୟ ମୁସଲମାନଙ୍କ ଆକ୍ରମଣରୁ ପ୍ରଭୁ ଜଗନ୍ନାଥଙ୍କୁ ସୁରକ୍ଷା ପାଇଁ ୬ ଜଣ ଗଜପତି ବୋଲଗଡ (ପାଞ୍ଚଗଡ) ଏବଂ ଏହାର ସୀମାବର୍ତ୍ତୀ ଖୋରଧା ରାଜ୍ୟର ଅନ୍ୟତମ ମୁଖ୍ୟ ଗଡ ଗଡମାଣତ୍ରୀ ଠାରେ ଆଶ୍ରୟ ନେବା ସଙ୍ଗେ ଗଡମାଣିତ୍ରୀ ଏବଂ ବୋଲଗଡ ଠାରେ ଶ୍ରୀଜୀଉଙ୍କ ବିଗ୍ରହକୁ ଗୋପନରେ ରଖିଥିଲେ । ବୋଲଗଡ ଠାରେ ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କ ତକି ଖାଁ ସହ ଯୁଦ୍ଧ ଏବଂ ଖୋରଧା-ବାଙ୍କୀ ଯୁଦ୍ଧ, ଖୋରଧା-ରଣପୁର ଯୁଦ୍ଧ ଏବଂ ଖୋରଧା-ଖଣ୍ଡପଡା ଯୁଦ୍ଧ ଏହି ପାଞ୍ଚଗଡ ଏବଂ ଏହାର ସୀମାବର୍ତ୍ତୀ ଗଡମାଣତ୍ରୀ ଗଡ ଏବଂ ସିକୋ ଗଡରୁ ତତ୍‌କାଳୀନ ଗଜପତି ମାନେ ପରିଚାଳନା କରିଥିଲେ ।

ଏ ଅଞ୍ଚଳରେ ଗଜପତି ମାନଙ୍କର ଅବସ୍ଥାନ ବିଷୟରେ ପାଠକ ମାନଙ୍କ ଅବଗତି ନିମନ୍ତେ ମାଦଳା ପାଞ୍ଜି ଏବଂ ଅନ୍ୟାନ୍ୟ ଐତିହାସିକ ଗ୍ରନ୍ଥରୁ ସଂଗୃହୀତ ତଥ୍ୟ ଏଠାରେ ପ୍ରଦାନ କରଗଲା ।

## ଗଜପତି ପୁରୁଷୋତ୍ତମ ଦେବ

ଭୋଇବଂଶ ଶାସନ ବେଳେ ସର୍ବଦା ବାହ୍ୟ ଆକ୍ରମଣ ଲାଗିରହିଥିଲା ଏବଂ ଶ୍ରୀ ଜଗନ୍ନାଥଙ୍କର ସୁରକ୍ଷା ପ୍ରତି ବିପଦ ଥିଲା । ଏଣୁ ଗଜପତିମାନେ ନିଜର ତଥା ରାଜ୍ୟର ସୁରକ୍ଷା ଅପେକ୍ଷା ଜଗନ୍ନାଥ ମହାପ୍ରଭୁଙ୍କ ସୁରକ୍ଷା ପ୍ରତି ଅଧିକ ଯତ୍ନବାନ ଥିଲେ । ଫଳରେ ଅନେକ ସମୟରେ ଗଜପତି ମାନେ ଖୋରଧା ଦୁର୍ଗ ଛାଡି ଖୋରଧା ରାଜ୍ୟର ବିଭିନ୍ନ ଗଡରେ ଆଶ୍ରୟ ନେବା ସଙ୍ଗେ ସଙ୍ଗେ ଜଗନ୍ନାଥ ଏବଂ ଅନ୍ୟାନ୍ୟ ଜୀଉମାନଙ୍କୁ ଆତ୍ମଗୋପନ କରାଉଥିଲେ ।

ଏହି କ୍ରମରେ ଭୋଇବଂଶର ପ୍ରତିଷ୍ଠାତା ଗଜପତି ୧ମ ରାମଚନ୍ଦ୍ର ଦେବଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ଶାସନ ଯେତିକି ଦୁଃଖଦ ଥିଲା ତାହାଠାରୁ ଅଧିକ ଲଜ୍ଜାକର ଥିଲା । ଭୋଇବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ (୧ମ) ଙ୍କ ଶାସନ ବେଳେ ଦିଲ୍ଲୀରେ ଆକବର ଶାସନ କରୁଥିଲେ । ସେ ତାଙ୍କର ସେନାପତି ହିନ୍ଦୁରାଜା ମାନ ସିଂହଙ୍କୁ ଓଡିଶା ପଠାଇଥିଲେ । ସେତେବେଳେ ଓଡିଶା ରାଜଗାଦୀ ପାଇଁ ମୁକନ୍ଦଦେବଙ୍କ ପୁତ୍ର ଏବଂ ରାମଚନ୍ଦ୍ର ଦେବଙ୍କର ବିବାଦ ଥିଲା । ମୁକୁନ୍ଦଦେବଙ୍କ ପୁତ୍ର ଦିଲ୍ଲୀ ବାଦଶାହ ଆକବରଙ୍କ ନିକଟରେ ଓଡିଶା ରାଜଗାଦି ପାଇଁ ଫେରାଦୀ ହୋଇଥିଲେ । ମାନସିଂହ ଏହାର ସମାଧାନର ସୂତ୍ର ବାହରକରି ରାମଚନ୍ଦ୍ର ଦେବଙ୍କୁ ଓଡିଶାର ଗଜପତି କରାଇ ମୁକୁନ୍ଦ ଦେବଙ୍କ ପୁତ୍ରଙ୍କୁ ଆଳି ରାଜ୍ୟ ପ୍ରଦାନ କରିଥିବା କଥା ମାଦଳା ପାଞ୍ଜୀରୁ ଜଣାଯାଏ । ମାନସିଂହ ଦିଲ୍ଲୀ ଫେରିଲା ବେଳେ ରାମଚନ୍ଦ୍ରଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କୁ ସାଥିରେ ନେଇ ୧୫୯୪ ମସିହା ଫେବୃଆରୀ ୨୩ ତାରିଖ ଦିନ ସମ୍ରାଟ ଆକବରଙ୍କ ଦରବାରରେ ଉପସ୍ଥିତ କରାଇଥିଲେ । ମୋଗଲ ସମ୍ରାଟଙ୍କ ପରାକ୍ରମ, ବିଭବ, ଐଶ୍ୱର୍ଯ୍ୟ ଏବଂ ବିଭବ ସମ୍ବନ୍ଧରେ ଯୁବରାଜଙ୍କ ପ୍ରତ୍ୟକ୍ଷ ଅନୁଭବ ଥିଲା । ତେଣୁ ସେ ବାଦଶାହଙ୍କ ସହ ସମ୍ପର୍କ ରଖିବାକୁ ସର୍ବଦା ଚେଷ୍ଟିତ ଥିଲେ । ଇତିମଧ୍ୟରେ ଆକବରଙ୍କ ମୃତ୍ୟୁ ହୋଇଗଲା । ତାଙ୍କ ପୁତ୍ର ଜାହାଙ୍ଗିରଙ୍କ ନୀତି ବାପାଙ୍କ ନୀତି ଠାରୁ ସମ୍ପୂର୍ଣ୍ଣ ଅଲଗା ଥିଲା । ଏଣୁ ସେ ପୁରୀ ମନ୍ଦିର ଉପରେ ଆଖି ପକାଇଥିଲେ । ଫଳସ୍ୱରୂପ ୧୬୦୯ରେ ପ୍ରଥମ ମୋଗଲ ସୁବେଦାର ହାସିମ ଖାଁ ଖୋରଧା ଆକ୍ରମଣ ପାଇଁ ଯୋଜନା କଲେ । ଏହା କେବଳ ବାଦଶାହ ଜାହାଙ୍ଗିରଙ୍କୁ ସନ୍ତୋଷ ବିଧାନପାଇଁ ଉଦିଷ୍ଟ ଥିଲା ।

ଏହି ସମୟରେ କଟକ ନିକଟରେ କେଶୁଦାଶ ମାରୁ ନାମରେ ଜଣେ ରାଜପୁତ ଜାଗିରଦାର ଥିଲେ । ସେ ହିନ୍ଦୁ ହୋଇ ମଧ ମୋଗଲ ସମ୍ରାଟଙ୍କ ତୁଷ୍ଟି ସାଧନ ନିମନ୍ତେ ଜଗନ୍ନାଥ ଦର୍ଶନ ଆଳରେ ୪ ଶହ ରାଜପୁତ ସୈନ୍ୟ ଆଣି ପୁରୀ ଜଗନ୍ନାଥ ମନ୍ଦିରରେ ପ୍ରବେଶ କରି ୩ କୋଟିରୁ ଉର୍ଦ୍ଧ୍ୱ ସମ୍ପତ୍ତି ଲୁଟ୍ କରିନେଲେ ।

ଏ ଖବର ପାଇ ବହୁ ସଂଖ୍ୟକ ସୈନ୍ୟ ନେଇ ପୁରୁଷୋତ୍ତମ ଦେବ ଖୋରଧାରୁ ପୁରୀ ଅଭିମୁଖେ ଯାଇ ଶ୍ରୀ ମନ୍ଦିର ଚାରିପାଖ ଘେରାଉ କରି ପ୍ରବଳ ଆକ୍ରମଣ କରିବାରେ କେଶୁଦାଶ ମାରୁଙ୍କର ବହୁ ସୈନ୍ୟ ମରିଗଲେ । ଏତିକି ବେଳେ ବଙ୍ଗ ସୁଲତାନ କେଶୁଦାଶ ମାରୁଙ୍କ ଅବସ୍ଥାର ଖବର ପାଇ ତାଙ୍କର ସେନାପତି ଖ୍ୱାଜା ତାହିର ଅହମ୍ମଦ ବକ୍ସିଙ୍କୁ ଓଡିଶା ପଠାଇଲେ । କଟକରେ ପହଞ୍ଚି ସୁବେଦାର ହାସିମ ଖାଁଙ୍କ ଉପରେ ବିରକ୍ତ ହୋଇ ବଙ୍ଗ ଏବଂ ଓଡିଶା ସୁବେଦାରଙ୍କ ବହୁ ସୈନ୍ୟ ମିଳିତ ଆକ୍ରମଣ କରିବାକୁ ପୁରୀ ଅଗ୍ରସର ହେଲେ । ଏହାର ପରିଣତି ଭୟାବହ ହେବାର ଆଶଙ୍କା କରି ପୁରୁଷୋତ୍ତମ ଦେବ ତାଙ୍କର ମନ୍ତ୍ରୀ ବିଦ୍ୟାଧରଙ୍କ ପରାମର୍ଶରେ କେଶୁ ଦାଶଙ୍କ ସହ

ସନ୍ଧି କରିବାକୁ ବାଧ୍ୟ ହେଲେ । ଜଗନ୍ନାଥ ମହାପ୍ରଭୁଙ୍କୁ ଅଧିକ ବିପଦରେ ନପକାଇବା ପାଇଁ ପୁରୁଷୋତ୍ତମ ଦେବ ଯେଉଁ ସନ୍ଧି କଲେ ତାହା ଯେତିକି ଜଘନ୍ୟ ଥିଲା ତାଠାରୁ ଅଧିକ ଲଜ୍ଜା ଜନକ ଥିଲା । ସନ୍ଧିର ସୂତ୍ର ଅନୁସାରେ ସେ ତାଙ୍କର ଭଉଣୀଙ୍କୁ କେଶୁଦାଶଙ୍କୁ ବିବାହ ଦେବା ସଙ୍ଗେ ନିଜର କନ୍ୟାକୁ ଦିଲ୍ଲୀ ବାଦଶାହ ନିକଟକୁ ପଠାଇ ଦେଇଥିଲେ । ଏହା ସହିତ ୩ ଲକ୍ଷ ଟଙ୍କା ଦେଇଥିଲେ ଏବଂ କେଶୁଦାଶ ମାରୁ ଯୁଦ୍ଧର କ୍ଷତିପୂରଣ ବାବଦକୁ ଏକ ଲକ୍ଷ ଟଙ୍କା ଏବଂ ପାଟହାତୀ ଶେଷନାଗକୁ ନେଲେ । ଏହାପରେ ଗଜପତି ପୁରୁଷୋତ୍ତମ ମ୍ରିୟମାଣ ହୋଇ ନିଜର ପରିବାର ସହ ଆସି ଗଡମାଣିତ୍ରୀ ଗଡରେ ଉଆସ ତିଆରି କରି ରହିଥିଲେ । ଏହି ସମୟରେ ସେ ବୋଲଗଡ ବ୍ଲକର କଡବ ଗ୍ରା.ପ.ର ଖଣତି ଗ୍ରାମକୁ ଆସିଥିବା କଥା ମାଦଳା ପାଞ୍ଜୀରୁ ଜଣାଯାଏ ।

## ମାଦାଳା ପାଞ୍ଜୀ,

ଲେ.- ଡଃ. ଆର୍ତ୍ତବଲ୍ଲଭ ମହାନ୍ତି (ପ୍ରାଚୀ ସମିତି ସଙ୍କଳନ)

*- '୨୧ ଅଙ୍କେ ମକରମ ଖାଁ ଅଇଲେ । ଧନୁବାଇଶ ଦିନେ ଖୋରଧା ଘେନିଲେ । ସାକ୍ଷୀ ଗୋପାଳକୁ ଖୁଣ କଲେ । ପରମେଶ୍ୱର ଗୁରୁବାର ଠାରୁ ଯାଇ ବାଣପୁର ସୀମା ଗବମବର ଠାରେ ନଈ ଭିତରେ ଚାପରେ ବିଜେ କରୁଥିଲେ । ଶୀତଳ ମଣୋହୀ କରୁଥିଲେ । ରାଜାଯାଇ କୁଟୁମ୍ବ ଘେନି ରଣପୁର ସୀମା ମାଣିତ୍ରୀ ଗ୍ରାମରେ କଟକ କରିଥିଲେ । ଏ ମହାରାଜାଙ୍କ ଅ୨୩ଙ୍କେ ମକରମ ଖାଁ ଗଲେ । ପରମେଶ୍ୱରଙ୍କୁ ଗବ ପଦରରୁ ଆଣି ପୁରୁଷୋତ୍ତମ ବଡ ଦେଉଳରେ ବିଜେ କରାଇଲେ । ଅ୨୫ଙ୍କେ ସୁବା ଅହମଦ ବେଗ ଆଇଲେ । ଦକ୍ଷିଣକୁ ମହିମ ବାଣପୁର ଯାଏ କଲେ । ୨୭ ଅଙ୍କେ ରାଜା ଖଣତି ଗ୍ରାମରେ ଆବାହନ ହୋଇଲେ ।'*

ଏଥିରୁ ସୂଚିତ ହେଉଅଛି ଯେ ପୁରୁଷୋତ୍ତମ ଦେବ ଗଡମାଣିତ୍ରୀ ଗଡ ଠାରେ କଟକ ଅର୍ଥାତ ରାଜଧାନୀ କରି ଶେଷ ଜୀବନ କଟାଇଥିଲେ । ତାଙ୍କ ସମୟରେ ବାରମ୍ବାର ପୁରୀ ମନ୍ଦିର ଉପରେ ଆକ୍ରମଣ ହୋଇ ଥିବାର ଜଣାଯାଏ । ସେହି ସମୟରେ ସେ ବୋଲଗଡ ବ୍ଲକର ଅଧୁନା କଡବ ଗ୍ରା.ପ.ର ଖଣତି ଗ୍ରାମରେ ରହିଥିଲେ । ବର୍ତ୍ତମାନ ଗଡମାଣିତ୍ରୀଠାରେ ରାଜ ଉଆସର ଚିହ୍ନ ଅଛି । ସେଠାରେ ଜଗନ୍ନାଥ ମନ୍ଦିର ଅଛି । ଉଆସର ପ୍ରସ୍ତର ପ୍ରାଚୀର କେତେକ ଅଂଶ ଅତୁଟ ଅବସ୍ଥାରେ ଥିବା ସଙ୍ଗେ ସଙ୍ଗେ ସେତେବେଳେ ବ୍ୟବହୃତ ବଡ କୂଅ ଏବଂ ବଡ ପଥର କୁଣ୍ଡ ସେଠାରେ ଅଦ୍ୟାବଧି ରହିଅଛି । ସେହିଦିନ ଠାରୁ ଗଡମାଣିତ୍ରୀର ପ୍ରାଧାନ୍ୟ ରହିଆସିଅଛି । ଶେଷରେ ଅତି

ଦୁଃଖଦ ଅବସ୍ଥାରେ ଗଜପତି ପୁରୁଷୋତ୍ତମ ୧୬୧୨ ସେପ୍ଟେମ୍ବର ୧୧ ତାରିଖରେ ଗଡମାଣିତ୍ରୀ ଠାରେ ମୃତ୍ୟୁବରଣ କରିଥିଲେ । ଏହଛଡା ଖଣତି ଗ୍ରାମଠାରେ ଗଜପତିଙ୍କ ଦ୍ୱାରା ପ୍ରତିଷ୍ଠିତ କନକ ଦୁର୍ଗା ବର୍ତ୍ତମାନ ମଧ ପୂଜା ପାଉଛନ୍ତି । ସେତିକିବେଳେ ଗଜପତି ଏହି ଗ୍ରାମରେ ଏକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିଥିଲେ ।

## ଗଜପତି ନରସିଂହ ଦେବ

ଗଡମାଣିତ୍ରୀଠାରେ ଗଜପତି ପୁରୁଷୋତ୍ତମ ଦେବଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ନରସିଂହ ଦେବ ଗଜପତି ଆସନ ଅଳଙ୍କୃତ କରିଥିଲେ । ସେତେବେଳେ ମୋଗଲ ଯୁବରାଜ ଶାହାଜାହାନ ଓଡିଶା ଆକ୍ରମଣ କରିଥିଲେ । ପ୍ରଭୁ ଜଗନ୍ନାଥଙ୍କ ସୁରକ୍ଷା ଦୃଷ୍ଟିରୁ ନରସିଂହ ଦେବ ତାଙ୍କ ପିତାଙ୍କ ଦ୍ୱାରା ନିର୍ମିତ ଗଡମାଣିତ୍ରୀ କଟକରେ ରହିଥିଲେ । ଏ ସମ୍ପର୍କରେ ମାଦଳା ପାଞ୍ଜିରେ ବର୍ଣ୍ଣିତ ତଥ୍ୟ ନିମ୍ନରେ ଦିଆଗଲା ।

- *"ଏଥି ଉତ୍ତାରୁ ଏହାଙ୍କ ପୁଅ ନରସିଂହ ଦେବ ମହାରାଜା ହୋଇଲେ । ଏହି ମହାରାଜାଙ୍କ ଚାରି ଅଙ୍କେ ଅହମଦ ବେଗ ବୋଇଲା ଲୁଚୁଣ ରାଜାଙ୍କର କଟକ ନେଅ । ଏଥୁ ରାଜା ଅନ୍ଧାରୀ ମହିମାଠାରୁ ଭାଙ୍ଗି ମାଣିତ୍ରୀ କଟକକୁ ବିଜେକଲେ । ଚାଟି ଭିତରୁ ପରମେଶ୍ୱରଙ୍କ ଠାରୁ ବ୍ରହ୍ମ ମାନ ବାହାର କରି ଦଇତାପତି ମାଣିତ୍ରୀ କଟକେ ଶ୍ରୀନହରେ ବିଜେ କରାଇଲେ ।"*

ଏଥିରୁ ସୂଚୀତ ହୁଏ ଯେ, ସେତେବେଳେ ଓଡିଶାର ସୁବେଦାର ଅହମ୍ମଦ ବେଗ ଥିଲେ । ତାଙ୍କ ସମୟରେ ଗଜପତି ନରସିଂହ ଦେବ ଏବଂ ପ୍ରଭୁ ଜଗନ୍ନାଥଙ୍କ ବିଗ୍ରହ ମାଣିତ୍ରୀ ଗଡରେ ଥିଲେ । ଗଡମାଣିତ୍ରୀ ଠାରେ ଜଗନ୍ନାଥଙ୍କର ସେ ସମୟରେ ରଥଯାତ୍ରା ହୋଇଥିଲା ବୋଲି ଲୋକମୁଖରୁ ଶୁଣାଯାଏ । ମାଣିତ୍ରୀର ରଥଯାତ୍ରା ଦାଣ୍ଡକୁ ଏବେ ବଡଦାଣ୍ଡ ବୋଲି ଲୋକେ କହିଥାନ୍ତି ।

ଅହମ୍ମଦ ବେଗଙ୍କ ପରେ ଯୁବରାଜ ଶାହାଜାହାନ ଦକ୍ଷିଣ ଦିଗରୁ ଗୋଲକୁଣ୍ଡା ଦେଇ ଓଡିଶା ଆକ୍ରମଣ କରିଥିଲେ । ଏ ସମ୍ପର୍କରେ ମାଦଳା ପାଞ୍ଜିରୁ ନିମ୍ନୋକ୍ତ ବିବରଣୀ ମିଳେ ।

- *"୩୫ ଅଙ୍କେ ଦକ୍ଷିଣରୁ ଶାହାଜାହାନ ପାତିଶା ଅଇଲେ । ରାଜାଙ୍କ ଭେଟ ହୋଇଲା ପାତିଶାଙ୍କ ସଙ୍ଗେ ୮୦୦ ହାତୀ, ୧୪ ହଜାର ଘୋଡା, ୧,୦୦,୦୦୦ ପାଦାତି ଥିଲେ । ରାଜା ଏହାଙ୍କ ସଙ୍ଗେ ଯାଜପୁର ଯାଏ ଗଲେ । ସେଠାରୁ ହାତୀ ଶ୍ରୀପା ହୋଇ ବାହୁଡିଲେ । ପାତିଶା ପାଟଣା ଗଲେ । ପରମେଶ୍ୱର ଯେ ମାଣିତ୍ରୀ ବ୍ରହ୍ମ ବିଜେ କରିଥିଲେ । ଏଠାରେ ଶୀତଳ ଭୋଗ ମଣୋହୀ ହେଉଥିଲା । ରାଜା ଭୀମ ପୁରୁଷୋତ୍ତମ ଅଇଲାରୁ ରାତି ରାତି ବ୍ରହ୍ମ ଆଣି ବିଜେ କରି ଶୁଙ୍ଖୁଡି ଭୋଗ ମଣୋହୀ ହୋଇଲେ ।"*

ଏଥିରୁ ଜଣାଯାଏ ଯେ, ଶାହାଜାହାନଙ୍କର ସେନାପତି ଭୀମ ସିଂହ ଥିଲେ । ତାଙ୍କ ସାହାଯ୍ୟରେ ଗଡ ମାଣିତ୍ରୀରୁ ୧୬୨୪ ମସିହାରେ ଶ୍ରୀ ବିଗ୍ରହକୁ ଆଣି ପୁରୀ ଶ୍ରୀ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ଏଥିରେ ସୁବେଦାର ଅହମଦ ବେଗ୍ ବିରୋଧ କରିନଥିଲେ ।

ଅସମୟରେ ଗଜପତି ନରସିଂହ ଦେବ ଗଡମାଣିତ୍ରୀରେ ରହିବା ସହ ଜଗନ୍ନାଥଙ୍କୁ କେତେଦିନ ପାଇଁ ରଖିଥିବା ଏଥିରୁ ଜଣାଯାଏ । ଏହି ଗଡମାଣିତ୍ରୀ ଗଡ ଖୋରଧା ରାଜ୍ୟର ଏକ ମୁଖ୍ୟ ଗଡ । ଏଠାରେ ବିଜେ ରାମଚଣ୍ଡୀ ଠାକୁରାଣୀ ସମସ୍ତ ଖୋର୍ଦ୍ଧା ଜିଲ୍ଲାରେ ବିଖ୍ୟାତ ଏବଂ ଏଠାରେ ପ୍ରତିବର୍ଷ ମହାଯଜ୍ଞ ଏବଂ ରଜଯାତ୍ରା ଅନୁଷ୍ଠିତ ହୁଏ । ଗଡମାଣିତ୍ରୀ ଦଳବେହେରାଙ୍କୁ ବର୍ତ୍ତମାନର ସ୍ୱାଧୀନତା ପରେ ଗଜପତି ରାମଚନ୍ଦ୍ର ଦେବ କୌଣସି ଜମିବାଡି ସମ୍ବନ୍ଧୀୟ ମକଦ୍ଦମାରେ ଜଡିତ କରି ହଇରାଣ ହରକତ କରିବାରେ ସେ ବ୍ୟଥିତ ହୋଇ ଇଂଲଣ୍ଡ ଚାଲିଯାଇଥିଲେ । ଏହି ମର୍ମରେ ସେଠାରୁ ସେ ଏକ ପତ୍ର ୧୯୫୯ ମସିହାରେ ତାଙ୍କର ଆତ୍ମୀୟ ଅତ୍ରୀ ଦଳବେହେରାଙ୍କୁ ଲେଖିଥିଲେ । ଏ ଚିଠି ଲେଖକ ପାଠ କରିବା ସଙ୍ଗେ ତାର ନକଲ ସାଇତି ରଖିଛନ୍ତି । ଏହାଛଡା ଅଶିଦଶକରେ ଗଡମାଣିତ୍ରୀ ଠାରେ ସମାଜ ସଂପାଦକ ୰ ଡଃ. ରାଧାନାଥ ରଥ ଏବଂ ପୂର୍ବତନ ବିଧାୟକ ୰ ଗଙ୍ଗାଧର ପାଇକରାୟଙ୍କ ଉପରେ ବୋମା ମାଡ ସାରା ରାଜ୍ୟରେ ଚହଳ ସୃଷ୍ଟି କରିଥିଲା । ସେତେବେଳେ 'ଗଡମାଣିତ୍ରୀ ଭୂତ' ସଂବାଦ ଶିରୋନାମାରେ ସଂବାଦପତ୍ର ଅଙ୍କ ମଣ୍ଡନ କରିବାକୁ ପଛାଇ ନଥିଲା । ନିଖିଳ ଉତ୍କଳ ରାଜ୍ୟସ୍ତରୀୟ ପାଇକ ଆଖଡା ସମାରୋହକୁ ଗଡମାଣିତ୍ରୀର ରାମଚଣ୍ଡୀ ପୀଠରୁ ମଶାଲ ଶୋଭଯାତ୍ରା ଏବଂ ଗଡମାଣିତ୍ରୀର ଐତିହକୁ ନେଇ ପୂର୍ବତନ ମନ୍ତ୍ରୀ ତଥା ବିଧାୟକ ପ୍ରଶାନ୍ତ ନନ୍ଦଙ୍କ ପୃଷ୍ଠପୋଷକତାରେ ଅନୁଷ୍ଠିତ ଗଡମାଣିତ୍ରୀ ମହୋତ୍ସବ ଏହାର ଗୌରବ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ଗଡମାଣିତ୍ରୀର ପ୍ରତିଷ୍ଠା ବର୍ଦ୍ଧନ କରିଥିଲା । ଖୋରଧା ରାଜ୍ୟର ଏହି ମୁଖ୍ୟ ଗଡ ବୋଲଗଡ ବ୍ଲକର ସୀମା ଗୋପାଳପୁର ଗ୍ରା.ପ.ର ବାରବାଟୀ ଗ୍ରାମ ସମୀପବର୍ତ୍ତୀ ଅଟେ । ୰ ଲକ୍ଷ୍ମୀଧର ମାର୍ଥା (ଗବେଷକ) ଏବଂ ବିଶିଷ୍ଟ କବି ବଳରାମ ରଣସିଂହ ଏଇ ଗ୍ରାମର ବାସିନ୍ଦା ଅଟନ୍ତି ।

## ଗଜପତି ଦିବ୍ୟସିଂହ ଦେବ (୧୬୮୯-୧୭୧୬)

ପାଞ୍ଚଗଡ ଅଂଚଳର ସମସ୍ତ କୀର୍ତ୍ତି ଦିବ୍ୟସିଂହ ଦେବଙ୍କର ବୋଲି ଜନଶ୍ରୁତି କହେ । ପଶ୍ଚିମ ବୋଲଗଡର ୬ ବିଶ୍ୱା ଅଂଚଳରେ ଅବସ୍ଥିତ ମୁଖ୍ୟ ବ୍ରାହ୍ମଣ ଶାସନ ଦିବ୍ୟସିଂହପୁର ଶାସନ ଦିବ୍ୟସିଂହ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିବା କଥା ପୂର୍ବରୁ କୁହାଯାଇଅଛି । ବର୍ତ୍ତମାନର ଗଜପତି ଦିବ୍ୟସିଂହ ଦେବଙ୍କୁ ମିଶାଇ ୪ଜଣ ଦିବ୍ୟସିଂହ

ଦେବ ଗଜପତିଙ୍କ ନାମ ଖୋରଧା ଭୋଇ ବଂଶ ନାମାବଳୀରୁ ମିଳୁଅଛି । କେଉଁ ଦିବ୍ୟସିଂହ ଦେବଙ୍କ ସମୟରେ ଦିବ୍ୟସିଂହପୁର ଶାସନ ପ୍ରତିଷ୍ଠା ହୋଇଛି ସ୍ଥାନୀୟ ଲୋକମାନେ କହିପାରୁ ନାହାନ୍ତି । ଏହି ସନନ୍ଦ ବ୍ରିଟିଶ ଆଗମନ ସମୟରେ ନଷ୍ଟ ହୋଇଯାଇଥିବା କଥା କୁହାଯାଉଛି ।  ମାତ୍ର ଦିବ୍ୟସିଂହ ଦେବ (୧ମ)ଙ୍କର ୧୦ଟି ଦାନପତ୍ରର ବିବରଣୀ ଖୁର୍ଦ୍ଧା ଇତିହାସରେ ୰ କେଦାରନାଥ ମହାପାତ୍ର ଦର୍ଶାଇଛନ୍ତି । Inscription of the Madras Presidency ରୁ ସଂଗୃହୀତ ତଥ୍ୟକୁ ଦିଆଯାଇଛି । ୩୧ ଅଙ୍କ ବୃଷ ୩୦ ଜ୍ୟେଷ୍ଠ ଗୁରୁବାର (ତା ୨୮-୦୫-୧୭୧୩) ର ଉଲ୍ଲେଖ ଅଛି । '(୧୦) ଉକ୍ତ ଦିବସରେ ଦିବ୍ୟସିଂହ ସାମନ୍ତରାୟ ମହାପାତ୍ର ଦିବ୍ୟସିଂହପୁର ଶାସନରେ  ମହାଦେବଙ୍କ ସେବାପୂଜା ଓ ବ୍ରାହ୍ମଣ ଭୋଜନ ନିମିତ୍ତ ଦୁଇଜଣ ଗୋସାଁଇକୁ ଦାନ କରିଥିଲେ' । ଏଥିରୁ ପ୍ରମାଣ ମିଳୁଅଛି ଯେ ପାଞ୍ଚଗଡ ସହ ଦିବ୍ୟସିଂହ ଦେବ (୧ମ)ଙ୍କ ସହ ଅତୁଟ ସମ୍ପର୍କ ଥିଲା ।

## ଗୋପୀନାଥ ଦେବ (୧୭୨୦-୧୭୨୭)

ଏହି ମହାରାଜାଙ୍କ ସମୟରେ ଖୋରଧା-ବାଙ୍କୀ ଯୁଦ୍ଧ ହୋଇଥିଲା । ବାଙ୍କୀ ରାଣୀ ଶୁକ ଦେଇ ଏହି ଯୁଦ୍ଧରେ ନିଜର ସ୍ୱାମୀ ହନ୍ତାର ପ୍ରତିଶୋଧ ପାଇଁ ଖୋରଧା ରାଜାଙ୍କ ସହ ଯୁଦ୍ଧ କରି ଖୋରଧା ରାଜାଙ୍କୁ ପରାସ୍ତ କରିବା କଥା ଇତିହାସ କହେ । ଏହି ଯୁଦ୍ଧ ବିଷୟରେ ୨ଟି ତଥ୍ୟ ଅଦ୍ୟାବଧି ମିଳିଅଛି । ବେଗୁନିଆଁ ଅଂଚଳର ବଡବେରଣା ଗ୍ରାମର ପୂର୍ବର ବେହେରା ପ୍ରଧାନ ଜମିଦାର ପରିବାରର ଦାୟାଦ ତଥା 'ବେଗୁନିଆଁ ଇତିହାସ'ର ରଚୟିତା ବାଗ୍ମୀ ପ୍ରବର ଶ୍ରୀ ନଳିନୀକାନ୍ତ ମହାପାତ୍ରଙ୍କ ମତରେ - ବାଙ୍କୀ ରାଜା ଧନଞ୍ଜୟ ଭଞ୍ଜ ଖୋରଧା ରାଜାଙ୍କୁ ଅପମାନିତ କରିଥିବାରୁ ତାର ପ୍ରତିଶୋଧ ନେବା ପାଇଁ ଖୋରଧାର ପାଇକମାନେ ବାଙ୍କୀ ଅଂଚଳରେ ପ୍ରବେଶ କରି ବହୁ ଲୋକଙ୍କର ମୁଣ୍ଡ କାଟି ବେଗୁନିଆଁର କୁଶୁପଲ୍ଲୀ ଗଡ ଠାରେ ଖୋରଧା ରାଜାଙ୍କୁ ଭେଟି ସେ ଦିନ ସଂଧ୍ୟା ସମୟରେ ଭେଟି ଦେଇଥିଲେ । ଖୋରଧା ରାଜା ରାତିକ ମଧ୍ୟରେ ଏହି ସବୁ ମୁଣ୍ଡକୁ ନେଇ ଏକ ଦେଉଳ ତୋଳିବାକୁ ଆଦେଶ ଦେଲେ । ନିକଟସ୍ଥ ସିମର ଗ୍ରାମ ପୋଖରୀ ପ୍ରାଚୀରରୁ ପଥର ଆସି ରାତିକ ମଧ୍ୟରେ କୁଶୁପଲ୍ଲୀ ଟାଙ୍ଗିରେ ଏହି ପଥରରେ ମନ୍ଦିର ନିର୍ମାଣ ହୋଇ ମନ୍ଦିର ଚୂଡାରେ ଏହି ଛିନ୍ନ ମସ୍ତକ ଖଞ୍ଜି ଦିଆଗଲା । ଏହା ମୁଣ୍ଡ ଦେଉଳ ନାମରେ ଖ୍ୟାତ ।

ଖୋରଧା-ବାଙ୍କୀ ଯୁଦ୍ଧ ବିଷୟରେ ବାଙ୍କୀ ଇତିହାସର ଲେଖକ କବି କେଶରୀ ନବକିଶୋର ମହାରଣା ତାଙ୍କର 'ବାଙ୍କୀ ଇତିହାସ'ର ତଥ୍ୟ ନିମ୍ନରେ ଦିଆଗଲା ।

- "ରାଣୀ ଶୁକଦେଇ ବାଙ୍କୀ ଗଡର ରାଣୀ ତଥା ବଡମ୍ବା ରାଜକନ୍ୟା ଥିଲେ । ସେ ଅନିନ୍ଦ୍ୟ ସୁନ୍ଦରୀ ଥିଲେ । ଥରେ ପୁରୀ ଜଗନ୍ନାଥଙ୍କୁ ଦର୍ଶନ ପାଇଁ ଯାଇଥିଲା ବେଳେ ରାସ୍ତାରେ ଖୋରଧା ଗଜପତିଙ୍କ ପାଇକମାନେ ତାଙ୍କୁ ହଇରାଣ କରିଥିଲେ । ଏଥିରେ ଅତ୍ୟନ୍ତ ବ୍ୟସ୍ତ ହୋଇ ଜଗନ୍ନାଥ ଦର୍ଶନ କରି ଫେରିବା ବେଳେ ଚନ୍ଦନପୁର ଠାରେ ଗଜପତି ଗୋପୀନାଥ ଦେବ ତାଙ୍କୁ ଅଟକାଇ ଉଆସକୁ ଯିବାକୁ ନିମନ୍ତ୍ରଣ କରିଥିଲେ । ଗଜପତି ଗୋପୀନାଥ ଦେବ ଜଣେ କାମୁକ ଏବଂ ନଷ୍ଟଚରିତ୍ର ବ୍ୟକ୍ତି ଥିଲେ । ଅତୀତରେ ରଣପୁର ରାଜଜେମାଙ୍କୁ ପୁରୀ ଯିବା ପଥରେ ହଇରାଣ କରିଥିବାର ଖବର ଶୁକଦେଇଙ୍କୁ ଜଣାଥିଲା । ସେ ମଧ୍ୟ ଗୋପୀନାଥଙ୍କ ଉପରୋକ୍ତ କାର୍ଯ୍ୟକଳାପ ବିଷୟରେ ଅବଗତ ଥିଲେ । ଚନ୍ଦନପୁର ଠାରେ  ରାଣୀ ଗୋପୀନାଥ ଦେବଙ୍କ ଅନୁରୋଧକୁ ପ୍ରତ୍ୟାଖାନ କରିବାରୁ ସେ ରାଗିଯାଇ ବାଙ୍କୀର ପୂର୍ବଦିଗରେ ଥିବା ଡମପଡା ଅଂଚଳର ତାଳବସ୍ତ ଏବଂ ଅନ୍ୟାନ୍ୟ ଗ୍ରାମକୁ ଆକ୍ରମଣ କରିଥିଲେ । ବାଙ୍କୀ ରାଜା ଧନଞ୍ଜୟ ଶ୍ରୀଚନ୍ଦନ ଏହାର ପ୍ରତିରୋଧ କରିଥିଲେ । ଏହି ଯୁଦ୍ଧ ବେଳେ ରାତ୍ରିରେ ବାଙ୍କୀ ରାଜା ହଳଦିଆ ଗଡରେ ବିଶ୍ରାମ ନେଇଥିଲା ବେଳେ କୌଶଳକ୍ରମେ ଜୟମଙ୍ଗଳ ଦଳବେହେରା ଛଦ୍ମ ବେଶରେ ଶିବିରରେ ପ୍ରବେଶ କରି ବାଙ୍କୀ ରାଜାଙ୍କ ମୁଣ୍ଡକାଟି ଖୋରଧା ଗଡରେ ରାଜାଙ୍କୁ ଭେଟି ଦେଇଥିଲେ । ଏହାପରେ ଏହାର ପ୍ରତିଶୋଧ ନେବାପାଇଁ ବାଙ୍କୀ ରାଣୀ ଶୁକଦେଇ ନିଜେ ଖୋରଧା ରାଜାଙ୍କ ସହ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ ।"

ସେତେବେଳେ ଖୋରଧା ଗଜପତି ଗୋପୀନାଥ ଦେବ ନିଜ ରାଣୀ ଏବଂ ଯୁବରାଜଙ୍କ ସହ ପାଞ୍ଚଗଡର ପୂର୍ବ ଗଡ ମାଣିବନ୍ଧ ଠାରେ ଅବସ୍ଥାନ କରି ଯୁଦ୍ଧ ପରିଚାଳନା କରିବାକୁ ପ୍ରସ୍ତୁତି ଆରମ୍ଭ କରିଥିଲେ । ସେ ଖୁଣ୍ଟିଆ ଛାଉଣୀରେ ରହିଥିବା କଥା ବାଙ୍କୀ ଇତିହାସରୁ ଜଣାଯାଏ । ବର୍ତ୍ତମାନ ମାଣିବନ୍ଧର ମୁଖ୍ୟ ପରିବାର ଖୁଣ୍ଟିଆ ପରିବାର ଅଟେ । ସେଠାରେ ଗୋପୀନାଥ ଦେବଙ୍କ ପୁଅ ବସନ୍ତରେ ମୃତ୍ୟୁବରଣ କରିବାରୁ ତାଙ୍କରି ସ୍ମୃତିରେ ଗଜପତି ଶିବ ମନ୍ଦିର ନିର୍ମାଣ କରିଥିବାର ଜଣାଯାଏ । ଗୋପୀନାଥ ଦେବଙ୍କ ପୁତ୍ର ଜେନାମଣିଙ୍କ ସ୍ମୃତିରେ ଏଠାରେ ଏକ ମଣ୍ଡପ ସେହି ସମୟରେ ନିର୍ମିତ ହୋଇଥିଲେ ମଧ୍ୟ ନିକଟରେ କୌଣସି କାରଣରୁ ଏହାକୁ ଭଙ୍ଗା ଯାଇ ସେଥିରୁ ବାହାରି ଥିବା ପଥରରେ ଏକ ପ୍ରାଚୀର ନିର୍ମାଣ କରାଯାଇଥିବାର ଜଣାଯାଏ । ଏହି ଯୁଦ୍ଧରେ ଗେଡିଆପଲ୍ଲୀ ପାଇକମାନଙ୍କର ବିଶେଷ ଭୂମିକା ଥିଲା । ସେମାନେ ପ୍ରବଳ ପରାକ୍ରମୀ ଥିଲେ । ଅଦ୍ୟାବଧି ଲୋକମୁଖରେ 'ଗେଡିଆପଲ୍ଲୀ ପାଇକ ଖଣ୍ଡମଣ୍ଡଳରେ ଡାକ' ଶୀର୍ଷକ ଗୀତ ଶୁଣାଯାଏ ।

ଏହି ଯୁଦ୍ଧର ପରିସମାପ୍ତି ୧୭୧୬ ମସିହା ଅକ୍ଷୟ ତୃତୀୟା ତିଥିରେ ହୋଇଥିଲା । ବାଙ୍କୀ ସାରଣ୍ଡା ଡମପଡା ଏବଂ ବଡମ୍ବା ଗଡର ପାଇକମାନେ ଏଥିରେ ବାଙ୍କୀ ରାଣୀଙ୍କର ସହାୟକ ଥିଲେ ଏବଂ ଯୁଦ୍ଧରେ ପରାସ୍ତ ହୋଇ ଗୋପୀନାଥ ଦେବ ବନ୍ଦୀ ହେଲେ । ଶେଷରେ ଜଣେ ନାରୀ ଭାବରେ ପୁନର୍ବାର ଖୋରଧା ରାଣୀଙ୍କର ବୈଧବ୍ୟ ଅବସ୍ଥାର ଦୁଃଖ ଚିନ୍ତାକରି ଦୟାପୂର୍ବକ ରାଣୀ ଶୁକଦେଈ ଗୋପୀନାଥ ଦେବଙ୍କୁ ଛାଡିଦେଲେ । ଇତିହାସର ବିଭିନ୍ନ ମତ ଯାହାହେଉ ପଛକେ ରାଣୀ ଶୁକଦେଈଙ୍କ ବୀରତ୍ୱ ଏବଂ ଦୟାଶୀଳ ମନୋଭାବ ତାଙ୍କୁ ଓଡିଶାର ବୀରତ୍ୱ ଇତିହାସରେ ଅମର କରିଅଛି ।

ଗଜପତି ଗୋପୀନାଥ ପାଞ୍ଚଗଡର ପୂର୍ବଗଡ ମାଣିବନ୍ଧ ଠାରେ ଆଶ୍ରୟ ନେଇଥିବା କଥା ଏହି କାହାଣୀରୁ ଜଣାଯାଏ ।

## ଗଜପତି ୨ୟ ରାମଚନ୍ଦ୍ର ଦେବ (୧୭୨୭-୧୭୩୬)

### (ବୋଲଗଡରେ ଜଗନ୍ନାଥଙ୍କ ଆତ୍ମଗୋପନ ଏବଂ ରାମଚନ୍ଦ୍ର ଦେବଙ୍କ ଏଠାରେ ତକି ଖାଁ ସହ ଯୁଦ୍ଧରେ ବିଜୟ)

ଗଜପତି ୨ୟ ରାମଚନ୍ଦ୍ର ଦେବ ଓଡିଶା ଇତିହାସରେ ଏକ ଯୁଗାନ୍ତକାରୀ ଅଧ୍ୟାୟର ସ୍ରଷ୍ଟା ଅଟନ୍ତି । ତାଙ୍କ ସମୟର ଘଟଣାବଳୀର ନିଚ୍ଛକ ଚିତ୍ର ଐତିହାସିକ ଉପନ୍ୟାସ ରୂପେ ପରିଚିତ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କାର ପ୍ରାପ୍ତ 'ନୀଳଶୈଳ' ଓଡିଶାର ସର୍ବଜନାଦୃତ । 'ନୀଳଶୈଳ' ପରେ 'ନୀଳାଦ୍ରୀ ବିଜୟ' ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି ରଚନା କରିଥିଲେ । ନୀଳଶୈଳରେ ଗଜପତି ଦ୍ୱିତୀୟ ରାମଚନ୍ଦ୍ରଙ୍କ ବୋଲଗଡରେ ଆଶ୍ରୟ ଏବଂ ନୀଳାଦ୍ରୀ ବିଜୟରେ ବୋଲଗଡରେ ଜଗନ୍ନାଥଙ୍କ ଅବସ୍ଥାନର ବର୍ଣ୍ଣନା ଅଛି ।

ବୋଲଗଡ ସହ ଗଜପତି ୨ୟ ରାମଚନ୍ଦ୍ରଙ୍କ ଦେବଙ୍କ ସମ୍ପର୍କ 'ନୀଳଶୈଳ' ବିଷୟ ବସ୍ତୁର ଶେଷ ପର୍ବ ଏବଂ 'ନୀଳାଦ୍ରୀ ବିଜୟ' ର ଆରମ୍ଭ ପର୍ବ । ବୋଲଗଡ ଇତିହାସରେ ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କ ଅଧ୍ୟାୟ ଏକ ଦୀପ୍ତିମୟ ଓ ଗୌରବମୟ ଅଧ୍ୟାୟ କହିଲେ ଅତ୍ୟୁକ୍ତି ହେବନାହିଁ ।

ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କ ରାଜତ୍ୱରେ ଖୋରଧା ରାଜପରିବାରର ଆଭ୍ୟନ୍ତରୀଣ କନ୍ଦଳ ଏବଂ କୁଚକ୍ରୀ ମାନଙ୍କ ଚକ୍ରାନ୍ତ ହେତୁ ରାମଚନ୍ଦ୍ର ଦେବଙ୍କ ଜୀବନ ଆଶାତୀତ କଷ୍ଟଦାୟକ ହେବା ସଙ୍ଗେ ସଙ୍ଗେ ଅଗତ୍ୟା ସେ ବାଧ୍ୟ ହୋଇ ଖୋର୍ଦ୍ଧା ରାଜ୍ୟର ବଣ ଜଙ୍ଗଲରେ ଲୁଚିଥିଲେ । ତାଙ୍କର ଏକ ମାତ୍ର ଲକ୍ଷ ଥିଲା ଜଗନ୍ନାଥଙ୍କ ସମ୍ମାନ ରକ୍ଷା । ସେଥିପାଇଁ ପରିସ୍ଥିତିର ଚାପରେ ସେ ନିଜକୁ ହାଫିଜ କାଦର ନାମରେ

ନାମିତ କରି ମୁସଲମାନ ଧର୍ମ ଗ୍ରହଣ କରି ତତକାଳୀନ ମୋଗଲ ପ୍ରତିନିଧି ନାଏବ ନିଜାମ ମହମଦ ତକୀ ଖାଁର ପାଳିତା ଭଉଣୀ ରିଜିୟା ସହିତ ବିବାହ ପାଣିଗ୍ରହଣ କରିଥିଲେ ।

ତଥାପି ଶ୍ରୀମନ୍ଦିରରେ ଜୀଉମାନେ ସୁରକ୍ଷିତ ଅବସ୍ଥାରେ ରହିପାରିଲେ ନାହିଁ । କେବଳ ଏତିକି ନୁହେଁ ଖୋରଧା ରାଜ୍ୟ ଉପରେ ବାରମ୍ବାର ତକି ଖାଁର ଆକ୍ରମଣ ଜାରି ରହିଲା । ସେ ନିଜକୁ ପୁନର୍ବାର ହିନ୍ଦୁ ଧର୍ମକୁ ଫେରିଆସିବାକୁ ଉଦ୍ୟମ କଲେ ମଧ ବଡଦେଉଳକୁ ପ୍ରବେଶ କରିପାରିନଥିଲେ । ସେଥିପାଇଁ ବର୍ତ୍ତମାନ ଶ୍ରୀମନ୍ଦିରର ପ୍ରବେଶ ଦ୍ୱାର ଗୁମୁଟିରେ ପତିତପାବନ ମୂର୍ତ୍ତିଙ୍କର ପ୍ରତିଷ୍ଠା ସେହି କାଳରୁ ହୋଇଅଛି । ଅରୁଣ ଖମ୍ବ ନିକଟରୁ ପତିତପାବନଙ୍କୁ ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କ ଦର୍ଶନ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହି ସମୟରେ ତକି ଖାଁର ପରାଭବରୁ ଖୋରଧା ରାଜ୍ୟ ଏବଂ ଓଡିଆ ଜାତିର ଆତ୍ମା ପ୍ରଭୁ ଜଗନ୍ନାଥଙ୍କ ସମ୍ମାନ ରକ୍ଷାକରିବାକୁ ରାମଚନ୍ଦ୍ର ଦେବ ତାଙ୍କର ଅନୁଗତଙ୍କ ସହ ଆହତ ବ୍ୟାଘ୍ର ସଦୃଶ ପ୍ରତିଶୋଧ ନେବାକୁ ଯେଉଁ ଆଗ୍ନେୟ ଶପଥ ନେଇଥିଲେ ତାହାର ପୂର୍ଣ୍ଣଚ୍ଛେଦ ୧୭୩୩ ମସିହାରେ ବୋଲଗଡ ଠାରେ ପଡିଥିଲା ।

ଏ ସମ୍ପର୍କରେ ମାଦଳାପାଞ୍ଜି, ଖୁରୁଧା ଇତିହାସ, ନୀଳଶୈଳ , Lord Jagannath, History of Orissa ଏବଂ ଖୁରୁଧା ଦର୍ପଣ ପ୍ରଭୃତି ଐତିହାସିକ ଗ୍ରନ୍ଥରେ ଦିଆଯାଇଥିବା ତଥ୍ୟ ନିମ୍ନରେ ଦିଆଗଲା ।

- "*ଅ୧୦ଙ୍କ କୁମ୍ଭ ଦି୧୭ନେ ନବାବ ମହମଦ ଖାଁ ଖୋରଧା ଘେନିଛାକୁ ନୂଆଗଡ ଗଲେ । ଏଠାରୁ ବିଜେକରି ଖଣ୍ଡିଆପଡା ବୋଲଗଡ ଗଲେ । ପରମେଶ୍ୱରଙ୍କୁ ନଇରୀ ହରିକେଶ୍ୱରଙ୍କ ମଣ୍ଡପର ବିଜେ କରାଇଲେ । ଖଳିକୋଟ ସୀମା ଟିକିଲି ବିଜେ କରାଇଲେ । ନବାବ ଭାଗିରଥି କୁମାରଙ୍କୁ ଦଶପଲ୍ଲାରୁ ଅଣାଇ ରାଜାକରି ଆପଣା ନସକର ନେଇ କଟକ ଉଠିଗଲେ । ମୁକୁସୁଦାବାଦ ଗଲେ । କୁମାର ରାଜା ହୋଇ ମହ ଅଣସର ନିମନ୍ତେ ଦାରୁ ଆଣି ଶ୍ରୀପୁରୁଷୋତ୍ତମରେ ବିଜେ କରାଇଲେ । ମିଥୁନ ୩୦ ଦିନେ ଶ୍ରୀ ଠାକୁରେ ବୋଲଗଡରୁ ବିଜେ କରି ଆସି ଖୁରୁଧା ବିଜେ କଲେ । ଭାଗିରଥି କୁମାରେ ନବାବଙ୍କ ବସକର ଘେନ କଟକ ପଳାଇଗଲେ । ଶ୍ରୀଠାକୁରେ ପରମେଶ୍ୱରଙ୍କୁ ଟିକିଲି ଠାରୁ ବନ୍ଦ କରାଇ ଆସି ଶ୍ରୀଗୁଣ୍ଡିଚା ଯାତ୍ରାକଲେ ।*" (ମାଦଳାପାଞ୍ଜି ପୃଷ୍ଠା ୭୬ଲେ ୰ ଡଃ ଆର୍ତ୍ତ ବଲ୍ଲଭ ମହାନ୍ତି - ପ୍ରାଚୀ ସମିତି ସଙ୍କଳନ)

ଏ ସମ୍ପର୍କରେ ୰ କେଦାରନାଥ ମହାପାତ୍ରଙ୍କ ଖୁରୁଧା ଇତିହାସର ତଥ୍ୟ ନିମ୍ନରେ ପ୍ରଦାନ କରାଗଲା ।

ତୃତୀୟ ଖୋର୍ଦ୍ଧା ଆକ୍ରମଣ-

ଜଗନ୍ନାଥଙ୍କ ସ୍ଥାନାନ୍ତରୀକରଣ ସଂବାଦ ପାଇ ତକି ଖାଁ ପୁନର୍ବାର ଖୋରଧା ଆକ୍ରମଣ କରିବାରୁ (୧୦ଅଙ୍କ କୁମ୍ଭ ୧୭ ଦିନ ବା ୧୭୩୩ରେ) ରାମଚନ୍ଦ୍ର ଖୋରଧାରୁ ପଳାଇଯାଇ ପ୍ରଥମେ ନୟାଗଡ ପରେ ଖଣ୍ଡପଡା ଓ ବୋଲଗଡରେ ଆଶ୍ରୟ ନେଇଥିଲେ । ଜଗନ୍ନାଥଙ୍କୁ ନିରାପଦରେ ରଖିବାକୁ ହରୀଶ୍ୱର ମଣ୍ଡପରୁ ଖଲିକୋଟ ସୀମା ଟିକିଲିକୁ ପଠାଇ ଦିଆଗଲା । ତକି ଖାଁ ଭାଗିରଥି କୁମାରଙ୍କୁ ଦଶପଲ୍ଲାରୁ ଅଣାଇ ଖୋରଧାରେ ରାଜା କରି ଆପଣା ଫୌଜ ଧରି କଟକ ଚାଲିଗଲେ । ସେଠାରୁ ମୁର୍ଷିଦାବାଦ ଗଲେ ।

ଭାଗିରଥି କୁମାର ରାଜା ହେବାପରେ ମହା ଅଣସର ନିମନ୍ତେ ଦାରୁ ଅଣାଇ ଶ୍ରୀପୁରୁଷୋତ୍ତମ ବିଜେ କରାଇଲେ । ୧୭୩୩ ଖ୍ରୀଷ୍ଟାବ୍ଦରେ ଅଧିକ ଆଷାଢ ମାସ ପଡିବାରୁ ସେ ବର୍ଷ ନବକଳେବର ପାଇଁ ଦାରୁ ଅଣାଯାଇଥିଲା । ମିଥୁନ ୩୦ ଦିନ (୨୯-୬-୧୭୩୩) ରାମଚନ୍ଦ୍ର ଦେବ ପୁନର୍ବାର ବୋଲଗଡରୁ ଆସି ଖୋରଧା ଅଧିକାର କଲେ । ତାଙ୍କ ପୁଅ ଭାଗିରଥି କୁମାର ମୋଗଲ ଫୌଜ ଘେନି କଟକ ପଳାଇଗଲେ । ରାମଚନ୍ଦ୍ର ଦେବ ଟିକିଲି ଠାରୁ ଶ୍ରୀବିଗ୍ରହମାନଙ୍କୁ ଶ୍ରୀକ୍ଷେତ୍ରକୁ ଅଣାଇ ଶ୍ରୀଗୁଣ୍ଡିଚା ଯାତ୍ରା କଲେ (୨-୭-୧୭୩୩ ତାରିଖ ଦିନ ଗୁଣ୍ଡିଚା ଯାତ୍ରା ପଡିଥିଲା)

ଓଡିଶାର ସ୍ୱନାମଧନ୍ୟ ସାହିତ୍ୟିକ ୰ ସୁରେନ୍ଦ୍ର ମହାନ୍ତି ଏହି ଘଟଣାବଳୀକୁ ତାଙ୍କର ଭାଷାରେ 'ନୀଳଶୈଳ' ର ୧୩ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି ।

- 'ଏଣେ କେତେବେଳେ ,ରଣପୁର ସୀମା ମାଣିତ୍ରୀ କେତେବେଳେ ଖଣ୍ଡିଆପଡା ବୋଲଗଡ ଆଉ କେତେବେଳେ ଦାଣ୍ଡମୁକୁନ୍ଦପୁର ବା କପିଳେଶ୍ୱରପୁର ପ୍ରଭୃତି ଅଖ୍ୟାତ ପଲ୍ଲୀ ଗ୍ରାମ ମାନଙ୍କରେ ଖୋରଧା ନରପତି ନିଜର ଇଜ୍ଜତ ବଞ୍ଚେଇ ବୁଲୁଥିଲେ ।'

ଏହା ଛଡା ବୋଲଗଡରେ ଏହି ସମୟରେ ଜଗନ୍ନାଥ ମହାପ୍ରଭୁଙ୍କ ଅବସ୍ଥାନ ବିଷୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଇତିହାସ ବିଭାଗ ମୁଖ୍ୟ ଅଧାପକ ଡଃ ହିମାଂଶୁ ଶେଖର ପଟ୍ଟନାୟକ ତାଙ୍କ ରଚିତ ଗବେଷଣା ମୂଳକ ଇଂରାଜୀ ଭାଷାରେ ଲିଖିତ Lord Jagannath ର ୯୫ ପୃଷ୍ଠା ରେ ନିମ୍ନୋକ୍ତ କଥା ବର୍ଣ୍ଣନା କରିଛନ୍ତି ।

-To escape further spoliatous the Deties were secretly transfer to Banpur, Bolgarh, Tikali and Athagarh.

ଏହା ବ୍ୟତୀତ ଦ୍ୱିତୀୟ ରାମଚନ୍ଦ୍ରଙ୍କ ବିଷୟରେ ଡଃ. ହରେକୃଷ୍ଣ ମହତାବ ତାଙ୍କର ଲିଖିତ ଇଂରାଜୀ ଭାଷାରେ 'History of Orissa' ର ୩୩୨ ପୃଷ୍ଠାରେ ଦିଆଯାଇଥିବା ତଥ୍ୟ ଏଠାରେ ଦିଆଗଲା ।

- Ramachandra Dev rightly apprehended that Taqi Khan a fanatic Muslim as he may invade the temple of Jagnnath any time and may dishonour the image of Gods. Therefore he managed to remove the image of Jagannath from Puri to a place near Banpur. When Taqi Khan heards about the removal of Gods from the temple of Puri he got enraged and invads Khurda for the 3rd time to punish the Raja. Ramchandra Dev was panickly and lost no time to ran away from Khurda to Nayagarh then to Khandapada and ultimately he got shelter at **Bolgarh**. The images of Jagannath were also secretlý removed from Banpur & **Bolgarh** to Tikili a place in the southern border of the state Khalikot.

Taqi Khan deposed to Ramachandra Dev inviting the prince Bhagirathi from Daspalla and installed him on the Gudu of Khurda. Shortly after that Taqi khan left cuttack for Murisabad for temporary period. Taking advantage of his absence Ramchandra Dev out from his hiding place at **Bolgarh** and succeded in restoring his authority over Khurda. He brought back the images over Khurda. He brought back images of Jagannath from Tikalli to Puri and celebrated Car Festival in 1733.

ଏ ସମସ୍ତ ତଥ୍ୟରୁ ସୂଚୀତ ହୁଏ ଯେ ଗଜପତି ୨ୟ ରାମଚନ୍ଦ୍ର ଦେବ ବୋଲଗଡ ଠାରେ ଆତ୍ମଗୋପନ କରିବା ସହ ଜଗନ୍ନାଥଙ୍କ ବିଗ୍ରହ ଏଠାରେ ସ୍ୱଳ୍ପ ସମୟ ପାଇଁ ଲୁଚାଇ ରଖିଥିଲେ । ପରେ ଯୁଦ୍ଧର ଆଶଂକା ଥିବାରୁ ଗୁପ୍ତଭାବରେ ଠାକୁରଙ୍କୁ ଏଠାରୁ ଗଂଜାମର ଖଲିକୋଟ ସୀମା ଟିକାଲିକୁ ନେଇଥିଲେ । ଏହି ଯୁଦ୍ଧ ସମ୍ବନ୍ଧରେ ଏ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ଲିଖିତ ଖୋର୍ଦ୍ଧା ଦର୍ପଣରେ ଦେଇଥିବା ତଥ୍ୟ ଏଠାରେ ଉଦ୍ଧାର କରାଗଲା ।

ଖୁରୁଧା ଦର୍ପଣ , ବିଷୟ- ଜିଲ୍ଲା ପାଞ୍ଚଗଡ (ପୃଷ୍ଠା.- ୧୯୫-୧୯୬)

ମହାରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ସମୟରେ ମୋଗଲ ସେନାପତିମାନେ ବାରମ୍ବାର ଆକ୍ରମଣ କରିଥିଲେ ସୁଦ୍ଧା ପରାସ୍ତ ହୋଇ ଏଠା ସୈନ୍ୟ ସାମନ୍ତ ମାନଙ୍କୁ ମୋଗଲ ଦରବାରରେ ବହୁ ପ୍ରଶଂସା କରିଥିଲେ । ମହମ୍ମଦ ତକ୍‌କି, ମିରହମିର ମୁସଲମାନମାନେ ପୁର୍ନରାୟ ଖୁରୁଧା ଆକ୍ରମଣ କରି ନୂତନ ସେନା ଓ ସରଦାର ସଂଗ୍ରହ କରି ଅଠର କୋଟ ବସାଇ ମହାରଜାଙ୍କର ଜଣେ କୁଟୁମ୍ବି ଭାଇ ଭାଗୀରଥି କୁମାର ଏବଂ ବାଙ୍କୀ ରାଜା ବିଦ୍ରୋହୀ ହୋଇ ଯବନ ପକ୍ଷ ସମର୍ଥନ କରିବାରେ ମହାରାଜା ଖଣ୍ଡପଡା ରାଜାଙ୍କୁ ସାହାଯ୍ୟ ମାଗିବାରେ ସେ ଫକୀର ମଙ୍ଗରାଜ ନାମକ ଜଣେ ଯୋଦ୍ଧାଙ୍କୁ ଭ୍ରମରବର ଉପାଧି ଦେଇ ତିଗିରିଆ ଚମ୍ପତିସିଂହ (ଚମୁପତି)ଙ୍କୁ ସାହାଯ୍ୟ ମାଗିଲେ । ଏକ ଦିଗରେ ବକ୍ସି ଭ୍ରମରବର, ଏକ ଦିଗରେ ଖଣ୍ଡପଡା ରାଜା, ଅନ୍ୟ ଏକ ଦିଗରେ ଚମ୍ପତିସିଂହ ପ୍ରଭୃତି ମିଳି ଭୟଙ୍କର ଯୁଦ୍ଧ କଲେ । ମୁସଲମାନ ମାନେ ପରାସ୍ତ ହେବାରୁ ରାମଚନ୍ଦ୍ର ଦେବଙ୍କ କୁଟିମ୍ବୀ ଭାଇ ରାଜ୍ୟ ଛାଡି ପଳାଇଗଲେ । ବାଙ୍କୀ ରାଜାଙ୍କ ଶୀର ଛେଦନ କରାଗଲା ।

* * * * * * * * * * * *

ଏହି ସମସ୍ତ ଐତିହାସିକ ବିବରଣୀରେ ବୋଲଗଡ ଠାରେ ରାମଚନ୍ଦ୍ର ଦେବଙ୍କ ଆତ୍ମଗୋପନ ତଥା ଜୀଉ ମାନଙ୍କ ଅବସ୍ଥାନ ବିଷୟ ଉଲ୍ଲେଖ ଥିଲେ ମଧ ଅଦ୍ୟାବଧି ତାହାର ଉପଯୁକ୍ତ ମୂଲ୍ୟାୟନ ଓଡିଶା ଇତିହାସରେ ହୋଇନାହିଁ ।

ବର୍ତ୍ତମାନ ବୋଲଗଡ ଗ୍ରାମ କେନ୍ଦ୍ରସ୍ଥଳରେ ଜଗନ୍ନାଥ ମଣ୍ଡପ ବିଦ୍ୟମାନ । ତାହା ପୂର୍ବରୁ ଏକ ବୌଦ୍ଧ ବିହାର ଥିଲା । ସେହିଠାରେ ସେତେବେଳେ ଠାକୁରଙ୍କୁ ରଖାଯାଇଥିଲା । ଏଠାରେ ରାମଚନ୍ଦ୍ର ଦେବଙ୍କର ଯୁଦ୍ଧ ପୂର୍ବରୁ ଖଲିକୋଟ ସୀମା ଟିକାଲିକୁ ଶ୍ରୀଜୀଉଙ୍କୁ ସ୍ଥାନାନ୍ତରିତ କରାଯାଇଥିଲା । ବୋଲଗଡ ଠାରେ ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କର ତକି ଖାଁ ସହ ହୋଇଥିବା ଯୁଦ୍ଧର ବିବରଣୀ ଲେଖକ ସ୍ଥାନୀୟ ବାମନ ହାଇସ୍କୁଲ ମୁଖପତ୍ର 'ବାମନ ପ୍ରଦୀପ' ରେ ୩୦ ବର୍ଷ ତଳେ ବୋଲଗଡ ଇତିହାସ ପ୍ରବନ୍ଧରେ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧ ବୋଲଗଡ ଇତିହାସ ଉପରେ ସର୍ବପ୍ରଥମ ଲିଖିତ ପ୍ରବନ୍ଧ । ପାଠକ ମାନଙ୍କ ଅବଗତି ନିମନ୍ତେ ଏହି ପ୍ରବନ୍ଧରେ ଲିଖିତ ଉପରୋକ୍ତ ଯୁଦ୍ଧର ବିବରଣୀ ନିମ୍ନରେ ଦିଆଗଲା ।

## ବୋଲଗଡ ଇତିହାସ

(ପତ୍ରିକା - ବାମନ ପ୍ରଦୀପ - ୧୯୭୫-୭୬, ପୃଷ୍ଠା - ୧୭)

ଭୋଇବଂଶର ଧର୍ମାନ୍ତରିତ ହୋଇଥିବା ରାଜା ଦ୍ୱିତୀୟ ରାମଚନ୍ଦ୍ର ଦେବ କଟକ ଲାଲବାଗ ଶାସକ ମୋଗଲ ପ୍ରତିନିଧି ମହମ୍ମଦ ତକି ଖାଁ କବଳରୁ ହିନ୍ଦୁ ଧର୍ମ ସଂସ୍କୃତିର ପ୍ରଧାନ ଆରାଧ ଦେବତା ଜଗନ୍ନାଥଙ୍କୁ ସୁରକ୍ଷା ପାଇଁ ପ୍ରବଳ ଉଦ୍ୟମ କରିଥିଲେ । ତକି ଖାଁର ପାଳିତ ଭଉଣୀ ରିଜିୟା ବିବିର ପ୍ରେମରେ ପଡି ମୁସଲମାନ ଧର୍ମ ଗ୍ରହଣ କରିବା ଫଳରେ ନିଜର ବିବାହିତା ପତ୍ନୀ ବାଣପୁରର ରାଜକନ୍ୟା ପାଟମହିଷୀ ଲଳିତା ମହାଦେଈ ତାଙ୍କୁ ପରିତ୍ୟାଗ କରିଥିଲେ । ତତ୍କାଳୀନ ଓଡିଶାର ସଂକୀର୍ଣ୍ଣ ରାଜନୈତିକ ଦ୍ୱନ୍ଦ୍ୱ ତଥା କେତେକ ସ୍ୱାର୍ଥପର କ୍ଷମତା ଲିପ୍ସୁ ହୀନଚକ୍ରାନ୍ତକାରୀଙ୍କ ଉଦ୍ୟମକୁ ପଣ୍ଡ କରିବା ଉଦ୍ଦେଶ୍ୟରେ ରାମଚନ୍ଦ୍ର ଦେବ ପ୍ରତାପରୁଦ୍ର ଦେବଙ୍କ ସମୟରେ ଶ୍ରୀଚୈତନ୍ୟ ଦେବ ଓଡିଶାରେ ସୃଷ୍ଟି କରିଥିବା ପତିତପାବନ ଚିନ୍ତାଧାରାକୁ କାର୍ଯ୍ୟକାରି କରି ନିଜକୁ ପୁନର୍ବାର ହିନ୍ଦୁ ଧର୍ମକୁ ଫେରାଇ ଆଣିବାରେ ସଫଳ ହୋଇଥିଲେ । ଜଗନ୍ନାଥଙ୍କ ପରମ୍ପରା ରକ୍ଷା ପାଇଁ ତକି ଖାଁ ସହ ରାମଚନ୍ଦ୍ର ଦେବଙ୍କ ଯୁଦ୍ଧ ଆରମ୍ଭ ବେଳେ ବିଶ୍ୱସ୍ତ ପଣ୍ଡାମାନଙ୍କ ସାହାଯ୍ୟରେ ରାତା ରାତି ଜଗନ୍ନାଥଙ୍କୁ ଶ୍ରୀମନ୍ଦିର ସ୍ଥାନାନ୍ତରିତ କରିଥିଲେ । ମାତ୍ର ଏତିକି ବେଳେ କାମଚଳା ସାମନ୍ତ ରାଜା ସେନାପତି ବକ୍ସି ବେଣୁ ଭ୍ରମରବର ରାୟ ଏବଂ ସର୍ବୋପରି ରାଣୀ ଲଳିତା ମହାଦେଈଙ୍କ ଚକ୍ରାନ୍ତ ରାମଚନ୍ଦ୍ର ଦେବଙ୍କ ବିଜୟରେ ପ୍ରଧାନ ଅନ୍ତରାୟ ସୃଷ୍ଟି କରିବାରୁ ସେ ବାଧ ହୋଇ ଆତ୍ମଗୋପନ କରିଥିଲେ । ତକୀ ଖାଁ ନିଜର ଧର୍ମ ବିରୋଧି ଲାଳସା ପୂର୍ଣ୍ଣକରିବା ସକାଶେ ଓ ନିଜ ଭଉଣୀର ସମ୍ମାନ ରକ୍ଷା କରିବା ପାଇଁ ଗୁପ୍ତଚର ଦ୍ୱାରା ରାମଚନ୍ଦ୍ର ଦେବଙ୍କର ସଂଧାନ ନେବାକୁ ସବୁବେଳେ ଲାଗିଲା । ଏହି ସମୟରେ ଗୁପ୍ତଚର ଠାରୁ ରାମଚନ୍ଦ୍ର ଦେବ ଦଶପଲ୍ଲାରେ ଥିବାର ଖବର ପାଇ ସେ ସୈନ୍ୟ ନେଇ ନୟାଗଡ ଦେଇ ଦଶପଲ୍ଲା ଯାତ୍ରା କଲା । ସେଠାରେ ନିରାଶ ହୋଇ ଖଣ୍ଡପଡା ଦେଇ ଫେରିବା ରାସ୍ତାରେ ବୋଲଗଡ ଠାରେ ରାଜା ଲୁଚି ରହିଥିବାର ନିଶ୍ଚିତ ଖବର ପାଇ ତକି ଖାଁ ବୋଲଗଡ ଅଭିମୁଖେ ଉତ୍ତର ପଶ୍ଚିମ ଦିଗରୁ ସୈନ୍ୟ ଚାଳନା କଲା ।

ସେତେବେଳେ ବର୍ଷାଋତୁ ତଥା ରଥଯାତ୍ରାର ପୂର୍ବସମୟ । ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ବିଗ୍ରହ ନଥିବାରୁ ସର୍ବୋପରି ଠାକୁର ରାଜାଙ୍କର ଅନ୍ତର୍ଦ୍ଧାନ ଯୋଗୁଁ ତତକାଳୀନ ହିନ୍ଦୁ ସମାଜରେ ଏକ ବିରାଟ ଅସନ୍ତୋଷର ବିଦ୍ରୋହ କୁହୁଳୁ ଥିଲା । ସେହି ବର୍ଷ ରଥଯାତ୍ରା କାର୍ଯ୍ୟ ସମାପନ କରିବା ଉଦ୍ଦେଶ୍ୟରେ ଏବଂ ହିନ୍ଦୁ ସମାଜର ବିଦ୍ରୋହ ମୂଳକ ମନୋଭାବ ଦୂରକରିବା ପାଇଁ ତକି ଖାଁ ଚତୁରତାର ସହିତ ରାମଚନ୍ଦ୍ର ଦେବଙ୍କ ଅନ୍ୟତମ ପୁତ୍ର ଭାଗିରଥି କୁମାରଙ୍କୁ ନାମକୁ ମାତ୍ର ରାଜା କରାଇ ତାର ହୀନ କୁଟନୀତି

କାର୍ଯ୍ୟକାରୀ କରିବା ପାଇଁ ତାଙ୍କ ଜରିଆରେ ନବ କଳେବର ପାଇଁ ଆସିଥିବା ଦାରୁରେ ନିର୍ମିତ ବିଗ୍ରହ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରିଥିଲେ ।

ଇତିମଧ୍ୟରେ ରାମଚନ୍ଦ୍ର ଦେବ ବୋଲଗଡ ଠାରେ ନିଜର ସୁଦୃଢ ଆସ୍ଥାନ ଜମାଇ ରଣପୁର, ବାଙ୍କୀ, ଖଣ୍ଡପଡା, ନୟାଗଡ, ବଡମ୍ବା ରାଜା ଏବଂ ଖୋରଧାର ସମସ୍ତ ଗଡାଧୀଶଙ୍କ ସହାୟତାରେ ତକୀ ଖାଁ ସହ ପ୍ରବଳ ଆକ୍ରମଣର ସମ୍ମୁଖୀନ ହୋଇଥିଲେ । ଏହି ଯୁଦ୍ଧ ବୋଲଗଡ ପଶ୍ଚିମ ଦିଗରେ ବହିଯାଇଥିବା ଲୁଣିଆ ନାଳ ସେତେବେଳର ଦଶହରା ପଡିଆ (ବର୍ତ୍ତମାନ ଦଶଦୋଳ ପଡିଆ) ଠାରେ ହୋଇଥିଲା । ଶେଷରେ ଯୁଦ୍ଧରେ ତକୀ ଖାଁର ପରାଜୟ ହେଲା । ରାମଚନ୍ଦ୍ର ଦେବ ଖୋରଧା ସିଂହାସନ ଆରୋହଣ କଲେ । ତକୀ ଖାଁ ଯୁଦ୍ଧରେ ହାରିଯାଇ ମୋଗଲ ସାମ୍ରାଜ୍ୟର ପୂର୍ବାଞ୍ଚଳର ପ୍ରଧାନ କେନ୍ଦ୍ର ମୁର୍ଶିଦାବାଦକୁ ଚାଲିଯାଇଥିଲେ । ଉକ୍ତ ଯୁଦ୍ଧରେ ଶତ୍ରୁପକ୍ଷର ପରାଜୟ ଯୋଗୁଁ ଯୁଦ୍ଧ ଭୂଇଁର ନାମ ଅସୁରଡିପ ନାମରେ ସେ କାଳରୁ ନାମିତ ହେଲା । ଲୋକମୁଖରେ ବର୍ତ୍ତମାନ ଏହାର ନାମ ଅସୁରଡିପା ଏବଂ ଗ୍ରାମବାସୀ ଏହାକୁ ଶ୍ମଶାନ ଭାବରେ ବ୍ୟବହାର କରୁଛନ୍ତି । ଯୁଦ୍ଧରେ ଜୟ ଲାଭ କରି ସେହିବର୍ଷ (୧୭୩୩) ଜୁନ ୨୯ ତାରିଖରେ ଖୋରଧା ସିଂହାସନ ଆରୋହଣ କରିଥିଲେ । ରାମଚନ୍ଦ୍ର ଦେବ ସେତେବେଳେ ଜଗନ୍ନାଥଙ୍କୁ ବୋଲଗଡ ଠାରେ ରଖିଥିଲେ । ଖୋରଧା ସିଂହାସନ ପାଇବା ପରେ ଜଗନ୍ନାଥଙ୍କୁ ଶ୍ରୀମନ୍ଦିରରେ ପୁନଃ ପ୍ରତିଷ୍ଠା କରାଇ ସେହିବର୍ଷ ରଥଯାତ୍ରା ସମ୍ପନ୍ନ କଲେ । ତକୀ ଖାଁ ଓଡିଶା ଫେରିଲା ନାହିଁ । ମୁର୍ଶିଦ କୁଲି ଖାଁ ଓଡିଶାର ଶାସକ ରୂପେ ନିଯୁକ୍ତି ପାଇ କଟକ ଲାଲବାଗରେ ରହିଲେ । ମୁର୍ଶିଦ କୁଲି ଖାଁ ତକୀ ଖାଁ ଅପେକ୍ଷା ଅଧିକ ଦୟାଶୀଳ ଥିଲେ । ସେ ତକି ଖାଁ ଶାସନ ନୀତିର ସମ୍ପୂର୍ଣ୍ଣ ପରିବର୍ତ୍ତନ କରି ହିନ୍ଦୁମାନଙ୍କ ସହ ସୁସମ୍ପର୍କ ରଖି ଶାସନ ପରିଚାଳନା କଲେ । ରାମଚନ୍ଦ୍ର ଦେବଙ୍କ ସହ ସନ୍ଧି କରିଥିଲେ । ସେ ସନ୍ଧିଫଳରେ ତକୀ ଖାଁ ଦ୍ୱାରା ନାମକୁ ମାତ୍ର ରାଜା ହୋଇଥିବା ଭାଗୀରଥି କୁମାରଙ୍କୁ ବୋଲଗଡକୁ ଅଣାଯାଇ ଶାସନ ଦାୟୀତ୍ୱ ଦିଆଗଲା । ଭାଗୀରଥି ଦେବଙ୍କ ଦ୍ୱାରା ପୁରୀରେ ନିର୍ମିତ ବିଗ୍ରହ ବୋଲଗଡ ଆସିଲେ । ମାତ୍ର ବୋଲଗଡ ଠାରେ ତକୀ ଖାଁର ରାମଚନ୍ଦ୍ର ଦେବଙ୍କ ସହ ହୋଇଥିବା ଯୁଦ୍ଧରେ ରଣପୁର ରାଜା ବିଶେଷ ସାହାଯ୍ୟ କରିଥିବାରୁ ତାଙ୍କର ଅନୁରୋଧ କ୍ରମେ ଏହି ଜୀଉ ବୋଲଗଡରୁ ରଣପୁରକୁ ସ୍ଥାନାନ୍ତରୀତ ହେଲେ । ପୂର୍ବେ ରଣପୁର ଗଡରେ ପୂଜିତ ହେଉଥିବା ଜଗନ୍ନାଥଙ୍କୁ ବୋଲଗଡ ଅଣାଯାଇ ତାଙ୍କର ସେବା ପୂଜା କରାଗଲା । ଏହିପରି ୩ଥର ଠାକୁର ବୋଲଗଡରେ ସ୍ଥାପିତ ହୋଇଥିବାରୁ ଏଠାରେ ପୂଜିତ ଜଗନ୍ନାଥ ତୃତୀୟାଦେବ ହେଲେ । ଏହାର ପବିତ୍ର ସ୍ମୃତି ରକ୍ଷା ପାଇଁ ବୋଲଗଡ ମୌଜାର ଅର୍ଦ୍ଧେକ ଅଂଶକୁ ତୃତୀୟାପଡା ମୌଜା ନାମରେ ନାମିତ କରି ରାଜସ୍ୱ ନଥିରେ ସ୍ଥାନିତ ହେଲା । ତାଙ୍କର

ସେବା ପୂଜା ନିମନ୍ତେ ୬ବାଟି ୧୦ ମାଣ ଜମି ଗଜପତି ଖଞ୍ଜିଥିଲେ । ବୀର ହରେକୃଷ୍ଣପୁର ଶାସନର ହରେକୃଷ୍ଣ ରାୟଗୁରୁ ମହାପାତ୍ରଙ୍କୁ ଅଣାଯାଇ ତାଙ୍କର ସେବାପୂଜା ନିମନ୍ତେ ନିଯୁକ୍ତି ଦିଆଗଲା । ରାତ୍ର ବଡସିଂହାର ଭୋଗ ପାଇଁ ଜଣେ ଗୁଡିଆ ଏବଂ ଅନ୍ୟାନ୍ୟ ସେବା ପାଇଁ ଧୋବା, ବାରିକ ଏବଂ ଗଉଡ ଜାତିର ଲୋକଙ୍କୁ ନିଯୁକ୍ତି ଦିଆଯାଇଥିଲା । ସେହି ସମୟରେ ବାଙ୍କୋଇ ଗ୍ରାମରେ ସାରଙ୍ଗ କବିର ନାମରେ ଜଣେ କବି ଜନ୍ମ ଗ୍ରହଣ କରିଥିଲେ । ସେ 'କଳିଯୁଗ ପୁରାଣ' ନାମରେ ଏକ କାବ୍ୟ ରଚନା କରିଥିଲେ । ଉକ୍ତ କାବ୍ୟରେ ଗଜପତି ରାମଚନ୍ଦ୍ର ଦେବଙ୍କ ବୋଲଗଡ ଅଂଚଳର ଆରିକମା ଗ୍ରାମରେ ରାତ୍ରିଯାପନ ବିଷୟରେ ବର୍ଣ୍ଣନା ଅଛି । ସେତେବେଳେ ରାମଚନ୍ଦ୍ର ଦେବ ଆରିକମାର ଖଣ୍ଡାଧୁଆ ପୋଖରୀ ହୁଡାର ଓସ୍ତ ଗଛରେ ଘୋଡା ବାନ୍ଧି ସେଠାରେ ରାତ୍ରୀଯାପନ କରିଥିଲେ । ସକାଳୁ ଉକ୍ତ ପୋଖରୀରେ ସ୍ନାନକରି ଶଙ୍କରଶ୍ୱେର ମହାଦେବଙ୍କୁ ଦର୍ଶନକରି ଅଶ୍ୱପୃଷ୍ଠରେ ନରସିଂହପୁର ଯାତ୍ରାକରିଥିଲେ ।

ଏହାଛଡା ଗଜପତି ରାମଚନ୍ଦ୍ର ଦେବ ନିଜର ସେନାପତି ବକ୍ସି ବେଣୁଭ୍ରମରବରଙ୍କୁ ଖୋରଧା ଗଡରେ ହତ୍ୟାକରି ଜଣେ ବିଶ୍ୱସ୍ତ ମୁସଲମାନଙ୍କୁ ସେନାପତି ଦାୟୀତ୍ୱ ଦେଇଥିଲେ ।

***********

ଏହି ସମସ୍ତ ବିବରଣୀ ସତୁରୀ ଦଶକରେ ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ୰ ଗୋପୀନାଥ ମହାନ୍ତିଙ୍କ ପୁତ୍ର ଅଧ୍ୟାପକ ଅମୃତନାଥ ମହାନ୍ତିଙ୍କ ଦ୍ୱାରା ଲିଖିତ ଏବଂ ସ୍ୱର୍ଗତ ବାଳକୃଷ୍ଣ କରଙ୍କ ଦ୍ୱାରା ସମ୍ପାଦିତ 'ସହକାର' ପତ୍ରିକାରୁ ଲେଖକ ପାଠ କରିଥିଲେ ।

ସାରଙ୍ଗଧର ବଜ୍ରଧର ନରେନ୍ଦ୍ର (୧୭୨୭-୧୭୫୪) ସେତେବେଳେ ରଣପୁର ରାଜା ଥିଲେ । ସେ ଜଣେ ଦକ୍ଷ ବଳିଷ୍ଠକାୟ ଯୋଦ୍ଧା ଥିବା 'ରଣପୁର ଇତିହାସ'ର ଲେଖକ ସତ୍ୟବାଦୀ ବଳିଆରସିଂହ ସେଥିରେ ବର୍ଣ୍ଣନା କରିଛନ୍ତି । କିନ୍ତୁ ଗଜପତି ରାମଚନ୍ଦ୍ର ଦେବଙ୍କ ସହ ସାରଙ୍ଗଧରଙ୍କ ସମ୍ପର୍କ ଏବଂ ବୋଲଗଡର ଜଗନ୍ନାଥଙ୍କ ରଣପୁରକୁ ସ୍ଥାନାନ୍ତର ବିଷୟରେ କୌଣସି ତଥ୍ୟ ଶ୍ରୀ ବଳିଆର ସିଂହ ରଣପୁର ଇତିହାସରେ ବର୍ଣ୍ଣନା କରିନାହାନ୍ତି । ଏହା ଅନୁସନ୍ଧାନ ସାପେକ୍ଷ । ମାତ୍ର 'ରଣପୁର ଇତିହାସ'ର ୫୬ ପୃଷ୍ଠାରେ ଉଲ୍ଲେଖ ଅଛି ଯେ, "ଓଡିଶାର ଗଜପତି ବୀରକିଶୋର ଦେବଙ୍କ ସମସ୍ତ ୪ଅଙ୍କ ମକର ୧୫ ଦିନେ ପୌଷ ପୂର୍ଣ୍ଣମୀ ଶୌରୀବାସରେ ପୁଷ୍ୟାନକ୍ଷତ୍ର କକଡା ଚନ୍ଦ୍ରଗ୍ରହଣ ସମୟେ ତୃତୀୟା ଦେବଙ୍କ ଦେଉଳ ଭିତରେ ଗୋସାଁଇ ମହାପ୍ରଭୁଙ୍କ ଠାରୁ ସାରଙ୍ଗଧର ବଜ୍ରଧର ନରେନ୍ଦ୍ର (ରଣପୁର ରାଜା) ହରିନାମ ଗ୍ରହଣ କରିଥିଲେ" । ଅନୁମାନ ଏ ଘଟଣା ବୋଲଗଡ ତୃତୀୟ ଦେବଙ୍କ ଦେଉଳ ଭିତରେ ହୋଇଥାଇପାରେ । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ।

ରାମଚନ୍ଦ୍ର ଦେବ ୧୭୨୭ରୁ ୧୭୩୬ ପର୍ଯ୍ୟନ୍ତ ଓଡିଶାର ଗଜପତି ଥିଲେ । ତାପରେ ବୀରକିଶୋର ଦେବ ଓଡିଶାର ଗଜପତି ୧୭୩୬ ରୁ ୧୭୯୩ ପର୍ଯ୍ୟନ୍ତ ଶାସନ କରିଥିଲେ । ବୀରକିଶୋର ଦେବଙ୍କର ୪ଅଙ୍କରେ ଏହି ଘଟଣା ଘଟିଥିଲା । ଏହା ୧୭୪୦ ମସିହା ହୋଇଥିବା ଅନୁମିତ ହୁଏ । କେଉଁ ତୃତୀୟା ଦେବଙ୍କ ଦେଉଳରୁ ରଣପୁର ରାଜା ଦୀକ୍ଷା ନେଇଥିଲେ ସେ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ।

ବର୍ତ୍ତମାନ ଅନୁଧାନରୁ ଜଣାଯାଇଛି ଯେ, ୧୯୦୭ ମସିହାରେ ବୋଲଗଡ ଗ୍ରାମରେ ଏକ ବିରାଟ ଘରପୋଡି ହୋଇଥିଲା । କେବଳ ତୃତୀୟାପଡା ଚୌଧୁରୀ ସାହି ବ୍ୟତିତ ସମସ୍ତ ଗ୍ରାମ ଧ୍ୱଂସ ପାଇଥିଲା । ସେତିକି ବେଳେ ଜଗନ୍ନାଥଙ୍କ ଚାଳଘର ସହ ଠାକୁର ଅଗ୍ନିରେ ନିର୍ବାପିତ ହୋଇଯାଇଥିଲେ । ବର୍ତ୍ତମାନର ଦୃଶ୍ୟମାନ ଠାକୁର ନିକଟସ୍ଥ ବ୍ରଜମୋହନପୁର ମୌଜାର (ଡାକନାମ ବେଗୁନିଆଁ ପଡା) ଦଣ୍ଡାରୁ ନିମ୍ବଗଛ କଟାଯାଇ ବିଧାନପୂର୍ବକ ଓଡଗାଁର କାରିଗର ମାନଙ୍କ ଦ୍ୱାରା ନିର୍ମାଣ କରାଯାଇ ନୂତନ ଭାବରେ ଚାଳଛପର ମଣ୍ଡପ ନିର୍ମାଣ କରାଯାଇ ଠାକୁରଙ୍କୁ ସ୍ଥାପନ କରାଯାଇଥିଲା । ଁ ବଳଭଦ୍ର ପରମଗୁରୁ, ଁ ଆର୍ତ୍ତ ଅଧିକାରୀ, ଁ କସ୍ତୁରୀ ମହାପାତ୍ର, ଗଙ୍ଗାଧର ମହାପାତ୍ର, ବିହାରୀ ମହାପାତ୍ର ପ୍ରଭୃତି ମାର୍ଫତଦାର ମାନେ ଏହାର ଦାୟୀତ୍ୱ ବହନ କରିଥିଲେ । ଏହି କାର୍ଯ୍ୟରେ ଗ୍ରାମର ତତ୍କାଳୀନ ମୁଖ୍ୟ ଁ ହଟ ସାମନ୍ତରା, ନଟବର ଚୌଧୁରୀ, ରାହସ ପରିଡା, ଜଗନ୍ନାଥ ପରିଡା, ଚିନ୍ତାମଣି ସୁବୁଦ୍ଧି, ପୁରୁଷୋତମ ବିଧାର, ଘନଶ୍ୟାମ ପଟ୍ଟନାୟକ, ମହନ୍ତ ଦୟାରାମ ଦାସ ଏବଂ ଦଳବେହେରା ପିତାମ୍ବର ପଣ୍ଡିମ କବାଟ ପ୍ରମୁଖ ମୁଖ୍ୟ ସହଯୋଗୀ ଥିଲେ ।

ଏହି ଚାଳଛପର ଘର ତିଆରି ପାଇଁ ଗଡମାଣିତ୍ରୀ ପଥର ଖଣିରୁ ପଥର ଆସିଥିଲା । ଏହି ପଥର ଖୁଣ୍ଟ ୧୫ ଫୁଟ ଲମ୍ବ ଏବଂ ମୁଳ ୫ ଫୁଟ ଗୋଲାଇ ଓସାର ଥିଲା । ବୋଲଗଡ ବନ୍ଧସାହିର ଖଗା ପ୍ରଧାନ ଏହିପରି ବିଶାଳ ପଥର ଖୁଣ୍ଟ ସବୁକୁ କାହାରି ସାହାଯ୍ୟ ନନେଇ ନିଜ କାନ୍ଧରେ ଡେରି ସିଧା ସଳଖ ଭାବରେ ପକାଇଥିବାର ପ୍ରତ୍ୟକ୍ଷ ଦର୍ଶୀଙ୍କ ଠାରୁ ଶୁଣାଯାଏ । ସେ ବଳଶାଳୀ ଲୋକଥିଲେ । ଁ ବାମନ ମହାପାତ୍ରଙ୍କର ଗୋଟିଏ ମୁହାଣ ବନ୍ଧାଇ ଅଠର ଜଣଙ୍କର ମଜୁରୀ ଏକା ପାଇଥିବାର ଜଣାଯାଏ ।

ପୁନଶ୍ଚ ଏହି ଚାଳଘର ମଣ୍ଡପକୁ ଭାଙ୍ଗି ୧୯୫୫ ମସିହାରେ ଏକ ମନ୍ଦିର ଗଠନ ଉଦ୍ଦେଶ୍ୟରେ ଉଦ୍ୟମ ଆରମ୍ଭ ହୋଇଥିଲା । ମନ୍ଦିର ହୋଇନପାରି ୩ ବଖରା କୋଠାଘର ନିର୍ମାଣଧିନ ହୋଇ ବହୁବର୍ଷ ପଡି ରହିବାପରେ ତାହା ପୂର୍ଣ୍ଣାଙ୍ଗ କରାଯାଇ ଠାକୁରଙ୍କୁ ୧୯୮୦ ମସିହା ଜାନୁୟାରୀ ୧୮ ତାରିଖ ଦିନ ମନ୍ଦିରରେ ସ୍ଥାପନ କରାଗଲା । ଏତକ ଦିନ ଠାକୁର ନିକଟସ୍ଥ କୁଞ୍ଜବିହାରୀ ଦେବଙ୍କ ଝୁଲଣ ଘରେ (ପୂର୍ବରୁ

ତୃତୀୟା ଦେବଙ୍କ ତୁଳସୀ ବଗିଚା) ରହି ସେବା ପୂଜା ପାଉଥିଲେ । ଏହି କାର୍ଯ୍ୟରେ ସେତେବେଳର ବୋଲଗଡ ଗ୍ରାମପଞ୍ଚାୟତର ସରପଞ୍ଚ ଅକ୍ଷୟ କୁମାର ପଟ୍ଟନାୟକ ଏବଂ ଲେଖକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ମଧ୍ୟ ପୂର୍ବତନ ମଠ ମହନ୍ତ ୰ ରାମ ଗୋପାଳ ଦାସ ଗ୍ରାମର ମୁଖ୍ୟ ମୁରବୀ ତଥା ତୃତୀୟା ଦେବଙ୍କର ମାଫର୍ଦାର ୰ ଚକ୍ରଧର ମହାପାତ୍ର, ୰ ଉଦୟନାଥ ପରମଗୁରୁ, ୰ ବିଦ୍ୟାଧର ମହାପାତ୍ର, ଶ୍ରୀ ସଦାନନ୍ଦ ଅଧିକାରୀ, ଶ୍ରୀ ବୈଦ୍ୟନାଥ ମହାପାତ୍ର, ଶ୍ରୀ ଗଦାଧର ମହାପାତ୍ର ଏବଂ ଶ୍ରୀ ଦିବାକର ମହାପାତ୍ର ଆର୍ଥିକ ସହାୟତା କରିଥିଲେ ।

ଏହି ସବୁ ବିସ୍ତୃତ ଐତିହାସିକ ତଥ୍ୟକୁ ଆଧାରକରି ସ୍ଥାନୀୟ ଅଗ୍ରଗଣ୍ୟ ସାଂସ୍କୃତିକ ଅନୁଷ୍ଠାନ 'ନନ୍ଦିଘୋଷ' ଦ୍ୱାରା ଡଃ ବୈଦ୍ୟନାଥ ମିଶ୍ରଙ୍କ ଅଧକ୍ଷତାରେ ସ୍ଥାନୀୟ ବିଧାୟକ ତଥା ରାଜ୍ୟ ଗ୍ରାମ୍ୟ ଉନ୍ନୟନ ଏବଂ ଉଚ୍ଚ ଶିକ୍ଷାମନ୍ତ୍ରୀ ବିଶିଷ୍ଟ ଅଭିନେତା ଶ୍ରୀ ପ୍ରଶାନ୍ତ ନନ୍ଦଙ୍କ ଉପସ୍ଥିତିରେ ଓ ଖୋରଧାର ସମସ୍ତ ଦଳବେହେରା ଏବଂ ଐତିହାସିକଙ୍କୁ ନେଇ ୨୦୦୨ ମସିହା ଜୁନ ୨୯ ତାରିଖ ଦିନ ଗଜପତି ୨ୟ ରାମଚନ୍ଦ୍ର ଦେବଙ୍କ ୨୬୭ ତମ ଦିଗବିଜୟ ସ୍ମାରକୀ ଦିବସ ପାଳନ କରାଯାଇଥିଲା । ଏହାପରେ ବୋଲଗଡ ଏବଂ ଏହି ଅଂଚଳର ଗ୍ରାମବାସୀଙ୍କ ସହଯୋଗରେ ୨୦୦୧ ମସିହାରୁ ବୋଲଗଡ ଠାରେ ୯ ଦିନ ବ୍ୟାପି ରଥଯାତ୍ରା ପାଳିତ ହୋଇଆସୁଅଛି ।

ପୂର୍ବରୁ ପୁରୀ ଅନୁକରଣରେ ଏଠାରେ ଜଗନ୍ନାଥ ଏବଂ ମଠ ଠାକୁର ବ୍ରଜମୋହନଙ୍କର ମିଳିତ ଚନ୍ଦନଯାତ୍ରା ନେଳିଆପୋଖରୀରେ ଅନୁଷ୍ଠିତ ହେଉଥିଲା । ଗ୍ରାମ୍ୟ ବିବାଦ ଯୋଗୁ ୧୦୦ ବର୍ଷ ହେଲା ତାହା ବନ୍ଦ ହୋଇଗଲା । ସେତେବେଳେ ପ୍ରତିବର୍ଷ ମାଘ ମାସରେ ନୂଆପୋଖରୀ ନିକଟରେ ୭ ଦିନ ବ୍ୟାପୀ ତୋଟା ଭାଗବତ ଅନୁଷ୍ଠିତ ହୁଏ । ଏଥିରେ ମାଆ ରାମଚଣ୍ଡୀ, ବ୍ରଜମୋହନ ଦେବ, ତୃତୀୟାଦେବ ଏବଂ ବାଲୁଙ୍କେଶ୍ୱର ଦେବ ଉପବେଶନ କରନ୍ତି । ବୋଲଗଡ ବାରପଲ୍ଲୀ ଅଂଚଳର ଲୋକଙ୍କର ସହଯୋଗରେ ଏହି ମେଳା ହୁଏ । ଏହି ମେଳା ଅବସରରେ ବାରପଲ୍ଲୀ ଅଂଚଳର ଗ୍ରାମ୍ୟ ବିବାଦ ସମାଧାନ କରାଯିବା ସଙ୍ଗେ ସଙ୍ଗେ ଖେଳ କସରତ, ପାଇକ ଆଖଡା ମଧ୍ୟ ଅନୁଷ୍ଠିତ ହେଉଥିବାର ୰ ସାଧୁଚରଣ ଚୌଧୁରୀ କହନ୍ତି । ମୁଆଁ ଏବଂ ଦହି ସେଠାରେ ସମସ୍ତଙ୍କୁ ପ୍ରସାଦ ଆକାରରେ ଦିଆଯାଏ । ଏଥିପାଇଁ ବୋଲଗଡ ବାରପଲ୍ଲୀର ମୁଆଁ, ଦହି ଭାର ଏହି ଉତ୍ସବକୁ ଆସେ ।

## ଗଜପତି ବୀର କେଶରୀ ଦେବ (୧୭୩୭-୧୭୯୩)

ଖୁରୁଧା ଇତିହାସର ପ୍ରଣେତା ୰ କେଦାର ନାଥ ମହାପାତ୍ର ଗଜପତି ବୀରକେଶରୀ ଦେବଙ୍କର ଶାସନର ବିଶଦ ବିବରଣୀ ପ୍ରଦାନ କରିବା ଅବସରରେ

ତାଙ୍କର ଦାନପତ୍ରର ତାଲିକା ପ୍ରକାଶ କରିଛନ୍ତି । ଏହି ଦାନପତ୍ରର କ୍ରମ ସଂଖ୍ୟା ୫୧ ଅଟେ । ଏଥିରେ ୧୭୩୭ ଠାରୁ ୧୭୯୩ ପର୍ଯ୍ୟନ୍ତ ଦାନପତ୍ରର ବର୍ଣ୍ଣନା ରହିଅଛି । ଦୁଃଖର ବିଷୟ ଏହି ଦାନପତ୍ର ମଧ୍ୟରେ ବୋଲଗଡ ମଠକୁ ଦେଇଥିବା ଦାନର ଉଲ୍ଲେଖ ନାହିଁ । ୧୭୪୪, ୧୭୪୫, ୧୭୪୬ ଏବଂ ୧୭୪୯ ମସିହାର ଦାନପତ୍ର ଲେଖାଥିଲେ ମଧ୍ୟ ୧୭୪୭ ଏବଂ ୧୭୪୮ ମସିହାର ଦାନପତ୍ରର ଉଲ୍ଲେଖ ନାହିଁ । ଏହା ସଂଗ୍ରହ ହୋଇପାରିନଥିବା ଅନୁମାନ ହେଉଅଛି । ଏଣୁ ଗଜପତି ବୀରକେଶରୀ ଦେବଙ୍କର ବୋଇଗଡ ମଠ ବ୍ରଜମୋହନ ଦେବଙ୍କୁ ଦେଇଥିବା ଦାନର ସମ୍ପୂର୍ଣ୍ଣ ବିବରଣୀ ଏଠାରେ ଦିଆଗଲା ।

ଗଜପତି ବୀରକେଶରୀ ଦେବଙ୍କର ବୋଲଗଡ ଆଗମନ ବିଷୟରେ ବୋଲଗଡ ମଠ ବ୍ରଜମୋହନ ଦେବଙ୍କ ଏକ ଦାନପତ୍ରରୁ ଜଣାଯାଏ । ବ୍ରଜମୋହନ ଦେବଙ୍କ ସେବାପୂଜା ପାଇଁ ବୀରକିଶୋର ଦେବ ୧୭୪୮ ଖ୍ରୀ. ଅ. ସିଂହ ୧ ଦିନ ୯ ବାଟୀ ଜମି ଦାନ କରିଥିଲେ ।

ଏହି ବିବରଣୀ ମିଳିବା ପରେ ଏହାର କାରଣ ଅନୁଧ୍ୟାନରୁ ଜଣାଯାଏ ୧୭୩୩ ରେ ଗଜପତି ୨ୟ ରାମଚନ୍ଦ୍ର ବୋଲଗଡ ଠାରେ ତକୀ ଖାଁ ସହ ଯୁଦ୍ଧ କଲା ବେଳେ ଯୁଦ୍ଧର ସମସ୍ତ ଖର୍ଚ୍ଚ ମଠ ମହନ୍ତ ବିନୋଦ ରାମ ଦାଶ ବହନ କରିଥିଲେ । ଗଜପତି ମହାରାଜା ଗୁପ୍ତରେ ଏହି ଯୁଦ୍ଧ ପ୍ରସ୍ତୁତି କରିଥିବାରୁ ଯୁଦ୍ଧ ପାଇଁ ଆବଶ୍ୟକୀୟ ଧନ ତାଙ୍କ ପାଖରେ ନଥିଲା । ମଠରେ ପୂର୍ବରୁ ପୋତାଯାଇଥିବା ଏକ ପାତ୍ରରୁ ସ୍ୱର୍ଣ୍ଣ ମୋହର ଉଦ୍ଧାର କରାଯାଇ ଏଥିରେ ବିନିଯୋଗ କରାଯାଇ ଥିବା କଥା ଜଣାଯାଏ ।

ସେ ସମୟରେ ମାଟିତଳେ ଲୋକମାନେ ସୁନାରୁପା ଇତ୍ୟାଦି ମୁଲ୍ୟବାନ ଦ୍ରବ୍ୟ ରଖୁଥିବାର ନଜିର ଦେଖାଯାଏ । ଘରପୋଡ଼ି, ବର୍ଗୀ ଆକ୍ରମଣ ଏବଂ ଚୋର ଡକାୟତଙ୍କ କବଳରୁ ଏସବୁ ସମ୍ପତ୍ତିକୁ ସୁରକ୍ଷା ପାଇଁ ଏ ପ୍ରକାର ପଦ୍ଧତି ଅବଲମ୍ବନ କରାଯାଉଥିଲା । ଏ ଅଞ୍ଚଳରୁ ମାଟି ତଳୁ ବହୁ ଲୋକ ପୋତା ସୁନା ପାଇ ଧନୀ ଲୋକ ହୋଇଥିବା ଜଣାଯାଏ । ଏହି କ୍ରମରେ ସେତେବେଳେ ମଠ ପରିସର ମଧ୍ୟରେ ପୋତାଯାଇଥିବା ପାତ୍ରରୁ ଏହି ଧନ ଉଦ୍ଧାର କରାଯିବା ସମୟରେ ଏକ ଗାଣିତକ ସୂତ୍ର ବ୍ୟବହାର ହୋଇଥିବା କଥା ୰ ସାଧୁଚରଣ ଚୌଧୁରୀ ପ୍ରକାଶ କରିଥିଲେ । ସେହି ସୂତ୍ରଟି ଲେଖକ ତାଙ୍କ ଠାରୁ ସଂଗ୍ରହ କରିଥିଲେ । ପାଠକଙ୍କ ଅବଗତି ନିମନ୍ତେ ତାହା ଏଠାରେ ଉଦ୍ଧାର କରାଗଲା ।

*-'ମଧ୍ୟ କେନ୍ଦ୍ରାତ ଦ୍ୱାଦଶ ପାଦଂ ଦକ୍ଷିଣେନ୍ ଦ୍ୱାଦଶ କଦମ (ହସ୍ତ) ପରିମିତ ଚତୁରସ୍ର ଦ୍ୱାଦଶ ସାରଚକ୍ରଂ କୃତ୍ୱା ତଦାନଂ ବସ୍ତୁପରିମିତ (ହସ୍ତ) ଭୂମୌ ଦକ୍ଷିଣ ପଶ୍ଚିମ ଉତ୍ତର ପୂର୍ବ କ୍ରମିଣ ଗତ୍ୟା ରୁଦ୍ର ପରିମିତ ହସ୍ତ ଭୂମୌ ଖନିତ୍ୱା ତାମ୍ର ଫଳକ*

*ସଂପୁଟେ ବେମୃଦ୍ ଭାଣ୍ଡ ମଧ୍ୟେ ସ୍ୱର୍ଣ୍ଣଡ ମୁଦ୍ରାଃ ପ୍ରାପ୍ତବ୍ୟାଂ ।*

ମଠ ଦାନପତ୍ରରେ ନିଜର ମନକାମନା ପୂର୍ଣ୍ଣ ହେତୁ ବୀରକିଶୋର ଦେବ ଏହି ଦାନ କରିଥିବାର ଉଲ୍ଲେଖ ଅଛି । ଏଥିରେ ସୂଚୀତ ହୁଏ ଯେ, ମଠ ମହନ୍ତ ଦେଇଥିବା ଦାନର ପ୍ରତିଦାନ ସ୍ୱରୁପ ଏବଂ ପିତୃଋଣ ପରିଶୋଧ ପାଇଁ ଗଜପତି ରାମଚନ୍ଦ୍ର ଦେବଙ୍କ ସୁପୁତ୍ର ବୀରକିଶୋରୀ ଦେବ ଏହି ଦାନ କରିଥିଲେ । କାରଣ ବୋଇଗଡ ଠାରେ ଯୁଦ୍ଧରେ ତକୀ ଖାଁକୁ ହରାଇ ରାମଚନ୍ଦ୍ର ଖୋରଧା ସିଂହାସନ ପାଇଥିଲେ । ଏହି ଦାନପତ୍ରରେ ଉଲ୍ଲେଖ ଅଛି ଯେ, ଏହି ଗଜପତିଙ୍କ ଦାନ ଅଧିକାରୀ ନନ୍ଦରାମ ଦାଶ ଗ୍ରହଣ କରିଥିଲେ । ସେତେବେଳକୁ ମଠ ମହନ୍ତ ବିନୋଦ ରାମଙ୍କର ବାର୍ଦ୍ଧକ୍ୟ ଜନିତ ଅବସ୍ଥା ହୋଇଥାଇ ପାରେ । ଏଣୁ ତାଙ୍କର ଚେଲା ଅଧିକାରୀ ନନ୍ଦରାମ ଦାଶଙ୍କୁ ଉକ୍ତ ଦାନ ଦେଇଥିବା ଅନୁମିତ ହୁଏ । ୧୯୫୭ ମସିହାରେ ମଠର ଭୂତପୂର୍ବ ମହନ୍ତ ୰ ରାମଗୋପାଳ ଦାଶ ଏହି ସନନ୍ଦର ରେକର୍ଡ ଖୋରଧା ଖାସମାହାଲ ରେକର୍ଡରୁମରୁ କପାସିଆ କୁଞ୍ଜ ଦାସଙ୍କ ଦ୍ୱାରା ସଂଗ୍ରହ କରିଥିବାର ଜଣାଯାଏ । ୧୮୫୯ ମସିହାରେ ସଦର କାନୁଗୋଇ ଦୟାନିଧି ଦାଶ ଏହି ସନନ୍ଦ ପୁରାତନ ରେକର୍ଡରୁ ସଂଗ୍ରହ କରିଥିବା କଥା ମଧ୍ୟ ସେଥିରେ ଲେଖାଯାଇଅଛି । ଏହି ସନନ୍ଦର ସାଟିଫାଏଡ କପି (ଅବିକଳ ନକଲ) ବର୍ତ୍ତମାନ ମଠରେ ସଂରକ୍ଷିତ ଅଛି ।

ବୋଲଗଡର ସଂଗଠିତ ଯୁଦ୍ଧରେ ବଡମ୍ବା ରାଜା ବଳଭଦ୍ର ମଙ୍ଗରାଜ ସାହାଯ୍ୟ କରିବାକୁ ଆସିଥିଲେ । ସେ ବୋଲଗଡ ମଠ ମହନ୍ତଙ୍କୁ ଗୁରୁ ଭାବରେ ଗ୍ରହଣକରି ବଡମ୍ବା ରାଜ୍ୟରେ ଏକ ମଠ ପ୍ରତିଷ୍ଠା କରିବାକୁ ବିନୋଦ ରାମ ଦାଶଙ୍କୁ ନିମନ୍ତ୍ରଣ କରି ସଂଗରେ ନେଇଯାଇଥିଲେ । ବଡମ୍ବା ରାଜ୍ୟର ରଗଡୀପଡା ଠାରେ ଏକ ମଠ ନିର୍ମାଣ କରି ରଘୁନାଥ ଦେବଙ୍କୁ ପ୍ରତିଷ୍ଠା କରିଥିଲେ । ସେହି କାଳରୁ ବୋଲଗଡ ମଠ ମହନ୍ତ ବୋଲଗଡ ଏବଂ ବଡମ୍ବା ରଗଡିପଡା ମଠର ମଠାଧୀଶ । ଏହାଛଡା ବଡମ୍ବା ରାଜ୍ୟର ଖଞ୍ଜଣୀ ଭଜନ ମଣ୍ଡଳୀ ସମୂହର ଅଧିକାରୀ ମାନ୍ୟତା ରାଜା ମଠ ମହନ୍ତଙ୍କୁ ପ୍ରଦାନ କରିଥିଲେ । ସ୍ଥାନୀୟ ଦଳବେହେରା ବଂଶର ଦାୟାଦ ଶ୍ରୀ ହଟକିଶୋର ପାଟଶାଣୀଙ୍କ ତଥ୍ୟ ଅନୁସାରେ ବିରକେଶରୀ ଦେବ ହସ୍ତୀ ଆରୋହଣ ପୂର୍ବକ ସେଚିକି ବେଙ୍କେ ବୋଲଗଡ ଆସିବା ରାସ୍ତାରେ ବର୍ତ୍ତମାନର ବାମନ ହାଇସ୍କୁଲ ସାମନା ପଡିଆର ରାସ୍ତା ନିକଟ ଏକ ବରଡାଳ ରାସ୍ତା ଉପରକୁ ଲମ୍ବିବା ଦ୍ୱାରା ରାସ୍ତା ଅବରୋଧ ହୋଇଯାଇଥିଲା । ତତକାଳୀନ ଦଳବେହେରା ବିଶିଷ୍ଟ ମଲ୍ଲ ଯୋଦ୍ଧା, ଯୋଗିବର ଖଣ୍ଡାଚୋଟରେ ସେହି ବର ଡାଳଟିକୁ କାଟି ରାସ୍ତା ପରିଷ୍କାର କରିଥିବାରୁ ଗଜପତି ଏଥିରେ ଅତ୍ୟନ୍ତ ଖୁସି ହୋଇ ନିଜ ପଗଡିରୁ ପାଟକନା ବାହାର କରି ଯୋଗିବରଙ୍କ ମୁଣ୍ଡରେ ଭିଡି ଦେଇଥିଲେ ଏବଂ ତାଙ୍କୁ ପାଟଶାହାଣି ପଦ ପ୍ରଦାନ କରିଥିଲେ । ସେହି

ଦିନ ଠାରୁ ଦଳବେହେରା ବଂଶର ଗୋଟିଏ ଅଂଶ ପାଟଶାଣୀ ପଦରେ ଭୂଷିତ ହେଉଅଛନ୍ତି ।

ବୀରକିଶୋର ଦେବଙ୍କ ସମୟରେ ବର୍ତ୍ତମାନ ବେଗୁନିଆଁ ବ୍ଲକର କୋଟପଲ୍ଲୀ ଗ୍ରାମର ମାଗୁଣୀ ପଟ୍ଟନାୟକ 'ରାମଚନ୍ଦ୍ର ବିହାର' ଗ୍ରନ୍ଥ କରିବା ସଂଗେ ସଂଗେ ବୋଲଗଡ ବ୍ଲକର ସାନପଦର ଗ୍ରାମରେ 'ବସନ୍ତ ରାସର' ଲେଖକ ପିଣ୍ଡକି ଶ୍ରୀଚନ୍ଦନ, ଅମରକବି ଭକ୍ତଚରଣ ଏବଂ କପାସିଆ ଗ୍ରାମରେ 'କୃଷ୍ଣରସାମୃତ' ର କବି କରୁଣା ପଟ୍ଟନାୟକ ବସବାସ କରୁଥିବା କଥା ୰ କେଦାରନାଥ ମହାପାତ୍ର ଖୁରୁଧା ଇତିହାସରେ ପ୍ରକାଶ କରିଛନ୍ତି ।

## ଗଜପତି ଦିବ୍ୟସିଂହ ଦେବ (୩ୟ) (୧୭୯୩-୯୮)

ଗଜପତି ଦିବ୍ୟସିଂହ ଦେବ ୩ୟ ସମୟକୁ ମୁସଲମାନଙ୍କ ଆଧିପତ୍ୟ କମିଯାଇ ମରହଟ୍ଟା ଶାସନ ଓଡିଶାରେ ଚାଲିଥିଲା । ମରହଟ୍ଟା ମାନେ ହିନ୍ଦୁ ଥିବାରୁ ଜଗନ୍ନାଥ ମନ୍ଦିର ଆକ୍ରମଣର ସମ୍ଭାବନା ନଥିଲେ ମଧ ଖୋରଧା ରାଜାଙ୍କୁ ପରାଭୂତ କରି ନିଜ ଶାସନ ଚଳାଇଥିଲେ ।

ଏହି ଗଜପତିଙ୍କ ସମୟରେ ପ୍ରମୁଖ ଘଟଣା -

ଗଜପତି ଦିବ୍ୟସିଂହ ଦେବ (୩ୟ) ଙ୍କ ସମୟରେ ଖଣ୍ଡପଡା ରାଜା ନରସିଂହ ଭ୍ରମରବର ଥିବାର ଉଦୟନାଥ ଦାଶଙ୍କ ରଚିତ 'ଖଣ୍ଡପଡା ଇତିହାସ' ରୁ ଜଣାଯାଏ । ଏହା ସହିତ ନିକଟରେ ସଂଗୃହୀତ 'ଖଣ୍ଡପଡା ମାରୁ' ପୋଥିରେ ଖଣ୍ଡପଡାର ଯେଉଁ ରାଜାଙ୍କ ନାମ ଲେଖାଅଛି ତାହା ଠିକ ଥିବାର ଜଣାଯାଏ । ସେତେବେଳେ ଖଣ୍ଡପଡା ରାଣୀ ପାପନାସିନୀ ବୁଡ ପକାଇବାକୁ ପୁରୀ ଯିବା ବେଳେ ରାଣୀଙ୍କ ଦେହରକ୍ଷୀ ଖଣ୍ଡପଡାର ପାଇକମାନେ ଗଜପତିଙ୍କୁ ସମ୍ମାନହାନୀ ସୂଚକ ଶବ୍ଦ ବ୍ୟବହାର କରିଥିବାରୁ ବିବାଦର ସୂତ୍ରପାତ ଆରିକମା ଗ୍ରାମଠାରେ ହେଲା । ଆରିକିମାର ମୁଖ୍ୟ ପରମଗୁରୁ (ବର୍ତ୍ତମାନ ରାୟଗୁରୁ) ଏହାର ସମାଧାନ କରିଥିଲେ ମଧ ରାଣୀ ଏଥିରେ ସନ୍ତୋଷ ହୋଇନଥିଲେ । ସେ ସେଠାରୁ ଯାଇ ଖଣ୍ଡପଡାର ପୂର୍ବଦ୍ୱାର ତରବାଲୁଅ ଗଡରେ ବିଶ୍ରାମ ନେବାବେଳେ ରାଜାଙ୍କୁ ଏହାର ପ୍ରତିଶୋଧ ନେବାକୁ ଉସୁକାଇଥିଲେ । ରାଜାଙ୍କ ଆଦେଶରେ ଆରିକମା ପରମଗୁରୁଙ୍କ ଉପରେ ଖଣ୍ଡପଡାର ସର୍ଦ୍ଦାର ସିଂହ ଆକ୍ରମଣ କରିବାରୁ ଯୁଦ୍ଧର ସୂତ୍ରପାତ ହେଲା । ଏହାର ସମ୍ପୂର୍ଣ୍ଣ ବିବରଣୀ ନିମ୍ନରେ ଖୋରଧା-ଖଣ୍ଡପଡା ସମର "ଖଣ୍ଡପଡା ମାରୁ" ତାଳପତ୍ର ପୋଥିରୁ ସଂଗୃହୀତ ହୋଇଅଛି ।

**ଖଣ୍ଡପଡା ମାରୁ**

ଏହି ଘଟଣା ଖଣ୍ଡପଡା ଏବଂ ଖୁରୁଧା ଇତିହାସରୁ ଜଣାନଥିଲେ ମଧ ଖଣ୍ଡପଡା ମାରୁ ନାମରେ ଏକ ତାଳପତ୍ର ପୋଥି ଲେଖକର ହସ୍ତଗତ ହୋଇଥିଲା । ଏହି ତାଳପତ୍ର ପୋଥିରେ ୧୦୩୪ ପଦ ମୁଖ୍ୟତଃ ଚଉଦ ଅକ୍ଷରୀ ଛନ୍ଦରେ ଲେଖାଯାଇଅଛି । ଏହି ପୋଥି ଗଜପତି ରାମଚନ୍ଦ୍ର ଦେବ (୩ୟ) ଙ୍କର ୧୧ ଅଙ୍କରେ (୧୮୨୭ ମସିହା) ରେ ସମ୍ପୂର୍ଣ୍ଣ ହୋଇଥିବାର ଏଥିରେ ଲେଖାଅଛି । ପୋଥିର ଲେଖକ ଭିକାରୀ କର ଅଟନ୍ତି । ତାଙ୍କ ନିବାସ ବେଗୁନିଆ ବ୍ଲକର କୁଞ୍ଜରୀ ଗ୍ରାମ ଅଟେ । ପୋଥିରେ ତାଙ୍କର ପରିଚୟ ପ୍ରଦାନ କରିଛନ୍ତି । ପାଠକଙ୍କ ଅବଗତି ନିମନ୍ତେ ତାହା ପ୍ରକାଶ କରାଗଲା ।

**ଖଣ୍ଡପଡା ମାରୁ**

ପଦ ୧୦୪୧- ଖଣ୍ଡପଡା ଯୁଦ୍ଧ ଗୀତ ଯେତିକି ହେଲ ଦୃଶ୍ୟ ରାଉତପଡା ଗଡତଳି କୁଞ୍ଜରୀ ମୋ ବାସ

ପଦ ୧୦୪୨- ଅଭୟ ପାଦତଳେ ପଶିଲି ଶରଣ, ଖଣ୍ଡପଡା ଯୁଦ୍ଧ ଗୀତ ଲେଖିଲେ ବାହ୍ମଣ

ପଦ ୧୦୪୩- ଚଉଦ ଅକ୍ଷରେ ଅଟେ ଏହି ପଦମାନ, ମୁଗ୍ଧଜନ ମାନେ ଏହା କରିବେ ଗାୟନ

ଶ୍ରୀ ବୀର ଶ୍ରୀ ବୀରବର ପ୍ରତାପ ରାମଚନ୍ଦ୍ର ଦେବ ମହାରାଜାଙ୍କର ବିଜେ ଶୁଭରାଜେ ସମସ୍ତ । ୧୧ ଅଙ୍କ ରିସଭ ୨୨ ଦିନେ ଜ୍ୟେଷ୍ଟ ମାସ କୃଷ୍ଣ ପକ୍ଷ ଚତୁର୍ଦ୍ଦଶୀ ରବିବାରେ ବେଳ ତିନିପହରଠାରେ ଲେଖା ସଂପୂର୍ଣ୍ଣ ହେଲା । ଏ ପୋଥି ଭୀକାରି କରଙ୍କର ।

ଉକ୍ତ ପୋଥି ଆରିକମାର ରାୟଗୁରୁ ବଂଶର ବର୍ତ୍ତମାନର ମୁଖ୍ୟ ଡାକ୍ତର କୈଳାଶ ଚନ୍ଦ୍ର ରାୟଗୁରୁ ବୋରିକ ଗ୍ରାମର ବନ୍ଧୁ ଘରୁ ସଂଗ୍ରହ କରି ବର୍ତ୍ତମାନ ପାଖରେ ରଖିଛନ୍ତି । ଲେଖକ ତାଙ୍କ ଠାରୁ ଏହି ପୋଥି ଆଣି ତାର ନକଲ ସାଇତି ରଖିଛନ୍ତି । ଏହି ପୋଥିର ବିଷୟ ବସ୍ତୁକୁ ଚର୍ଚ୍ଚା କରି ବାଙ୍କୀ ପଣ୍ଡାଳମ ଗ୍ରାମର ବିଶିଷ୍ଟ ସାହିତ୍ୟାନୁରାଗୀ ଏବଂ ପ୍ରବୀଣ ପ୍ରଧାନ ଶିକ୍ଷକ ପୂଜ୍ୟ ଦାଶରଥି ଦାଶ ଏକ ପ୍ରବନ୍ଧ ରଚନା କରିଥିଲେ । ଲେଖକ ତାକୁ ସଂଗ୍ରହ କରି ସ୍ଥାନୀୟ ବାଙ୍କୋଇ କଲେଜର ମୁଖପତ୍ର 'କାଳୀ କଲମ' ରେ ପ୍ରକାଶିତ କରିଥିଲେ ।

ବର୍ତ୍ତମାନ ଆରିକମାର ରାୟଗୁରୁ ବଂଶର ପୂର୍ବ ସାମାଜିକ ମର୍ଯ୍ୟାଦା ରହିଅଛି । ତାଙ୍କ ବଂଶରେ ହରେକୃଷ୍ଣ ରାୟଗୁରୁ ଜଣେ ଯୋଗଜନ୍ମା ପୁରୁଷ । ସେ

ତାନ୍ତ୍ରିକ ଏବଂ କୋଶଳାଶୁଣୀଙ୍କ ଭକ୍ତ ଥିଲେ । ତୀର୍ଥାଟନ ବେଳେ ବୃନ୍ଦାବନରେ ୨୧ ଦିନ ଅଧିଆ ପଡି ଦୁଆରେ ବସନ୍ତ ରାସ କରିବାକୁ ମାନସିକ କରିଥିଲେ । ସେଠାରୁ ସ୍ୱପ୍ନାଦେଶ ପାଇ ଆରିକିମାର ଅଦୂରରେ ସାନପଦର ଗ୍ରାମର ପିଣ୍ଡିକି ଶ୍ରୀଚନ୍ଦନଙ୍କ ଠାରୁ ତାଙ୍କ ରଚିତ ବସନ୍ତ ରାସ ପୋଥି ନେଇ ନିଜ ଦୁଆରେ ରାସ ଉତ୍ସବ ଆରମ୍ଭ କରିଥିଲେ । ବର୍ତ୍ତମାନ ଏହି ରାସ ସ୍ଥଳୀ ଅଛି । ସେ କାଳରୁ ବୃନ୍ଦାବନରୁ ଆଣିଥିବା ରାଧାକୃଷ୍ଣଙ୍କ ମୂର୍ତ୍ତି ତାଙ୍କ ଘରେ ପୂଜାପାଉଛନ୍ତି । କିଛିବର୍ଷ ତଳେ ରାଧାଙ୍କର ମୂର୍ତ୍ତି ଚୋରିଯିବାରେ ଏକ ନୂତନ ମୂର୍ତ୍ତି ସ୍ଥାପନ କରାଯାଇଅଛି । ହରେକୃଷ୍ଣ ରାୟଗୁରୁ ପିଣ୍ଡିକି ଶ୍ରୀଚନ୍ଦନଙ୍କ ଠାରୁ ବସନ୍ତରାସ ପୋଥି ଆଣିଥିବାର କଥା ଉପରେ ଆଲୋଚନା କଲେ ଜଣାଯାଏ ଯେ, ପିଣ୍ଡିକି ଶ୍ରୀଚନ୍ଦନ ଗଜପତି ବିରକେଶରୀ ଦେବଙ୍କ (୧୭୩୩-୯୩) ସମୟର କବି ହୋଇଥିବା ଖୋରଧା ଇତିହାସରେ ୰ କେଦାରନାଥ ମହାପାତ୍ର ବୟାନ କରିଛନ୍ତି । ଏଣୁ ହରେକୃଷ୍ଣ ରାୟଗୁରୁ ବୀରକିଶୋର ଦେବଙ୍କ ସମସାମୟିକ ହୋଇଥିବା ବିଶ୍ୱାସ ଯୋଗ୍ୟ ଅଟେ ।

ସେତେବେଳେ ଗ୍ରାମରେ ବସନ୍ତ ଏବଂ ହଇଜା ବେମାର ହେଲାବେଳେ ହରେକୃଷ୍ଣ ରାୟଗୁରୁ ତନ୍ତ୍ର ବଳରେ ଦେବୀଙ୍କ ସହ ତର୍କ କରି ଲୋକମାନଙ୍କୁ ଏହି ବ୍ୟାଧିରୁ ରକ୍ଷା କରୁଥିବା କଥା ଅଦ୍ୟାବଧି ଲୋକମୁଖରୁ ଶୁଣାଯାଏ । ତାଙ୍କ ମୃତ୍ୟୁର ୭ମ ଦିନ ସେ ପାଟ ପରିଧାନ ପୂର୍ବକ ପୁରୀ ଶ୍ରୀମନ୍ଦିରର ବାଇଶ ପାହାଚ ଦେଇ ଜଗନ୍ନାଥ ଦର୍ଶନକୁ ଯିବାବେଳେ ଆରିକିମା ଗ୍ରାମର କେତେକ ଲୋକ ତାଙ୍କୁ ଦର୍ଶନ କରିଥିଲେ । ସାଆନ୍ତ (ରାୟଗୁରୁ) ଙ୍କୁ ଲୋକମାନେ ମୁଣ୍ଡିଆ ମାରିଲେ । ସେମାନେ ତାଙ୍କର ମୃତ୍ୟୁ ଖବର ଜାଣନ୍ତି ନାହିଁ । କୌତୂହଳରେ ସାମନ୍ତ କହିଲେ ପିଲାମାନେ ମୋର ଗୋଟିଏ ବୋଲ କରିବ । ପୁଅର ବାହ୍ମଣ ଭୋଜନ ଦେବାର ଅଛି । ସେ ମହାପ୍ରସାଦ ନେଇନାହିଁ । ତୁମେ ନେଇଯାଅ । ଏହା କହି ତାଙ୍କ ଦ୍ୱାରା ମହାପ୍ରସାଦ ପଠାଇଦେଲେ । ଏହି ଲୋକମାନେ ମହାପ୍ରସାଦ ଆଣି ଅସରଳା ଗ୍ରାମ ନିକଟ ହେଲା ବେଳେ କାହାପାଇଁ ମହାପ୍ରସାଦ ନେଉଛ ବୋଲି ଲୋକମାନେ ପଚାରିବାରେ ସାଆନ୍ତେ ପଠାଇଥିବାର କହିବାରୁ ପଚାରିଥିବା ଲୋକମାନେ ସାଆନ୍ତଙ୍କର ମୃତ୍ୟୁ ଖବର ଦେଲେ । ଏ ଘଟଣା ଶୁଣି ମହାପ୍ରସାଦ ବାହାକ ଲୋକମାନେ ଅଚେତ ହୋଇଯାଇଥିଲେ । ଗ୍ରାମକୁ ଫେରି ତାଙ୍କର ଦଶାହ କାର୍ଯ୍ୟରେ ଯୋଗଦେଲେ । ଏପରି ଅଲୌକିକ ପ୍ରବାଦ ହରେକୃଷ୍ଣ ରାୟଗୁରୁଙ୍କ ବିଷୟରେ ଶୁଣାଯାଏ । ନିକଟରେ ଆରିକିମାର ପୂର୍ବତନ ସରପଞ୍ଚ ୰ ପଦ୍ମନାଭ ରାୟଗୁରୁଙ୍କର ପରଲୋକ ହୋଇଅଛି । ସେ ଜଣେ ପ୍ରତିଷ୍ଠିତ ବ୍ୟକ୍ତିଥିଲେ । ସେ ଅଂଚଳର ସାଆନ୍ତ ଭାବରେ ସମ୍ମାନ ପାଉଥିଲେ । ଅତୀତରେ ଖଣ୍ଡପଡା ସହ ଖୋରଧା ଯୁଦ୍ଧ ଆରିକିମାର ରାୟଗୁରୁ ପରିବାର ଯୋଗୁଁ ହୋଇଥିଲା । କାଳର ଗତିରେ ପଦ୍ମନାଭ

ରାୟଗୁରୁଙ୍କୁ ଖଣ୍ଡପଡାର ଶେଷ ରାଜା ୰ ହରିହର ସିଂହ ମର୍ଦ୍ଦରାଜ ତାଙ୍କର ପାଳିତ ବ୍ରାହ୍ମଣ କନ୍ୟାଙ୍କୁ ବିବାହ ଦେଇଥିଲେ । ସେ ଦେଇଥିବା ଉପହାର ମଧ୍ୟରେ ଏକ ଗଜଦନ୍ତ ପଲଙ୍କ ଥିଲା । ଲେଖକ ଏହି ପଲଙ୍କକୁ ରାୟଗୁରୁଙ୍କ ଘରେ ଦେଖିଛନ୍ତି । ପରେ ୬୦ ହଜାର ଟଙ୍କା ମୂଲ୍ୟରେ ବିଦେଶୀ ପର୍ଯ୍ୟଟକଙ୍କୁ ଏହି ଗଜଦନ୍ତ ପଲଙ୍କ ବିକ୍ରୀ କରିଥିବା କଥା ଲେଖକ ୰ ପଦ୍ମନାଭ ରାୟଗୁରୁଙ୍କ ଠାରୁ ତାଙ୍କ ଜୀବଦଶାରେ ଶୁଣିଥିଲେ । ଏହାଛଡା ହରେକୃଷ୍ଣ ରାୟଗୁରୁଙ୍କ ସମ୍ପର୍କରେ ଉପରୋକ୍ତ ତଥ୍ୟ ଖଙ୍ଗୁରିଆ ଗ୍ରାମପଞ୍ଚାୟତର ପୂର୍ବତନ ସରପଞ୍ଚ ହରିପୁର ଶାସନ ନିବାସୀ ସ୍ୱର୍ଗତ ପଦ୍ମନାଭ ରାୟଗୁରୁଙ୍କର ଜ୍ୟେଷ୍ଠ ଭ୍ରାତା କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ଠାରୁ ଶୁଣିଥିଲେ । ବର୍ତ୍ତମାନ ଖଣ୍ଡପଡା ରାଜବଂଶ ସହ ଆରିକିମା ରାୟଗୁରୁ ବଂଶର ବନ୍ଧୁ ସମ୍ପର୍କ ଅଛି ।

## ଗଜପତି ମୁକୁନ୍ଦ ଦେବ (୧୭୯୮-୧୮୧୭)

ଗଜପତି ମୁକୁନ୍ଦ ଦେବଙ୍କ ସମୟରେ ବ୍ରିଟିଶ ଶକ୍ତି ଖୋରଧା ତଥା ଓଡିଶାକୁ ସମ୍ପୂର୍ଣ୍ଣ ଭାବରେ ଦଖଲ କରିଥିଲେ । ତାଙ୍କର ପିଉସୀ ରାଣୀ ମୁକ୍ତା ଦେଈ (ଦିବ୍ୟସିଂହ ଦେବଙ୍କ ଭଉଣୀ) ସମ୍ବଲପୁର ରାଜା ଜୟନ୍ତ ସିଂହଙ୍କୁ ବିବାହ କରିଥିଲେ । ମରହଟ୍ଟା ଶକ୍ତି ଏବଂ ଇଂରେଜ ଶକ୍ତିର ଲଢେଇ ବେଳେ ରାଣୀ ମୁକ୍ତା ଦେଈ ସେଠାରେ ବନ୍ଦୀ ଭାବରେ ରହି ପରେ କଟକ ପଳାଇ ଆସି ଇଂରେଜ ମାନଙ୍କ ପାଖରେ ଶରଣ ପଶିଥିଲେ । ତାଙ୍କୁ ପାଞ୍ଚଗଡରେ ଅବସ୍ଥାପିତ କରାଯାଇଥିଲା । ରାଣୀ ମୁକ୍ତାଦେଈ ପ୍ରସଙ୍ଗ ଏବଂ ପାଇକ ବିଦ୍ରୋହ ଗଜପତି ମୁକୁନ୍ଦ ଦେବଙ୍କ ସମୟର ପ୍ରମୁଖ ଘଟଣାବଳୀ ଅଟେ ।

## ରାଣୀ ମୁକ୍ତାଦେଈଙ୍କ ପାଞ୍ଚଗଡରେ ଅବସ୍ଥାନ

ଖୋର୍ଦ୍ଧାର ଗଜପତି ଦିବ୍ୟସିଂହ ଦେବଙ୍କ ଭଉଣୀ ମୁକ୍ତାଦେଈ ୧୭୮୧-୮୨ରେ ସମ୍ବଲପୁର ରାଜା ଜୟନ୍ତ ସିଂହଙ୍କୁ ବିବାହ କରିଥିଲେ । ରାଜାଙ୍କର ୩ ରାଣୀ ମୁକ୍ତାଦେଈ, ରତ୍ନକୁମାରୀ ଏବଂ ରହସ୍ୟମୟୀ । କୁମାରୀ ମୁକ୍ତାଦେଈଙ୍କ ବିବାହ ରାଜା ଗାଦୀରେ ବସିବା ପୂର୍ବରୁ ହୋଇଥିବାରୁ ସେ ମହାରାଣୀ ହୋଇପାରିଲେ ନାହିଁ । ମାତ୍ର ଏଥି ନେଇ ରାଜ ପରିବାରରେ ଅଶାନ୍ତି ଲାଗି ରହିଥିଲା । ୧୭୯୯ରେ ମରହଟ୍ଟାମାନେ ସମ୍ବଲପୁର ଦୁର୍ଗ ଅବରୋଧ କରି ୧୮୦୦ ମସିହାରେ ଦଖଲ କଲେ । ଓଡିଶା ଅଧିକାର କଲେ । ଏତିକିବେଳେ ଓଡିଶା ଅଧିକାର ପାଇଁ ମରହଟ୍ଟା ଶକ୍ତି ଏବଂ ବ୍ରିଟିଶ ଶକ୍ତି ମଧ୍ୟରେ ଯୁଦ୍ଧ ହେବାରୁ ମୁକ୍ତାଦେଈ ନିଜର ଆତ୍ମରକ୍ଷା ପାଇଁ କଟକ ଚାଲିଆସି ଇଂରେଜମାନଙ୍କ ଶରଣ ନେଲେ । ସେ ଖୋରଧା ରାଜବଂଶର ହୋଇଥିବାରୁ ତାଙ୍କର

ସମ୍ମାନ ରକ୍ଷା ତଥା ଥଇଥାନ ପାଇଁ ହଳଦୀ-ମଥେଇ (ତେଲ) ମାହାଲ ରୂପେ ପାଞ୍ଚଗଡକୁ ମୁକ୍ତାଦେଈଙ୍କୁ ପ୍ରଦାନ କରାଯାଇ ଏହାର ଶାସନ ଦାୟିତ୍ୱ ଦିଆଗଲା । ଙ୍ଗପୁରକୁ ଏକ ଗଡର ମାନ୍ୟତା ଦେଇ ସେତେବେଳେ ଏହାକୁ ପାଞ୍ଚଗଡର ରାଜଧାନୀ ରୂପେ ନେଇ ଏଠାରେ ରାଣୀଙ୍କ ଉଆସ ନିର୍ମାଣ କରାଯାଇଥିଲା । ଲୋକମୁଖରେ ଏହି ସ୍ଥାନ ଙ୍ଗପୁର ପଶ୍ଚିମ ପାର୍ଶ୍ୱ ଚନ୍ଦ୍ରଶେଖରପୁର ରାଜସ୍ୱ ମୌଜାର ନହରପଦା । ତାଙ୍କର ଦେୱାନ ସଦାଶିବ ପଟ୍ଟନାୟକ ଥିଲେ । ସେ ଅତ୍ୟାଚାରୀ ଥିବାର ଜଣାଯାଏ । ପରବର୍ତ୍ତୀ ପାଇକ ବିଦ୍ରୋହ ଅଧ୍ୟାୟରେ ଏହାର ବିଶେଷ ଆଲୋଚନା ହେବ । ଉକ୍ତ ତଥ୍ୟ 'ସମ୍ବଲପୁର ଇତିହାସ' ଶୀର୍ଷକ ପ୍ରବନ୍ଧରୁ ଙ୍ଗପୁର ଗ୍ରାମର ସଂସ୍କୃତିପ୍ରେମୀ ଶିକ୍ଷାବିତ ଶ୍ରୀ ଗୋପୀନାଥ ଖାଡେଙ୍ଗା ଲେଖକଙ୍କୁ କହିଥିଲେ । ପ୍ରଜାତନ୍ତ୍ର ସାପ୍ତାହିକୀରୁ ଏହି ତଥ୍ୟ ସେ ସଂଗ୍ରହ କରିଥିଲେ ।

ଡ଼. ପ୍ରାଣକୃଷ୍ଣ ଆଚାର୍ଯ୍ୟ ତାଙ୍କ ରଚିତ 'ନୟାଗଡ ଇତିହାସ' ର ୩୮ ପୃଷ୍ଠାରେ ବର୍ଣ୍ଣିତ ପଶ୍ଚିମ ଓଡିଶା ଇତିହାସର ଦର୍ଶାଇଛନ୍ତି ଯେ, "ସମ୍ବଲପୁରରେ ପୂର୍ବରୁ ଥିବା ରାଣୀ (ମୁକ୍ତାଦେଈ) ପଳାୟନ କରି ବ୍ରିଟିଶ ମାନଙ୍କର ଶରଣ ନେଲେ" ।

ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ତାଙ୍କ ଲିଖିତ 'ଓଡିଶାରେ ସ୍ୱାଧୀନତା ସଂଗ୍ରାମ ଇତିହାସ' ରେ ମୁକ୍ତାଦେଈ ପାଞ୍ଚଗଡରେ ଅବସ୍ଥାନ କରିଥିବା ବିଷୟରେ ଦେଇଥିବା ବିବରଣୀ ଦିଆଗଲା ।

- "ଏପ୍ରିଲ ୨ ତାରିଖରେ ଇମ୍ପ ସାହେବ ଗଙ୍ଗପଡାରେ ପହଞ୍ଚିଲା ବେଳକୁ ପ୍ରାଇଡ ସାହେବ ଖୋର୍ଦ୍ଧାରେ ନଥିଲେ । ତାଙ୍କ ପାଖରେ ଖବର ଯାଇ ପହଞ୍ଚିଲା ଯେ, ବିଦ୍ରୋହୀ ମାନେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବାଣପୁର ଆଡୁ ଯାଇ ପାଞ୍ଚଗଡରେ ପହଞ୍ଚି ସେଠାରେ ନିବାସ କରୁଥିବା ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କୁ ଆକ୍ରମଣ କରିଥିଲେ । ସେଠାରେ ରାଣୀ ମୁକ୍ତା ଦେଈ ଏବଂ ତାଙ୍କର ଦେୱାନଙ୍କୁ ଧରି ନେଇ ତାଙ୍କ ଘରୁ ସର୍ବସ୍ୱ ଲୁଟିନେଲେ ।"

ରାଣୀମୁକ୍ତା ଦେଈଙ୍କ ପାଞ୍ଚଗଡରେ ଅବସ୍ଥାନ ବିଷୟରେ ବିଶିଷ୍ଟ ଐତିହାସିକ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ ତାଙ୍କର 'ଯଶଦେହେ ଆୟୁଷ୍ମାନ' ଗ୍ରନ୍ଥର ୩୬୯ ପୃଷ୍ଠାରେ 'ପ୍ରେମିକ କବି ଭକ୍ତଚରଣ' ଙ୍କ ଅଧ୍ୟାୟରେ ନିମ୍ନୋକ୍ତ ବିଷୟ ଅବତାରଣ କରିଛନ୍ତି ।

- "ଖୋରଧା ରାଜା ଦିବ୍ୟସିଂହ ଦେବଙ୍କ ଭଉଣୀ ମୁକ୍ତାଦେଈ ସମ୍ବଲପୁର ରାଜାଙ୍କୁ ବିବାହ କରିଥିଲେ । ପରେ ରାଜଗାଦୀ ପାଇଁ ବିବାଦ ଉପୁଜିଲା । ସରକାର ଏଣୁ ତାଙ୍କ ଇଚ୍ଛା ଅନୁଯାୟୀ ଖୋର୍ଦ୍ଧା ନିକଟରେ ରଖାଇଲେ । ମୁକ୍ତା ଦେଈ କବି (ଭକ୍ତଚରଣ) ଙ୍କ ଠାରୁ ମନ୍ତ୍ରଗ୍ରହଣ କରିଥିଲେ । ସେ ସାନପଦର ଠାରେ ମଠର

ପରିଚାଳନା ପାଇଁ କେତେକ ଭୂସଂପତି ଦାନ କରିଥିଲେ ।”

ଏହାଛଡା ଏହି ଗ୍ରନ୍ଥରେ ‘ପାଇକ ବିଦ୍ରୋହର କର୍ଣ୍ଣଧାର ବକ୍ସି ଜଗବଂଧୁ’ ଅଧାୟରେ ୭୪୨ ପୃଷ୍ଠାରେ ମୁକ୍ତାଦେଈଙ୍କ ବିଷୟରେ ଦେଇଥିବା ତଥ୍ୟ ପାଠକଙ୍କ ଅବଗତି ପାଇଁ ଦିଆଗଲା ।

- “ବିଦ୍ରୋହ ପାଞ୍ଚଗଡକୁ ବ୍ୟାପିଲା । ସେତେବେଳେ ସମ୍ବଲପୁର ରାଣୀ ମୁକ୍ତାଦେଈ ପାଞ୍ଚଗଡରେ ରହୁଥିଲେ । ପ୍ରଜାମାନେ ସେଠାରେ ନିଷ୍ପେଷିତ ହେଉଥିଲେ । ସେଠାର ଦେଓ୍ୱାନଙ୍କ ଅତ୍ୟାଚାର ମଧ ଚରମ ସୀମାରେ ପହଞ୍ଚିଥିଲା । ଜଗବନ୍ଧୁ ବିଦ୍ରୋହୀ ମାନଙ୍କ ସଙ୍ଗରେ ବୋଲଗଡରେ ପହଞ୍ଚିଲେ । ସେଠାର ଦଳେଇ ଦଳବେହେରା ମାନେ ବିଦ୍ରୋହୀ ମାନଙ୍କ ସଂଗେ ଯୋଗଦେଲେ । ବିଦ୍ରୋହୀମାନେ ରାଣୀ ମୁକ୍ତା ଦେଈ ଏବଂ ଦେଓ୍ୱାନଙ୍କ ଗୃହରେ ଅଗ୍ନି ସଂଯୋଗ କରିଦେଲେ । ଦେଓ୍ୱାନଙ୍କୁ ସେଠାରେ ହତ୍ୟା କରାଗଲା । ମାତ୍ର ରାଣୀ ନିରାପଦରେ ପଳାୟନ କରି କଟକରେ ପହଞ୍ଚିଲେ ।”

ଏହି ସବୁ ତଥ୍ୟକୁ ଛାଡିଦେଲେ ତାଙ୍କ ସମୟରେ ଦେଓାନ ସଦାଶିବ ପଟ୍ଟନାୟକ ହତ୍ୟାର ବିଶଦ ବିବରଣୀ ଯାହା ‘ଖୁରଧା ଦର୍ପଣ’ରେ ୰ ଦିଗମ୍ବର ଶ୍ରୀଚନ୍ଦନ ବର୍ଣ୍ଣନା କରିଛନ୍ତି ତାହା ସ୍ୱତନ୍ତ୍ର ଭାବରେ ପରେ ବର୍ଣ୍ଣିତ ହେବ ।

ଏତିକିରେ ମୁକ୍ତାଦେଈ ମୁକ୍ତି ପାଇ ନଥିଲେ । ସେ କଟକରୁ ପୁଣିଥରେ ସମ୍ବଲପୁର ଫେରିବା ବାଟରେ ପାଇକ ବିଦ୍ରୋହର ଅନ୍ୟତମ ନେତା ସିକୋ ଗଡର ଦାମ ସୁବୁଦ୍ଧି ଏବଂ ତାଙ୍କ ଭାଇ ରେଢାଖୋଲ ଠାରେ ରାଣୀଙ୍କୁ ଆକ୍ରମଣ କରି ତାଙ୍କର ସର୍ବସ୍ୱ ଲୁଟ କରିଥିବା ତଥ୍ୟ ‘ପାଇକ ବିଦ୍ରୋହ’ରେ ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ବର୍ଣ୍ଣନା କରିଛନ୍ତି । ତାହା ପାଇକ ବିଦ୍ରୋହ ଅଧାୟରେ ବର୍ଣ୍ଣିତ ହେବ ।

ଏ ସମସ୍ତ ବିଷୟ ବସ୍ତୁର ସାରାଂଶ ହେଲା, ରାଣୀ ମୁକ୍ତାଦେଈଙ୍କ ଦେଓ୍ୱାନ ପ୍ରଜା ପୀଡକ ଥିଲେ । ତାଙ୍କର ବାସସ୍ଥାନ ସଂପୁର ନହରପଦାକୁ ପ୍ରାୟ ୭୦ ବର୍ଷ ତଳେ ବୋଲଗଡ ଅଞ୍ଚଳର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଗାନ୍ଧୀବାଦୀ ନେତା ତଥା ‘ଗାନ୍ଧୀ ପୁରାଣ’ର ଲେଖକ ୰ ଯୁଗଳ କିଶୋର ପଟ୍ଟନାୟକ, ଡଃ. ହରେକୃଷ୍ଣ ମହତାବଙ୍କ ସହାୟତାରେ ସମ୍ବଲପୁର ରାଜବଂଶର ଦାୟାଦଙ୍କ ଠାରୁ କ୍ରୟ କରି ଆଣିଥିଲେ । ସେଥିପାଇଁ ସେ ଝାରସୁଗୁଡା ଯାଇଥିବାର ତାଙ୍କର ପୁତ୍ର ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକଙ୍କ ଠାରୁ ଜଣାଯାଏ । ଏହି ନହରପଦାର ଅଦୂରରେ ଦେଓ୍ୱାନ ସଦାଶିବ ବାଲୁଙ୍କେଶ୍ୱର ମନ୍ଦିର ନିର୍ମାଣ କରି ଠାକୁରଙ୍କୁ ପ୍ରତିଷ୍ଠା କରିଥିଲେ । ଏହି ନହରପଦାରେ ବର୍ତ୍ତମାନ ସ୍ୱର୍ଗତ ଯୁଗଳ ପଟ୍ଟନାୟକଙ୍କ ପୁତ୍ରମାନେ ବାସକରିବା ସହ ଗ୍ରାମର ଅନ୍ୟ କେତେକ ପରିବାର ବାସ କରୁଛନ୍ତି । ଏହାର ମାଟିତଳୁ ଘର ତୋଳିବା ବେଳେ କେତେକ ବ୍ୟକ୍ତି ସ୍ୱର୍ଣ୍ଣ

ମୋହର ପାଇଥିବାର କଥା ଲୋକମୁଖରୁ ଶୁଣାଯାଏ । ସଂପୁର ଗ୍ରାମର ନଦରପଦା ନିକଟ ପାଇକସାହିରେ ଦେଓ୍ୱାନଙ୍କ ନିବାସ ଥିଲା । ସଦାଶିବ ଦେଓ୍ୱାନଙ୍କ ଦାୟାଦ ସ୍ୱର୍ଗତ ଭଗବାନ ପଟ୍ଟନାୟକ ୧୮୮୦ ମସିହାରେ ଖୋର୍ଦ୍ଧା ବନ୍ଦୋବସ୍ତ ଅଧିକାରୀ ଟେଲର ସାହେବଙ୍କର ଅଧୀନରେ କାମ କରୁଥିଲେ । ସେ ଟେଲର ସାହେବଙ୍କୁ ଯୁଆଡେ ନିଅନ୍ତି ତାହା ବନ୍ଦୋବସ୍ତ ନକ୍ସାରେ ରାସ୍ତା ହୋଇଯାଏ । ତେଣୁ ସଂପୁରର ପୁରାତନ ଲୋକଙ୍କ ଠାରୁ ଶୁଣାଯାଏ ଭଗବାନ ପଟ୍ଟନାୟକ ଯୁଆଡେ ଟେଲର ସାହେବଙ୍କ ହାତୀ ସିଆଡେ । ପୁନର୍ବାର ୧୮୮୯ ମସିହାରେ ଟେଲର ସାହେବଙ୍କ ପୁତ୍ର ମି. କେ.ଏସ. ଟେଲର ମଧ ଖୋର୍ଦ୍ଧା ସହକାରୀ ବନ୍ଦୋବସ୍ତ ଅଫିସର ଥିଲେ । ତାଙ୍କର କାର୍ଯ୍ୟକଳାପ ଯୋଗୁଁ ଖୋର୍ଦ୍ଧାର ସମସ୍ତ ସର୍ବରାକାର ଏବଂ ପ୍ରଜାମାନେ ବହୁ ହଇରାଣ ହରକତ ହେବା ସଂଗେ ସଂଗେ ଜଙ୍ଗଲ ଭୋଗ ଦଖଲରୁ ବଞ୍ଚିତ ହୋଇଥିବା କଥା ସ୍ୱଗତ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ଲିଖିତ 'ଖୋରଧା ଦର୍ପଣ'ରେ ଦର୍ଶାଇଛନ୍ତି । ଏହି ଦେଓ୍ୱାନ ବଂଶର ଶେଷ ଦାୟାଦ ସ୍ୱର୍ଗତ ଲକ୍ଷ୍ମଣ ପଟ୍ଟନାୟକ କିଛି ବର୍ଷ ତଳେ ଦେହତ୍ୟାଗ କରିଛନ୍ତି ।

ନିକଟରେ ଖୋର୍ଦ୍ଧାରେ ଗଠିତ ଖୋର୍ଦ୍ଧା ଇତିହାସ ସମାଜର ବୈଠକରେ ବୋଲଗଡ ଇତିହାସ ସମ୍ପର୍କରେ ଆଲୋଚନା କରାଯାଇଥିଲା । ଏ ବୈଠକରେ ପ୍ରାକ୍ତନ ପ୍ରଧାନ ଶିକ୍ଷକ ତଥା ଐତିହାସିକ ମୁରଲୀଧର ପ୍ରଧାନ ଅଧକ୍ଷତା କରିଥିଲେ ଏବଂ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ, ସତ୍ୟବାଦୀ ବଳିଆରସିଂହ, ଭୀମସେନ ପ୍ରଧାନ, ଅଧାପକ ଗୋପାଳକୃଷ୍ଣ ଦାସ ଏବଂ ପ୍ରାଣକୃଷ୍ଣ ଦଳବେହେରାଙ୍କ ସମେତ ବହୁ ଇତିହାସ ପ୍ରେମୀ ଉପସ୍ଥିତ ଥିଲେ । ଲେଖକ ଏ ବୈଠକରେ ବୋଲଗଡ ଇତିହାସ ସମ୍ପର୍କରେ ଆଲୋଚନା କରିବା ସମୟରେ ସେଠାରେ ଉପସ୍ଥିତ 'ରଣପୁର ଇତିହାସ'ର ଲେଖକ ଶ୍ରୀ ସତ୍ୟବାଦୀ ବଳିୟାରସିଂହ ମୁକ୍ତାଦେଈଙ୍କ ବିଷୟରେ ଏକ ନୂତନ ତଥ୍ୟ ପ୍ରଦାନ କରିଥିଲେ । ମୁକ୍ତାଦେଈଙ୍କର ଦେଓ୍ୱାନଙ୍କ ନାମ ସଦାଶିବ ବହିଦାର । ସେ ସମ୍ବଲପୁରରୁ ରାଣୀ ମୁକ୍ତାଦେଈଙ୍କ ସାଥିରେ ଦେଓ୍ୱାନ ଭାବରେ ଆସି ପାଞ୍ଚଗଡର ଶାସନ ଦ୍ୱାୟୀତ୍ୱରେ ଥିଲେ । କିନ୍ତୁ ସ୍ଥାନୀୟ ସୂତ୍ରରୁ ଏବଂ ଐତିହାସିକ ତଥ୍ୟରୁ ସଦାଶିବଙ୍କର ରାୟ ଏବଂ କେତେକ ସ୍ଥାନରେ ପଟ୍ଟନାୟକ ପଦଥିଲା । ବର୍ତ୍ତମାନ ସମ୍ବଲପୁର ଅଞ୍ଚଳରେ ବହିଦାର ପଦ ଏକ ଜଣାଶୁଣା ସଂଜ୍ଞା ଥିବାରୁ ସେତେବେଳେ ରାଣୀଙ୍କ ଦେଓାନଙ୍କର ସଂଜ୍ଞା ବହିଦାର ଥାଇପାରେ ଏବଂ ବକ୍ସି ଜଗବନ୍ଧୁ ବାଣପୁର ଦେଇ ପାଞ୍ଚଗଡକୁ ଆସି ରାଣୀଙ୍କୁ ବିତାଡିତ କରିବା ସଂଗେ ସଂଗେ ତାଙ୍କର ଅତ୍ୟାଚାରୀ ଦେଓ୍ୱାନ ସଦାଶିବ ପାଇକ ମେଳିରେ ନିହତ ହୋଇଥିବା ଜଣାଯାଏ । ଶ୍ରୀ ସତ୍ୟବାଦୀ ବଳିୟାରସିଂହ ସେହି ସମୟର ଘଟଣା ଉପରେ କହନ୍ତି, ବକ୍ସି ଜଗବନ୍ଧୁଙ୍କ ସହିତ ବାଣପୁର ଅଞ୍ଚଳର ଭାଟପଡା ଦଳବେହେରା ଅନ୍ତର୍ଯ୍ୟାମୀ ହରିଚନ୍ଦନ (ବର୍ତ୍ତମାନ ରାଜ୍ୟର ବରିଷ୍ଠ ମନ୍ତ୍ରୀ ଶ୍ରୀ

ବିଶ୍ୱଭୂଷଣ ହରିଚନ୍ଦନଙ୍କ ପ୍ରପିତାମହ) ପାଞ୍ଚଗଡ ଆସିଥିଲେ । ସେ ରାଣୀ ମୁକ୍ତାଦେଈଙ୍କର ସକଳ ବିନୟ ସତ୍ତ୍ୱେ ତାଙ୍କର ପୁତ୍ରକୁ ଖଣ୍ଡା ଚୋଟରେ ହତ୍ୟା କରିଥିବାରୁ ରାଣୀ ଦଳବେହେରାଙ୍କୁ (ନିଅଁଶୀ) ହେବା ପାଇଁ ଅଭିଶାପ ଦେଇଥିଲେ । ବର୍ତ୍ତମାନ ସଂଗୃହୀତ ତଥ୍ୟ ଅନୁସାରେ ଭାଟପଡା ଦଳବେହେରା ବଂଶରେ କେହି ସ୍ୱଜନ୍ମିତ ପୁତ୍ର ରହୁନାହାନ୍ତି । ଏହାପରେ ବିଶ୍ୱଭୂଷଣଙ୍କର ପୂର୍ବଜମାନେ ଭାଟପଡା ଛାଡି ନିକଟସ୍ଥ ଗୋଡିଝରିର ଗ୍ରାମରେ ବସତି ସ୍ଥାପନ କରିଥିଲେ ।  ଆତ୍ମୀୟ ପୋଷ୍ୟ ପୁତ୍ର ମାନେ ଏ ବଂଶର ଦଳବେହେରା ପଦରେ ଅଧିଷ୍ଠିତ ହେଉଛନ୍ତି । ଏ ବିଷୟରେ ଅଧିକ ଅନୁସନ୍ଧାନ ଆବଶ୍ୟକ ।

ଗଜପତି ଦିବ୍ୟସିଂହ ଦେବ (୩ୟ) ଙ୍କ ପରେ ମୁକୁନ୍ଦଦେବ (୨ୟ) (୧୭୮୮-୧୮୧୭) ଖୋରଧା ସିଂହାସନ ଆରୋହଣ କଲେ । ସେହି ସମୟରେ ଇଂରେଜ ଶକ୍ତି ଖୋରଧା ତଥା ଓଡିଶା ଦଖଲ କଲେ । ୧୮୧୭ ରେ ପାଇକ ବିଦ୍ରୋହ ହୋଇଥିଲା । ଏହା ୧୮୨୪ ପର୍ଯ୍ୟନ୍ତ ଚାଲିଥିଲେ ମଧ ବିଟ୍ରିଶ ଶକ୍ତି ଏହାକୁ ଦବାଇ ପାରିନଥିଲା । ଶେଷରେ ୧୮୨୪ ରେ ନୟାଗଡ ରାଜାଙ୍କ ସାହାଯ୍ୟରେ ବକ୍ସିଙ୍କ ସହ ସନ୍ଧି ସ୍ଥାପନ କରିବାକୁ ଇଂରେଜ ସରକାର ବାଧ ହୋଇଥିଲେ । ସେହି ଦିନ ଠାରୁ ଖୋରଧାରେ ଗଜପତି ନରହି ପୁରୀରେ ଅବସ୍ଥାନ କରି ଶ୍ରୀମନ୍ଦିର ପରିଚାଳନା ଭାର ଗ୍ରହଣ କରିଥିଲେ ମଧ ଠାକୁର ରାଜା ଭାବରେ ଅଦ୍ୟାବଧି ତାଙ୍କର ପୂର୍ବ ମର୍ଯ୍ୟାଦା ଓଡିଆ ଜାତିର ହୃଦୟରେ ଅତୁଟ ରହିଅଛି । ମୁକୁନ୍ଦ ଦେବଙ୍କ ପରେ ଗଜପତି ରାମଚନ୍ଦ୍ର ଦେବ (୩ୟ), ଗଜପତି ବୀରକିଶୋର ଦେବ (୨ୟ), ଗଜପତି ଦିବ୍ୟସିଂହ ଦେବ (୩ୟ) ଗଜପତି ମୁକୁନ୍ଦ ଦେବ (୩ୟ) ଗଜପତି ରାମଚନ୍ଦ୍ର ଦେବ (୪ର୍ଥ), ଗଜପତି ବୀରକିଶୋର ଦେବ (୩ୟ) ପୁରୀ ଗଜପତି ମହାରାଜା ଭାବରେ କାଳ କାଟିବା ପରେ ୧୯୭୧ ମସିହାରୁ ବର୍ତ୍ତମାନର ଗଜପତି ମହାରାଜା ଦିବ୍ୟସିଂହ ଦେବ ଚଳିତ ବର୍ଷ (୨୦୦୪) ପବିତ୍ର ସୁନିଆ ତିଥିରେ ୪୩ ଅଙ୍କରେ ପଦାର୍ପଣ କରିଛନ୍ତି । ଗଜପତି ବୀରକିଶୋର ଦେବ ୧୯୭୪ରେ ଜନକଂଗ୍ରେସ ବିଧାୟକ ଭାବରେ ଖୋରଧାରୁ ନିର୍ବାଚିତ ହୋଇଥିଲେ ।  ସେ ସମୟରେ ବାଙ୍କୋଇ ତାରେଶ୍ୱର ଦେବଙ୍କ ପୀଠରେ ଅନୁଷ୍ଠିତ ବିଶ୍ୱଶାନ୍ତି ମହାଯଜ୍ଞକୁ ପୂର୍ଣ୍ଣାହୁତି ଦେବାକୁ ଆସିଥିଲେ । ବର୍ତ୍ତମାନର ଗଜପତି ମହାରାଜା ଶ୍ରୀ ଶ୍ରୀ ଦିବ୍ୟସିଂହ ଦେବ ତା ୦୮-୦୭-୧୯୭୯ ମସିହାର ରଥଯାତ୍ରା ପରେ ବୋଲଗଡ ଅଂଚଳର ଅଗ୍ରଗଣ୍ୟ ସାଂସ୍କୃତିକ ଅନୁଷ୍ଠାନ ‘ନନ୍ଦିଘୋଷ’ର ପ୍ରଥମ ବାର୍ଷିକ ଉତ୍ସବକୁ ଆସିବା ସଂଗେ ସଂଗେ ୧୭-୭-୨୦୦୨ ମସିହା ଦିନ ଉତ୍ତର ବେଗୁନିଆଁର ଗୋଡି ପୋଖରୀ ଠାରେ ପ୍ରତିଷ୍ଠିତ ଶ୍ରୀ ଜଗନ୍ନାଥ ବନ ପ୍ରକଳ୍ପର ଶୁଭ ଉଦଘାଟନ ଉତ୍ସବକୁ ଆସିବା ସଂଗେ ସଂଗେ ପୁନର୍ବାର ଉତ୍ତର ବେଗୁନିଆଁରେ ପଙ୍ଗରସିଂହ

ଗ୍ରାମକୁ ଆସିଥିବାର ଜଣାଯାଏ । ସେହି ଦିନ ନୀଳଗିରୀ ରାଜା (ଗଜପତି ମହାରାଜାଙ୍କ ମାମୁଁ) ଙ୍କର ଦେହାନ୍ତ ଖବର ପାଇ ସଂଗେ ସଂଗେ ସଭା ଶେଷକରି ଚାଲିଯାଇଥିଲେ । ଲେଖକ ଏହି ଦୁଇଟି ସଭାରେ ଯୋଗଦେବାର ସୌଭାଗ୍ୟ ଅର୍ଜନ କରିଥିଲେ ।

ଏହିପରି ଭାବରେ ପାଞ୍ଚଗଡ ଏବଂ ସମୀପବର୍ତ୍ତୀ ଗଡମାଣିତ୍ରୀ ଗଡରେ ଗଜପତି ମାନଙ୍କର ଅବସ୍ଥାନର ସଂଗୃହିତ ବିବରଣୀ ସହ ଏଠାରେ ସଂଗଠିତ ଐତିହାସିକ ତଥ୍ୟର ବିଶଦ ବର୍ଣ୍ଣନା କରାଗଲା ।

ଏହିସବୁ ଘଟଣା ଯୋଗୁଁ ପାଞ୍ଚଗଡର ଗୌରବ ବର୍ଦ୍ଧନ ହୋଇ ପାରିଅଛି ଏବଂ ପାଞ୍ଚଗଡ ଅଂଚଳ ଇତିହାସରେ ଏକ ସ୍ୱତନ୍ତ୍ର ସ୍ଥାନ ରଖିପାରିଅଛି ।



## ପାଇକ ବିଦ୍ରୋହର ଝଲକ

୧୮୧୭ ଖୋରଧା ପାଇକ ବିଦ୍ରୋହ ଏକ ଯୁଗାନ୍ତକାରୀ ଐତିହାସିକ ଅଧ୍ୟାୟ । ଖୋରଧା ରାଜ୍ୟର ପଶ୍ଚିମ ପାର୍ଶ୍ୱରେ ବୋଲଗଡ ଅଂଚଳ ଥିବାରୁ ବକ୍ସି ଜଗବନ୍ଧୁ ଏହି ବିଦ୍ରୋହ ସମୟରେ ଖୋରଧା-ନୟାଗଡ ସୀମା ଜଙ୍ଗଲରେ ଅଧିକାଂଶ ସମୟ ଆତ୍ମଗୋପନ କରିଥିବା ଦୃଷ୍ଟିରୁ ଏହି ଅଂଚଳର ପାଇକ ବିଦ୍ରୋହରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା । ପାଇକ ବିଦ୍ରୋହ ସମ୍ପର୍କରେ ଲିଖିତ କେତେକ ଐତିହାସିକ ଗ୍ରନ୍ଥରୁ ତତ୍କାଳୀନ ସମୟରେ ପାଞ୍ଚଗଡ ଅଂଚଳର ପାଇକ ଏବଂ ସ୍ୱାଧୀନ ଚେତା ଲୋକଙ୍କର ଏକନିଷ୍ଠ ସହଯୋଗର ସୂଚନା ମିଳିବା ସଂଗେ ସଂଗେ ବ୍ରିଟିଶ ରାଜଶକ୍ତି ବିରୁଦ୍ଧରେ ସର୍ବପ୍ରଥମେ ଶହୀଦ ହୋଇଥିବା ଖୋର୍ଦ୍ଧା ରାଜ୍ୟର ମନ୍ତ୍ରୀ ଜୟୀରାଜ ଗୁରୁଙ୍କ ପରେ ବୋଲଗଡର ବର୍ତ୍ତମାନ ଦୃଶ୍ୟମାନ ଆମ୍ବତୋଟାରେ ଏହି ପାଇକ ବିଦ୍ରୋହକୁ ବିରୋଧ କରୁଥିବା ବ୍ରିଟିଶ ଶାସକଙ୍କର ଏଜେଣ୍ଟ ତଥା ପାଞ୍ଚଗଡରେ ଆଶ୍ରୟ ନେଇଥିବା ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କ ଦେୱାନ ସଦାଶିବ ରାୟଙ୍କୁ ମେଳିଆ ମାନେ ବାଙ୍କୋଇ ଗଡର ଭୂଇଁମୂଳ ପର୍ଶୁରାମ ରାଉତରାୟଙ୍କ (ଓରଫ କାଳିଆ ମଙ୍ଗରାଜ) ନେତୃତ୍ୱରେ ୫୦୦୦ ପାଇକଙ୍କ ଉପସ୍ଥିତିରେ ଯେପରି ଭାବରେ ହତ୍ୟାକରି ଦେଶଦ୍ରୋହୀଙ୍କୁ ଉଚିତ ଶିକ୍ଷା ଦେଇଛନ୍ତି ତାହାର ପଟାନ୍ତର ନାହିଁ । ଫଳ ସ୍ୱରୂପ ପର୍ଶୁରାମ ରାଉତରାୟଙ୍କୁ ବ୍ରିଟିଶ ସରକାର ଏହି ହତ୍ୟାରେ ଅଭିଯୁକ୍ତ କରି ଫାଶିଦଣ୍ଡ ଦେଇଥିଲେ । ତେଣୁ ଜୟୀ ରାଜଗୁରୁଙ୍କ ପରେ ପାଞ୍ଚଗଡ ଅନ୍ତର୍ଗତ ବାଙ୍କୋଇ ଗଡର ପର୍ଶୁରାମ ରାଉତରାୟ ନିଶ୍ଚିତ ଭାବରେ ଖୋର୍ଦ୍ଧା ବୀର ମାଟିର ପ୍ରଥମ ଶହୀଦ । ଦୁଃଖର ବିଷୟ ଇତିହାସରେ ଏହି

ବୀର ଶହୀଦ ଅଲୋଡା ହୋଇ ରହିଛନ୍ତି ।

ଏହି ପରିପ୍ରେକ୍ଷୀରେ ଏଯାବତ 'ପାଇକ ବିଦ୍ରୋହ' ସଂମ୍ପର୍କିତ ତଥ୍ୟ କ୍ରମ ଅନୁସାରେ ନିମ୍ନରେ ପ୍ରଦାନ କରାଗଲା ।

୰ ପ୍ୟାରୀମୋହନ ଆଚାର୍ଯ୍ୟଙ୍କର 'ଓଡିଶା ଇତିହାସ' ରେ ଖୋରଧା ଇଂରେଜ ମାନେ ଦଖଲ କଲାବେଳେ ପାଞ୍ଚଗଡର ଲୋକମାନେ ଖଜଣା ନଦେବାରୁ ତାଙ୍କୁ କରାୟତ କରିବା ପାଇଁ ବୋଲଗଡ ଏବଂ ବେଗୁନିଆଁ ଅଂଚଳର ତତକାଳୀନ ମୁଖ୍ୟ ଗଡ କୁଶୁପଲ୍ଲୀର ଅନତି ଦୂର ଗୋବିନ୍ଦପୁର ଠାରେ ୨ଟି ପୋଲିସ ଥାନା ଇଂରେଜ ସରକାର ସ୍ଥାପନ କରିଥିଲେ ।

'ଓଡିଶା ସ୍ୱାଧୀନତା ସଂଗ୍ରାମ ଇତିହାସ' ର ପ୍ରଣେତା ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ ଉକ୍ତ ବହିର ୭୨ ପୃଷ୍ଠାରେ ପାଞ୍ଚଗଡ ଲୋକଙ୍କର ତତକାଳୀନ ମାନସିକ ଅବସ୍ଥା ବିଷୟରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି ।

- "ପାଞ୍ଚଗଡ ଲୋକେ ସରକାରୀ ଲୋକଙ୍କୁ ଏବଂ ସୈନ୍ୟ ବାହିନୀକୁ ଧାନ ଚାଉଳ ବିକ୍ରୀ କରିବାକୁ ମଙ୍ଗୁ ନଥିଲେ । ଏହି ମନୋଭାବ ଛାଡିବାକୁ ଲୋକଙ୍କ ଉପରେ ଆଦେଶ ଜାରୀ ହେଲା" ।

ଏହାଛଡା ୧୮୧୭ ଅଗଷ୍ଟ ୧୦ ତାରିଖରେ ତତ୍କାଳୀନ ଓଡିଶାର Acting Chief Secretary, W. Beally ଖୋରଧାର ଅଶାନ୍ତ ଅଂଚଳର ଏକ ମାନଚିତ୍ର କରି ଉଚ୍ଚକର୍ତ୍ତୃପକ୍ଷଙ୍କୁ ପ୍ରେରଣ କରିଥିଲେ । ଏହି ମାନଚିତ୍ରରେ ବୋଲଗଡ ଥାନାର ପାଞ୍ଚଗଡ ଅଂଚଳ ରହିଥିବା ସୂଚୀତ ହୁଏ ।

ପାଞ୍ଚଗଡ ଅଂଚଳରେ ଖୋରଧା ରାଜ୍ୟ ଅଂଶ ବିଶେଷ ହେଲେ ମଧ ବହୁକାଳ ପୂର୍ବରୁ ଖୋରଧା ମୂଳକ ବୋଇଲେ ପୂର୍ବରେ ଶିଶୁପାଳଗଡ ଠାରୁ ପଶ୍ଚିମରେ ବୋଲଗଡ ଥାନାର ଦିଘିରି ଗ୍ରାମ ଏବଂ ଉତ୍ତରରେ ଦାରୁଠେଙ୍ଗ ଠାରୁ ଦକ୍ଷିଣରେ ଚିଲିକା ତୀର ବଡକୁଳ ନିକଟବର୍ତ୍ତୀ ଛତ୍ରଗଡ ଘାଟିକୁ ବୁଝାଏ । ଏଠିକାର ଭାଷା, ସଂସ୍କୃତି, ସାମାଜିକ ବ୍ୟବସ୍ଥା ଏବଂ ନିପୁଣ ସାମରିକ ପରମ୍ପରା ଏକପ୍ରକାର ।

ଏହି ବୀର ପାଇକ ଜାତିର ଅବସ୍ଥା ସମ୍ପର୍କରେ ଅତ୍ୟନ୍ତ କ୍ଷୋଭର ସହ ଡଃ. ହରେକୃଷ୍ଣ ମହତାବ ତାଙ୍କ ଲିଖିତ 'ଓଡିଶା ଇତିହାସ' ର ପାଇକ ବିଦ୍ରୋହ ପରିଚ୍ଛେଦରେ ଯାହା ବର୍ଣ୍ଣନା କରିଛନ୍ତି ତାହା ଏଠାରେ ଆଲୋକପାତ କରାଗଲା ।

- " ପାଇକମାନେ ଯେପରି ପ୍ରଭୁଭକ୍ତ ଯୁଦ୍ଧ ସମୟରେ ସେହିପରି ନିଷ୍ଠୁର (ଷ୍ଟାଲିଙ୍ଗ) । ଏମାନଙ୍କ ବାହୁ ବଳରେ ଓଡିଶା ବହୁକାଳରୁ ଶତ୍ରୁମାନଙ୍କ ଆକ୍ରମଣ ପ୍ରତିରୋଧ କରି ନିଜକୁ ସ୍ୱାଧୀନ ରଖିପାରିଥିଲା । ଦୁଃଖର ବିଷୟ ସେତେବେଳେ କୌଣସି ରାଜା ବା ସୁଦକ୍ଷ ଲୋକ ଦୂରଦର୍ଶୀ ହୋଇ ଏହି ପାଇକମାନଙ୍କୁ ଉତ୍କୃଷ୍ଟ

ଧରଣର ଯୁଦ୍ଧ ବିଦ୍ୟା ଶିକ୍ଷା ଦେବାର ବ୍ୟବସ୍ଥା କରି ପାରିଲେ ନାହିଁ । ନହେଲେ ମରହଟ୍ଟାମାନଙ୍କ ପରି ଏମାନେ ଧୂରନ୍ଧର ବୀର ହୋଇପାରିଥାନ୍ତେ ଏବଂ ଏମାନଙ୍କ ସାହାଯ୍ୟରେ କେହି ଶିବାଜୀ ହୋଇ ବାହାରି ଥାଆନ୍ତେ । ମୁସଲମାନ ମାନେ ଯେତେବେଳେ ଭାରତକୁ ଆସନ୍ତି ସେତେବେଳେ ଯୁଦ୍ଧ ନୀତିର ପରିବର୍ତ୍ତନ ହେଲା । ପୁଣି ଇଂରେଜ ଫରାସୀ ଆଦି ପାଶ୍ଚାତ୍ୟ ଜାତିର ଲୋକ ଆସି ଆହୁରି ଉନ୍ନତ ଧରଣର ଯୁଦ୍ଧ ଆରମ୍ଭ କଲେ । ମାତ୍ର ଓଡିଆ ମାନେ ନବପ୍ରବର୍ତ୍ତିତ ଏହି ଯୁଦ୍ଧର ରୀତି ଠାରୁ ବହୁଦୂରରେ ରହି ସେହି ପୁରୁଣା ବିଦ୍ୟାରେ ଅଟକି ରହିଗଲେ । ଏଣୁ ଓଡିଆ ତାର ସ୍ୱାଧୀନତା ହରାଇଲା ।"

ଏହାଛଡା ପାଇକମାନଙ୍କର ସାହସ ଏବଂ ବୀରତ୍ୱ ସମ୍ପର୍କରେ ପାଇକ ବିଦ୍ରୋହ ବେଳେ ବ୍ରିଟିଶ ସୈନ୍ୟ ପରିଚାଳନା କରୁଥିବା କମିଶନର ଜୋନ ମେକଭିଲ ନିମ୍ନମତେ ଏକ ରିପୋର୍ଟ ପ୍ରଦାନ କରିଥିଲେ :-

'ବ୍ରିଟିଶ ସେନା ବାହିନୀ ଯେତେବେଳେ କଟକ ଜୟ କଲେ ସେତେବେଳେ ମୁଁ ତାଙ୍କ ସାଙ୍ଗରେ ଥିଲି । ଆମ ପ୍ରଦେଶ (ବଙ୍ଗ ପ୍ରଦେଶ) ସୀମାନ୍ତରେ ଓଡିଶା ଅବସ୍ଥିତ ଥିଲେ ମଧ୍ୟ ଉକ୍ତ ଅପରାଧ ମାନ ଏଠାରେ ନାହିଁ ବୋଲି କହିଲେ ଚଳେ । ଏହାର କାରଣ ଅନୁସଂଧାନ କରି ମୁଁ ଜାଣିଲି ଏହା ଖଣ୍ଡାୟତ ଓ ପାଇକ ନାମକ ଏକ ପୋଲିସ ସଂଗଠନ ଯୋଗୁଁ ସମ୍ଭବ । ଖଣ୍ଡାୟତ ପାଇକ ମାନଙ୍କ ଭରଣପୋଷଣ ପାଇଁ ସେମାନଙ୍କୁ ଜମି ଦିଆଯାଇଛି । ସେମାନେ ପହରା ଦିଅନ୍ତି । ଚୋରୀ ଡକାୟତି ହେଲେ ସେମାନେ ଦାୟୀ ହୁଅନ୍ତି । ମୁଁ ବଙ୍ଗ ସରକାରଙ୍କୁ ଲେଖିବାରୁ ସେମାନେ ଜାଗିରୀ ଜମି ସବୁ ଅନୁଷ୍ଠାନକୁ ମଞ୍ଜୁର କଲେ । ଫଳରେ କଟକ ଅଂଚଳରେ ପୋଲିସ କାମ ଅତି ସନ୍ତୋଷ ଜନକ ଭାବରେ କରାଯାଇଛି' ।

**********

Selection papers from records of the East India House Vol-II, page-9 (Published by Court of Directors in 1820, London)

ଏଠାରେ ଜୋନ ମେକଭିଲଙ୍କ ଉକ୍ତିସହ ପାଇକମାନେ ପୋଲିସ ଅନୁଷ୍ଠାନ ପରି କାମ କରୁଥିବାର ଅନ୍ୟ ଏକ ସ୍ଥାନୀୟ ଦୃଷ୍ଟାନ୍ତ ଦିଆଗଲା । ପ୍ରାଚୀନ ଲୋକ ନୃତ୍ୟ ଦଣ୍ଡନାଟରେ ସ୍ଥାନୀୟ ଦୈନନ୍ଦିନ ସାମାଜିକ ଚାଲିଚଳଣି ପ୍ରତିଫଳିତ ହୋଇଥାଏ । ସଂପୁର ଗ୍ରାମ ଦଣ୍ଡନାଟରେ ଏପ୍ରକାର ଏକ ଗୀତ ବୋଲାଯାଇଥାଏ ।

*ପାଟମହାଦେଈ ସାହି*
*ଚୋରଙ୍କର ଭୟ ନାହିଁ ।*
*ସେ ସାହିରେ ପଡେନାହିଁ ଆଣ୍ଡି ପହରା*

ଅର୍ଥାତ ପୋଲିସ ଥାନା ତରଫରୁ ଚୋରୀକୁ ରୋକିବାକୁ ଗ୍ରାମ ଚୌକିଦାର ମାନେ ରାତିରେ ପହରା ଦିଆଯିବାର ବ୍ୟବସ୍ଥା ଥାଏ । ମାତ୍ର ସଂପୁର ଗ୍ରାମର ପୁରାତନ ସାହି ପାଟମହାଦେଈ ସାହି ବର୍ତ୍ତମାନ ଛୋଟରାୟପୁର ପାଟଣାରେ ପାଇକ ଶ୍ରେଣୀର ଲୋକଥିବାରୁ ସେଠାରେ ଚୋରୀ ରୋକିବାକୁ ରାତିରେ ଆଣ୍ଟି ପହରା ଦେବାକୁ ପଡୁନଥିଲା । ପାଇକମାନେ ପୋଲିସ ଅନୁଷ୍ଠାନ ପରି କାର୍ଯ୍ୟ କରୁଥିଲେ ।

୧୮୦୩ ରେ ଇଂରେଜମାନେ ପୁରୀ ଏବଂ ୧୮୦୪ରେ ଖୋରଧା ଅଧିକାର କଲେ । ତା'ପରେ ଯୁବକ ଗଜପତି ମୁକୁନ୍ଦ ଦେବଙ୍କ ଉପରେ ଅତ୍ୟଧିକ ଚାପ ପ୍ରୟୋଗ ସହ ଶେଷରେ ତାଙ୍କୁ ବନ୍ଦୀ କରାଗଲା । ମନ୍ତ୍ରୀ ଜୟୀ ରାଜଗୁରୁଙ୍କୁ ନିର୍ମମ ଭାବରେ ଫାଶୀ ଦିଆଗଲା ।

ଗଜପତି ଶାସନ ଅମଳରୁ ଖୋରଧାର ଖଣ୍ଡାୟତ ପାଇକ ମାନଙ୍କର ଥିବା ଜାଗିରି ଜମିର ଉଚ୍ଛେଦ ସହ ବେଡି ଉପରେ କୋରଡା ପରି ବାରମ୍ବାର ବନ୍ଦୋବସ୍ତ କରି ଅତ୍ୟଧିକ କର ଧାର୍ଯ୍ୟ ସହ ଲୁଣ ମାରିବା ଉପରେ ବାସନ୍ଦ ପ୍ରଭୃତି ଇଂରେଜଙ୍କର ଜନମାରଣ ନୀତି ପାଇକ ମାନଙ୍କୁ ବିଦ୍ରୋହ କରିବା ପାଇଁ ଏକ ବାତାବରଣ ସୃଷ୍ଟି କରିଥିଲା । ଏପରି ୧୮୦୩ ରୁ ୧୮୧୭ ମଧ୍ୟରେ ଗୋଟିକ ପରେ ଗୋଟିଏ ବ୍ୟବସ୍ଥା ଲାଗୁହେବା ପରିପ୍ରେକ୍ଷୀରେ ଖୋରଧା ରାଜ୍ୟର ପାରମ୍ପରିକ ସେନାପତି ବକ୍ସି ଜଗବନ୍ଧୁଙ୍କ ରୋଡଙ୍ଗ ଜମିଦାରୀକୁ ଚକ୍ରାନ୍ତକରି ବକ୍ସିଙ୍କ ଠାରୁ ଉଚ୍ଛେଦ କରିବା ପ୍ରସଙ୍ଗ ଯୋଗୁଁ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ସଂଗଠିତ ପାଇକ ବିଦ୍ରୋହ କେବଳ ଖୋରଧା ମୁଲକରେ ସୀମିତ ହୋଇ ରହିନଥିଲା । ସମଗ୍ର ମୋଗଲ ବନ୍ଦୀ ଉପକୂଳ ଅଂଚଳ କୁଜଙ୍ଗ ଠାରୁ ଆରମ୍ଭ କରି ସୁଦୂର ଗଂଜାମ ଏବଂ ଘୁମୁସର ମାଳ ସହ ଅଠଗଡ, ରେଢାଖୋଲ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା । ୧୫୭୨ ଠାରୁ ୧୮୦୩ ପର୍ଯ୍ୟନ୍ତ ଦୀର୍ଘ ୨୩୧ ବର୍ଷ ଭୋଇବଂଶ ଶାସନ କାଳରେ ଓଡିଶା ୧୫୬୮ ରୁ ୧୫୯୨ ଆଫଗାନ, ୧୫୯୨ ଠାରୁ ୧୭୫୧ ପର୍ଯ୍ୟନ୍ତ ମୋଗଲ ଏବଂ ୧୭୫୧ ରୁ ୧୮୦୩ ମରହଟ୍ଟା ଶାସନ ସମୟରେ ଯୋଜନା ବଦ୍ଧ ଭାବରେ ବାରମ୍ବାର ଜଗନ୍ନାଥ ମନ୍ଦିର ଆକ୍ରମଣ ସହ ଓଡିଆ ଜାତିର ମଉଡମଣି ଠାକୁର ରାଜା ଗଜପତି ମହାରାଜା ମାନଙ୍କୁ ସଦା ସର୍ବଦା ପଦାନତ କରିବା ବୀର ଓଡିଆ ଜାତି ପକ୍ଷରେ ଅସହ୍ୟ ହୋଇ ପଡିଥିଲା । ଆଗ୍ନେୟଗୀରିରୁ ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗିରଣ ସଦୃଶ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ଏହି ଐତିହାସିକ ପାଇକ ବିଦ୍ରୋହ ଆରମ୍ଭ ହେଲା । ଏହାର ପରିଣତି ଯାହା ହେଉ ପଛକେ ୧୮୧୭ ମସିହାଠାରୁ ୧୮୨୪ ପର୍ଯ୍ୟନ୍ତ ଦୀର୍ଘ ୮ ବର୍ଷ କାଳ ବୀର ଓଡିଆ ପାଇକ ମାନେ ସମଗ୍ର ପୃଥିବୀରେ ସୂର୍ଯ୍ୟାସ୍ତ ଦେଖୁନଥିବା ପରାକ୍ରମୀ ବ୍ରିଟିଶ ଶକ୍ତିର ଆଖିରୁ ନିଦ ହଜେଇ ଦେଇଥିଲେ । ପାଇକ ବିଦ୍ରୋହ ବେଳେ ବକ୍ସିଙ୍କ ନେତୃତ୍ୱରେ ସର୍ବପ୍ରଥମେ ପାଣ୍ଡଗଡରୁ ଖୋର୍ଦ୍ଧାର ଇଂରେଜ

ଶାସକଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ ହୋଇଥିବା ଜଣାଯାଏ ।

ଏ ସମ୍ପର୍କରେ ଓଡିଶାର ସ୍ୱାଧୀନତା ସଂଗ୍ରାମ ଇତିହାସର (୧ମ ଭାଗ) ରେ ଏହାର ପ୍ରଣେତା ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ଏବଂ ଐତିହାସିକ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ ତାଙ୍କ ଲିଖିତ 'ଯଶଦେହେ ଆୟୁଷ୍ମାନ' ଗ୍ରନ୍ଥରେ ଲିପିବଦ୍ଧ କରିଥିବା ବିଷୟ ପାଠକ ମାନଙ୍କ ଅବଗତି ନିମନ୍ତେ ଏଠାରେ ପ୍ରକାଶ କରାଗଲା ।

<u>ଓଡିଶା ସ୍ୱାଧୀନତା ସଂଗ୍ରାମ ଇତିହାସ</u> (୧ମ ଭାଗ)

ଲେଖକ.- ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ପୃଷ୍ଠା- ୧୪୩)

'ଏପ୍ରିଲ ୨ ତାରିଖରେ ଇର୍ମି ସାହେବ ଗଙ୍ଗପଡା ଠାରେ ପହଞ୍ଚିଲା ବେଳକୁ ଖୋର୍ଦ୍ଧା ଗଡରେ ପ୍ରାଇଡ୍ ସାହେବ ନଥିଲେ । ତାଙ୍କ ପାଖରେ ଖବର ପହଞ୍ଚିଲା ଯେ, ବିଦ୍ରୋହୀ ମାନେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବାଣପୁର ଆଡୁ ଯାଇ ପାଞ୍ଚଗଡରେ ପହଞ୍ଚି ସେଠାରେ ନିବାସ କରୁଥିବା ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କ ଘର ଆକ୍ରମଣ କରିଥିଲେ । ସେଠାରେ ରାଣୀ ମୁକ୍ତାଦେଈ ଓ ତାଙ୍କ ଦେଓ୍ୱାନଙ୍କୁ ଧରି ନେଇ ରାଣୀଙ୍କ ଘର ସର୍ବସ୍ୱ ଲୁଟି କରିନେଲେ । ସ୍ୱୟଂ ବକ୍ସି ୫୦୦୦ ବିଦ୍ରୋହୀ ପାଇକଙ୍କୁ ସଂଗରେ ନେଇ ପ୍ରାଇଡ୍‌ଙ୍କୁ ଆକ୍ରମଣ କରିବା ନିମିତ୍ତ ଖୋର୍ଦ୍ଧା ଆଡେ ଅଗ୍ରସର ହେଉଥିବା ଖବର ପ୍ରାଇଡଙ୍କ ଠାରେ ପହଞ୍ଚିଲା । ଏପ୍ରିଲ ୩ ତାରିଖ ଦିନ ବିଦ୍ରୋହୀ ମାନେ ଖୋର୍ଦ୍ଧାର ସବୁ ସରକାରୀ କୋଠାବାଡି ପୋଡି ଧ୍ୱଂସ କରିଦେଲେ ।

********

<u>ଯଶଦେହେ ଆୟୁଷ୍ମାନ</u>

ଲେଖକ.- ଡଃ. ପ୍ରଫୁଲ୍ଲ ପଟ୍ଟନାୟକ (ପୃଷ୍ଠା- ୭୪୨)

(ପାଇକ ବିଦ୍ରୋହର କର୍ଣ୍ଣଧାର - ବକ୍ସି ଜଗବନ୍ଧୁ)

ବିଦ୍ରୋହ ପାଞ୍ଚଗଡକୁ ବ୍ୟାପିଲା । ସେତେବେଳେ ସମ୍ବଲପୁର ରାଣୀ ମୁକ୍ତାଦେଈ ପାଞ୍ଚଗଡରେ ରହୁଥିଲେ । ପ୍ରଜାମାନେ ସେଠାରେ ନିଷ୍ପେଷିତ ହେଉଥିଲେ । ତାଙ୍କର ଦେଓ୍ୱାନଙ୍କ ଅତ୍ୟାଚାର ମଧ ଚରମ ସୀମାରେ ପହଞ୍ଚିଥିଲା । ଜଗବନ୍ଧୁ ବିଦ୍ରୋହୀ ମାନଙ୍କ ସହ ବୋଲଗଡରେ ପହଞ୍ଚିଲେ । ସେଠାରେ ଘୋର ଉତ୍ତେଜନା ସୃଷ୍ଟି ହେଲା । ସେଠାର ଦଳେଇ ଦଳବେହେରା ମାନେ ସଂଗେ ସଂଗେ ବିଦ୍ରୋହୀ ମାନଙ୍କ ସଂଗେ ଯୋଗଦେଲେ । ବିଦ୍ରୋହୀ ମାନେ ରାଣୀ ମୁକ୍ତାଦେଈ ଓ ଦେଓ୍ୱାନଙ୍କ ଗୃହରେ ଅଗ୍ନି ସଂଯୋଗ କରିଦେଲେ । ଦେଓ୍ୱାନଙ୍କୁ ମଧ ସେଠାରେ ହତ୍ୟା କରାଗଲା । ରାଣୀ ନିରାପଦରେ ପଳାୟନ କରି କଟକରେ ପହଞ୍ଚିଲେ ।

ଉପରୋକ୍ତ ତଥ୍ୟ ସହ ଖୁରୁଧା ଦର୍ପଣ ପୁସ୍ତକରେ ଏହାର ଲେଖକ ୰ ଦିଗମ୍ବର ଶ୍ରୀଚନ୍ଦନ ଏହି ଘଟଣା ବଳୀର ବିଶେଷ ବିବରଣୀ ପ୍ରଦାନ କରିଛନ୍ତି । ଏହି ୩ ଗୋଟି ତଥ୍ୟର ସାମଞ୍ଜସ୍ୟ ରହିଅଛି ।

*******

## ଖୁରୁଧା ଦର୍ପଣ

ଲେଖକ.- ୰ ଦିଗମ୍ବର ଶ୍ରୀଚନ୍ଦନ, ପୃଷ୍ଠା.- ୧୯୯

ବକ୍ସି ଜଗବନ୍ଧୁ- ବିଦ୍ୟାଧର ମହାପାତ୍ରଙ୍କ ନେତୃତ୍ୱରେ ୧୮୧୭ରେ ଯେ ଖୁରଧା ତଥା ଓଡିଶା ବ୍ୟାପୀ ଏକ ବିରାଟ ପାଇକ ବିଦ୍ରୋହର ସୃଷ୍ଟି ହେଲା, ତାହାର ସୁଯୋଗ ନେଇ ପାଞ୍ଚଗଡ ବାସୀ ପ୍ରୋକ୍ତ ଭୂମିମୂଳଙ୍କ ନେତୃତ୍ୱରେ ମେଳି ଆରମ୍ଭ କରିବାକୁ ବୋଲଗଡ ତୋଟାରେ ମେଳ ହେବାରେ, ଉକ୍ତ ସଦାଶିବ (ଦେୱାନ ପଟ୍ଟନାୟକ) ସେ ମେଳି ଭାଙ୍ଗିବାକୁ କେତେକ ପାଣ ପାଏକ ଘେନି ସେଠାରେ ସୁସଜ୍ଜିତ ହୋଇ ପହଞ୍ଚି ବଳପୂର୍ବକ ସେମାନଙ୍କ ଦଳ ଭାଙ୍ଗିବାକୁ ଉକ୍ତ ପାଣ ପାଏକମାନଙ୍କୁ ଇସାରା ଦେବାରେ ସେମାନେ ପୂର୍ବର ଯେଉଁ ଶାସକ ଏବଂ ସୈନ୍ୟସାମନ୍ତ ପ୍ରଭୃତି ସାମରିକ ବିଭାଗୀୟ ଲୋକ, ଯେଉଁମାନେକି ପୂର୍ବରୁ ଏମାନଙ୍କୁ ସଙ୍ଗୀ ଥିଲେ, ସେମାନଙ୍କ ମୋହବତ ଭାଙ୍ଗି ନପାରି ସଦାଶିବଙ୍କ ଆଦେଶ ପ୍ରତି ଭୃକ୍ଷେପ କଲେ ନାହିଁ । ସୁତରାଂ ସଦାଶିବ ଘେରରେ ପଡିଗଲେ ଏବଂ ତାଙ୍କୁ ସେଠାରେ ହତ୍ୟା କରାଗଲା । ଏହାକୁ "ସଦାଶିବ ଦେୱାନ ପଟ୍ଟନାୟକଙ୍କ ହାଣ" ବୋଲି କୁହାଯାଏ । ଏହି ଘଟଣା ସେହି ବୋଲଗଡ ତୋଟାରେ ଏହାର ବିଚାର ହୋଇ ବାଙ୍କୋଇ କାଳିଆ ଭୂମିମୂଳଙ୍କୁ, ଏହିଠାରେ ଫାସି ଦିଆଯାଇ କୋଠକରଣ ବଂଶରୁ ଏକୋଇଶ ଜଣଙ୍କୁ ଦ୍ୱୀପାନ୍ତର ପଠାଗଲା । ସେହିଠାରୁ ଏହି ପାଞ୍ଚଗଡ ଓ ମାଣିକାଗୋଡା ଦୁଇ ଗଡ ଏପରି ସାତଗୋଟି ଗଡ ଦୁଇଟି ଜିଲ୍ଲା ନାମକରଣରେ ଖୁରୁଧା ଖାସମାହାଲ ସାମିଲି ହୋଇଛି ।

*******

ଅତ୍ୟାଚାରୀ ଦେଓାନ ସଦାଶିବ ରାୟଙ୍କୁ ହତ୍ୟାକରିଥିବା ମେଳିଆଙ୍କ ମୁଖ୍ୟଙ୍କ ନାମ 'କାଳିଆ ମଙ୍ଗରାଜ (ଭୂଇଁମୂଳ)' ବୋଲି ୰ ଦିଗମ୍ବର ଶ୍ରୀଚନ୍ଦନ ଉଲ୍ଲେଖ କଲାବେଳେ ତାଙ୍କ ନାମ ପର୍ଶୁରାମ ରାଉତରାୟ ଥିବାର ଇଂରେଜ ସରକାରଙ୍କ ଚିଠିରୁ ଜଣାଯାଏ । ପାଇକ ବିଦ୍ରୋହ ସଂମ୍ପର୍କୀତ ତଥ୍ୟାବଳୀର ଧାରା ବିବରଣୀ ଐତିହାସିକ ଫକିର ହରିଚନ୍ଦନ ତାଙ୍କ ଦ୍ୱାରା ଲିଖିତ 'ଖୋର୍ଦ୍ଧା ଇତିହାସର ଅନ୍ତରାଳେ' ଗ୍ରନ୍ଥରେ ପ୍ରକାଶ କରିଛନ୍ତି।

ଖୋର୍ଦ୍ଧା ଇତିହାସର ଅନ୍ତରାଳେ, ପୃଷ୍ଠା.- ୩୦

ତା ୬-୪-୧୮୧୯ -ଜଜ ଓ ମାଜିଷ୍ଟ୍ରେଟ ଟ୍ନ ବୁଲଙ୍କର ଫରେଷ୍ଟରଙ୍କୁ ପତ୍ର ସମ୍ବଲପୁର ରାଣୀଙ୍କ ଦେୱାନ ସଦାଶିବ ରାୟଙ୍କ ହତ୍ୟା ଅପରାଧରେ ପର୍ଶୁରାମ ରାଉତରାୟଙ୍କୁ ପ୍ରାଣ ଦଣ୍ଡାଦେଶ ହେଲା

ତା ୧୮-୪-୧୯୧୯- ଟର୍ନ ବୁଲେରଙ୍କ ଫରେଷ୍ଟରଙ୍କୁ ପତ୍ର ଚରଣ ପଟ୍ଟନାୟକଙ୍କ ହତ୍ୟା ଅପରାଧରେ ଶଚ୍ଚିଦାନନ୍ଦ ପଟ୍ଟନାୟକଙ୍କୁ ପ୍ରାଣ ଦଣ୍ଡାଦେଶ ହେଲା

ଏଥିରୁ ପ୍ରମାଣ ମିଳୁଅଛି ଯେ, ପାଇକ ବିଦ୍ରୋହ ବେଳେ ଯେଉଁ ଦେଶଦ୍ରୋହୀ ମାନେ ଇଂରେଜ ପକ୍ଷ ଗ୍ରହଣ କରି ତାଙ୍କର ଚାଟୁକାର ଥିଲେ ସେମାନଙ୍କୁ ଖୋରଧାର ସ୍ୱାଧୀନତା କାମୀ ସଚେତନ ବୀରମାନେ ଛାଡ଼ିନଥିଲେ । ଫାଶୀ ଖୁଣ୍ଟରେ ଝୁଲି ଶହୀଦ ହେଲେ ପଛେ ଦେଶଦ୍ରୋହୀଙ୍କୁ ପ୍ରକାଶ୍ୟରେ ହତ୍ୟାକରି ଚରମ ଶିକ୍ଷା ଦେଇ ଦେଶମାତୃକା ପାଇଁ ହସି ହସି ପ୍ରାଣ ବିସର୍ଜନ କରି ଜାତି ଇତିହାସରେ ଅମର ହୋଇଗଲେ ।

ଉକ୍ତ ଇତିହାସ ଗ୍ରନ୍ଥର ତଥ୍ୟ ଅନୁସାରେ, ସେତେବେଳେ କଲିକତାର ଫୋର୍ଟ ଉଇଲିୟମ ସ୍ଥିତ ଇଂରେଜ ସରକାରଙ୍କ ମୁଖ୍ୟ ଦପ୍ତରରୁ ଚିଫ ସେକ୍ରେଟାରୀ W.B. Balley ଙ୍କର କଟକ କମିଶନରଙ୍କର ସଚିବ ମି. ଷ୍ଟାର୍ଲିଙ୍ଗ ପାଖକୁ ୨୮-୪-୧୮୧୮ ମସିହାରେ ପତ୍ର ମୁତାବକ ମି. ଆରଙ୍କୁ ବ୍ୟାପକ କ୍ଷମତା ପ୍ରଦାନ ସହିତ କଟକ କମିଶନର ଭାବରେ ନିଯୁକ୍ତି ଦିଆଗଲା ଏବଂ କମିଶନରଙ୍କୁ ସବୁମତେ ସାହାଯ୍ୟ କରିବାକୁ କଟକ ସାମରିକ କମାଣ୍ଡ ଟ୍ରେନିଙ୍ଗ ଅଫିସରଙ୍କୁ ନିର୍ଦ୍ଦେଶ ଦିଆଗଲା । ଉଇଲିକସନଙ୍କୁ ଖୋର୍ଦ୍ଧା ବାଣପୁର ଥାନା ଦାୟିତ୍ୱରେ ଏବଂ ମି. ଫରେଷ୍ଟରଙ୍କୁ ପିପିଲି, ଗୋପ, ହରିଶପୁର, ତିରନ ଥାନା ଦାୟିତ୍ୱରେ ଜଏଣ୍ଟ ମାଜିଷ୍ଟ୍ରେଟ ଭାବରେ କମିସନର ନିଯୁକ୍ତି କଲେ ବୋଲି ମି. ଏ. ଷ୍ଟାଲିଙ୍ଗ ୨୭-୪-୧୮୧୯ ତାରିଖରେ ଚିଫ ସେକ୍ରେଟାରୀଙ୍କୁ ଜଣାଇଲେ । ଖୋରଧା ପିପିଲି ଥାନାକୁ ଅଧିକ ଉପଦ୍ରୁତ ଅଂଚଳ ମନେକରି ମି. ଫରେଷ୍ଟାରଙ୍କୁ ବେଳେ ବେଳେ ପିପିଲି ଥାନା ଦାୟିତ୍ୱ ସହିତ ଖୋରଧା ଥାନା ଦାୟିତ୍ୱରେ ଉଇଲିକସନ ଯୋଗଦାନ କରିବାକୁ ନିର୍ଦ୍ଦେଶ ଦେଲେ । କଟକର ହରିଶପୁର ଏବଂ ତିରକ ଥାନା W.H.A.M. Vill ଜୟୀ ରାଜଗୁରୁଙ୍କ ପରେ ତକ୍ଷଙ୍କୁ କଟକରେ ଜଏଣ୍ଟ ମାଜିଷ୍ଟ୍ରେଟ ଭାବରେ ନିଯୁକ୍ତି କଲେ । (ମି. କେରଙ୍କର ବ୍ରିଗେଡିୟର ଥୋମାସଙ୍କୁ ୩୦-୭-୧୮୧୮ର ଚିଠି) ବୋଲଗଡରେ ଜଣେ ଅସ୍ଥାୟୀ ଅଫିସରଙ୍କୁ ଅବସ୍ଥାପିତ କରାଯାଇ ସମ୍ବଲପୁରରେ ଅବସ୍ଥାପିତ କମାଣ୍ଡିଙ୍ଗ ଅଫିସର ରଫସେଡଙ୍କୁ ମଧ ଗଡଜାତ ଇଲାକାରେ ବକ୍ସିଙ୍କ ଅନୁସନ୍ଧାନ ନେବାକୁ, ଆବଶ୍ୟକୀୟ ସ୍ଥଳେ

ସାମରିକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା ବୋଲି ପରବର୍ତ୍ତୀ ଘଟଣା ପ୍ରବାହରୁ ଜଣାପଡେ । ବାଣପୁରରେ ଲେଫ୍‌ଟନାଣ୍ଟ ଜ. ବିବେଲ ସାମରିକ କମାଣ୍ଡିଙ୍ଗ ଅଫିସର ଭାବରେ ନିଯୁକ୍ତି ହେଲେ । ଏହି ସମସ୍ତ ବିବରଣୀ ବକ୍ସି ଜଗବନ୍ଧୁଙ୍କୁ ଧରିବାପାଇଁ ଇଂରେଜ ସରକାରଙ୍କ ଯୋଜନା ସମ୍ପର୍କରେ ବର୍ଣ୍ଣନା କରାଯାଇଅଛି । ଏହି ଅବସରରେ ଖୋରଧା ପାନବରଜ ଗ୍ରାମ ଠାରେ ବକ୍ସି ଥିବାର ସନ୍ଦେହ କରି ଇଂରେଜ ପକ୍ଷରୁ ଚଢାଉ ହୋଇଥିଲା । ଏହି ଚଢାଉର ନେତୃତ୍ୱ ବୋଲଗଡ ଠାରେ ଅବସ୍ଥାପିତ କମାଣ୍ଡିଙ୍ଗ ଅଫିସର ବୋଧହୁଏ ନେଇଥିଲେ । ସେଠାରେ ବକ୍ସିଙ୍କର ଏକ ବାକ୍ସ ଜବତ କରିଥିଲେ । ସେ ସମ୍ପର୍କରେ ସେ କଟକ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ଲେଖିଥିବା କଥା ବର୍ଣ୍ଣନା କରାଗଲା ।

୨୫-୭-୧୮୧୯ - ବୋଲଗଡର କମାଣ୍ଡିଙ୍ଗ ଅଫିସରଙ୍କର କଟକସ୍ଥ ଜଜ୍ ଓ ମାଜିଷ୍ଟ୍ରେଟ ଟନବୁଲ୍‌ଙ୍କୁ ପତ୍ର

ପାନବରଜ ଚଢାଉ ବେଳେ ବକ୍ସିଙ୍କର ଯେଉଁ ଗଣ୍ଠିଲି ଜବତ କରାଗଲା ତାହା ଭିତରେ ଥିବା ପ୍ରାୟ ୧ ଫୁଟ ଲମ୍ବ, ଅଧଫୁଟ ଓସାର, ୩ ଫୁଟ ଉଚ୍ଚତା ବିଶିଷ୍ଟ ଏକ ଧୂସର ରଙ୍ଗର ବାକ୍ସ ଉକ୍ତ ଗଣ୍ଠିଲି ଭିତରୁ ଆର୍ଶ୍ଚଯ୍ୟ ଜନକ ଭାବରେ ଉଭାନ ହୋଇଯାଇଛି । ବାଣପୁରରେ ଧରାହୋଇଥିବା ବକ୍ସିଙ୍କ ଭୃତ୍ୟର ବୟାନ ଅନୁଯାୟୀ ଉଭାନ ହୋଇଥିବା ବକ୍ସିଙ୍କ ବାକ୍ସ ଭିତରେ ପ୍ରାୟ ୧୦୦୦ ଟଙ୍କା ମୂଲ୍ୟର ନିମ୍ନୋକ୍ତ ଜିନିଷ ମାନ ଥିଲା - ଗୋଟିଏ ମୁକ୍ତା ଖଚିତ ସ୍ୱର୍ଣ୍ଣହାର, ୧ ଗୋଟି ମୁକ୍ତା ଖଚିତ ସୂକ୍ଷ୍ମ ତାରକସି ସ୍ୱର୍ଣ୍ଣହାର, ଏକ ଗୋଟି ମୁକ୍ତା ଖଚିତ ସ୍ୱର୍ଣ୍ଣ ମୁଦ୍ରିକା, ୨ ଗୋଟି ମୁକ୍ତା ଖଚିତ ସ୍ୱର୍ଣ୍ଣ କର୍ଣ୍ଣ ଭରଣ, ୨ ଗୋଟି ମୁକ୍ତା ଖଚିତ ସୁବର୍ଣ୍ଣର ମଣିବନ୍ଧ ଭରଣ, ୧୦୦ ଗୋଟି ସିକା ମୋହର (ଏହା ମୁଦ୍ରା ଭାବରେ ୧୭୭୩ ମସିହାରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଦ୍ୱାରା ପ୍ରଚଳିତ ହୋଇଥିଲା ଏବଂ ଶହେ ଗୋଟି କମ୍ପାନୀ ଟଙ୍କା) ।

ପଶ୍ଚିମ ଖୋରଧାର ବେଗୁନିଆଁ ବୋଲଗଡ ଅଂଚଳରୁ ପାଇକ ବିଦ୍ରୋହରେ ଯୋଗଦାନକାରିଙ୍କ ମଧ୍ୟରେ ସିକୋ ଗଡର ଦଳବେହେରା ପ୍ରମୁଖ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ମଧ ଅନ୍ୟ କୌଣସି ବ୍ୟକ୍ତିଙ୍କର ନାମ ଇତିହାସରେ ଲିପିବଦ୍ଧ ହୋଇନଥିବା ଲେଖକଙ୍କ ଦୃଷ୍ଟିକୁ ଅଦ୍ୟାବଧି ଆସିଅଛି । ସିକୋର ୪ ଦାମ ସୁବୁଦ୍ଧି ବିଦ୍ରୋହରେ ପ୍ରମୁଖ ଭୂମିକା ଗ୍ରହଣ କରି ପରବର୍ତ୍ତୀ ସମୟରେ ଇଂରେଜ ଦୃଷ୍ଟିରୁ ନିଜକୁ ଦୂରେଇ ରଖିବାକୁ ପରିବାର ସହ ବୌଦ୍ଧ, ଆଠମଲ୍ଲିକ, ରେଢାଖୋଲ ଅଂଚଳକୁ ଲୁକ୍କାୟିତ ଭାବରେ ଆସିଥିବାର ଜଣାଯାଏ ।

ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶଙ୍କର ତଥ୍ୟ ଭିତ୍ତିକ ପାଇକ ବିଦ୍ରୋହ ଇତିହାସ ତାଙ୍କ ଦ୍ୱାରା ଲିଖିତ 'ପାଇକ ବିଦ୍ରୋହ' ପୁସ୍ତକେ ଏଥିରେ ବୋଲଗଡ ଅଂଚଳରେ ପାଇକ

ବିଦ୍ରୋହ ସମୟରେ ଘଟିଥିବା ବିବରଣୀ ଏବଂ ବିଦ୍ରୋହର ଅନ୍ୟତମ ମୁଖ୍ୟ ସର୍ଦ୍ଦାର ସିକୋ ଗଡର ୰ ଦାମ ସୁବୁଦ୍ଧିଙ୍କ ବିଷୟରେ ଦିଆଯାଇଥିବା ବିଶେଷ ତଥ୍ୟ ନିମ୍ନରେ ଦିଆଗଲା ।

***********

ପାଇକ ବିଦ୍ରୋହ ଲେ.- ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ପୃଷ୍ଠା -

ଏହି ପାଇକ ବିଦ୍ରୋହ ପୁସ୍ତକର ୮୪ ପୃଷ୍ଠାରେ ୰ ଦାମ ସୁବୁଦ୍ଧିଙ୍କ ପ୍ରସଙ୍ଗ ଲିଖିତ ହୋଇଅଛି । ତାହା ନିମ୍ନରେ ପ୍ରଦତ୍ତ ହେଲା -

<u>ଦାମ ସୁବୁଦ୍ଧି ଧରାପଡିଲେ</u>

ଖୋର୍ଦ୍ଧା ଅଂଚଳର ସିକୋ ଗ୍ରାମର ଦାମ ସୁବୁଦ୍ଧି ବକ୍ସିଙ୍କର ଜଣେ ପ୍ରଧାନ ସରଦାର । ମେଳିରେ ସେ ସିକୋ ଛାଡି ଆଠ ମଲ୍ଲିକରେ ଆଶ୍ରୟ ନେଇଥିଲେ । ଆଠମଲ୍ଲିକ ଜମିଦାର ଅଗଷ୍ଟ ମାସ ଶେଷ ସପ୍ତାହରେ ତାଙ୍କୁ ଧରି ମେଜର ରଫସେଡଜଙ୍କ ଠାରୁ ସମ୍ବଲପୁର ପଠାଇ ଦେଲେ । ବଉଦ ବାଟେ ଗଲେ କାଳେ ଜଗବଂଧୁ ଜାଣିପାରିବେ ଏହି ଉଦ୍ଦେଶ୍ୟରେ ଦାମଙ୍କୁ ପ୍ରଥମେ ଆଠମଲ୍ଲିକରୁ ରେଢାଖୋଲକୁ ପଠାଇ ଦିଆଗଲା । ସେଠାରୁ ତାଙ୍କୁ ସମ୍ବଲପୁର ପ୍ରେରଣ କରାଗଲା । ସେ ସମ୍ବଲପୁରରେ ପହଞ୍ଚିଲେ । ସରକାର କ୍ଷମା ଦେବେ ବୋଲି ପ୍ରତିଶ୍ରୁତି ଦେଇ ଆଠମଲ୍ଲିକ ରାଜା ତାଙ୍କ ହାତମୁଠାକୁ ଆଣିଥିଲେ । ସେହି କାରଣରୁ ତାଙ୍କୁ କ୍ଷମା ଦେବା ପାଇଁ ଆଠମଲ୍ଲିକ ରାଜା ସରକାରଙ୍କ ପାଖରେ ନିବେଦନ କରିଥିଲେ । କମିଶନର ମଧ ଏଥିରେ ରାଜି ହୋଇ ତାଙ୍କୁ କ୍ଷମା ଦେଇଥିଲେ । ଦାମ ସୁବୁଦ୍ଧିଙ୍କୁ ଅଗଷ୍ଟ ୩୦ ତାରିଖ ଦିନ ଧରାଇଦେବାରୁ ସରକାରଙ୍କ ତରଫରୁ ଆଠମଲ୍ଲିକ ଜମିଦାରଙ୍କୁ ଟ.୧୦୦୦ଙ୍କା ପୁରସ୍କାର ମିଳିଥିଲା । ପୂର୍ବରୁ ଦାମ ସୁବୁଦ୍ଧିଙ୍କୁ ଧରାଇ ଦେବା ପାଇଁ ସରକାର ପୁରସ୍କାର ଘୋଷଣା କରିଥିଲେ । ସମ୍ବଲପୁର ରାଣୀ ମୁକ୍ତାଦେଈ ଖୋର୍ଦ୍ଧା ଠାରୁ ସମ୍ବଲପୁର ଯିବା ବାଟରେ ଦଳେ ବିଦ୍ରୋହୀ ପାଇକଙ୍କ ଦ୍ୱାରା ଆକ୍ରମଣର ଶିକାର ହେଲେ । ସେଥିରେ ରାଣୀଙ୍କର ବହୁ ଜିନିଷ ପତ୍ର ଲୁଟି କରି ପାଇକମାନେ ନେଇଗଲେ । ସେଥିରେ ଦାମ ସୁବୁଦ୍ଧି ସଂପୃକ୍ତ ଥିଲେ ।

ସୁବୁଦ୍ଧି ୧୮୧୭ ଅକ୍ଟୋବର କିମ୍ବା ନଭେମ୍ବର ମାସଠାରୁ ଜଗବନ୍ଧୁଙ୍କ ଠାରୁ ଅଲଗା ହୋଇ ରହିଥିଲେ । ସିକୋରେ କୁଟୁମ୍ବଙ୍କୁ ଧରି ନିବାସ କରିବା ନିରାପଦ ମନେ ନକରି ସେ ଗଡଜାତ ଅଂଚଳରେ ପଶି ବିଦ୍ରୋହ ଯେପରି ତେଜି ରହିବ ତାର ବ୍ୟବସ୍ଥା କରୁଥିଲେ । ଦାମ ସୁବୁଦ୍ଧିଙ୍କ ଭଳି ଆଉ ଜଣେ ବିଦ୍ରୋହୀ ଆଠମଲ୍ଲିକରେ ଲୁଚି ରହିଥିଲେ । ସୁବୁଦ୍ଧି ସିକୋରୁ କୁଟୁମ୍ବଙ୍କୁ ଆଣି ୪ ମାସ ଦଶପଲ୍ଲାରେ ରହିଲେ । ସେଠାରୁ

ବଉଦ ଆସି ୪ ମାସ ରହିଲେ । ବଉଦରୁ ଆଠମଲ୍ଲିକ ଆସି ୩ ମାସ ରହିଲେ । ରଫସେଡଜଙ୍କ ପାଖରେ ଆତ୍ମସର୍ମପଣ କରିବାକୁ ଦାମ ସୁବୁଦ୍ଧି ନିଜର ଦୁଇ ଭାଇ ନିତ୍ୟାନନ୍ଦ ମଙ୍ଗରାଜ, ସୋମନାଥ ପାଟଶାଣୀ (ବୟସ ପ୍ରାୟ ୪୦) ଓ ପୁତୁରା ଦାଶରଥି ପାଇକରାୟ (ବୟସ ୧୯) । ଏ ତିନିଜଣଙ୍କୁ ସାଙ୍ଗରେ ଧରି ସମ୍ବଲପୁରରେ ସେପ୍ଟମ୍ବର ୩ ତାରିଖରେ ପହଞ୍ଚି ଉପସେଡଜଙ୍କ ପାଖରେ ଆତ୍ମସମର୍ପଣ କରିଥିଲେ । ସୁବୁଦ୍ଧିର ସ୍ତ୍ରୀ ଦୁଇ ପୁଅଙ୍କ ଭାର୍ଯ୍ୟା ୩ ଝିଅ ଓ ଗୋଟିଏ ପୁଅକୁ ଆଠମଲ୍ଲିକରେ ତାଙ୍କର ଆଶ୍ରୟ ଗ୍ରାମରେ ଛାଡି ଯାଇଥିଲେ । ଏହି ଆଶ୍ରୟ ଗ୍ରାମଟି ଆଠମଲ୍ଲିକର ଘଞ୍ଚ ଜଙ୍ଗଲ ମଧ୍ୟରେ ଥିଲା । ଆଠମଲ୍ଲିକରେ ଏମାନଙ୍କର କୌଣସି ନିକଟ ବନ୍ଧୁ ନଥିବାରୁ ଏମାନଙ୍କୁ ନିଜ ଗ୍ରାମ ସିକୋ କିମ୍ବା ତା ପାଖରେ ଥିବା ଅନ୍ୟ କୌଣସି ସ୍ଥାନକୁ ପଠାଇବା ପାଇଁ ରଫସେଡଜ ବ୍ୟବସ୍ଥା କରିଥିଲେ । ଜଗବଂନ୍ଧୁଙ୍କୁ ପରିତ୍ୟାଗ କରିବା ସଂବନ୍ଧରେ ଦାମ ସୁବୁଦ୍ଧି ରଫସେଡଜଙ୍କ ଆଗରେ କହିଲେ ଯେ, ଜଗବନ୍ଧୁ ତାଙ୍କ ପ୍ରତି ଅତ୍ୟାଚାର କରି ତାଙ୍କର ସର୍ବସ୍ୱ ଲୁଟି କରିନେବାରୁ ସେ ଭୟରେ ମେଳିରେ ଯୋଗ ଦେଇଥିଲେ । କିନ୍ତୁ ଦାମ ସୁବୁଦ୍ଧି ମେଳିରେ ବିଦ୍ରୋହୀ ମାନଙ୍କ ମଧ୍ୟରେ ଜଣେ ପ୍ରଧାନ ସର୍ଦ୍ଦାର ଥିଲେ । ଅତଏବ ସେ ସାହେବଙ୍କ ଆଗରେ ଯାହା କହିଲେ ସତ୍ୟ ନୁହେଁ । କେବଳ ନିଜକୁ ବଞ୍ଚାଇବା ପାଇଁ ମିଥ୍ୟା କାରଣ ଦର୍ଶାଇଥିଲେ ।

*******

ବୋଲଗଡ (ପାଞ୍ଚଗଡ) ଖୋରଧା ଏବଂ ନୟାଗଡ ମଧ୍ୟ ସ୍ଥଳରେ ରହୁଥିବାରୁ ଏବଂ ଏଠାରେ ଘନ ଜଙ୍ଗଲ ରହିଥିବାରୁ ପାଇକ ବିଦ୍ରୋହ ସମୟରେ ବିଦ୍ରୋହୀ ମାନେ ଲୁଚି ରହିଥିବାର ଖବର ଇଂରେଜ ସାହେବଙ୍କ ପାଖରେ ପହଞ୍ଚିଥିବାର ଜଣାଯାଏ । ତାଛଡା ବାଣପୁର ଠାରେ ବକ୍ସି ଲୁଚି ରହିଥିବାର ସଂବାଦ ମଧ୍ୟ ତାଙ୍କର ହସ୍ତଗତ ହୋଇଥିଲା । ଏ ସମ୍ପର୍କରେ 'ପାଇକ ବିଦ୍ରୋହ'ରେ ଲିଖିତ ବିବରଣୀ ନିମ୍ନରେ ଦିଆଗଲା । ଏହି ବହିର ୯୮ ପୃଷ୍ଠାରେ 'ନୟାଗଡ ରାଜାଙ୍କ ଉପରେ ସରକାରଙ୍କ କୋପ ଦୃଷ୍ଟି' ଶିରୋନାମାରେ

*******

ବୋଲଗଡ ଓ ନୟାଗଡ ଭିତରେ କେତେକ ବିଦ୍ରୋହୀ ଲୁଚି ରହିଥିବାରୁ ସେମାନଙ୍କୁ ଧରିବାକୁ ବୋଲଗଡରେ ଘାଟି କରି ରହିଥିବା ସେନାନାୟକ ଲି ଫେବର (Le Faver) ଚେଷ୍ଟା କଲେ । ଏହାଛଡା ଏହି ବହିର ୧୧୩ ପୃଷ୍ଠାରେ ବକ୍ସିଙ୍କୁ ଧରାଇବା ପାଇଁ ପରିକଳ୍ପନା ଶିରୋନାମାରେ ନିମ୍ନୋକ୍ତ ବିବରଣୀ ଉପସ୍ଥାପନ କରାଯାଇଛି ।

********

ବାଣପୁର ମାଳରେ ବକ୍ସିଥିଲେ ୧୮୧୯ ଜୁନ ୩୦ ତାରିଖଦିନ । ତିନି ଦଳ ସୈନ୍ୟ ବାଣପୁର ଟାଙ୍ଗି ବୋଲଗଡ ଠାରୁ ଅଗ୍ରସର ହେବେ ।

ଏ ସମସ୍ତ ତଥ୍ୟରୁ ପ୍ରମାଣିତ ହୁଏ ଯେ, ବୋଲଗଡ ପାଇକ ବିଦ୍ରୋହ ସମୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ବହନ କରିଥିଲେ । ଲେଖକ ବହୁବର୍ଷ ପୂର୍ବରୁ କଟକ ଆକାଶବାଣୀ କେନ୍ଦ୍ରରୁ ପ୍ରଚାରିତ ଶିଶୁ ନାଟକ 'ଚାଖୀ ଖୁଣ୍ଟିଆ' ଶୁଣିବାର ସୁଯୋଗ ପାଇଥିଲେ । ଏହା ପାଇକ ବିଦ୍ରୋହ ପରବର୍ତ୍ତୀ ସମୟରେ ୧୮୫୭ ସିପାହୀ ବିଦ୍ରୋହ ଘଟଣାବଳୀ । କାରଣ ଚାଖୀ ଖୁଣ୍ଟିଆ ସିପାହୀ ବିଦ୍ରୋହର ନେତାଥିଲେ । ଏହି ଶିଶୁ ନାଟକରେ ବୋଲଗଡ ଦଳ ବେହେରା ପଦ୍ମଚରଣ ପଣ୍ଡିମ କବାଟଙ୍କ ଭୂମିକାରେ ଜଣେ ଶିଶୁ କଳାକାର ଅଭିନୟ କରୁଥିଲେ । ସେ ଚାଖି ଖୁଣ୍ଟିଆଙ୍କର ସହଯୋଗୀ ଥିବାର ଏହି ନାଟକରୁ ସୂଚୀତ ହୁଏ ।

ବକ୍ସି ଜଗବନ୍ଧୁଙ୍କ ଶେଷ ଜୀବନ ବିଷୟରେ ଦୁଇଟି ତଥ୍ୟ ବର୍ତ୍ତମାନ ମିଳୁଥିବାର ଲେଖକଙ୍କ ଦୃଷ୍ଟିକୁ ଆସିଅଛି । ସବୁଠାରୁ ଡଃ. ହରେକୃଷ୍ଣ ମହତାବଙ୍କ ଭଳି ଜଣେ ମହାନ ନେତା ବକ୍ସିଙ୍କୁ ଜଙ୍ଗଲରେ ଗୁଳିକରି ହତ୍ୟା କରାଯାଇଥିବା ତାଙ୍କର 'ଓଡିଶା ଇତିହାସ'ରେ ମତ ଦେଇଥିଲା ବେଳେ 'ଖୋରଧା ଇତିହାସର ଅନ୍ତରାଳେ'ରେ ଫକିର ହରିଚନ୍ଦନ ନୟାଗଡ ରାଜବାଟିରେ ୧୮୨୫ ମସିହାରେ ଇଂରେଜ କର୍ତ୍ତୃପକ୍ଷଙ୍କ ସହ ନୟାଗଡ ରାଜାଙ୍କ ଉଦ୍ୟମରେ ସନ୍ଧି କରିଥିବାର ଉଲ୍ଲେଖ କରିଛନ୍ତି । ପାଠକଙ୍କ ଅବଗତି ପାଇଁ ଏହି ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ଏଠାରେ ଅବତାରଣ କରାଗଲା ।

ଡଃ. ହରେକୃଷ୍ଣ ମହତାବ ତାଙ୍କ ଲିଖିତ 'ଓଡିଶା ଇତିହାସ' ର ୨୯୯ ପୃଷ୍ଠାରେ ପାଇକ ବିଦ୍ରୋହର ଅନ୍ତିମ ପରିଣତି ଏବଂ ବକ୍ସିଙ୍କ ଶେଷ ଜୀବନ ବିଷୟରେ ଦେଇଥିବା ତଥ୍ୟ ଉପସ୍ଥାପନା କରାଗଲା :-

## ଓଡିଶା ଇତିହାସ

ଲେଖକ.- ଡଃ. ହରେକୃଷ୍ଣ ମହତାବ, ପୃ.- ୨୯୯

୧୮୧୭ ମେ ମାସରେ ୨ ଜଣ ସାହେବ ଖୋର୍ଦ୍ଧାରେ ରହି ବନ୍ଦୀମାନଙ୍କର ବିଚାରକରି ଏଥିରେ କେତେକ ପ୍ରାଣଦଣ୍ଡ ପାଇଲେ, କେତେକ ଦ୍ୱୀପାନ୍ତର ହେଲେ, କେତେକ ଦୀର୍ଘ କାଳୀନ ପ୍ରାଣଦଣ୍ଡ ପାଇଲେ ତାର ହିସାବ ନାହିଁ । ୧୮୧୮ ସାଲର ପ୍ରଥମ ଭାଗରେ ସେନାବାହିନୀ ନିଯୁକ୍ତି କରାଗଲା । ଜଙ୍ଗଲ ଭିତରୁ ପାଇକମାନଙ୍କୁ ନିର୍ମୂଳ କରିବାକୁ ଏ କାର୍ଯ୍ୟ ୧୮୨୬ ପର୍ଯ୍ୟନ୍ତ ଚାଲିଲା । ଏହି କାର୍ଯ୍ୟରେ ଜଗବନ୍ଧୁ ଇଂରେଜୀ ମାନଙ୍କ ଦ୍ୱାରା ନିହତ ହୋଇଥିଲେ । ଡଃ. ମହତାବଙ୍କ ଏହି ମତ ସମ୍ପୂର୍ଣ୍ଣ ଭ୍ରମାତ୍ମକ ଅଟେ ।

'ଖୁରୁଧା ଇତିହାସ'ର ୨୪୮ ପୃଷ୍ଠାରେ ପ୍ରଖ୍ୟାତ ଐତିହାସିକ କେଦାରନାଥ ମହାପାତ୍ର ବକ୍ସି ଜଗବନ୍ଧୁଙ୍କ ଶେଷ ଜୀବନ ବିଷୟରେ ଯେଉଁ ମତ ପୋଷଣ କରିଛନ୍ତି ତାହା ମଧ ପାଠକ ମାନଙ୍କ ଅବଗତି ପାଇଁ ଏଠାରେ ସ୍ଥାନୀତ ହେଲା ।

-"ଶେଷରେ ୧୮୨୫ ମସିହାରେ ଖୋରଧାର ଜଏଣ୍ଟ ମାଜିଷ୍ଟ୍ରେଟ ମି. ଇଲିକସନଙ୍କ ଚେଷ୍ଟାରେ ନୟାଗଡର ବେବର୍ଭା ବରଜୁ ପାଇକରାୟଙ୍କ ମଧସ୍ଥତାରେ ବକ୍ସିଙ୍କ ସହିତ ସନ୍ଧି ହୋଇଥିଲା । ବକ୍ସି ଆତ୍ମ ସମର୍ପଣ କଲେ ତାଙ୍କ ପ୍ରତି କୌଣସି ଶାସ୍ତି ବିଧାନ କରାଯିବ ନାହିଁ ବୋଲି ସରକାର ନିର୍ଭର ପ୍ରତିଶ୍ରୁତି ଦେଇଥିଲେ । ଓଡିଶା ଗଡଜାତ ଗୁଡିକର ସୁପରିଟେଣ୍ଡେଣ୍ଟ ଅଫିସର ସିରସ୍ତାଦାର ଓ୍ୱାଜ ମହମ୍ମଦ ନୟାଗଡର ଏକ ସୀମାନ୍ତ ଗ୍ରାମରୁ ସମ୍ମାନରେ ଆଣି ୧୮୨୫ ମେ ମାସ ୨୭ ଦିନ କଟକରେ ପହଞ୍ଚାଇ ଦେଲେ । ବକ୍ସି ମାସିକ ୧୫୦ ଟଙ୍କା ପେନସନ ପାଇ କଟକରେ ଅବସ୍ଥାନ କଲେ । କମିସନରଙ୍କ ବିନା ଅନୁମତିରେ ନିଜ ବାସସ୍ଥାନରୁ ଅନ୍ୟତ୍ର ଯିବା ପାଇଁ ନିଷିଦ୍ଧ ହୋଇଥିଲା । କଟକରେ ତାଙ୍କର ବାସସ୍ଥାନ ଏପର୍ଯ୍ୟନ୍ତ ବକ୍ସି ବଜାର ଏବଂ ସେ ଗାଧୋଇଥିବା ପୋଖରୀ ବକ୍ସି ପୋଖରୀ ନାମରେ ଖ୍ୟାତ । ଏହି ବିପ୍ଲବୀ ବୀର ନିଜର ଶେଷ ଜୀବନ ଏପରି ଦୁଃଖ କଷ୍ଟରେ କଟାଇ ୧୮୨୯ ମସିହା ଜାନୁଆରୀ ୨୪ ତାରିଖ ଶନିବାର ଦିନ ପ୍ରାଣ ତ୍ୟାଗ କଲେ ।"

ପ୍ରଖ୍ୟାତ ଐତିହାସିକ ୰ କେଦାରନାଥ ମହାପାତ୍ରଙ୍କ ମତ ସହ 'ଖୋର୍ଦ୍ଧା ଇତିହାସ ଅନ୍ତରାଳେ' ପ୍ରଣେତା ଫକିର ହରିଚନ୍ଦନ ଏବଂ ଡଃ. ପ୍ରଫୁଲ୍ଲ ପଟ୍ଟନାୟକ ତାଙ୍କ ଲିଖିତ 'ଯଶଦେହେ ଆୟୁଷମାନ' ଗ୍ରନ୍ଥରେ ବକ୍ସିଙ୍କ ଶେଷ ଜୀବନ ଉପରେ ଦେଇଥିବା ମତ ସମ୍ପୂର୍ଣ୍ଣ ମିଶିଯାଉଛି ।

ଏଣୁ ବକ୍ସିଙ୍କୁ ଜଙ୍ଗଲ ମଧରେ ହତ୍ୟା କରାଯିବା ବିଷୟରେ ଡଃ. ମହତାବ 'ଓଡିଶା ଇତିହାସ'ରେ ଦେଇଥିବା ମତ ସମ୍ପୂର୍ଣ୍ଣ ଭ୍ରମାତ୍ମକ ଅଟେ । ସେ ସମୟର ଖୋରଧା ରାଜା ମୁକୁନ୍ଦ ଦେବଙ୍କୁ ଶେଷ ଜୀବନ ପର୍ଯ୍ୟନ୍ତ ବନ୍ଦୀ ଭାବରେ ରଖାଯାଇଥିଲା । ଏ ସମ୍ପର୍କରେ 'ଖୁରୁଧା ଇତିହାସ' ରେ ମୁକୁନ୍ଦ ଦେବ ତାଙ୍କର ଅନ୍ତିମ ବନ୍ଦୀ ଜୀବନ ବିଷୟରେ ଏକ ହୃଦୟ ସ୍ପର୍ଶୀ ଜଣାଣ ରଚନା କରିଥିଲେ । ଏହା ୰ କେଦାରନାଥ ବାବୁ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ଦ୍ୱାରା ସଂଗୃହୀତ ହୋଇଥିବା କଥା ଉଲ୍ଲେଖ କରିଛନ୍ତି । ଏହି ଜଣାଣରେ ମୁକୁନ୍ଦ ଦେବ ଜଗନ୍ନାଥ ନିଳାଦ୍ରୀ ବିହାରୀଙ୍କୁ ନିଜର ଦୁଃଖ ଜଣାଇଥିଲେ । ତାହା ନିମ୍ନରେ ଦିଆଗଲା ।

ଆହେ ନିଳାଦ୍ରି ବିହାରୀ          କଟକେ ଅଟକ
ହେବାରୁ ମୋ ଦିନ
ସରୁନାହିଁ ଝୁରି ଝୁରି ।୦।

ବାବୁ ଚିନ୍ତାମଣି ତରକ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ
ରାଜାଧି ପଣ୍ଡିତ କୈବଲ୍ୟ ସୁଘିଣ
ବାରବାଟି ଧରାଇଲେ ।୧।
ଚକା ଆୟ ଠାରୁ ବିକା ସାଇ ଯାଏ
ଝଡ ଜଙ୍ଗଲ ବୁଲିଲେ
ତୁମରି ଶ୍ରୀମୁଖ ଦର୍ଶନ ନପାଇ
କଟକେ ଅଟକ ହେଲି ।୨।
ବାବୁ ହରିହର ସୁପାତ୍ର ମୋହର
ବାରେ ମୋତେ ଦୟାକର
ଭଣ୍ଡାରରୁ ଖଣ୍ଡା ବାହାର କରିଣ
ପ୍ରଭୁ ଓଡିଶା ଶତ୍ରୁ ନିବାର ।୩।
କେଉଁ କର୍ମ ହୀନ କରୁଛି ଜଣାଣ
କିମ୍ପା ନ ଶୁଣ ଗୁହାରୀ
ଶ୍ରୀ ଚରଣ ତଳେ ଶରଣ ପଶୁଛି
ଓଡିଶା ନବକେଶରୀ ହେ ।୪।

ଏଥିରୁ ଜଣାଯାଏ ଇଂରେଜ ସୈନ୍ୟଙ୍କ ଓଡିଶା ଦୁର୍ଗ ଅଧିକାର ପରେ ରାଜା ମୁକୁନ୍ଦ ଦେବ ସେଠାରୁ ପଳାଇ ଯାଇ ଚକାଆୟ ଠାରୁ 'ବିକାସାଇ' ଯାଏ ବିସ୍ତୃତ ଝାଡ ଜଙ୍ଗଳରେ ବୁଲିଲେ । ତାଙ୍କର କୌଣସି କର୍ମଚାରୀ ଚିନ୍ତାମଣି ବ୍ରିଟିଶ ମାନଙ୍କ କପଟ ନୀତି ବୁଝି ନ ପାରି ରାମଚନ୍ଦ୍ର (ମୁକୁନ୍ଦ ଦେବଙ୍କ ପୁତ୍ର) ଙ୍କୁ ଆଣିଲେ । ତାଙ୍କୁ ରାଜାଧିପଣ୍ଡିତ ନାମରେ ଜଣେ ମରହଟ୍ଟା କର୍ମଚାରୀ କୈବଲ୍ୟ ସୁଘିଂ ବା ବିଶ୍ୱାସଘାତକତା କରି ଇଂରେଜ ମାନଙ୍କ ହସ୍ତରେ ରାଜାଙ୍କୁ ଧରାଇ ଦେବାରୁ ତାଙ୍କୁ ବାରବାଟିରେ ବନ୍ଦୀ କରାଗଲା । ସେ ସୁପୁତ୍ର ହରିହରଙ୍କୁ ସ୍ମରଣ କରୁଅଛନ୍ତି ଏବଂ ପ୍ରଭୁ ଜଗନ୍ନାଥଙ୍କ ଭଣ୍ଡାରରୁ ଖଣ୍ଡା ବାହାରକରି ଓଡିଶା ଶତ୍ରୁ ଇଂରେଜ ମାନଙ୍କୁ ସଂହାର କରିବାକୁ ବିକଳ ଅନୁରୋଧ କରୁଅଛନ୍ତି । କିନ୍ତୁ ତାଙ୍କର ବିକଳ ଅନୁରୋଧକୁ ପ୍ରଭୁ ଶୁଣିଲେ ନାହିଁ । ଇଂରେଜ ମାନେ ବିପଦର ଆଶଙ୍କା କରି ମୁକୁନ୍ଦ ଦେବଙ୍କୁ ମେଦିନାପୁରକୁ ନେଇ ସେଠାରେ ୧୮୦୭ ପର୍ଯ୍ୟନ୍ତ ଅଟକ ରଖିଥିଲେ । ପାଇକ ବିଦ୍ରୋହ ଦମନ ସମୟରେ ସେ ବିଦ୍ରୋହରେ ଲିପ୍ତଥିବା ଅଭିଯୋଗରେ ପୁନର୍ବାର ମୃତ୍ୟୁ ପର୍ଯ୍ୟନ୍ତ ବାରବାଟି ଦୁର୍ଗରେ ବନ୍ଦୀ ହୋଇ ରହିଲେ ଏବଂ ଦୁର୍ଗ ମଧରେ ତାଙ୍କ ପୁତ୍ର ରାମଚନ୍ଦ୍ର

ଦେବଙ୍କ ଅଭିଷେକ ହେଲା ।

ବନ୍ଦୀଶାଳରେ ମୁକୁନ୍ଦଦେବଙ୍କ ମୃତ୍ୟୁ ହେବା ସଂଗେ ଖୁରୁଧା ରାଜ୍ୟର ବୀରତ୍ୱ ରଂଜିତ ଗୌରବମୟ ଇତିହାସର ଯବନିକାର ପତନ ଘଟିଲା । ତାଙ୍କର ପରବର୍ତ୍ତୀ ବଂଶଧର ଗଣ ଅଦ୍ୟାପି ପୂର୍ବ ପୁରୁଷଙ୍କ ଐତିହ୍ୟ ମଣ୍ଡିତ ଦୀର୍ଘ ଉପାଧିରେ ଭୂଷିତ ହେଉଥିଲେ ମଧ୍ୟ ଇଂରେଜ ସରକାର ଓ ସ୍ୱାଧୀନ ଭାରତ ସରକାରଙ୍କ ବୃତ୍ତିଧାରୀ ରୂପେ ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା କରୁଛନ୍ତି ।

ଏ ସମସ୍ତ ପାଇକ ବିଦ୍ରୋହ ଘଟଣାବଳୀରୁ ବୋଲଗଡରୁ ବକ୍ସି ସମଗ୍ର ପାଞ୍ଚଗଡର ୫୦୦୦ ପାଇକଙ୍କୁ ନେଇ ଖୋରଧା ଅଭିମୁଖେ ଅଭିଯାନ, ଇଂରେଜ ସପକ୍ଷ ବାଦୀ ରାଣୀ ମୁକ୍ତାଦେଈଙ୍କୁ ଏଠାରୁ ବିତାଡନ, ବୋଲଗଡ ଆମ୍ବ ତୋଟାରେ ପାଇକଙ୍କ ମେଳି ମଧ୍ୟରେ ରାଣୀ ମୁକ୍ତାଦେଈଙ୍କ ଦେଓ୍ୱାନ ସଦାଶିବ ରାୟଙ୍କୁ ପ୍ରକାଶ୍ୟରେ ହତ୍ୟା ଏବଂ ସେହି ଅପରାଧରେ ମେଳିର ମୁଖ୍ୟ ବାଙ୍କୋଇ ଗଡର ଭୂଇଁମୂଳ ପର୍ଶୁରାମ ରାଉତରାୟ (କାଳିଆ ମଙ୍ଗରାଜ) ଙ୍କୁ ଫାଶିଦଣ୍ଡ ସମେତ କୋଠ କରଣ ବଂଶରୁ ୨୧ ଜଣଙ୍କୁ ଦ୍ୱୀପାନ୍ତର ପ୍ରମୁଖ ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ ଲୋକ ଲୋଚନ ଅନ୍ତରାଳେ ବର୍ତ୍ତମାନ ସୁଦ୍ଧା ରହିଅଛି । ପର୍ଶୁରାମ ରାଉତରାୟ ସଦାଶିବ ଦେଓ୍ୱାନଙ୍କ ହତ୍ୟା କରିବା ପରେ ଦେଓ୍ୱାନଙ୍କ କଟା ମୁଣ୍ଡକୁ ନେଇ ପଶ୍ଚିମ ବୋଲଗଡର ରକ୍ତମୁଖା ପାଇକମାନେ ବର୍ତ୍ତମାନ ଟାଙ୍ଗିସାହି ଗ୍ରାମର ଅଦୂରରେ ଥିବା ଏକ ବରଗଛରେ ଉଙ୍କୁଚାଇ ଦେଇଥିଲେ । ଲୋକମୁଖରେ ତାହା ମୁଣ୍ଡ ଉଙ୍କୁଚା ବର । ଏବଂ ସେହି ଦିନ ଠାରୁ ଏହି ଟାଙ୍ଗିସାହି ରାଜସ୍ୱ ଗ୍ରାମର ନାମ ନଥିପତ୍ରରେ ଫାଶିଓଦା ରହିଲା । ବର୍ତ୍ତମାନ ଫାଶିଓଦା ଏକ ଗ୍ରାମ ପଞ୍ଚାୟତର ମାନ୍ୟତା ପାଇଅଛି । ମେଳି ପରେ ପର୍ଶୁରାମ ରାଉତରାୟ ବ୍ରିଟିଶ ମାନଙ୍କ ହାତରେ ଧରାହୋଇଯାଇଥିଲେ । ଏବଂ ଦୁଇ ବର୍ଷ ତାଙ୍କର ବିଚାର ଚାଲିବା ପରେ ୧୯୧୯ ମସିହା ଏପ୍ରିଲ ମାସ ୦୬ ତାରିଖ ଦିନ ଏଇ ଅମର ପାଇକ ନେତାଙ୍କ ବୋଲଗଡ ଆମ୍ବ ତୋଟାରେ ଫାଶି ଦିଆଯାଇଥିବା କଥା ୰ ସୁଶୀଲ କୁମାର ଦେ Guide to Orissan Record- Vol-III ରେ ଦର୍ଶାଇଛନ୍ତି ।ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ । ବର୍ତ୍ତମାନ ଏସମ୍ପର୍କରେ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ ଦ୍ୱାରା ଇଂରାଜୀ ଭାଷାରେ ଲିଖିତ **A FORGOTTEN CHAPTER OF ORISSAN HISTORY** ଚିଠିର ୧୮୦ ଏବଂ ୧୯୩ ପୃଷ୍ଠାର ବିବରଣୀ ନିମ୍ନରେ ଦିଆଗଲା ।

**A FORGOTTEN CHAPTER OF ORISSAN HISTORY**

(Writer- Dr. Prafull Kumar Pattanaik)

( **Page.- 180)** -The rebellion also spread to Panchagarh. It was under the charge of Rani Mukta Dei of Sambalpur. There the people had been dissatisfied with the high rate of taxation. Especially, it had created discontent among the Jaghirdars and Brahmins. Though the Rani behaved with great fairness and moderation to her tanants, yet the people could not disassociate her from the injustice done by the British. For some years the ill-feeling towards the Rani found a partial vent in numerous complaints to the collector of Cuttack. But soon after the out-breack of the rebellion and the arrival of Bakshi Jagabandhu at Bolgarh, the people at once seized the opportunity for revenge. The old revenue officers, viz., Dulaees and Dulbeheras and Paiks of Panchgarh at once joined him. They burnt the house of the Rani and her Diwan and plundered her property. The Diwan was put to death by the rebels. The Rani made her escape to Cuttack.

**(Page.- 193)-(Chapter - THE REBELLION OF 1817)-** In April 1818 Parasuram Routaray was sentenced to death on the charge of murder. Sachidananda Pattanaik who was convicted of the murder of Sadasib Ray, late Diwan of the Rani of Sambalpur, was executed. Similarly, Parasuram Routray who was connected with the murder of Charan Pattanaik was executed.

ଏହି ପରିପ୍ରେକ୍ଷୀରେ 'ଖୋରଧା ଇତିହାସର ଅନ୍ତରାଳେ'ର ଲେଖକ ଐତିହାସିକ ଫକୀର ହରିଚନ୍ଦନଙ୍କ ମନ୍ତବ୍ୟ ସହ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ ଉପରୋକ୍ତ ମନ୍ତବ୍ୟ ମେଳ ଖାଉନାହିଁ । ଶ୍ରୀ ହରିଚନ୍ଦନ ସମ୍ବଲପୁର ରାଣୀଙ୍କ ଦେଓାନ ସଦାଶିବ ରାୟଙ୍କ ହତ୍ୟା ଅପରାଧରେ ପର୍ଶୁରାମ ରାଉତରାୟଙ୍କୁ ପ୍ରାଣଦଣ୍ଡାଦେଶ ହେବା ସହ ଚରଣ ପଟ୍ଟନାୟକ ହତ୍ୟା ଅପରାଧରେ ଶ୍ରୀ ସଚିଦାନନ୍ଦ ପଟ୍ଟନାୟକଙ୍କୁ ପ୍ରାଣଦଣ୍ଡ ହେବା କଥା ଦର୍ଶାଇଛନ୍ତି । ମାତ୍ର ଡଃ. ପ୍ରଫୁଲ୍ଲ ପଟ୍ଟନାୟକ ତାଙ୍କର ଉପରୋକ୍ତ ଇଂରାଜୀ ପୁସ୍ତକରେ ସଦାଶିବ ଦେଓ୍ୱାନ ହତ୍ୟା ଅଭିଯୋଗରେ ସଚ୍ଚିଦାନନ୍ଦ ପଟ୍ଟନାୟକଙ୍କୁ ଏବଂ ଚରଣ ପଟ୍ଟନାୟକ ହତ୍ୟାକାଣ୍ଡରେ ପର୍ଶୁରାମ ରାଉତରାୟଙ୍କୁ ଫାଶୀ ଦିଆଯିବା କଥା ବର୍ଣ୍ଣନା କରିଛନ୍ତି । ଐତିହାସିକ ପ୍ରଫୁଲ୍ଲ ପଟ୍ଟନାୟକଙ୍କର ସଂଗୃହୀତ ତଥ୍ୟରେ ଭ୍ରମାତ୍ମକ ରହିଥିବାର ମନେହୁଏ । ସ୍ଥାନୀୟ ଅନୁସନ୍ଧାନରୁ

ଜଣାଯାଇଛି, ବାଙ୍କୋଇ ଗଡର କାଳିଆ ମଙ୍ଗରାଜ ଓରଫ ପର୍ଶୁରାମ ରାଉତରାୟ ଅଟନ୍ତି । ଏ ସମ୍ପର୍କରେ ସର୍ବଶେଷ ଐତିହାସିକ ଅନୁସନ୍ଧାନର ବିବରଣୀ ଦିଆଗଲା । ଓଡିଶା ଆର୍କାଇଭ (ରାଜ୍ୟ ଅଭିଲେଖା ଗାର) ରେ ଗଚ୍ଛିତ Guide to ORISSAN RECORDS (Vol-III) ର ତଥ୍ୟ ଏ ସମ୍ପର୍କିତ ସମସ୍ତ ସନ୍ଦେହ ଦୂର କରିଅଛି । ଯାହା ପାଠକଙ୍କ ଅବଗତି ନିମନ୍ତେ ନିମ୍ନରେ ଉଲ୍ଲେଖ କରାଗଲା ।

Guide to ORISSAN RECORDS (Vol-III)

(Writer- Susil Chandra De) (Page-37) (5th Para)

We have already refered to cases of conviction of 55 persons to various terms of imprisonment in March 1819. In April of the same year Parasuram Routrai and Sachidananda Patnaik were sentenced to death on the charges of murdering Sadasiv Ray, Diwan of the Rani of Sambalpur and Charan Patnaik respectively [92].

(92. M.H. Turnbull to W. Forrester, dated 6-4 and 18-4-1819 (O.S.A. Vol-45))

ଉପରୋକ୍ତ ବିବରଣୀ ଛଡା ଏହି ପୁସ୍ତକର Vol - II & III ରେ ପାଇକ ବିଦ୍ରୋହରେ ଯୋଗଦାନକାରୀ ବହୁ ଦେଶଭକ୍ତଙ୍କର ନାମ ଥିଲେ ମଧ୍ୟ ଅଧିକାଂଶ ଙ୍କର ଗ୍ରାମର ଠିକଣା ନାହିଁ । ଏ ସମ୍ପର୍କରେ ସ୍ୱତନ୍ତ୍ର ଅନୁସନ୍ଧାନ ଆବଶ୍ୟକ ।

ଡଃ. ହରେକୃଷ୍ଣ ମହତାବଙ୍କ ପ୍ରଚେଷ୍ଟାରେ ରାଜ୍ୟ ସରକାରଙ୍କ ଦ୍ୱାରା ଭୁବନେଶ୍ୱର ମିଉଜିୟମ ସମ୍ମୁଖରେ ପାଇକ ବିଦ୍ରୋହ, ସିପାହୀ ବିଦ୍ରୋହ ଏବଂ ରଣପୁର ବିଦ୍ରୋହରେ ଶହୀଦ ହୋଇଥିବା ବୀର ଓଡିଆ ମାନଙ୍କର ନାମର ଏକ ସ୍ମାରକୀ ସ୍ତମ୍ଭ ରହିଅଛି । ୧୮୧୭ ପାଇକ ବିଦ୍ରୋହ ଶୀରୋନାମାରେ ଖୋଦିତ ସହୀଦ ମାନଙ୍କର ନାମ ଯଥା.-

| | | | |
|---|---|---|---|
| ୧. | ଜୟୀରାଜଗୁରୁ | ୨. | ଶଚିଦାନନ୍ଦ ପଟ୍ଟନାୟକ |
| ୩. | ଗୋପାଳ ଛୋଟରାୟ | ୪. | ବିଷ୍ଣୁ ପାଇକରାୟ |
| ୫. | ରାମ ସିଂହ | ୬. | ନାଥୁ ପ୍ରଧାନ |
| ୭. | ନରସିଂହ | ୮. | ପିଣ୍ଡିକି ବାହୁ ବଳେନ୍ଦ୍ର |

ନାମ ଉଲ୍ଲେଖ ଥିଲାବେଳେ ପାଞ୍ଚଗଡ ଅଞ୍ଚଳର ଅମର ସହୀଦ ପର୍ଶୁରାମ ରାଉତରାୟଙ୍କ ନାମ ଏଥିରେ ଉଲ୍ଲେଖ କରାଯାଇନାହିଁ । ଏହା ଇତିହାସରେ ଏକ ଚରମ ବ୍ୟତିକ୍ରମ ଅଟେ ।

ବର୍ତ୍ତମାନ ସମୟକୁ ଅନୁଧ୍ୟାନ କଲେ ଆଉ ୧୦ ବର୍ଷ ପରେ ଅର୍ଥାତ ୨୦୧୭ ମସିହାରେ ପାଇକ ବିଦ୍ରୋହର ୨୦୦ ବର୍ଷର ପୂର୍ତ୍ତି ମହୋତ୍ସବ ପାଳିତ ହେବ । ଉପରୋକ୍ତ ଐତିହାସିକମାନଙ୍କ ତଥ୍ୟ ଅନୁସାରେ ବକ୍ସି ପାଇକ ବିଦ୍ରୋହ ସମୟରେ ଖୋରଧା ଆକ୍ରମଣ ବୋଲଗଡ ଠାରୁ ପାଞ୍ଚଗଡର ୫୦୦୦ ପାଇକମାନଙ୍କୁ ନେଇ ୧୮୧୭ ମସିହା ଏପ୍ରିଲ ୧ ତାରିଖରେ ଆରମ୍ଭ କରିଥିଲେ । ପାଇକ ବିଦ୍ରୋହ ବେଳେ ବହୁ ବୀର ବ୍ରିଟିଶ ଶାସକଙ୍କ ହାତରେ ଧରାପଡିଥିବା ସହ କେତେକ ମଧ ପଳାତକ ହୋଇଯାଇଥିଲେ । ମାତ୍ର ୨୦୦ ବର୍ଷ ତଳର ଏହି ମହାନ ବୀର ମାନଙ୍କର ନାମ ଏବଂ ଠିକଣା ସହ ଅନ୍ୟାନ୍ୟ ବିବରଣୀ ମିଳୁନାହିଁ । ନିକଟରେ ଓଡିଶାର ପ୍ରଖ୍ୟାତ ଐତିହାସିକ ଏବଂ ଗବେଷକ ଡଃ. ଭବାନୀ ଚରଣ ରାୟଙ୍କ ଦ୍ୱାରା ଇଂରାଜୀ ଭାଷାରେ ଲିଖିତ BAKHSHI JAGABANDHU - The path finder of Freedom Movements of India ପ୍ରକାଶ ପାଇଅଛି । ଏହି ବହିର ୯୭ ଏବଂ ୯୮ ପୃଷ୍ଠାରେ ପାଇକ ବିଦ୍ରୋହରେ ଅଂଶଗ୍ରହଣ କରିଥିବା ୩୦ ଜଣ ଦେଶପ୍ରେମୀଙ୍କ ନାମ ରହିଅଛି । କିନ୍ତୁ ସେମାନଙ୍କର ଠିକଣାର ଉଲ୍ଲେଖ ନାହିଁ । ଭବିଷ୍ୟତରେ ଗବେଷକ ମାନେ ଏମାନେ କେଉଁ ଅଞ୍ଚଳର ବିଶେଷକରି ଏମାନଙ୍କ ଭିତରୁ ପାଞ୍ଚଗଡ ଅଞ୍ଚଳର କିଏ ଏ ବିଷୟରେ ଅନୁସନ୍ଧାନ କରିବାପାଇଁ ଉକ୍ତ ପୁସ୍ତକର ଏହି ତଥ୍ୟ ଏଠାରେ ଦିଆଗଲା ।

The names of those who as leading personaliites under direction from Jagabandhu came forward fearlessly to guide the revolt regardless of consequences in this death-provoking fight against the powerful British are given below.

1. Krishna Chandra Vidyadhar Bhramabar Ray
   (Son of the Diwan of former Raja of Khurda)
2. Gopal Chhottary
3. Prahalad Chhottaray
4. Pindiki Bahubalendra
5. Mir Hyder Ali
6. Gauranga Barisala
8. Kelei Manasinha
9. Hari Samantara
10. Jagabandhu Samantara
11. Dharamu Harichandan
12. Lokanath Baliarsingh

17.Vishnu Harichandan
18.Karunakar Paramguru
19.Bijen Singh
20.Niladri Samantara
21.Hari Mansingh
22.Purusottam Manasingh
23.Antarjami Pahadasingh
24.Sardar Khan
25.Bamadeva Patjoshi
26. Nasarulla

13. Ramachandra Samanta Sinhara
14. Nayaran Paramguru
15. Narottam Biswal
16. Ballava Ray
27. Adikanda Vidyadhar
28. Upendra Jagadeva
29. Dharama Subudhi
30. Bimbadhar Mohanty

ପାଇକ ବିଦ୍ରୋହର ଅବସାନ ପରେ ଖୋର୍ଦ୍ଧା ରାଜ୍ୟର ଯେଉଁ ମାନଙ୍କୁ ରାଜକ୍ଷମା ଦିଆଯାଇଥିଲା ସେ ସମ୍ପର୍କରେ ଏକ ବିବରଣୀ ୰ ଦିଗମ୍ବର ଶ୍ରୀଚନ୍ଦନଙ୍କର ଖୁରୁଧା ଦର୍ପଣରୁ ସଂଗୃହୀତ ତଥ୍ୟ ନିମ୍ନରେ ଦିଆଗଲା ।

- ଏହି ତାଲିକା ଭୁକ୍ତ ଲୋକମାନଙ୍କ ଭିତରେ ପାଞ୍ଚଗଡ ଅଞ୍ଚଳର କେଉଁ ଦଳେଇ ଦଳବେହେରାଙ୍କ ନାମ ଅଛି ତାହା ଉପରେ ଅଧିକ ଗବେଷଣା ଆବଶ୍ୟକ ।

ବିଷୟ- କମ୍ପାନୀ ମୁଚାଲିକା (୧୮୩୦ ମସିହା)

(ପାଇକ ବିଦ୍ରୋହ ଦମନ ପରେ ବିଦ୍ରୋହୀମାନଙ୍କୁ ଫାସି, କଳାପାଣି, ରାଜ୍ୟବାହାର ଆଦେଶ ଓ ପୁରୁଷାନୁକ୍ରମିକ ଜାଏଗିରି ଭୋଗ ଦଖଲରୁ ବଞ୍ଚିତ କରି - ପରବର୍ତ୍ତି ସମୟରେ ଅନ୍ୟାନ୍ୟ ବିଦ୍ରୋହୀଙ୍କୁ ରାଜକ୍ଷମା ପ୍ରଦାନ କରିବା ସହ ଦଳବେହେରା ଦଳେଇ ପ୍ରଭୃତିଙ୍କଠାରୁ ଯେଉଁ ମୁଚାଲିକାମାନ ଲେଖାଇ ନେଇ କିଛି କିଛି ଜାଏଗିରି ରକ୍ଷା କରାଯାଇଥିଲା - ସେହି ମୁଚାଲିକାରଏକ ନମୁନା ନିମ୍ନରେ ପ୍ରଦତ୍ତ ହେଲା । ସେଥିରେ ବନାନ ଯେପରି ରହିଛି, ତାହା ଅବିକଳ ରଖାଗଲା । - ସଂପାଦକ)

ଏ ମୁଚାଲିକା ଶ୍ରୀହରି ମହାମାନସିଂହଙ୍କର ସ୍ବମତ -
ଏ ମୁଚାଲିକା ବିସୋଇ ସଦାଶିବ ଯୁଆରସିଙ୍ଗ ସ୍ବମତ -
ଏ ମୁଚାଲିକା ଜଗନ୍ନାଥ ଚମ୍ପତିସିଙ୍ଗର ସ୍ବମତ -
ଏ ବୈଷ୍ଣବ ଯେନାର ସ୍ବମତ, ବକଲମ ଦଳବେହେରା -
ଏ ବୈଷ୍ଣବ ସୁନ୍ଦରା ମୁହାଣ କୀମ୍ପିରିୟା -
ଏ କାଣ୍ଡ ସନ୍ତକ କେଳା ରଣସିଙ୍ଗଙ୍କର -
ଏ ହାତ ଅକ୍ଷର ଦାମୋଦର ଛୋଟରାର ସହି -
ଏ କଟାରି ସନ୍ତକ ବାଳକୃଷ୍ଣ ବଳିଆରସିଂହଙ୍ଗ ସ୍ବମତ -
ଏ ମୁହାଣ କୀମ୍ପିରି ସନ୍ତକ ବଇଷ୍ଣବ ସୁନ୍ଦରାର ସ୍ବମତ -

ଏ କାଣ୍ଡ ସନ୍ତକ ସଦାଶିବର ସ୍ବମତ -

ଏ ସନ୍ତକ ବଇଷ୍ଣବ ନାଏକର ସହି । ବ । ଦଳବେହେରା -

ଏ ସନ୍ତକ ବଇରାଗି ବଳିଆର ସିଙ୍ଗଙ୍କର ସ୍ବମତ -

ଏ ଚକ୍ର ସନ୍ତକ ପତିତ କହଳସିଙ୍ଗର ସହି -

ଏ ବରକ୍ସୁ ପାଏକରାଏର ସହି -

ଏ ଯାମୁକି ସନ୍ତକ ଗୋପି ପାଲଟାସିଂଙ୍ଗର ସହି -

ଏ ଚକ୍ର ସନ୍ତକ ଗୋପାଳ ଚମ୍ପତିର ସହି -

ଏ କାଣ୍ଡ ସନ୍ତକ କେଶବ ମାରଥିର ସହି -

ଏ ଚକ୍ର ବୁଧିଯେନାର ସହି -

ଏ ଯାଗା ଅକ୍ଷର ଅସଲରେ ପଢାଯାଉ ନାହିଁ -

ଏଠାରେ ଅଙ୍ଗରେଜିରେ ଦସ୍ତଖତ ଅଛି । (ସିରସ୍ତାଦାର)

ଶ୍ରୀ ଶ୍ରୀ କମ୍ପନି ଏଙ୍ଗେରେଯ ବାହାଦୁରଙ୍କ ସରକାର ବୀରକୁ । କି । ଖୋରଧା ଇଲାକା । ବାଣପୁର ଜିଲା ପଟଂପଲି ସିମା ଦଳବେହେରା ଶ୍ରୀ ହରିମହା ମାନସିଙ୍ଗ ଓ ବୀଶୋଇ ସଦାଶିବ ୟୁଯାରସିଙ୍ଗ ଓ ଜଗନାଥ ଚମ୍ପତିସିଙ୍ଗ ଦଳାଇ ଓ ବୈଷ୍ଣବ ଯେନା ଓ ପଟିତ କହଲସିଙ୍ଗ ଓ ବରମ୍ଭୁ ପାଇକରଥି ଓ ଗୋପି ପାଲଟାସିଙ୍ଗ ଓ ଗୋପାଳ ଚମ୍ପଟୀ ଓ ମୁରାରୀ ପାଇକରା ଓ ନନ୍ଦନ ସାନ୍ତରା ଓ କେସବ ମହାରଥି ଓ ନାଥ ରଣସିଙ୍ଗ ଓ ବୁଧିଆ ଯେନା ଓ ଇଶ୍ୱର ବରାଡ ଓ ଚଇତନ ସୁଆଙ୍ଗ ଓ ନିତ୍ୟାନନ୍ଦ ପାଇକେରା ଓ ହାଥି ସାହୁ ଓ କେଳା ରଣସିଙ୍ଗ ଓ ଦାମୋଦର ଛୋଟରା ଓ ବାଳକୃଷ୍ଣ ବଳିଆର ସିଙ୍ଗ ଓ ବଇଷ୍ଣବ ସୁନ୍ଦରା ଓ ସାଧୁଚରଣ ଛୁଆଇସିଙ୍ଗ ଓ ସନ୍ୟାସି ସତ୍ପଲ ଓ ରାମକୃଷ୍ଣ ମଙ୍ଗରାଜ ନାଏକାଲ ଓ ବଇରାଗି ବଳିଆରସିଙ୍ଗ ବିସୋଇମାନଙ୍କର ଦେଲା ମୁଚାଳିକା । ଆମ୍ଭେ ଏ ନୀମନ୍ତେ ମୁଚାଲିକା ଲେଖିଦେଲୁ । ସରକାରର ହରେକ କର୍ମ ଅଯାଂସ ଦେବା ନିମନ୍ତେ ଆମ୍ଭମାନଙ୍କୁ ସରକାରର ଯାଗେରୀ ଦିଆହୋଇଅଛି ଏଥିକୁ ଆମ୍ଭେମାନେ କରାର କରୁଅଛୁଂକୀ ଆପଣା ସୀମା ସରହଦ ଯାଗାମାନଙ୍କରେ ଏରପ ହୁସିଆରି କରି ଓ ଖବରଦାରି କରିବୁଂ କି ଯେରୂପେ କିଛି ଡକୈତ ଓ ପାଟପରି ଓ ଖୁଣି ଓ ଚୋରିହୋଇ ନ ପାରିବ । ଓ ଯେବେ ଥାନା ଅଥବା ଅନ୍ୟକେହି ସରକାର ତରଫ ଲୋକ ସରକାରିର କେଉଂଣସି ମକଦ୍ଦମାରେ ଆମ୍ଭମାନଙ୍କୁ ତଲବ କରିଥିବେ ଆମ୍ଭେମାନେ ଗଂୟୁହାଜର ହୋଇ ସରକାର କର୍ମରେ ସରକାର ତରଫ ଲୋକଙ୍କ ସଙ୍ଗେ ଗଂୟୁ ହୋଇ କର୍ମ ଅଯାଂମ କରଂଥିବୁଂ । କେଉଂଣସି ବଦଯାତୀ ଲୋକକୁ ଆପଣା ସରହଦ ଯାଗାରେ ନରଖିବୁଂ । ଓ ଆମ୍ଭେମାନେ ହତିଆର ବାନ୍ଧି ସରକାର କର୍ମ ଅଯାଂମ

ଦେଉଥିବୁଁ । ଓ ଡକାଇତମାନଙ୍କୁ ଅନ୍ୟ ଯାଗା ଯିବା ଆପଣା ସରହଦରେ ବାଟଛଡା ନ ଦେବୁଁ । ଓ ଯେବେ ଆମ୍ଭ ସରହଦରେ କିଛି ଡକାଇର ଓ ଖୁଣି ଓ ଚୋରି ଓଗେର ଯାହେର ହେବ । ଅଥବା ଆମ୍ଭେମାନେ ଉପର ଲିଖିତ କଥ ମାନଙ୍କଙ୍କୁ କିଛି ଖିଲାପ କରିବୁ ତେବେ ଆମ୍ଭମାନଙ୍କର ଯାଗେରୀ ସରକାର କୋରଖିରେ ବାର୍ଯ୍ୟପ୍ତ ହେବ । ଓ ଆମ୍ଭ ହାଥ ହତୀଆରମାନ ସରକାରରେ କୋରଖ ହେବ ଓ ଆମ୍ଭେମାନେ ଦଳବେହେରା ଓ ଦଳାଇ ଓ ନାଏକ ପଣଙ୍ଗ ନାଯୁଲ ହୋଇ ଆପଣା ଆପଣା ଯାଗେରୀ ବୃତୀଙ୍ଗ ଖଜଣା ଯେଉଁଦିନଠାର ଯାଗେରୀ ପାଇଅଛୁ ସେହିଦିନ ଆଦ୍ୟଙ୍ଗ ସରକାର ତଇବ କଲାପର୍ଯ୍ୟନ୍ତ ବୀନାଓଜର ପାଇଅଛୁ ସେହିଦିନ ଆଦ୍ୟଙ୍ଗ ସରକାର ତଲବ କଲାପର୍ଯ୍ୟନ୍ତ ବୀନାଓଜର ବୁଝାଇ ଦେଉଥିବୁଁ । ଏ ମୁଚାଲିକା ଉପରଲିଖିତ ଦଳବେହେରା ଓ ଦଳାଇ ଓ ନାଏକ ଓ ବିଶୋଇମାନଙ୍କର ସ୍ୱମତ ତା ୨୯ରିକ ମାହେ ଡିସୟର ସ୍ନ ୧୮୩୦ ମସିହା । ମୁ । ଦୃଗାପ୍ରସାଦ ପାଳ ମୋହରର ଓ ବାସୁଦେବ ମହାପାତ୍ର ନକଲନବୀସ ।

Certified to be a correct copy
Settlement of Khurda
1879

sd- ଇଶ୍ୱରଚରଣ ମହାପାତ୍ର
Shirstadar
(ସିଲମୋହର)



## ଇଂରେଜ ଶାସନରେ ବୋଲଗଡ ଅଞ୍ଚଳ

ପାଇକ ବିଦ୍ରୋହର ଅବସାନ ପରେ ଅତି ଚତୁରତାର ସହ ଇଂରେଜ ମାନେ ଖୋରଧା ଅଂଚଳରେ ତାଙ୍କର ଶାସନ କାର୍ଯ୍ୟ ଆରମ୍ଭ କରିଥିଲେ । ପ୍ରତ୍ୟେକ ଅଂଚଳରେ ପ୍ରତିଷ୍ଠିତ ବ୍ୟକ୍ତି ବିଶେଷ ଏବଂ ଇଂରେଜ ସରକାରଙ୍କ ଅନୁଗତ ଲୋକଙ୍କର ତାଲିକା ପ୍ରସ୍ତୁତ ଚାଲିଲା । ସେହି ମାନଙ୍କୁ ସର୍ବରାକାର ଭାବରେ ନିଯୁକ୍ତି ଦିଆଯାଇ ପ୍ରତ୍ୟେକ ରାଜସ୍ୱ ଗ୍ରାମର ଖଜଣା ଆଦାୟ କରାଗଲା । ସେମାନେ ଇଂରେଜ ଶାସକ ମାନଙ୍କର ପାଖ ଲୋକ ହେବାରୁ ତାଙ୍କର ପ୍ରଭାବ ସ୍ଥାନୀୟ ଲୋକଙ୍କ ଉପରେ ରହିଲା । ପ୍ରତି ଗ୍ରାମରେ ଗ୍ରାମ ଚୌକିଦାର ଏବଂ କେତେକ ଗ୍ରାମରେ ଦଫାଜରଙ୍କୁ ଥାନା ଅଧୀନରେ

ନିଯୁକ୍ତି ଦିଆଗଲା । ସେମାନେ ଦୈନନ୍ଦିନ ଖବର ଥାନାରେ ଦେବାର ବ୍ୟବସ୍ଥା ହେଲା । ଏଣୁ ଚତୁରତାର ସହ ଇଂରେଜ ଶାସନ କର୍ତ୍ତା ସମସ୍ତ ଅଂଚଳର ଖବର ପାଇବାରେ କିଛି ଅସୁବିଧା ସୃଷ୍ଟି ହେଲାନାହିଁ ।

ସର୍ବପ୍ରଥମେ ବୋଲଗଡରେ ପୋଲିସ ଥାନା, ଫରେଷ୍ଟର ଅଫିସ, ଡାକଘର ଏବଂ ଡାକବଙ୍ଗଳା ଇଂରାଜୀ ଶାସନ ବେଳେ ସ୍ଥାପିତ ହୋଇଥିଲା । ଏହାଛଡା ଖୋର୍ଦ୍ଧାଠାରୁ ପ୍ରତି ୮ ମାଇଲ ଅନ୍ତରରେ ଖୋରଧା ନୟାଗଡ ମୁଖ୍ୟ ରାସ୍ତାର କଡରେ ଗୋଟିଏ ଗୋଟିଏ କରି ଡାକବଙ୍ଗଳାମାନ ନିର୍ମିତ ହେଲା । ଖୋରଧା, ବାଘମାରୀ, ପିତୃକୁଳୀ, ବୋଲଗଡ ଏବଂ ବଡପଣ୍ଡୁସର ଏହିପରି ଖୋରଧା-ନୟାଗଡ ରାଜପଥର କଡରେ ୫ଟି ଡାକବଙ୍ଗଳା ସେ କାଳରୁ ଅଦ୍ୟାବଧି ରହିଅଛି । ଡାକବଙ୍ଗଳାରେ ମୁଖ୍ୟତଃ ଇଂରାଜୀ ଶାସକ ମାନେ ଗସ୍ତ ସମୟରେ ରହି ଲୋକଙ୍କ ସହ ଯୋଗସୂତ୍ର ସ୍ଥାପନ କରୁଥିଲେ । କ୍ୟାମ୍ପ, କୋର୍ଟ କରି କେସ୍ ମଧ ଫଏସଲା କରାଯାଉଥିଲା । ବୋଲଗଡ ଡାକବଙ୍ଗଳା ନୟାଗଡ, ରଣପୁର ଏବଂ ଖଣ୍ଡପଡା ରାଜ୍ୟର ସୀମାବର୍ତ୍ତୀ ସ୍ଥାନରେ ଥିବାରୁ ଏହାର ଗୁରୁତ୍ୱ ଅଧିକ ଥିଲା । କୁଳବୃଦ୍ଧ ମଧୁସୂଦନ ଖଣ୍ଡପଡା ଗଲାବେଳେ ଏଠାରେ ଅବସ୍ଥାନ କରି ଏଠାରୁ ହାତୀରେ ଖଣ୍ଡପଡା ଯାଉଥିଲେ ବୋଲି ପୁରୁଣା ଲୋକଙ୍କ ଠାରୁ ଶୁଣାଯାଏ । ଗଡଜାତ ରାଜା ମାନେ କଟକ ଗଲାବେଳେ ଏଠାରେ ଅବସ୍ଥାନ କରନ୍ତି । ଏପରିକି ୧୯୨୭ ମସିହାରେ ମହତ୍ମା ଗାନ୍ଧୀ ଏଠାରେ ତିନିଦିନ ଅବସ୍ଥାନ କରିଥିଲେ । ଫକିର ମୋହନ ସେନାପତି ଦଶପଲ୍ଲାର ଦେଓ୍ୱାନ ଥିଲା ବେଳେ ଏଠାରେ ରାତ୍ରୀଯାପନ କରିଥିବାର ଜଣାଯାଏ ।

୧୮୬୬ ମସିହାରେ ଦିବ୍ୟସିଂହ ଦେବଙ୍କ ୯ ଅଙ୍କରେ ଓଡିଶାକୁ ଭୀଷଣ ଦୁର୍ଭିକ୍ଷ ପଡିଥିଲା । ଇତିହାସରେ ଏହା ୯ ଅଙ୍କ ଦୁର୍ଭିକ୍ଷ ଅଟେ । ସେତେବେଳକୁ ଓଡିଶାରେ ଶିକ୍ଷା ବ୍ୟବସ୍ଥାର ବିଶେଷ ପ୍ରସାର ନଥିଲା । ଲୋକମାନେ ଖାଦ୍ୟ ଅଭାବରେ ପୋକ ମାଛି ପରି ମରିଗଲେ । ଜଙ୍ଗଲରେ ଟୁଙ୍ଗା, କଡବା, କଳମ ଶାଗ ଏବଂ ଅନ୍ୟ ଫଳ ଫୁଲ ରହିଲା ନାହିଁ । ପୋଖରୀରୁ କଇଁ ମୁଣ୍ଡା ଏବଂ କଇଁଆ ଗଛରୁ କଇଁଆ ପତ୍ର ମଧ ଶେଷ ହୋଇଗଲା । ଏହି ପରିସ୍ଥିତିର ସୁଯୋଗ ନେଇ ବୋଲଗଡ ଅଂଚଳରେ କେତେକ ଧନୀକ ଶ୍ରେଣୀର ଅଭ୍ୟୁଥାନ ଘଟିଲା । ସ୍ଥଳପଥରେ ଯାତାୟତର ସୁବିଧା ନଥିବାରୁ ଏବଂ ସର୍ବୋପରି ଓଡିଶାରେ ରେଳରାସ୍ତା ନଥିବାରୁ ମାଲପରିବହନର ବିଶେଷ ବ୍ୟବସ୍ଥା ନଥିଲା । କଣ୍ଟିଲୋ, ପଦ୍ମାବତୀ ଏବଂ ବୈଦ୍ୟଶ୍ୱରର ମହାନଦୀ ତୀର ବ୍ୟବସାୟର ପେଣ୍ଠ ଥିଲା । କଟକରୁ ଡଙ୍ଗାରେ ସରକାର ବର୍ମା ଖୁଦ ପଠାଇବାର ଜଣାଯାଏ । ଯାହାଥିଲା ସମୁଦ୍ରକୁ ଶଙ୍ଖେ ପରି । ୧୮୬୬ ନଅଙ୍କ ଦୁର୍ଭିକ୍ଷର ଏକ ଅବିକଳ ଚିତ୍ର ବିଶିଷ୍ଟ ପ୍ରଶାସନିକ ଅଧିକାରୀ ଶ୍ରୀଜଗନ୍ନାଥ ପ୍ରସାଦ ଦାସ (I.A.S) ତାଙ୍କ ଲିଖିତ

"ଦେଶ, କାଳ, ପାତ୍ର"ରେ ବର୍ଣ୍ଣନା କରିଛନ୍ତି । ସେ ସମୟରେ ବୋଲଗଡ ଅଂଚଳର ଚିତ୍ର ଏଥିରେ ଦିଆଯାଇଅଛି । ପାଠକଙ୍କ ଅବଗତି ପାଇଁ ଏଠାରେ ସ୍ଥାନୀତ ହେଲା ।

ଦେଶ, କାଳ, ପାତ୍ର (ପୃଷ୍ଠା.- ୮୦)

ମିଠାକୁଅ - ନଭେମ୍ବର ୧୮୬୫

"ଖୋର୍ଦ୍ଧାରେ ଫସଲ ଅବସ୍ଥା ଭଲ ନଥିଲା । ଗଲା ସପ୍ତାହରେ ମେଘୁଆ ପାଗ ଯୋଗୁଁ ଅବସ୍ଥା ସାମାନ୍ୟ ସୁଧୁରିଲା । ତେବେ ବୋଲଗଡ ଆଡକୁ ଅବସ୍ଥା ଏ ପ୍ରକାର ନଥିଲା । ଜଙ୍କିଆ ଟାଙ୍ଗି ମଝିରେ ଫସଲ ଜଳିଯାଇଥିଲା । ଖାଲି ଠାଏ ଠାଏ ଲୋକ ପାଣି ମଡାଇ ଫସଲକୁ ବଞ୍ଚାଇ ରଖିଥିଲେ । ଲେସି (ପୁରୀ ଏସ.ପି.) ଜଙ୍କିଆରେ କ୍ୟାମ୍ପ କରିଥିଲେ । ତାଙ୍କ ଲୋକ ଯାଇ ବଜାରରୁ ଚାଉଳ କିଣିଥିଲା । ଦର ଥିଲା ଟଙ୍କାରେ ପୁରୁଣା ଚାଉଳ ଆଠ ସେର ଏବଂ ନୂଆ ଚାଉଳ ଦଶ ସେର ।"

**********

ଏହି ନଅଙ୍କ ଦୁର୍ଭିକ୍ଷର ସୁଯୋଗ ନେଇ ବୋଲଗଡ ଅଂଚଳର କେତେକ ଧନଶାଳୀ ବ୍ୟକ୍ତିଙ୍କର ଅଭ୍ୟୁଥାନ ହୋଇଥିଲା । ସାଧାରଣ ଲୋକ ମାନେ ଜୀବନ ରକ୍ଷା ପାଇଁ ନିଜର ଜମିବାଡି ଧନୀଲୋକଙ୍କୁ ସ୍ୱଳ୍ପ ଧାନଚାଉଳ ଏବଂ ଟଙ୍କା ବିନିମୟରେ ଦେଇ ଦେଇଥିଲେ । ଫଳରେ ବହୁଲୋକ ନିଃସ୍ୱ ହେବା ସଂଗେ ସଂଗେ ଅଳ୍ପ କେତେକ ଲୋକ ଧନାଢ୍ୟ ଶ୍ରେଣୀରେ ପରିଗଣିତ ହୋଇଯାଇଥିଲେ ।

ପରବର୍ତ୍ତୀ ସମୟରେ ସେମାନଙ୍କର ସାମାଜିକ ପ୍ରତିଷ୍ଠାର ଶ୍ରୀବୃଦ୍ଧି ନିମନ୍ତେ ଘରୋଇ ସ୍ତରରେ ସେମାନଙ୍କ ଦ୍ୱାରା ମନ୍ଦିର ମାନ ଗଢି ଉଠିଲା । ସ୍ଥାନୀୟ ଲୋକଙ୍କୁ ଧାର୍ମିକ ଦୃଷ୍ଟିରୁ ନିୟନ୍ତ୍ରଣ କରିବାକୁ ଏହା ଏକ ବିଶେଷ ଆୟୁଧ ଥିଲା । ଏହି ପରିସ୍ଥିତିରେ ସାଧାରଣ ଲୋକଙ୍କର ଅବସ୍ଥା ଆଦୌ ଭଲ ନଥିଲା । ସେମାନେ ଦୁଇ ଓଳି ଖାଇବାକୁ ପାଉନଥିଲେ । ଖଣ୍ଡିଏ ଆଣ୍ଠୁ ଲୁଚା ଲୁଗା ଏବଂ ଦଶିଆ ଗାମୁଛା ସାଧାରଣ ପରିଧାନ ଥିଲା । ଏପରି ଶୁଣାଯାଏ ମାଞ୍ଚେଷ୍ଟର ଧୋତି (ବିଲାତି ଲୁଗା) ଏବଂ କୁରୁତା (ସାର୍ଟ)ର ପ୍ରଚଳନ ପରେ କେତେକ ବିତ୍ତଶାଳୀ ବ୍ୟକ୍ତି ଏହାକୁ ବ୍ୟବହାର କରି ପେଡିରେ ସାଇତି ରଖୁଥିଲେ । ଅନ୍ୟମାନେ ବନ୍ଧୁଘର ଗଲା ବେଳେ ସେମାନେ ମାଗିକରି ତାହା ବ୍ୟବହାର କରି ଫେରସ୍ତ କରୁଥିବାର ଶୁଣାଯାଏ । ବହୁଲୋକ ଘରଦ୍ୱାର ଛାଡି କଲିକତା ଏବଂ ରେଙ୍ଗୁନ ପଳାଇଲେ । ସେତେବେଳେ ତାକୁ କାଳୀମାଟି କୁହାଯାଉଥିଲା । ବ୍ରିଟିଶମାନେ ବର୍ମା (ମିଆଁମାର) ଦଖଲ କଲାପରେ ସେଠାର ଜମିବାଡି କାମ ଏବଂ ଜଙ୍ଗଲ କାମ କରିବାକୁ ବହୁତ ଶ୍ରମିକଙ୍କର ଆବଶ୍ୟକତା ପଡିଲା । ଓଡିଶାରୁ ଗୋପାଳପୁର ବନ୍ଦର

ବାଟେ ତତକାଳୀନ ପୁରୀ ଜିଲ୍ଲା ଏବଂ ଗଞ୍ଜାମ ଜିଲ୍ଲାର ବହୁ ଶ୍ରମିକ କାମ କରିବାକୁ ବର୍ମା ଗଲେ । ବୋଲଗଡ ଅଂଚଳରେ ଅବସ୍ଥା ଅନୁଧାନ କଲେ ଜଣାଯାଏ ଏଠାରୁ ବହୁଲୋକ ବର୍ମା ଯାଇଥିଲେ । କେତେକ ଫେରିଆସିଲେ, କେତେକ ସେଠାରେ ବିବାହ ହୋଇ ଘର କରି ରହିଗଲେ । ବର୍ମାରେ ସୁନା ଶସ୍ତା ଥିବାରୁ ଫେରିଲା ବେଳେ ସୁନାରେ ତିଆରି କାନ ଫାସିଆ, ଧାନୁଆ ଏବଂ ତଙ୍କୀ ମାଳ ପିନ୍ଧି ବହୁଲୋକ ଫେରିଥିବାର ଲୋକମୁଖରୁ ଅଦ୍ୟାବଧି ଶୁଣାଯାଏ । ସେମାନେ ବହୁ ବର୍ମା ଟଙ୍କା (ନୋଟ) ଆଣିଥିବାର ଜଣାଯାଏ । ମାତ୍ର ତାହା ଦେଶ ସ୍ୱାଧୀନ ହେଲାପରେ ଅଚଳ ହେବାରୁ ସେମାନେ ତାକୁ ନଷ୍ଟ କରିଥିବା କଥା ସେମାନଙ୍କ ବଂଶଧରଙ୍କ ଠାରୁ ଶୁଣାଯାଏ ।

ବର୍ମା ଯାତ୍ରା ଏକ ନିଚ୍ଛକ ସତ୍ୟ କଥା ଏବଂ ବ୍ୟକ୍ତିଗତ ଅନୁଭୂତି ବିଷୟରେ ଦିବ୍ୟସିଂହ ପୁର ନିବାସୀ, ଆମ ଅଞ୍ଚଳର ଗର୍ବ ତଥା ଦେଶର ଖ୍ୟାତନାମା ଅର୍ଥନୀତିଜ୍ଞ ତଥା ଶିକ୍ଷାବିତ୍ ଡଃ. ବୈଦ୍ୟନାଥ ମିଶ୍ର କେତେବର୍ଷ ପୂର୍ବେ ଦୈନିକ 'ପ୍ରଜାତନ୍ତ୍ର'ରେ ପ୍ରକାଶ କରିଥିଲେ । ସ୍କୁଲରେ ପଢୁଥିବା ବେଳେ ତାଙ୍କର ଜଣେ ଆତ୍ମୀୟ ଗୋବିନ୍ଦ ପତିଙ୍କ ସହ ଗୋପାଳପୁର ବନ୍ଦର ଦେଇ ବର୍ମା ଯିବାକୁ ଗୋପାଳପୁର ଯାଇଥିଲେ । ସେମାନେ ବର୍ମା ଜାହାଜରେ ବସିଗଲେ । ଡଃ. ମିଶ୍ର ଯିବାକୁ ସମସ୍ତ ବ୍ୟବସ୍ଥା କରିସାରିଥିଲେ ମଧ୍ୟ ତାଙ୍କର ସମ୍ପର୍କୀୟ କହେଇ ତାଙ୍କୁ ଜାହାଜରୁ ଓହ୍ଲାଇ ଦେଇ ବର୍ମା ଚାଲିଗଲେ । ଡଃ. ମିଶ୍ରଙ୍କ ଆଗରେ ବର୍ମା ଯାଉଥିବା ଜାହାଜଟି ଅତଳ ସମୁଦ୍ରରେ ଆଉ ନଦିଶିବା ପରେ ସେ କାନ୍ଦି କାନ୍ଦି ଏକା ଚାଲି ଚାଲି ବ୍ରହ୍ମପୁର ରେଳଷ୍ଟେସନକୁ ଆସି ରେଳ ଯୋଗେ ଖୋର୍ଦ୍ଧା ରୋଡ ଆସି ସେଠାରୁ ମୋଟରରେ ଆସିବାକୁ ପଇସା ନଥିବାରୁ ୨ ପଇସାର ମୁଢୀ ଖାଇ ଚାଲି ଚାଲି ସଂଧ୍ୟାରେ ଘରେ ପହଞ୍ଚିଥିବାର ସମ୍ପୂର୍ଣ୍ଣ ବିବରଣୀର ବର୍ଣ୍ଣନା ଲେଖକ ପାଠକରିଅଛି । ଏହାଛଡା ବୋଲଗଡର ଶ୍ରୀ ଉପେନ୍ଦ୍ର ସିଂହ ତାଙ୍କ ପିଲା ଦିନେ ପିତାଙ୍କ ସହ କଲିକତାରୁ ବର୍ମା ଯାଇଥିବା କଥା କୁହନ୍ତି । ସେ ୧୯୩୮ ମସିହାରେ ବର୍ମାରୁ ଫେରି ଗ୍ରାମରେ ବିଦ୍ୟା ଅଧୟନ ଆରମ୍ଭ କରିଥିଲେ । ଏଥିରୁ ସେତେବେଳର ସ୍ଥାନୀୟ ଜନସାଧାରଣଙ୍କର ଅବସ୍ଥା କିପରି ଥିଲା ପାଠକମାନେ ଅନୁମାନ କରିପାରିବେ । ଏସମ୍ପର୍କରେ ବୋଲଗଡର ବିଶିଷ୍ଟ ନାଗରିକ ତଥା ରାଜ୍ୟ ସରକାରଙ୍କ ଅଧିନରେ ବହୁ ପଦ ପଦବୀରେ ଜଣେ ପ୍ରଶାସକ ଭାବରେ ଅଧିଷ୍ଠିତ ଶ୍ରୀ ଉପେନ୍ଦ୍ର ସିଂହଙ୍କ ସହ ଆଲୋଚନାରୁ ଜଣାଯାଏ ସେ ୧୯୩୬ ମସିହା ଠାରୁ ୧୯୩୮ ମସିହା ପର୍ଯ୍ୟନ୍ତ ୰ ପିତା ଦୌଲତ ସିଂହଙ୍କ ସହ କଲିକତାରୁ ଚିଟାଗଙ୍ଗ ଯାଇ ଜାହାଜ ଯୋଗେ ରେଙ୍ଗୁନ ଯାଇଥିଲେ । ମାତ୍ର ସେଠାରେ ତାଙ୍କର ଶିକ୍ଷାର ଅସୁବିଧା ହେବାରୁ ତାଙ୍କର ପିତା ତାଙ୍କୁ ବୋଲଗଡରେ ତାଙ୍କର ମାମୁଁଙ୍କ ପାଖରେ ଛାଡି ପୁନର୍ବାର ବର୍ମା ଚାଲିଯାଇଥିଲେ ।

କିରୋସିନର ପ୍ରଚଳନ ପୂର୍ବରୁ ଜଡା ତେଲକୁ ଲୋକମାନେ ଜାଳେଣୀ ରୂପେ ବ୍ୟବହାର କରୁଥିଲେ । ଯେଉଁମାନେ ଜଡା ତେଲ ପାଇବାର ସୁବିଧା ପାଉନଥିଲେ ସେମାନେ ଜଙ୍ଗଲରୁ ତେଲକୋରୁହାଁ କାଠ ସାହାଯ୍ୟରେ ରାତିରେ ଆଲୁଅ ଜାଳି ଗୁଜୁରାଣ ମେଣ୍ଟାଉଥିଲେ । ବାଡି ମାନଙ୍କରେ ହଳଦିଆ କପା ପ୍ରାୟ ସମସ୍ତଙ୍କର ଥିଲା । ତାହା ସଂଗ୍ରହ କରି ମାଦଳ ଅରଟ (କଳାମୁଗୁନୀ ପଥର ଖଚିତ) ସାହାଯ୍ୟରେ ସୂତାକାଟି ଗ୍ରାମ୍ୟ ତନ୍ତୀ ଓ ରଙ୍ଗଣୀ ପ୍ରଭୃତି ବୁଣାକାର ମାନଙ୍କୁ ଦେଇ ସେମାନଙ୍କ ଦ୍ୱାରା ପ୍ରସ୍ତୁତ ଲୁଗାପଟା ବ୍ୟବହାର କରୁଥିଲେ । ବିଲରୁ ସଂଗ୍ରହ କରି ଏକ ଘାସ ଜାତୀୟ ବେଣ୍ଣାଆରେ ହେଂସ ବୁଣି ତାକୁ ମଶିଣା ଆକାରରେ ବ୍ୟବହାର କରୁଥିଲେ । ବର୍ତ୍ତମାନ ଏହା ଦେଖିବାକୁ ମିଳୁନାହିଁ । ଏହା ଶୀତ ଦିନେ ଘୋଡାଇ ହୋଇ ଶୋଇଲେ ପ୍ରବଳ ଗରମ ଅନୁଭୂତ ହୁଏ । ବୋଲଗଡ ଅଂଚଳରେ ବହୁକାଳରୁ ସୂତାକଟା ଏବଂ ଲୁଗାବୁଣା ମୁଖ୍ୟ ବ୍ୟବସାୟ ଥିବାରୁ ୧୯୨୧ ମସିହାରେ ଖଦୀର ସଂଗଠନକୁ ଆଗେଇ ନେବାକୁ ଏଠାରେ 'ଅଖିଳ ଭାରତ ଚରଖା ସଂଘ'ର ଏକ ଶାଖା ପ୍ରତିଷ୍ଠା ହୋଇ ବୋଲଗଡ, ନୟାଗଡ ଅଂଚଳର ସୂତାକଟା ଏବଂ ଲୁଗାବୁଣାକୁ ପ୍ରୋତ୍ସାହିତ କରାଯାଇଥିଲା ଏବଂ ସ୍ୱାଧୀନତା ଆନ୍ଦୋଳନରେ ଖଦୀ ସଂଗଠନ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଲୋକମାନେ ବାଉଁଶ ବେତରେ ପେଡି ପେଟରା କରି ଦରକାରୀ ଜିନିଷ ସାଇତି ରଖୁଥିଲେ ଏବଂ କାଠ ସିନ୍ଧୁକର ବ୍ୟବହାର ଥିଲା । ବିଗତ ୬୦-୭୦ ଦଶକ ପର୍ଯ୍ୟନ୍ତ ଏହାକୁ ଉପହାର ରୂପେ ଝିଅକୁ ବାପଘର ଦେଉଥିଲେ ।

ପ୍ରତ୍ୟେକ ଗ୍ରାମରେ ବିଶ୍ୱକର୍ମା (ବଢେଇ ଓ କମାର) ଜାତିର ଲୋକମାନେ ଗୃହ ଓ କୃଷି ଉପକରଣ ନିର୍ମାଣ ଏବଂ ମରାମତି କରୁଥିଲେ । ଟଙ୍କା ବଦଳରେ ଧାନ ବର୍ତ୍ତନ ନେଉଥିଲେ । ଫଳରେ ଏହି ବ୍ୟବସାୟୀ ଜାତି ଅପେକ୍ଷାକୃତ ସ୍ୱଚ୍ଛଳ ଥିଲେ । ଶୁଣାଯାଏ ବୋଲଗଡରେ ଥିବା ତନ୍ତୀକୁଳ ଧନୀଶ୍ରେଣୀର ଥିଲେ । ବର୍ତ୍ତମାନ ସୁଦ୍ଧା ସେମାନଙ୍କର ଜମିକୁ ତନ୍ତିପଟି କୁହାଯାଏ । ଲେଖକଙ୍କ ବଡବାପା ୰ ଜଗନ୍ନାଥ ପରିଡା ବୋଲଗଡ ଅଂଚଳର ଜଣେ ପ୍ରଭାବଶାଳୀ ବ୍ୟକ୍ତି ଥିଲେ ଏବଂ ଭର୍ଣ୍ଣାକୁଲର ସ୍କୁଲରେ ଶିକ୍ଷକ ଏବଂ ବିଶିଷ୍ଟ ମଲ୍ଲ ଯୋଦ୍ଧା ଥିଲେ । ୧୯୧୯ ମସିହା ୨୬ ସାଲ ଦୁର୍ଭିକ୍ଷ ବେଳେ ଗ୍ରାମ୍ୟ କମିଟି ଦ୍ୱାରା କାହା ଘର କୋଠିରେ କେତେ ଧାନ ଅଛି ଆକଳନ କରାଯାଇଥିଲା । ୰ ଜଗନ୍ନାଥ ପରିଡା ଗ୍ରାମର ମୁଖ୍ୟ କମାର ଗଡସାହିର ଇଚ୍ଛମନ ମହାରଣାଙ୍କ ଧାନ କୋଠୀରେ ଗ୍ରାମର ସର୍ବାଧିକ ଧାନ ଥିବାର ଆକଳନ କରିଥିଲେ । ଏହି ନଅଙ୍କ ସମୟରେ ସେହି ଧାନକୁ କରଜ ଆକାରରେ ଲୋକଙ୍କୁ ଦିଆଯାଉଥିଲା । ଏ କଥା ଲେଖକ ୰ ସାଧୁ ଚରଣ ଚୌଧୁରୀଙ୍କ ଠାରୁ ଶୁଣିଥିଲେ । ଏକଥା ଅବତାରଣା କରିବାର ଉଦ୍ଦେଶ୍ୟ ସେତେବେଳେ ଏଶ୍ରେଣୀର କାରିଗର ମାନେ ସ୍ୱଚ୍ଛଳ ଥିଲେ । ସେ

ବୋଲଗଡ ଗ୍ରାମର ମୁଖ୍ୟ ଲୁହା କାରିଗର ଥିଲେ । ସେତେବେଳେ କାମ ପାଇଁ ଟଙ୍କା ବଦଳରେ ଧାନ ବର୍ତ୍ତନ ଆକାରରେ ଦିଆଯାଉଥିଲା ।

ପରବର୍ତ୍ତି କାଳରେ ପାଶ୍ଚାତ୍ୟ ପରମ୍ପରା ପ୍ରଭାବରେ ଦେଶ ଏବଂ ରାଜ୍ୟର ବିଭିନ୍ନ ନଗର ଓ ସହରରେ ଶିକ୍ଷାନୁଷ୍ଠାନ ଗଠନ ହେଲା । ଏ ଅଂଚଳର ମୁଖ୍ୟ ସ୍ଥାନ ମାନଙ୍କରେ ଶିକ୍ଷାନୁଷ୍ଠାନ ମାନ କେତେକ ଧନୀ ଲୋକଙ୍କ ପୃଷ୍ଠ ପୋଷକତାରେ ଗଢି ଉଠିଥିଲା । ସେତେବେଳେ ସେମାନେ ଲୋକଙ୍କ ସହଯୋଗରେ କେତେକ ସ୍ଥାନରେ ବନ୍ଧ ଏବଂ ପୋଖରୀ ପ୍ରଭୃତି ଜଳାଶୟ କରି ଲୋକଙ୍କ ଆସ୍ଥା ଭାଜନ ହେଉଥିଲେ । ଏହି ପରିପ୍ରେକ୍ଷୀରେ ଏ ଅଂଚଳରେ ବିଭିନ୍ନ ଯାନୀ ଯାତ୍ରା ମଧ୍ୟ ଆରମ୍ଭ ହୋଇଥିଲା । ଉପର ମନରେ ଏ ଶ୍ରେଣୀର ମୁଖ୍ୟଙ୍କ ମଧ୍ୟରେ ସମ୍ପର୍କ ଥିଲେ ମଧ୍ୟ ପରସ୍ପର ମଧ୍ୟରେ ପ୍ରବଳ ଗୋଷ୍ଠୀ ବିବାଦ ଥିଲା । ତାହା ମାଡ ଗୋଳରେ ପରିଣତ ହୋଇ ମାଲିମକଦ୍ଦମା ସୃଷ୍ଟି ହୋଇ ଗ୍ରାମ ତଥା ଅଞ୍ଚଳରେ ତିକ୍ତତାର ବାତାବରଣ ସୃଷ୍ଟି କରିଥିଲା । ଗ୍ରାମ୍ୟ ବିବାଦ ବୃଦ୍ଧି କରାଉଥିଲା । ଏହାର ଏକ ନିଚ୍ଛକ ପ୍ରମାଣ ବୋଲଗଡର ଐତିହାସିକ ଚନ୍ଦନ ଯାତ୍ରା ମକଦ୍ଦମା ।

୧୦୦ ବର୍ଷ ପୂର୍ବେ ଏହି ମକଦ୍ଦମା ଯୋଗୁ ଗ୍ରାମର ଏକତା ନଷ୍ଟ ହେବା ସଂଗେ ସଂଗେ ତାହାର ପ୍ରଭାବ ଦୀର୍ଘ ଗୋଟିଏ ଶତାବ୍ଦୀ ଧରି ଗ୍ରାମରେ ସୁପ୍ତ ଅବସ୍ଥାରେ ରହିଅଛି । ଏଥିରେ ସଂପୃକ୍ତ ସେତେବେଳର ଗ୍ରାମର ମୁଖ୍ୟ ସ୍ୱର୍ଗତ ଦୟାନିଧି ମହାପାତ୍ର ଏବଂ ତାଙ୍କ ପୁତ୍ର ସ୍ୱର୍ଗତ ବାମନ ମହାପାତ୍ର ଗୋଟିଏ ପକ୍ଷରେ ଥିଲାବେଳେ ଅନ୍ୟ ପକ୍ଷରେ ବିଶେଷ କରି ତୃତୀୟାପଡାର ମୁଖ୍ୟ ସ୍ୱର୍ଗତ ରାହାସ ପରିଡା, ସ୍ୱର୍ଗତ ନଟବର ଚୌଧୁରୀ, ସ୍ୱର୍ଗତ ହଟ ସାମନ୍ତରାୟ ଏବଂ ସ୍ୱର୍ଗତ ଚିନ୍ତାମଣୀ ସୁବୁଦ୍ଧି ପ୍ରମୁଖ ଥିଲେ । ବହୁ ବର୍ଷ ଧରି ଏ ଘଟଣା ଏ ଅଂଚଳରେ ଏକ ପ୍ରଧାନ ଆଲୋଚ୍ୟ ବିଷୟ ହୋଇଥିବାରୁ ୧୯୦୬ ମସିହାରେ ଏ ମକଦ୍ଦମାର ଐତିହାସିକ ଜଜମେଣ୍ଟ ସହ ୧୯୧୦ ମସିହାରେ ସ୍ୱର୍ଗତ ରାହସ ପରିଡାଙ୍କର ଆପତ୍ତି ଦରଖାସ୍ତର ସାର୍ଟିଫାଏଡ କପି ସହ ସାରଙ୍ଗଧର ରାଉତରାୟଙ୍କର ଏ ସମ୍ପର୍କିତ ଦରଖାସ୍ତ ବର୍ତ୍ତମାନ ଶ୍ରୀ ଭାସ୍କର ମହାପାତ୍ରଙ୍କ ଠାରୁ ମିଳିଅଛି । ତାହା ପାଠକଙ୍କ ଅବଗତି ନିମନ୍ତେ ଏଠାରେ ସ୍ଥାନିତ ହେଲା ।

୧୯୦୬ ମସିହାରେ ଏହି ଐତିହାସିକ ଚନ୍ଦନଯାତ୍ରା ମକଦ୍ଦମାର ରାୟ ସହ ୧୯୧୦ ମସିହାରେ ସ୍ୱର୍ଗତ ରାହସ ପରିଡାଙ୍କ ଦ୍ୱାରା କରାଯାଇଥିବା ଆପତ୍ତି ଦରଖାସ୍ତ ସହ ୰ ସାରଙ୍ଗଧର ରାଉତରାୟଙ୍କର ଦରଖାସ୍ତର ନକଲ ଯଥାକ୍ରମେ ପ୍ରଦାନ କରାଗଲା । ବର୍ତ୍ତମାନ ପ୍ରାୟ ୧୦୦ ବର୍ଷ ଅତୀତ ହୋଇଥିଲେ ମଧ୍ୟ ସେତେବେଳର ଗ୍ରାମର ଅବସ୍ଥା ଅନେକ ପରିମାଣରେ ବଦଳି ଯାଇଅଛି ।

* * * * * * * * * * *

Copy of the Judgement
P.C. NO.- 342 of 1906
Dayanidhi Mohapatra
Vrs.
Natabar Chowdhury and others
S. 147 and 325 I.P.C.

The Ten accused in this case have been charged under two heads Vis of rioting and offence under S 147 I.P.C. and under S. 149 and 325 I.P.C. of voluntary causing hurt to the complainant. The facts are briefly these :- The complainant is a Teli by caste. About 5 years ago he constructed a Hindu Temple in Bolgarh Village. In a village not far off called Trutiapara there is a Govt. tank, where the villagers of Trutiapara used to perform a ceremony called the 'Chandan Jatra'. The complainant wanted to take his newly established Thakur to the aforesaid tank to perform the aforesaid ceremony but was strongly opposed by the villagers of Trutiapara who thought that by his doing so the tank would loose its sacredness because the new Thakur was set up by the complainant who belonged to one of the inferior classess of Hindus. Complainant applied to the Sub-Divisional Magistrate last year to perform the Chandan Jatra ceremony in the tank as the villagers of Trutiapara were opposed to this the prayer was rejected.

This year when the District Magistrate was in camp in Bolgarh the complt went up to him about the matter. As it was a verbal application the District Magistrate tried to get the parties to come to an amicable arrangment as Trutiapara men were still obdarats. Complainant went to Puri and this time filled a written application before the District Magistrate.

The District Magistrate gave him permission and passed an order on the police, directing them to see that no breach of the peace took place. A copy of the District Magistrate is order has been filled with the record and its dated the 24-04-1906.

The trutiapada man then filled an appeal before the cour of

Sub-division, who passed arder on the 2nd time in 1906 who passed order the effect that if the Trutiapada men were not satisfied with the dist magistrate order they could sue for an injuction or a declaration of right. a copy of the commr's order has also been filled with the record. The Trutiapada men were accordingly informed by the Police of the Magistrate's order. A time was fixed at which the Chandan Jatra ceremony was to be performed. The order was then proclaimed by beat of drum. When the Trutiapada men heard of the order one of them, Rahas Parida, one of the accd in this case declared that if the order was enforced there would be another investigation for murder. On the night of the 30th April 190 6 Dayanidhi with his party took out the idol and the Jatra Party proceeeded to perform the ceremony. No disturbance took place till the 16th May 1906. On the 15th May 1906 owing to a storm and rain the party could not hold the Jatra party, so on the morning of the 16th May 1906 at 6 a.m. the party, after performing the Chandan ceremony at the Neliapokhari at Trutiapada started homewards. On the way when they were passing one Natabar Chowdhury's bari the acod persons began to throw what is called Teka Pathara (stones) and pieces of wood at the processions. Three umbrallas belonging to the Thakur were smashed and some the spectators were injured. The procession was accompanied by a number of chowkidars daffadars 4 Police constables and the officiating sub-inspector. The H.C. now officiating S. I. of Police finding the procession had been stopped by this shower of sticks and stones came up but the acod soon disposed into their respective homes.The S.I. then gave orders for the procession to proceed. It did so. When they got to the complaint 's' 'deul' (temple) the Thakur was put away and a dancing party started their performance. The S.I. of police then left for the out post as he had some official business at attend to. The acod seizing the opportunity of the Sub Inspector is absence again turned before the temple and began to throw sticks and stones in course of which some of the complainant's party were injured. The Head constable getting Khabber that there was a disturbance again turned up so the accd all fled to their respecting homes, which were

not far off. A counter charge has been brought by Chintamani Subudhi, one of the accd in this case which is briefly that Dayanidhi on his return from performing the Chandan Jatra - ceremony purposely left the main road, turned into the lane where he had his house and insulted him and his common folk by shaking the poenus attached to the image of a bull mde of bull, which with some other objects formed a part of the procession and wound up by beating certain persons who had gone to his rescue. Several arguments have been set forth by the learned pleader for the defence to show that the case was a false and concocted one. It would take pages to give all the points urged by him on behalf of his parties. In fact it is impossible to deal with all the points urged and then to give the replies set forth by the pleader for the prosecution. I can only deal with the main arguments very briefly. The most important argument is the explanation for the injuries sustained by some of the complt's party. Nine persons have been injured. All of whom have been examined by the C.H. Asst who has recorded what injuries he found on them. One of them Makunda Brahma had the right lateral incisor tooth of the upper jaw knocked out. Probably by a stone or a lathi. The defence pleader says that this could not have been caused either by a blow from a stick or by a stone coming in contact with it - for if such had really been the case thre would have been some external injuries. As regards the other injuries found on Makunda Brahma and others he says that he has satisfactorily shown by the doctor's evidence that most of them could have been caused either by falls or they could have been self inflicted. He then goes on to say that as reards the man who got his tooth knocked out he is an interested person, that he might have lost his tooth by natural causes and was got hold of to come and give evidence that his tooth was knocked out. The other injuries he says could have easily been self inflicted simply to show evidence of injuries. The argument is no doubt a very ingenous on. But I am sorry to say I cannot expect - accept it. It may be true that the sticks and stones, are heavy, especially the lathi, but there is nothing to show that the injuries were inflicted from very close and with either the large pieces of

wood or the stones. Both of them have been produced and shown. There are small stones as well as large one. The smaller ones could have caused the injuries found. It all depends whether the stones were thrown with great force or simply loosely pitched among the men. To say that the injured persons allowed themselves to be injured or inflicted the injuries themselves is ridiculous. Everyone knows that self preservation is about the strongest quality existing in human beings. It is idle to say that the injuries could have been self inflicted for the purposes of this case. I leave this argument with the above observation. Another argument is thatthe Police could not have been there otherwise the accd, who numbered about 30 in all would not have dared to assault the opposite party which constisted of baout 60 chowkidars, daffadars and policemen and 500 to 600 other persons. Had the police been there the accd persons would never have dared to assault the opposite party. All the evidence show that the police were there and that these men were determined to pay off Dayanidhi's party at all costs. It is in evidence that one of the accd persons Rahas Parida actually had the audacity to tell the offg. S.I. of police that if Dayanidhi attempted to hold the Chandan Jatra ceremony there would be a murder. it may readly be understood therefore, that to such persons, it did not mater a brass farthing whether the police were present or not. They took good care to conceal themselves on the first occasion and on the second occasion, waited till the responsible police officer went away. Moreover they openly declared and fouted the District Magistrate's order and had the impudence to say that would not be bound by it. Their whole conduct shows that they were so enraged at the idea of a Telee, asala Teli, as they called his having the audacity to take his thakur to a tank where they and their forefathers has performed a certain ceremony, thus as it were, burying all their time honored custom by a wretched order which they did not recognise. They were so infurinted , that they actually forgeted performing their own Chandan Jatra ceremony which dessecrated by the act of a low Caste Hindu, an interloper, who had only suceeded to rise to some influence by his mony lending business. It is not hard to

see, that it mattered little to their men whether the police were present or not. Then it has been said that the procession was illegal as it ought to have started either between the hours of 2 to 4 am. or in the afternoon, that Dayanidhi's statement , that he was prevented in starting owing to a strom during the night is false - it has been satisfactorily. Admitting that there was no storm was it illegal for complainant to start his procession. I do not think so. The road was a public one. The procession was accompanied by the police who were there simply to notice order. The district magistrate had permitted the ceremony to be performed. Moreover if it has not been proved by other witnesses that there was a strom does this affect the case in the face of the abvoe facts. I submit it does not. The time fixed by the police was merely a precautinary measure and nothing more. It is a so urged that the various statements as to where the stones were got from shows that the part of the story is quite false. This fact has been satisfactorily shown to be quite probable by the pleader for the prosecution. Several other arguments put forward by the defence pleader have been satisfactorily explained by the defence pleader and it would take up as I said before several sheets of paper. If I was to put each of them down with the answer to wack. The story for the defence is much more probable. It seems to me. The evidence is full of contradictions and the story is quite false. These men appear to have got their case from the Bhubaneswar rioting case and have invented an absurd counter charge in order to clear themselves. I do not see anything unsatifactory either in the nature of the case for the prosecution or in the evidence of the prosecution witnesses. I consider both charges have been established against the accd who are all found guilty of having committed the offences charged. The accd deserve exemplary punishment as a lession to others. Rioting deserves to be severely punished in this district as it is quite a common offence and the only way to check it is to punish the offenders severely. I sentences each of the accd to undergo 3 (three) months rig. impt under sec 147 I.P.C. and 3 (Three) months rig. impt under S149 and 325 I.P.C. The further direct each of the accd to furnish Rs. 100/- (one hundred)

security with one surety each of Rs. 25/- (Twenty Five) to keep the peace for one year under S106 Cr.P.C. from the day they are released from jail.

Sd/-
I.S.Machay
dt. 21-09-1906

*************

ଚନ୍ଦନ ଯାତ୍ରା .

ଚନ୍ଦନ ଯାତ୍ରାରେ ଦଙ୍ଗା ହଙ୍ଗମା ହେବାର ସମ୍ଭବ ଥିବାରୁ ସ୍ଥାନିୟ ପୋଲିସ ଦ୍ୱାରା ଶ୍ରୀଯୁକ୍ତ କମିଶନର ସାହେବଙ୍କ ପୂର୍ବ ହୁକୁମ ମତେ ଯାତ୍ରା ବନ୍ଦକରିବାକୁ ପ୍ରାର୍ଥନା ।

- ରାହାସ ବିହାରୀ ପରିଡା, ସା.- ତୃତୀୟାପଡା, କି.- ମାଣିକାଗୋଡା, କି.- ଖୋର୍ଦ୍ଧା, ଜି. ପୁରୀ ଏହିକି ଉକ୍ତ ତୃଟୀୟାପଟା ନେଳିଆ ନାମକ ସରକାରୀ ପୋଖରୀ ପାଠ । ତହିଁରେ ବହୁ ପୂର୍ବରୁ ଆମ୍ଭ ମୌଜାର ତୃଟୀୟାଦେବ ଓ ବ୍ରଜମୋହନ ଦେବଙ୍କର ଚନ୍ଦନଯାତ୍ରା ନିର୍ବାହ ହୋଇଆସୁଥିଲା । ଏଥରକୁ ବୋଲଗଡ ମୌଜା ନିବାସୀ ଦୟାନିଧି ମହାପାତ୍ର ନୂତନ ଠାକୁର ଉକ୍ତ ପୋଖରୀରେ ଚନ୍ଦନଯାତ୍ରା କରିବାକୁ ତହିଁରେ ଆମ୍ଭ ଉଭୟ ପକ୍ଷଙ୍କ ମଧରେ ନାନାଦି ତକରାର ଓ ମାଲିମକଦମା ହୋଇ ଶ୍ରୀଯୁକ୍ତ ମହାମାନ୍ୟ କମିଶନର ସାହେବ ଉକ୍ତ ଦୟାନିଧି ମହାପାତ୍ରଙ୍କୁ ଚନ୍ଦନ ଯାତ୍ରା କରିବା ସକାଶେ ନିଷେଧ ଆଜ୍ଞା କରିଥିବାରୁ ମହାପାତ୍ର ସେହି ଦିବସ ଠାରୁ ଚନ୍ଦନଯାତ୍ରା ନକରି ବନ୍ଦ କରିଥିଲେ । ଚଳିତ ସ୍ୱକୁ ଜେନାଗାଡିଆ ନାମକ ପୋଖରିରେ ପୁନରାୟ ଚନ୍ଦନଯାତ୍ରା କରୁଥିବାରେ ଉଭୟଙ୍କ ମଧରେ ପୁନରାୟ ତକରାର ଓ ଶାନ୍ତି ଭଙ୍ଗ ହେବାର ସମ୍ଭବ କାରଣ, ଦୟାନିଧି ମହାପାତ୍ର ଦୁଷ୍ଟ ପ୍ରକୃତିର ଲୋକ ଅଟନ୍ତି । କେବଳ ତକରାର କରିବା ଇଚ୍ଛାରେ ପୁନରାୟ ଚନ୍ଦନଯାତ୍ର କରୁଅଛନ୍ତି । ଯେଉଁ ପୋଖରୀରେ ଚନ୍ଦନଯାତ୍ରା କରୁଛନ୍ତି ସେ ପୋଖରୀ ନୟାଗଡ ଯିବାକୁ ସରକାରୀ ରାସ୍ତା ନିକଟରେ ଅଛି । ତହିଁରେ ରାହାବାଗୀ ଓ ଗ୍ରାମବାସୀ ଓଗେର ମାନେ ଜଳପାନ ଓ ସ୍ନାନାଦି କରନ୍ତି । ଚଳିତ ସ୍ୱ ଜଳକଷ୍ଟ ବିଶେଷ ହୋଇଥିବାରେ ତହିଁରେ ଚାପ ଓ ବୁଡାକରି ଜଳ ନଷ୍ଟ କରୁଅଛନ୍ତି ଏପରି ସ୍ଥଳେ ଶ୍ରୀଯୁକ୍ତ କମିଶନର ସାହେବଙ୍କ ହୁକୁମ ମତେ ଯାତ୍ରା ବନ୍ଦ ହେବା ଉଚିତ ଅଟେ । ଏଣୁକରି ପ୍ରାର୍ଥନା କରୁଛି ଯେ, ଉଲ୍ଲିଖିତ କାରଣ ମାନଙ୍କରୁ ଶାନ୍ତି ଭଙ୍ଗ ହେବା ବିଶେଷ ଥିବାରୁ ସ୍ଥାନୀୟ ପୁଲିସ ଦ୍ୱାରା ଦୟାନିଧି ମହାପାତ୍ରଙ୍କ ନୂତନ ପ୍ରସ୍ତାବ ଚନ୍ଦନଯାତ୍ରା ବନ୍ଦ କରାଯିବା ହେଉ । ତା ୨୭-୦୫-୧୯୧୦ ପ୍ରକାଶ

ଥାଉକି ଚନ୍ଦନ ଶେଷ ଦିବସ ବେଶି ପରିମାଣରେ ଗୋଳମାଳ ହୋଇ ଯାତ୍ରା ହେବାରୁ ଥିବାରୁ ସେ ସ୍ଥ ଏ ଦଙ୍ଗା ହଙ୍ଗମା ହେବା ସମ୍ଭବ । ଅତଏବ ପୋଲିସକୁ ଅତିଶୀଘ୍ର ପଠାଯାଉ ।

**Order**

Police will see that Dayanidhi Mahapatra does not perform Chandan Yatra in any other tank out side his village best by doing so it will lead a breach of peace.

W. Montrion
Sub Divional Magistrate
Certified Copy
06-08-1910

ଅନୁମତି -

ଦରଖାସ୍ତ ସାରଙ୍ଗଧର ରାଉତରାୟ (ତ) ଦୟାନିଧି ମହାପାତ୍ର, ବୋଲଗଡ (ଯି) ମାଣିକାଗୋଡା ଯେହେତୁ ଆମ୍ଭର ମରଫଦାରିରେ ବୋଲଗଡ ମୁକାମରେ ପ୍ରତିଷ୍ଠିତ କୁଞ୍ଜବିହାରୀ ଦେବ ପ୍ରଥମେ ତୃତୀୟାପଡା ମୌଜାରେ ଥିବା ନେଳିଆ ପୁଷ୍କରଣୀରେ ଚନ୍ଦନଯାତ୍ରା କରୁଥିଲେ ତୃତୀୟାପଡା ଗ୍ରାମବାସୀଙ୍କ ସହ ଯାତ୍ରା ସମ୍ପର୍କେ ବିବାଦ ହେବାରୁ ଦେବ ମଉସୁଫ ତୃତୀୟାପଡା ନେଳିଆ ପୋଖରୀରେ ଚନ୍ଦନଯାତ୍ରା ନକରି ବୋଲଗଡ ମୁକାମରେ ଥିବା ଜେନାଗାଡିଆ ନାମକ ପୁଷ୍କରଣୀକୁ ମରାମତି ଓ ପଙ୍କ ଉଦ୍ଧାର କରି ଚନ୍ଦନଯାତ୍ରା ଉଦ୍ଦେଶ୍ୟରେ ପ୍ରସ୍ତୁତ ରଖିଅଛୁ ଓ ଶ୍ରୀ ହୁଜୁର ମଧ ଏଥିପୂର୍ବରୁ ଏ ବିଷୟରେ ଅନୁମତି କରିଅଛନ୍ତି । ବର୍ତ୍ତମାନକୁ ଉକ୍ତ ପୋଖରୀରେ ଯାତ୍ରା କରିବା ଓ ଚନ୍ଦନଯାତ୍ରା ଉପଲକ୍ଷେ ଦେବ ମଉସୁଫଙ୍କ ଗହଣରେ ତଫସଲ ବାଣପୁର ରୋସନୀର ଓ ନାଟତାମାସା ଆଦି ହେବାର ଅନୁମତି ଦିଆଯାଇ କେହି ନିଷିଦ୍ଧ ନକରିବା ଏବଂ ଶାନ୍ତି ରକ୍ଷା ସକାଶେ ପୁଲିସ ନଜର ରଖିବା ପାଇଁ ବିହିତ ହୁକୁମ ହେଉ ।

॥ ଇତି ॥

ତଫସଲ ବାଣ - ତା ୧୧-୦୪-୧୯୧୦

ଂବାଜି, ତୋପବାଜି, ଚମ୍ପା, ଚକ୍ର, କୁମ୍ପୀ, କୁରାଳ ଚକ୍ର, ଆସମାନ ଗୁଳା, ଚନ୍ଦ୍ରଦୀପ, ଚେଙ୍ଗ, ମାଠିଆ ବାଣ ପ୍ରଭୃତି ନେଇ ଶ୍ରୀ ନେତ୍ୟାନନ୍ଦ ପଟ୍ଟନାୟକ

ସେତିକିବେଳେ ଏହି ଘଟଣାକୁ କେନ୍ଦ୍ରକରି ବୋଲଗଡ ବାରପଲ୍ଲୀ ଅଂଚଳ (ବର୍ତ୍ତମାନର ବୋଲଗଡ, ଖଙ୍ଗୁରିଆ, ଡାବରଧୁଆ ପାଟଣା ଗ୍ରାମପଞ୍ଚାୟତ) ର ମୁରବୀଙ୍କ ସହଯୋଗରେ ୧୯୦୪ ମସିହାରୁ ଦଶଦୋଳ ଯାତ୍ରା ଆରମ୍ଭ ହୋଇ ୧୦୦ ବର୍ଷ ଅତିକ୍ରମ କରିବା ପରେ ୨୦୦୩ ମସିହାରେ ଏହି ଯାତ୍ରାର "ଶତବାର୍ଷିକୀ ଅମୃତ ମହୋତ୍ସବ" ମହାସମାରୋହରେ ପାଳନ କରାଯାଇଅଛି । ପରବର୍ତ୍ତୀ ଯାନୀଯାତ୍ରା ଅଧ୍ୟାୟରେ ଏହାର ଆଲୋଚନା କରାଯିବ ।

## ବୋଲଗଡ ଅଂଚଳର ବଡ ଘରପୋଡି

୧୯୦୭ ମସିହାରେ ବୋଲଗଡରେ ହୋଇଥିବା ସର୍ବ ବୃହତ୍ତମ ଘରପୋଡି ଠାରୁ ବଳି ବିପଦ କେବେ ଘଟି ନାହିଁ । ସ୍ୱର୍ଗତ ସାଧୁଚରଣ ଚୌଧୁରୀ ଏ ସମ୍ପର୍କରେ କହନ୍ତି ଦିନେ ସଧାରେ ଏକ ଖଣ୍ଡିଆଭୂତ ପବନ ଯୋଗୁ ତୃତୀୟାପଡା ଧୋବା ସାହିର ମାଣିକ ଧୋବଣୀ ପାଉଁଶ ହାଣ୍ଡିରୁ ଏକ ନିଆଁଗୁଳ ବାହାରି କେବଳ ଚୌଧୁରୀ ସାହି ଛଡା ସମଗ୍ର ଗ୍ରାମକୁ ଭସ୍ମୀଭୂତ କରିଥିଲା । ସେତେବେଳେ ଆଜିକାଲି ଭଳି ଦମକଳର ବ୍ୟବସ୍ଥା ନଥିଲା । ଶୁଣାଯାଏ ୰ ବାମନ ମହାପାତ୍ର, ୰ ରଘୁନାଥ ମହାପାତ୍ର, ୰ ରଘୁନାଥ ସାହୁ ଏବଂ ୰ ଘନଶ୍ୟାମ ପଟ୍ଟନାୟକଙ୍କର ଧାନଗଦାରୁ ଏକମାସ ପର୍ଯ୍ୟନ୍ତ ନିଆଁ ଛାଡି ନଥିଲା । ଏହି ନିଆଁରେ ସେତେବେଳେ ଜଗନ୍ନାଥ ମହାପ୍ରଭୁଙ୍କ ସମେତ ତାଙ୍କର ଚାଳଘର ମଣ୍ଡପ ପୋଡିଯାଇଥିଲା ।

## ୧୯୧୯ ମସିହା (ଛବିଶ ସାଲ ମହରଗ)

ଗଜପତି ମୁକୁନ୍ଦ ଦେବ (୩ୟ) ଙ୍କ ୨୬ ଅଙ୍କରେ ସମଗ୍ର ଖୋର୍ଦ୍ଧା ନୟାଗଡ ଅଂଚଳରେ ବର୍ଷା ଅଭାବରୁ ଭୀଷଣ ମରୁଡି ହୋଇଥିଲା । ଲୋକମୁଖରେ ଏହା ୨୬ ସାଲ ମହରଗ । ଏସମ୍ପର୍କରେ ସ୍ଥାନୀୟ ବହୁ ପୁରାତନ ଲୋକଙ୍କ ଠାରୁ ଶୁଣାଯାଏ ରାତି ପାହିଲା ବେଳକୁ ଖଣ୍ଡପଡା, ନୟାଗଡ ଅଚଳରୁ ବୋଝ ଏବଂ ଅଖା ସହ ବହୁଲୋକ ବୋଲଗଡ ଅଂଚଳର ସମସ୍ତ ଧନୀଲୋକଙ୍କ ଦୁଆରେ ରୁଣ୍ଡ ହୁଅନ୍ତି । ସେତେବେଳେ ଏ ଅଂଚଳର ବାମନ ମହାପାତ୍ର(ବୋଲଗଡ), ମୋହନ ସାମନ୍ତରାୟ, ହଜାରୀ ମହାପାତ୍ର (ଘୋରଡିଆ), ଦିଗମ୍ବର ଛୋଟରାୟ (ଖଙ୍ଗୁରିଆ), ଯୋଗେଶ୍ୱର ସୁବୁଦ୍ଧି ଏବଂ ହଇରାତ ଅଲ୍ଲୀ ବେଗ (ମାଣିକାଗୋଡା) ପ୍ରମୁଖ ବିଶିଷ୍ଟ ଧନୀବ୍ୟକ୍ତି ଥିଲେ । ସେହି ମରୁଡି ସମୟରେ ସେମାନଙ୍କର ଧାନ କୋଠୀ ସକାଳୁ ରାତି ଅଧଯାଏଁ ଖୋଲାଯାଇ ବାହାରୁ ଆସୁଥିବା ଲୋକମାନଙ୍କୁ ଧାନ ବିକ୍ରୀ କରାଯାଉଥିଲା । କେବଳ ମାଣିକାଗୋଡାର ୩୦୦ ଲୋକ ଏହି ମହରଗ ବେଳେ ଖାଇବାକୁ ନପାଇ

ମରିଯାଇଥିବାର ସ୍ଥାନୀୟ ପୁରାତନ ପ୍ରାଥମିକ ବିଦ୍ୟାଳୟର ରେକର୍ଡରେ ଥିବାର ଜନୈକ ପୁରାତନ ଶିକ୍ଷକଙ୍କ ଠାରୁ ଲେଖକ ଶୁଣିଥିଲା । ଏହାର ସବିଶେଷ ବିବରଣୀ ସଂଗ୍ରହ କରିବାପାଇଁ ଚେଷ୍ଟା କରାଯାଇଥିଲେ ମଧ୍ୟ ତାହା ନଷ୍ଟହୋଇଯାଇଥିବା ଜଣାଯାଇଛି । ସେତେବେଳର କରୁଣ ଚିତ୍ର ସମ୍ପର୍କରେ ବୋଲଗଡ ଗ୍ରାମର ପୁରୁଣା ଲୋକଙ୍କ ଠାରୁ ଶୁଣିଥିବା ଗୋଟିଏ କଥା ପାଠକମାନଙ୍କ କୌତୂହଳ ନିମନ୍ତେ ପ୍ରଦାନ କରାଗଲା ।

- ସେତେବେଳେ ଏକ ସ୍ତ୍ରୀଲୋକ ତାର ଛୋଟ ଝୁଆକୁ ଧରି ସ୍ଥାନୀୟ ମଠରୁ ପ୍ରସାଦ ମାଗି ଖାଇଲାବେଳେ ପିଲାଟିର ହାତ ବାନ୍ଧିଦେଇ ନିଜେ ତାହା ଖାଉଥିଲା । ପିଲାଟି ଭୀଷଣ କାନ୍ଦୁଥାଏ । ଏ ଘଟଣା ତତକାଳୀନ ମୁରବୀ ସ୍ୱର୍ଗତ ଜଗନ୍ନାଥ ପରିଡା ଦେଖି ସେ ମାଆକୁ ଧମକାଇ ପିଲାର ହାତ ଫିଟାଇ ତାକୁ ଆଗ ଖାଇବାକୁ ଦେଲା ପରେ ଅଧିକ ପ୍ରସାଦ ମଠରୁ ଆଣି ଉକ୍ତ ସ୍ତ୍ରୀ ଲୋକକୁ ଖାଇବାକୁ ଦେଇଥିଲେ । ଏହା ତତ୍‌କାଳୀନ ଦୁର୍ଭିକ୍ଷ ଅବସ୍ଥାର ଏକ ନିଛକ ଦୃଶ୍ୟପଟ ଥିଲା ।

ଊନବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ଇଂରେଜ ସରକାର ସ୍ୱାୟତ୍ତ ଶାସନ ପ୍ରଚଳନ କରିଥିଲେ । ଜିଲ୍ଲା ବୋର୍ଡ ଜିଲ୍ଲା ସ୍ତରରେ, ଲୋକାଲ ବୋର୍ଡ ସବଡିଭିଜନ ସ୍ତରରେ ଏବଂ କେତେକ ଗ୍ରାମକୁ ନେଇ ଇଉନିୟନ ଗଠନ କରାଯାଇଥିଲା । ଦେଶରେ ସ୍ୱାୟତ୍ତ ଶାସନ ବ୍ୟବସ୍ଥା ପ୍ରଚଳନ ପରେ ଏକ ନବଜାଗରଣ ସୃଷ୍ଟି ହୋଇଥିଲା । ଏହି ସ୍ୱାୟତ ଶାସନ ବ୍ୟବସ୍ଥା ମାଧ୍ୟମରେ ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ଗମନାଗମନ ବ୍ୟବସ୍ଥାର ଅୟଂଆରମ୍ଭ ହେଲା । ଜିଲ୍ଲା ବୋର୍ଡ ଏବଂ ଲୋକାଲ ବୋର୍ଡରେ ଯେଉଁ ପ୍ରମୁଖ ସଭ୍ୟମାନେ ଏଠାରୁ ଥିଲେ ସେମାନଙ୍କ ମଧ୍ୟରେ ଦିବ୍ୟସିଂହପୁର ଶାସନର ସ୍ୱାଧୀନତା ସଂଗ୍ରାମୀ ପଣ୍ଡିତ ଦାମୋଦର ମିଶ୍ର, ବୋଲଗଡରୁ ବାମନ ମହାପାତ୍ର, ଖଗୁରିଆରୁ ପତିତପାବନ ହୋତା, ଡାବରଧୁଆରୁ ବାଙ୍କନିଧି ପରିଡା, ଧଳାପଥରର ରାୟବାହାଦୁର ଗଂଗାଧର ସୁବୁଦ୍ଧି ଏବଂ ମାଳିସାହିର ସୁଦର୍ଶନ ମହାପାତ୍ର ପ୍ରମୁଖ ଅନ୍ୟତମ ।

କେବଳ ଖୋରଧା-ନୟାଗଡ ରାସ୍ତା ଛଡା ବୋଲଗଡର ଅନ୍ୟସବୁ ଗ୍ରାମ୍ୟରାସ୍ତା ଦଣ୍ଡା ରାସ୍ତା ଥିଲା । ଯିବା ଆସିବା ପାଇଁ ଲୋକମାନେ ମୁଖ୍ୟତଃ ଶଗଡକୁ ବ୍ୟବହାର କରୁଥିଲେ । କାନ୍ଧରେ ଭାରବହନ କରି ଲୋକମାନେ ଜିନିଷପତ୍ର ନେବାଆଣିବା କରୁଥିଲେ ।

ଏପରିକି ଚିଲିକା ତୀର ସୁଦୂର କାଲୁପଡା ଘାଟ ଠାରୁ କାନ୍ଧରେ ମାଛ ଶୁଖୁଆ ଆଣି ସ୍ଥାନୀୟ କେଉଟ ମାନେ ବ୍ୟବହାର କରୁଥିଲେ । ରଣପୁର ନଥପଲ୍ଲୀ ଅଂଚଳ, ଖଇରୁଣୀ ଗ୍ରାମରୁ ବାଇଗଣ ଅନ୍ୟାନ୍ୟ ପରିବା ସହ ନୟାଗଡ ଅଂଚଳରୁ ଗୁଡ ସ୍ଥାନୀୟ

ବ୍ୟବସାୟୀମାନେ ମୁଣ୍ଡରେ କିମ୍ବା ଭାରରେ ବୋହି ବ୍ୟବସାୟ କରୁଥିଲେ । ଶଗଡ ପରିବହନ ବ୍ୟବସ୍ଥାର ଏକମାତ୍ର ମାଧ୍ୟମ ଥିଲା । ସେଥିପାଇଁ ବହୁକାଳରୁ ବୃଡା, କାଉଁରୀପାଟଣା, ପାନନଗର, ଙ୍ଗପୁର, ମାଣିକାଗୋଡା, ହାଟବସ୍ତ ପ୍ରଭୃତି ଗ୍ରାମରେ ବହୁଳ ପରିମାଣରେ ଶଗଡ ତିଆରି ହେଉଥିଲା । ବିଶେଷ କରି ବୃଡା ଏବଂ କାଉଁରୀ ପାଟଣା ଏବଂ ପାନନଗରରୁ ଶଗଡ ଦେଶ ଅଂଚଳକୁ (ନିମାପଡା, କାକଟପୁର, ସାକ୍ଷୀଗୋପାଳ, କଣାସ, ପିପିଲି) ବିକ୍ରୀ ସୂତ୍ରରେ ଯାଉଥିଲା । ଏଇ ପ୍ରଥା ପ୍ରାୟ ୧୦, ୧୫ ବର୍ଷ ହେଲା ବନ୍ଦ ହୋଇଯାଇଛି । ଲୋକମାନେ ଗାଈ ବଳଦ କିଣା ବିକା ଧଳାପଥର, କଣ୍ଟିଲୋ ନିକଟ ଚମ୍ପେଶ୍ୱର, ବାହାଡାଝୋଲା ଏବଂ ଗଞ୍ଜାମର ହିଞ୍ଜିଳିକାଟ ହାଟରେ କରୁଥିଲେ । ପରେ ନୟାଗଡ ଏବଂ ବେଗୁନିଆ ଠାରେ ବିରାଟ ଗୋରୁ ହାଟ ଆରମ୍ଭ ହେଲା । ଜଟଣୀ ସେତେବେଳେ ମୁଖ୍ୟ ବ୍ୟବସାୟ ପେଣ୍ଠ ଥିବାରୁ ନୟାଗଡ ଅଂଚଳରୁ ଏବଂ ଏଠାରୁ ପ୍ରତିଦିନ ଧାନ, ମୁଗ, ଚଣା ଆଦି ନେଇ ଶହ ଶହ ଶଗଡ ଜଟଣୀ ଯାଉଥିଲା । ତାହା ବଦଳରେ ସେଠାରୁ ଚିନି, କିରୋସିନ, ଖାଇବା ତେଲ, ଲୁଣ, ଲୁଗାପଟା ଏବଂ ମସଲା ସଉଦା ବେପାରୀମାନେ ଆଣୁଥିଲେ । ବାଟରେ ବିଭିନ୍ନ ବଧା (ରହଣୀସ୍ଥଳ) ରେ ସେମାନେ ରାତ୍ରୀଯାପନ କରୁଥିଲେ । ଚୋର ଭୟ ପ୍ରବଳ ଥିଲା । ଏକଦା ବୋଲଗଡର ମହାଜନ ରଘୁନାଥ ସାହୁ ଜୟମଙ୍ଗଳ ବଧାରେ ରାତ୍ରିରେ ଶଗଡ ଫିଟାଇ ବିଶ୍ରାମ କରୁଥିବା ବେଳେ ଚୋରଦଳ ପୂର୍ବରୁ ସେଠାରେ ସେମାନଙ୍କର ଚୋରୀଧନ ଛାଡି ପଳାଇଥିଲେ । ତାହା ରଘୁନାଥ ସାହୁ ପାଇଥିବାର ଜଣାଯାଏ । ଘରକରଣା କାଠ ସ୍ଥାନୀୟ ମୁଖ୍ୟ ଚାଷୀମାନେ ନିକଟସ୍ଥ ନୟାଗଡ ଏବଂ ଖଣ୍ଡପଡା ରଣପୁର ଜଙ୍ଗଲରୁ ଧାନକଟା ପରେ ଶଗଡରେ ଆଣୁଥିଲେ ।

୧୮୦୦ ମସିହା ମଧ୍ୟ ଭାଗ ଏବଂ ୧୯୦୦ ମସିହା ପ୍ରାରମ୍ଭରେ ଏ ଅଂଚଳର ଧନୀ ଲୋକମାନଙ୍କ ଦ୍ୱାରା ବିଷ୍ଣୁମନ୍ଦିର ମାନ ନିର୍ମାଣ ହୋଇଥିଲା । ଏଗୁଡିକ ମଧ୍ୟରେ ଖଙ୍ଗୁରିଆ ଜଗଦେବ ପରିବାର ଦ୍ୱାରା ନିର୍ମିତ ରାଧାକାନ୍ତ ଦେବ ମନ୍ଦିର, ଘୋରଡିଆ ସୁଦର୍ଶନ ମହାପାତ୍ରଙ୍କ ଦ୍ୱାରା ନିର୍ମିତ ରାଧାକାନ୍ତ ଦେବ ମନ୍ଦିର, ଗ୍ରାମେଶ୍ୱର (ଘୋରଡିଆ)ର ୰ ଲିଙ୍ଗରାଜ ସାମନ୍ତରାୟ ଏବଂ ତାଙ୍କ ପୁତ୍ର ୰ ମୋହନ ସାମନ୍ତରାୟଙ୍କ ଦ୍ୱାରା ନିର୍ମିତ ରାଧା ଗୋବିନ୍ଦ ଦେବଙ୍କ ମନ୍ଦିର, ଡାବରଧୁଆ ପାଟଣା ଗ୍ରାମରେ ୰ ନିତ୍ୟାନନ୍ଦ ମହାପାତ୍ରଙ୍କ ଦ୍ୱାରା ରାଧା ଗୋବିନ୍ଦ ମନ୍ଦିର, ଧଳାପଥର ଗ୍ରାମର ୰ ରାୟ ବାହାଦୁର ଗଙ୍ଗାଧର ସୁବୁଦ୍ଧିଙ୍କ ଦ୍ୱାରା ରାଧା ବଲ୍ଲଭ ମନ୍ଦିର , ବୋଲଗଡର ୰ ଦୟାନିଧି ମହାପାତ୍ର ଏବଂ ତାଙ୍କ ପୁତ୍ର ୰ ବାମନ ମହାପାତ୍ରଙ୍କ ଦ୍ୱାରା ନିର୍ମିତ କୁଞ୍ଜବିହାରୀ ଦେବ ମନ୍ଦିର, ମାଣିକାଗୋଡା ଯୋଗେଶ୍ୱର ସୁବୁଦ୍ଧିଙ୍କ ଦ୍ୱାରା ନିମିତ ଗୋପୀନାଥ ମନ୍ଦିର, ଗେଡିଆ ପଲ୍ଲୀର ପୂର୍ବତନ ସରପଞ୍ଚ ଶ୍ରୀଯୁକ୍ତ ଗୌରମୋହନ

ସାହୁଙ୍କ ପୂର୍ବଜଙ୍କ ଦ୍ୱାରା ନିର୍ମିତ ରାଧାକୃଷ୍ଣ ମନ୍ଦିର, ସାନପଦର ଗ୍ରାମର ୬ ନୀଳକଣ୍ଠ ସୁବୁଦ୍ଧିଙ୍କ ଦ୍ୱାରା ନିର୍ମିତ ରଘୁନାଥ ଦେବ ମନ୍ଦିର ପ୍ରମୁଖ ଏ ଅଂଚଳର ପ୍ରଧାନ ବିଷ୍ଣୁ ମନ୍ଦିର ଅଟେ । ଏ ସମସ୍ତ ମନ୍ଦିର ଭିତରେ ବୋଲଗଡରେ ପ୍ରତିଷ୍ଠିତ କୁଞ୍ଜବିହାରୀ ଦେବଙ୍କ ମନ୍ଦିର ଗ ଅବସ୍ଥିତ ପୁରୀ ଜଗନ୍ନାଥ ମନ୍ଦିର ସଦୃଶ୍ୟ ହୋଇଥିବା ବେଳେ ଖଣ୍ଡୁରିଆ ରାଧାକାନ୍ତ ଦେବଙ୍କ ମନ୍ଦିରର କାରୁକାର୍ଯ୍ୟ ଅତି ଉଚ୍ଚକୋଟିର ଏବଂ ସାନପଦର ରଘୁନାଥ ଦେବ ମନ୍ଦିର ସବୁଠାରୁ ବୃହତ୍ତମ ମନ୍ଦିର । ସଂପୁରରେ ସଦାଶିବ ଦେଓ୍ୱାନଙ୍କ ଦ୍ୱାରା ପ୍ରତିଷ୍ଠିତ ମହାଦେବଙ୍କ ମନ୍ଦିର ସ୍ୱର୍ଗତ ଜଗବନ୍ଧୁ ଦେଓ ମହାପାତ୍ର ନିର୍ମାଣ କରିଥିବା ଜଣାଯାଏ । ହରିପୁର ଶାସନର ନୀଳକଣ୍ଠ ଦେବଙ୍କ ମନ୍ଦିର ତ୍ରିପାଠୀ ପରିବାରର ପୂର୍ବଜ ଈଶ୍ୱର ରାୟଗୁରୁ ଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ଏହାଛଡା ସମସ୍ତ ଗଡରେ ଜଗନ୍ନାଥ ମନ୍ଦିର ସହ ଅଧିକାଂଶ ଗ୍ରାମରେ ଶିବ ମନ୍ଦିର ବହୁ କାଳରୁ ଥିବାର ଜଣାଯାଏ ।

ଘୋରଡିଆ ମହାପାତ୍ର ପରିବାରଙ୍କ ମନ୍ଦିର ବିଷୟରେ ଏକ କଥା ସ୍ଥାନୀୟ ପୁରୁଣା ଲୋକଙ୍କ ମୁହଁରୁ ଶୁଣାଯାଏ । ଉକ୍ତ ପରିବାରର ପୂର୍ବଜ ମାନେ ଖଣ୍ଡପଡାର କଣ୍ଟିଲୋ ମହାନଦୀ ଘାଟରେ ଲୁଣ ବ୍ୟବସାୟ କରୁଥିଲେ । ଗୋଟିଏ ଦିନର ଲୁଣ ବ୍ୟବସାୟ ଲାଭରେ ଏହି ମନ୍ଦିର ତିଆରି ହୋଇଥିବା ଜଣାଯାଏ । ଖଣ୍ଡପଡାର ତତକାଳୀନ ରାଜା ଏହି ମନ୍ଦିର ପ୍ରତିଷ୍ଠା କରିବା ସଂଗେ ସଂଗେ ପାଞ୍ଚଗଡ ସୀମା ଖଣ୍ଡପଡାର ଓଳାସ ମୌଜାରେ ୨ ବାଟି ଜମି ଠାକୁରଙ୍କ ସେବା ପୂଜା ପାଇଁ ଦାନ କରିଥିଲେ ।

ପୂର୍ବରୁ ବୋଲଗଡର ଦଳବେହେରା ବହୁ ଭୂମିର ଅଧିକାରୀ ଥିଲେ ମଧ ପାଇକ ବିଦ୍ରୋହ ପରେ ତାଙ୍କର ଜମି ବ୍ରିଟିଶ ସରକାର ଚଞ୍ଚକତା କରି ନେଇଯାଇଥିଲା । ଏହା ପରେ ଏହି ମହାପାତ୍ର ବଂଶର ରାସବିହାରୀ ସୁବୁଦ୍ଧି ମହାପାତ୍ର ଏ ସମସ୍ତ ସମ୍ପତ୍ତିର ଅଧିକାରୀ ହୋଇ ବୋଲଗଡ ଅଂଚଳର ସଦର ସର୍ବରାକାର ଭାବରେ ପରିଗଣିତ ହେଲେ । ସେହି ସୂତ୍ରରେ ବୋଲଗଡ ବାରପଲ୍ଲୀ ଅଂଚଳର ମୁଖ୍ୟ ଶିବପୀଠ ଖଣ୍ଡୁରିଆ ବିଜେ ଅମୃତେଶ୍ୱର ମହାଦେବଙ୍କର ମ୍ୟାନେଜିଙ୍ଗ ଟ୍ରଷ୍ଟି ଭାବରେ ନିଯୁକ୍ତି ପାଇଥିଲେ । ଏହି ସମସ୍ତ ଧନୀ ପରିବାରଙ୍କ ମଧରେ ଖଣ୍ଡୁରିଆ ଜଗଦେବ ପରିବାରଙ୍କର ସର୍ବାଧିକ ଭୂସମ୍ପତ୍ତି ଥିଲା । ଏହି ପରିବାରର କୋଠ ଦେଶ କଣାସ ଅଂଚଳରେ ଶିରେଇ ଜମିଦାରୀ ଥିବା ସଂଗେ ସଂଗେ ବାଙ୍କୋଇ, ସାଗର ଗାଁ, ଗୋଡିଆଳି ଏବଂ ବେଗୁନିଆ ଅଞ୍ଚଳର ଗଡତରା ପ୍ରଭୃତି ଗ୍ରାମ ମାନଙ୍କରେ ଖମାର ଥିଲା । ୩୬୦ ବାଟୀ ଜମିର ସେ ଅଧିକାରୀ ଥିଲେ । ତେଣୁ ଜଗଦେବଙ୍କର ଦିନକୁ ବାଟିଏ ଜମିର ଆୟ ଖର୍ଚ୍ଚ ବୋଲି ଲୋକମୁଖରେ ଶୁଣାଯାଏ ।

# 'ଖୁରୁଧା ଦର୍ପଣ' ରେ ବୋଲଗଡ ଅଞ୍ଚଳର ବର୍ଣ୍ଣନା

ଇଂରାଜୀ ଶାସନ ସମୟରେ ୧୯୨୪ ମସିହା ବେଳେ ବନ୍ଦୋବସ୍ତ ହୋଇଥିଲା । ସେତେବେଳେ ୰ ଦିଗମ୍ବର ଶ୍ରୀଚନ୍ଦନ ବୋଲଗଡ କ୍ୟାମ୍ପରେ ଥିଲେ । ସେ ବଡ ଇତିହାସ ଅନୁସନ୍ଧିତ୍ସୁ ବ୍ୟକ୍ତି ଥିଲେ । ତାଙ୍କର ଏପ୍ରକାର ଆଗ୍ରହ ଦେଖି ତତ୍‌କାଳୀନ ସମୟର ପୁରୀ କଲେକ୍ଟର ଏଲିସାହେବ କ୍ୟାମ୍ପ ପରିଦର୍ଶନ କରିବାକୁ ବୋଲଗଡ ଆସିବା ଅବସରରେ ଖୋରଧା ବିଷୟରେ ତତ୍‌କାଳୀନ ସମୟର ସମସ୍ତ ତଥ୍ୟ ସହ ଐତିହାସିକ ବିଷୟ ବସ୍ତୁ ସଂଗ୍ରହ କରିବାକୁ ପ୍ରେରଣା ଦେଇଥିଲେ । ଏଥିରେ ଉତ୍ସାହିତ ହୋଇ ଶ୍ରୀଚନ୍ଦନ ମହୋଦୟ ତାଙ୍କର ସଂଗୃହୀତ ତଥ୍ୟକୁ 'ଖୁରୁଧା ଦର୍ପଣ' ନାମରେ ଇତିହାସ ପୁସ୍ତକ ରଚନା କରିଥିଲେ । ତାହା ଖୋରଧା ତଥା ଓଡିଶା ପାଇଁ ତାଙ୍କର ଅନବଦ୍ୟ କୃତୀ ଅଟେ । ଲେଖକ ଏହି ପୁସ୍ତକ ବାରମ୍ବାର ପାଠକରି ଅତୀତର ଗୌରବମୟ ଅଧ୍ୟାୟର ଅନେକ ସୂଚନା ପାଇ ତାକୁ ଏଥିରେ ଉଚିତ ମୂଲ୍ୟାଙ୍କନ କରିଅଛି । ସବୁଠାରୁ ସମଗ୍ର ବୋଲଗଡ ଅଂଚଳ ତଥା ପାଞ୍ଚଗଡ ପକ୍ଷରେ ଗୌରବର ବିଷୟ ଯେ, ଖୋରଧାର ଅନ୍ୟାନ୍ୟ ଗଡ ବିଷୟରେ ସୀମିତ ବର୍ଣ୍ଣନା ଥିଲେ ମଧ ବୋଲଗଡ ତଥା ପାଞ୍ଚଗଡ ବିଷୟରେ ବିସ୍ତୃତ ବର୍ଣ୍ଣନା କରାଯାଇଛି । ବ୍ୟାସଦେବଙ୍କ ମହାଭାରତରେ ପ୍ରାଚୀନ ଭାରତର ମଗଧ, ପାଣ୍ଡ୍ୟ, ଚୋଳ, ଚେଦୀ, ସିନ୍ଧୁ , ବିଦର୍ଭ ପ୍ରଭୃତି ରାଜା ଏବଂ ସେ ଦେଶର ବୀରମାନଙ୍କର ଯୁଦ୍ଧର ବର୍ଣ୍ଣନା ମାତ୍ର ଦୁଇ କିମ୍ବା ଚାରିଗୋଟି ଶ୍ଳୋକରେ ସିମୀତ ରଖିଥିଲା ବେଳେ ପ୍ରାଚୀନ କଳିଙ୍ଗ ବାହିନୀର ଯୁଦ୍ଧର ବର୍ଣ୍ଣନା ଦୁଇଶହ ଶ୍ଳୋକରେ ବର୍ଣ୍ଣନା କରି କଳିଙ୍ଗର ଗୌରବ ବର୍ଦ୍ଧନ କରିଛନ୍ତି, ସେହିପରି ପାଞ୍ଚଗଡର ଅତୀତ ଗୌରବର ଗାଥା ବର୍ଣ୍ଣନା କରି ସମଗ୍ର ପାଞ୍ଚଗଡ ବାସୀଙ୍କର ନମସ୍ୟ ହୋଇପାରିଛନ୍ତି । ପାଠକମାନଙ୍କ ଅବଗତି ନିମନ୍ତେ ୰ ଦିଗମ୍ବର ଶ୍ରୀଚନ୍ଦନଙ୍କର ବର୍ଣ୍ଣିତ 'ବୋଲଗଡ ତଥା ପାଞ୍ଚଗଡ ଇତିହାସ' ତାଙ୍କର "ଖୁରୁଧା ଦର୍ପଣ"ରୁ ଏଠାରେ ସ୍ଥାନିତ ହେଲା ।

## ଜିଲ୍ଲା ପାଞ୍ଚଗଡ

("ଖୁରୁଧା ଦର୍ପଣ" ର ପୃଷ୍ଠା - ୧୯୪ ରୁ ୨୦୦)

ଜିଲ୍ଲା ପାଞ୍ଚଗଡ

୧. ବୋଲଗଡ-

ଏହି ବୋଲଗଡ ପାଞ୍ଚଗଡର ଆଦ୍ୟଗଡ । ପାଞ୍ଚଗଡ ଖୁରଧା, ରଣପୁର ସୀମାରେ ଅବସ୍ଥିତ । ପାଞ୍ଚଗଡର ଅନ୍ୟ ୪ ଗଡ, ରଣପୁର ଓ ଖଣ୍ଡପଡାକୁ ଯେ ଲାଗି

ରହିଛି, ଏପରି କାରଣ ହେଉଛି, ଏହି ପାଞ୍ଚଗଡ ଓ ମାଣିକାଗୋଡା ଦୁଇ ଗଡ, ଏପରି ଯେ ୭ ଗଡ ସେ ରଣପୁର ଓ ଖଣ୍ଡପଡା ଅନ୍ତର୍ଗତ ଥିଲା । ପରେ ଏହା ଖୁରଧା ସହିତ ସାମିଲ ହୋଇଛି । ଯେଉଁ ସାମରିକ ରାସ୍ତା, ସୋନପୁର ତରଫରୁ ମହାନଦୀ କୂଳେ କୂଳେ ଓଡିଶାକୁ ଆସି ତାହାର ଏକ ପ୍ରଧାନ ଘାଟି "ମୁଣ୍ଡିଆପଡା" ନାମେ ଯେ ଏଠାରେ ରହିଛି, ସେ ଘାଟିକୁ ଏହି ସାତଗଡ ଆବୋରି ରହିଛି । ଉପରୋକ୍ତ ଗଡମାନଙ୍କର ନାମ ଯଥା- ବୋଇଗଡ, ଙ୍ଗପୁର, ମାଣିକାଗୋଡା, ମାଣିବନ୍ଧ, ବାଙ୍କୋଇ, ହଳଦୀପଦା ଏବଂ ଗୋଡିଆଳି ।

ଏହି ପାଞ୍ଚଗଡ ଓ ମାଣିକାଗୋଡା ଦୁଇ ଗଡ, ଏହା ପୂର୍ବେ କେବଳ ରଣପୁର, ଖଣ୍ଡପଡା ରାଜ୍ୟର ଏବଂ ଦଶପଲ୍ଲା, ବଡୟା, ବାଙ୍କୀ, ଅନାର୍ଯ୍ୟମାନଙ୍କ ଆବାସ ଭୂମି ´ ବାରୁ, ଏହାକୁ କନ୍ଧଡା ମୂଳକ ବୋଲି କୁହାଯାଉଥିଲା । ଏହି କନ୍ଧ ଅଧିବାସୀମାନେ ବଡ ଦୁର୍ଦ୍ଧର୍ଷ ଥିଲେ । ଏହାଙ୍କ ବାହୁବଳରେ ରଣପୁର ରାଜା ବଳୀୟାନ । ଏଣୁ ରାଜ୍ୟର ନାମ ରଣପୁର ଏବଂ ଏ ରାଜାଙ୍କୁ କନ୍ଧରାଜା ବୋଲି କୁହାଯାଏ । ଏହି ରଣପୁର ରାଜାଙ୍କର ମହାରାଜାଙ୍କ ସହିତ ମନୋମାଳିନ୍ୟ ବାରମ୍ବାର ରହିଥାଏ । କ୍ରମେ ମହାରାଜା ସେଠାରୁ ଅନାର୍ଯ୍ୟମାନଙ୍କୁ ହଟାଇଦେଇ, ଆର୍ଯ୍ୟମାନଙ୍କୁ ଭରତି କରି ଓଡିଆ ସୈନ୍ୟ ସାମନ୍ତ ସଜାଇରଖି, ସାମରିକ ବିଧିରେ ସେଠାରେ ଗଡ ଓ କୋର୍ଟମାନ ବସାଇ ଏକ ବିରାଟ ଗୁପ୍ତ ଶିବିର ଗଢିଲେ । ସୈନ୍ୟମାନଙ୍କ ଜୀବୀକା, ଅସ୍ତ୍ରଶସ୍ତ୍ର ଏବଂ ଯାନବାହନ ଆଦିର ଯାବତୀୟ ପୋଷଣ ଦାୟିତ୍ୱ ସେହି ରାଜାମାନଙ୍କ ଉପରେ ନ୍ୟସ୍ତ କରାଯାଇଥିଲା ।

ହିନ୍ଦୁ ତଥା ମୁସଲମାନମାନେ ଗଡାଧୀଶ ଏବଂ ବିଶ୍ୱସ୍ତ ସୈନ୍ୟ ଶ୍ରେଣୀଭୁକ୍ତ ଥିଲେ । ସେମାନଙ୍କ ଭିତରେ ସାଂପ୍ରଦାୟିକ ଭେଦ ବା ତିକ୍ତ ଭାବ ପ୍ରାୟ ନଥିଲା । ଗଡ ସବୁ ପ୍ରତ୍ୟେକେ ପରସ୍ପରଠାରୁ ଏକ ଏକ କ୍ରୋଶରୁ ଅଧିକ ଦୂରବର୍ତ୍ତୀ ନଥିଲା । ହିନ୍ଦୁ ଓ ମୁସଲମାନ ପ୍ରତ୍ୟେକେ ସାଇ ଭାଇ ଭଳି ଚଳୁଥିଲେ । ମାଣିବନ୍ଧରେ ଯେଉଁ ଗଡ ଥିଲା, ତାହାର ଭଗ୍ନାବେଶଷ ଚିହ୍ନ ଏ ପର୍ଯ୍ୟନ୍ତ ମଧ ରହିଛି । ଗଡ ରକ୍ଷକ ଖଣ୍ଡାଏତ ସାମନ୍ତମାନଙ୍କର ବଂଶଧର ଅଦ୍ୟାପି ରହିଛନ୍ତି । ଏହି ମାଣିକାଗୋଡା, ବାଙ୍କୋଇ, ଙ୍ଗପୁର, ମାଣିବନ୍ଧ ଏବଂ ହଳଦୀପଦା ଏହି ପାଞ୍ଚଗୋଟି ଗଡ, ପୂର୍ବରୁ ଓଡିଶା ରାଜାଙ୍କର ଥିଲା । ଏଠାରେ ଖଣ୍ଡପଡା, ନୟାଗଡ, ବାଙ୍କୀ ଏବଂ ରଣପୁର, ଏହି ଚାରିଗୋଟି ରାଜ୍ୟର ସାମରିକ ସୀମା ଥିଲା । ତେଣୁ ଏଠାରେ ଉପରୋକ୍ତ ରାଜାମାନଙ୍କର, ସୈନ୍ୟସାମନ୍ତ, ଯାନବାହନ, ଅସ୍ତ୍ରଶସ୍ତ୍ର ପ୍ରୟୋଜନ ଅଧିକ ପରିମାଣରେ ବରାବର ସୁସଜ୍ଜିତ ଭାବରେ, ସେନାଧକ୍ଷମାନଙ୍କ ନାୟକ, ଅଧିନାୟକ, ଦଳାଇ, ଗଡନାୟକ, ଦଳବେହେରା ପ୍ରଭୃତିଙ୍କ ଦାୟିତ୍ୱରେ ରହିଥାନ୍ତି । ଏହି ଯେଉଁ

ପାଞ୍ଚଗଡ, ଏହା କେବଳ କନ୍ଧ ଓ ପାଣ ପାଇକମାନଙ୍କ ଆବାସ ସ୍ଥଳ ଥିବାରୁ, ଓଡ଼ିଶା ବା ଖୁରଧାରେ ନିକଟବର୍ତ୍ତୀ, ଧନବନ୍ତ ଲୋକଙ୍କର ଧନ ଜୀବନ ନିରାପଦ ନଥିଲା । ମହାରାଜାଙ୍କ କୋପଦୃଷ୍ଟିରୁ କନ୍ଧମାନେ ଗଡଜାତ ଭିତରକୁ ଚାଲିଗଲେ । କେବଳ ପାଣମାନେ କେତେକ ଯେ ରହିଲେ, ସେମାନେ ଅଳ୍ପ ସଂଖ୍ୟକ ଥିଲେ ହେଁ, ସେଠରେ ମହାରାଜା ଆପଦମଣି ପୂର୍ବୋକ୍ତ ପାଞ୍ଚଗୋଟି ଯେଉଁ ଶକ୍ତିଶାଳୀ ଗଡ ବାନ୍ଧିଲେ, ସେ ଏହି ପାଞ୍ଚଗଡ । ପୂର୍ବୋକ୍ତ ମୁଣ୍ଡିଆପଡା ପର୍ବତର ଶିଖର ଦେଶରେ ଯେ ସମତଳ ଭୂମିଟି ରହିଅଛି, ସେ ସ୍ଥାନର ପ୍ରାକୃତିକ ଦୃଶ୍ୟ ଅତି ମନ ମୁଗ୍ଧକର । ଏ ସ୍ଥାନଟି, ସେ ଘାଟି ରକ୍ଷକ ସୈନ୍ୟ ସାମନ୍ତମାନଙ୍କୁ ଘେନି ରାଜା, ମହାରାଜାମାନେ, ଖେଳ କୌତୂହଳ କରି, ସୈନ୍ୟ ସାମନ୍ତମାନଙ୍କ ମଧ ମନମୁଗ୍ଧ କରୁଥିଲେ । ଏଠାରେ ଶିକାର ହେଉଥିଲା । ମହାରାଜା ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ସମୟରେ ମୋଗଲ ସେନାପତିମାନେ ବାରମ୍ବାର ଆକ୍ରମଣ କରିଥିଲେ ସୁଦ୍ଧା ପରାସ୍ତ ହୋଇ ଏଠା ସୈନ୍ୟମାନ୍ତମାନଙ୍କୁ ମୋଗଲ ଦରବାରରେ ବହୁ ପ୍ରଶଂସା କରିଥିଲେ । ମହମ୍ମଦ ତକ୍କି, ମିରହମିର ମୁସଲମାନମାନେ ପୁନରାୟ ଖୁରଧା ଆକ୍ରମଣ କରି ନୂତନ ସେନା ଓ ସରଦାର ସଂଗ୍ରହ କରି ଅଠର କୋଟ ବସାଇ ମହାରାଜାଙ୍କର ଜଣେ କୁଟୁମ୍ୱୀ ଭାଇ ଭାଗିରଥି କୁମାର ଏବଂ ବାଙ୍କୀ ରାଜା ବିଦ୍ରୋହୀ ହୋଇ ଯବନ ପକ୍ଷ ସମର୍ଥନ କରିବାରେ, ମହାରାଜା ଖଣ୍ଡପଡା ରାଜାଙ୍କୁ ସାହାଯ୍ୟ ମାଗିବାରେ, ସେ ଫକୀର ମଙ୍ଗରାଜ ନାମକ ଜଣେ ଯୋଦ୍ଧାଙ୍କୁ ଭ୍ରମରବର ଉପାଧି ଦେଲେ ତିଗିରିଆ, ଚମ୍ପତିସିଂହ (ଚମ୍ପୁପତି)ଙ୍କୁ ସାହାଯ୍ୟ ମାଗିଲେ । ଏକ ଦିଗରେ ବକ୍ସି ଭ୍ରମରବର, ଏକ ଦିଗରେ ଖଣ୍ଡପଡା ରାଜା ଓ ଅନ୍ୟ ଏକ ଦିଗରେ ଚମ୍ପତି ସିଂହ ପ୍ରଭୃତି ମିଳି ଭୟଙ୍କର ଯୁଦ୍ଧ କଲେ । ମୁସଲମାନମାନେ ପରାସ୍ତ ହେବାରୁ, ରାମଚନ୍ଦ୍ରଦେବଙ୍କ କୁଟୁମ୍ବି ଭାଇ ଭାଗିରଥି କୁମାର ରାଜ୍ୟ ଛାଡି ପଳାଇଗଲେ । ବାଙ୍କୀ ରାଜାଙ୍କ ଶିରଚ୍ଛେଦନ କରାଗଲା । ଯବନ ମୋଗଲମାନେ ମହାରାଜା ରାମଚନ୍ଦ୍ରଦେବଙ୍କ ବିକ୍ରମ ପଣ ଦେଖି ଛାଡି ପଳାଇଲେ ସୁଦ୍ଧା, ପିପିଲି ନିକଟରେ ତାଙ୍କର ଠାଏ ଠାଏ ଗୁପ୍ତ କୋର୍ଟ ଯେ ରହିଥିଲା, ମହାରାଜା ଏହା ଜାଣିପାରି ରାତ୍ରିରେ ତା ଉପରେ ଗୁପ୍ତ ଦେହରେ ଅସ୍ତ୍ରାଘାତ ହେବାରୁ , ରାଜା ସେଠାରୁ ବୈଦ୍ୟେଶ୍ୱର ବାହାରି ଗଲେ ବହୁ ଦିନ ଯୁଦ୍ଧରେ କ୍ଳାନ୍ତ ଥିବାରୁ , ସମସ୍ତ ଚିକିତ୍ସ ସତ୍ତ୍ୱେ ଉକ୍ତ କ୍ଷତର ଉପଶମ ହେଲାନାହିଁ । ପରିଶେଷରେ ମହାରାଜା ବୀର ଶ୍ରୀ ରାମଚନ୍ଦ୍ରଦେବ ସେହିଠାରେ ଇହଲୀଳା ସମ୍ବରଣ କଲେ । ମାଣିକାଗୋଡା ସହିତ ଏହି ସାତଗଡ ମଧରେ ଚତୁର୍ବର୍ଣ୍ଣ ଲୋକଙ୍କର ବସବାସ ରିହଥିଲେ ମଧ, ଏହା ସାମରିକ ଜାତିଙ୍କର ଆବାସ ଭୂମି ବୋଲି କହିବା ଅତ୍ୟୁକ୍ତି ହେବ ନାହିଁ । କୌଣସି କାରଣରୁ ତତ୍‌କାଳୀନ ରଣପୁର ରଜା, ବିଦ୍ରୋହୀ ହୋଇ ଉକ୍ତ ମୁଣ୍ଡିଆପଡା ଠାରୁ ଛଞ୍ଚାଣିଆ

ବନ୍ଧ ପର୍ଯ୍ୟନ୍ତ ଅଠର ଗୋଡା ତିଆରି କଲେ । ପ୍ରତ୍ୟେକ ଗୋଡାରେ ସୈନ୍ୟ ଓ ସରଦାରମାନେ ରହିଲେ । ଖୁରଧା -ରଣପୁର ରାସ୍ତା ବନ୍ଦ ହେଲା । ସେତେବେଳେ ଗଡଜାତର ଆଉ କେତେଜଣ ସାମନ୍ତ ରାଜା ମଧ ବିଦ୍ରୋହୀ ହୋଇଥାନ୍ତି । ମହାରାଜା ଦୂତଠାରୁ ଏ ସମ୍ବାଦ ପାଇ ଘେନି ସବାରିରେ ଗୋଡାମାନଙ୍କ ମଧରେ ପହଞ୍ଚିଲେ । ରାଜା ଯିବା ପରେ, ମହାରାଣୀ ସଙ୍ଗରେ ଅନେକ ସୈନିକ ଘେନି ପଛରେ ପହଞ୍ଚିଲେ । ପରେ ମହାରାଜା ଦୂତଠାରୁ ଜାଣି ପାରିଲେ ଯେ, ରଣପୁର ରାଜା ଏହା ଜାଣିପାରି ବଡ ଭାବିତ ହେଲେ ଏବଂ ସୈନ୍ୟ ଓ ସରଦାରମାନଙ୍କୁ ଛାମୁ ଆଜ୍ଞା କରିଦେଲେ ଯେ, କେହି ପାଟିସୁଦ୍ଧା ଫିଟାଇବ ନାହିଁ । ଏହାକଲେ ତଦ୍ୱାରା ଠାକୁର ରାଣୀ ଅପମାନିତ ହେଲେ ମୋର ରାଜତ୍ୱ ଶେଷ ବୋଲି ଜାଣିଥିବ । ଏହା ଅବଜ୍ଞା କଲେ ଶିର ଛେଦନ ଦଣ୍ଡାଜ୍ଞା ହେବ । ମହାରାଣୀ ଅବାଧରେ ଗୋଡାଠାରେ ପହଞ୍ଚିବାରୁ ରଣପୁର ରାଜା କିଛିଦୂରରେ ରହି ମହାରାଣୀଙ୍କୁ ଯଥାବିଧାନ ଉପହାର ସହ ପ୍ରଣାମ କଲେ । ତା ପରେ ରାଜା ରାଣୀ ମାଣିବନ୍ଧଠାରେ ରହିଲେ । ଇତି ମଧରେ ସେଠାରେ ଜେନାମଣି ବସନ୍ତ ରେ ଦେହ ତ୍ୟାଗ କରିବାରେ ଗଡଭିତରେ ଉତ୍ତମ ମନ୍ଦିର ଭିତରେ ଶିବରୂପେ ପୂଜା ପାଇଲେ । ତଦପରେ ପୁଣି ରଣପୁର ରାଜା ମନ୍ଦାଭିପ୍ରାୟରେ ମାରୁ ଗୋହିରି ମୁଣ୍ଡରେ ଗୋଡାକଲେ । ମହାରାଜାଙ୍କ ସୈନ୍ୟ ସାମନ୍ତମାନେ ଏହା ଜାଣିପାରି ରଣପୁର ସୈନ୍ୟମାନଙ୍କୁ ସମୂଳେ ସଂହାର କରିଦେବାରୁ ରଣପୁର ରାଜା ଓ ପ୍ରଜାମାନେ ଏଯୁଦ୍ଧରେ ବଡ, ଭୀତ ହୋଇଗଲେ । ଏହିପରି ରଣପୁର ରାଜା ଥରକୁ ଥର ଆକ୍ରମଣ କରୁଥାନ୍ତି । ପୁଣି ବି ମାନ୍ୟ କରିବାରେ ତ୍ରୁଟି ନଥାଏ । ଏଥି ମଧରେ ବାଙ୍କୀରାଜା ଧନଞ୍ଜୟ ଶ୍ରୀଚନ୍ଦନ ମୁସଲମାନ ନବାବ ଠାରୁ ବହୁତ ସୈନ୍ୟ ଅଣାଇ ମହାରାଜାଙ୍କ ସଙ୍ଗେ ବିଦ୍ରୋହୀ ହେଲେ । ବାଙ୍କୀ ସୈନ୍ୟ, ନବାବ ସୈନ୍ୟ ଓ ଖୁରଧା ସୈନ୍ୟଙ୍କ ମଧରେ ମୁସଲମାନମାନେ ଏତେଦୂର ଡରିଗଲେ ଯେ ଅନେକ ବର୍ଷ ପର୍ଯ୍ୟନ୍ତ ଖୁରଧାକୁ ଆଉ ମୁହାଁଇଲେ ନାହିଁ । କେତେବର୍ଷ ପରେ ବୀରଶ୍ରୀ ଦିବ୍ୟସିଂହ ଦେହତ୍ୟାଗ କରିବାରେ ତାଙ୍କ ଅନୁଜ ହରେକୃଷ୍ଣ ଦେବ ରାଜାହେଲେ । ଯେହେତୁ ଯୁବରାଜ ପୂର୍ବରୁ ପରଲୋକ ପ୍ରାପ୍ତ ହୋଇଥିଲେ । ହରେକୃଷ୍ଣଦେବ ଜଣେ ଧର୍ମପ୍ରାଣ ରାଜାଥିଲେ । ଏହାଙ୍କ ସମୟରେ ମୁସଲମାନମାନେ ଖୁରଧାକୁ ଆଦୌ ଆସିନାହାନ୍ତି । ହରେକୃଷ୍ଣ ଦେବଙ୍କ ଜ୍ୟେଷ୍ଠ ଗୋପୀନାଥଙ୍କ ମୃତ୍ୟୁପରେ , କନିଷ୍ଠ ରାମଚନ୍ଦ୍ର ଦେବନାମେ ରାଜାହେଲେ, ତାଙ୍କର ମୃତ୍ୟୁ ହେବାରେ ତାଙ୍କ ରାଣୀ ଯୁବରାଜଙ୍କୁ ଘେନି ଘୁମୁସରଠାରେ ସେହିଠାରେ ମଧ ତାଙ୍କର ଅଭିଷେକ ହେଲା । ଯୁବରାଜ ଖଲିକୋଟ ଠାରେ ଜନ୍ମଗ୍ରହଣ କରିଥିବାରୁ ବକ୍ସି ଦେଓ୍ୱାନ ମଧ ସେହିଠାରେ ରହିଥାନ୍ତି । ଏ ଉତ୍ତାରୁ ପୁଣି (ଲେଖା ଅସ୍ପଷ୍ଟ) ରେ ଯାଇ ରହିଲେ । ଦଶପଲ୍ଲା ରାଜା (ଭଞ୍ଜେ) ଅନେକ ଧନରତ୍ନ ଘେନି ସେଠାରେ

ଭେଟିକଲେ । ଖୁରଧାରେ ରହିଥିବା ମୁସଲମାନ ମାନେ ମଧ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁହେବା ବିଷୟ ଜାଣିପାରି ନଥିଲେ । ଏହି ସମୟରେ କଟକରେ ଥିଲେ । ସେ ଯେତେବେଳେ ଜାଣିପାରିଲେ ଯେ ରାମଚନ୍ଦ୍ରଦେବ ଦୈବାତ୍ ମୃତ ହୋଇଯାଇଛନ୍ତି, ତାଙ୍କର ରାଣୀ ଓ ଯୁବରାଜ ପର ରାଜ୍ୟରେ ରହିଛନ୍ତି । ଏଣୁ ସେ ପୂର୍ଣ୍ଣ ସହାନୁଭୂତି ଦେଖାଇ ଖୋରଧାକୁ ସେମାନଙ୍କୁ କିପରି ଅଣାଇବେ , ତାହାରି ଉପାୟ ଖୋଜୁ ଥାଆନ୍ତି । ଇତି ମଧରେ ଉକ୍ତ ଯୁବରାଜ ବୀରକିଶୋର ଦେବଙ୍କ ଆଜ୍ଞାଘେନି ମାଧ ଭ୍ରମରବର ଖୁରଧାରେ ବିଦ୍ରୋହ ଆରମ୍ଭ କରିବାରେ ପଟିଆ ରାଜା ପ୍ରଜହରାଜ ଦେବଙ୍କ ଦ୍ୱରା ଧୃତ ହୋଇ କଟକ ଚାଲାଣ ହେଲେ । ସେହିଠାରେ ତାଙ୍କର ନବାବଙ୍କ ସଙ୍ଗେ ସାକ୍ଷାତ ହେବାରେ ନବାବ ଭ୍ରମରବରଙ୍କୁ ରାଜାଙ୍କର ଉଚ୍ଚ କର୍ମଚାରୀ ଜାଣି ରାଜାଙ୍କୁ ଖୁରଧା ଆଣିବାକୁ କହିଲେ । ଭ୍ରମରବର ନବାବଙ୍କୁ ଶପଥ କରାଇ ଶୁଭଦିନରେ ଟୀକାଲାଗି ହେବା ସ୍ଥିରକଲେ ବୈଦ୍ୟେଶ୍ୱରଠାରେ ବୀରକିଶୋର ଦେବ ତାଙ୍କ ମା' ଦେବାନ୍ ପ୍ରଭୃତି ଏବଂ ଗଡଜାତର କେତେ ରାଜା ଉପସ୍ଥିତ ହେଲେ । ବିଧିପୂର୍ବକ ଟୀକାଲାଗି ହେଲା । ତାପରେ ରାଜା ଖୁରଧା ଗଡକୁ ଆସି ନିଜ ସହରରେ ରହିଲେ । ତଦପରେ ଦକ୍ଷିଣ ଦିଗରୁ ମରହଟ୍ଟାମାନଙ୍କର ଏକ ଆକ୍ରମଣ , ବୀବକିଶୋର ଦେବଙ୍କ ସହିତ ଘୋର ଯୁଦ୍ଧ ଏବଂ ପରିଶେଷରେ ମରହଟ୍ଟା ସୈନ୍ୟ ପରାସ୍ତ ଏବଂ ଖୁରଧା ସୈନ୍ୟସାମନ୍ତ ମାନଙ୍କର ଜୟଜୟ କାର । ବୀରକିଶୋର ଦେବଙ୍କ ସଙ୍ଗେ ପାଳରାଖେମିଟିର ରାଜା ନାରାୟଣ ଦେବଙ୍କର ବିଦ୍ରୋହ ଆରମ୍ଭ । ବିଦ୍ରୋହ ର କାରଣ ଖୁରଧା ରାଜଧାନୀ ଅଧିକାର କରିବା । ପାରାଳା ରାଜା ନାରାୟଣ ଦେବ ଜଣେ ପଣ୍ଡିତ ଥିଲେ । "ରଘୁନାଥ ବିଳାସ" ନାମକ ଏକ ପ୍ରବନ୍ଧ ଲେଖିଥିଲେ । ଯଦିଓ ସେ ବୀରକିଶୋର ଦେବଙ୍କୁ ପରାସ୍ତ କରିଥିଲେ, ତେବେ ବୀବକିଶୋର ଦେବ ମରହଟ୍ଟା ସୈନ୍ୟଙ୍କ ସାହାଯ୍ୟରେ ତାଙ୍କୁ ପରାସ୍ତ କଲେ । ଯେହେତୁ ମହାରାଜାଙ୍କ ସୈନ୍ୟସାମନ୍ତ ମାନେ ପାରଳା ରାଜାଙ୍କ ବ୍ୟବହାରେ ବଡ ମୁଗ୍ଧ ଥିଲେ । ପାରଳା ରାଜବଂଶ ବଂଶାନୁକ୍ରମିକ, ନ୍ୟାୟପରାୟଣ ଓ ଧର୍ମପରାୟଣ ଥିଲେ । ଖୁରଧା ପ୍ରତି ସେ ବଂଶର ଅନ୍ତରଙ୍ଗତା ଏବଂ ସ୍ନେହ ସହାନୁଭୂତି ଥାଏ, ସହଯେ ତ ସେ ଏହି ଗଜପତି ବଂଶ ଥିବାରୁ ଉଭୟ ବଂଶର ରକ୍ତଗତ ସଂବନ୍ଧ ।

ବକ୍ସି ଜଗବନ୍ଧୁ-

ବିଦ୍ୟାଧର ମହାପାତ୍ରଙ୍କ ନେତୃତ୍ୱରେ ୧୮୧୭ରେ ଯେ ଖୁରଧା ତଥା ଓଡିଶା ବ୍ୟାପୀ ଏକ ବିରାଟ ପାଇକ ବିଦ୍ରୋହର ସୃଷ୍ଟି ହେଲା, ତାହାର ସୁଯୋଗ ନେଇ ପାଞ୍ଚଗଡ ବାସୀ ପ୍ରୋକ୍ତ ଭୂମିମୂଳଙ୍କ ନେତୃତ୍ୱରେ ମେଳି ଆରମ୍ଭ କରିବାକୁ ବୋଲଗଡ

ତୋଟାରେ ମେଳ ହେବାରେ, ଉକ୍ତ ସଦାଶିବ (ଦେୱାନ ପଟ୍ଟନାୟକ) ସେ ମେଳି ଭାଙ୍ଗିବାକୁ କେତେକ ପାଣ ପାଇକ ଘେନି ସେଠାରେ ସୁସଜ୍ଜିତ ହୋଇ ପହଞ୍ଚି ବଳପୂର୍ବକ ସୋମାନଙ୍କ ଦଳ ଭାଙ୍ଗିବାକୁ ଉକ୍ତ ପାଣ ପାଇକମାନଙ୍କୁ ଇସାରା ଦେବାରେ ସେମାନେ ପୂର୍ବର ଯେଉଁ ଶାସକ ଏବଂ ସୈନ୍ୟସାମନ୍ତ ପ୍ରଭୃତି ସାମରିକ ବିଭାଗୀୟ ଲୋକ, ଯେଉଁମାନେକି ପୂର୍ବରୁ ଏମାନଙ୍କ ସଙ୍ଗୀ ଥିଲେ, ସେମାନଙ୍କ ମୋହବତ ଭାଙ୍ଗି ନପାରି ସଦାଶିବଙ୍କ ଆଦେଶ ପ୍ରତି ଭୃକ୍ଷେପ କଲେ ନାହିଁ । ସୁତରାଂ ସଦାଶିବ ଘେରରେ ପଡିଗଲେ ଏବଂ ତାଙ୍କୁ ସେଠାରେ ହତ୍ୟା କରାଗଲା । ଏହାକୁ "ସଦାଶିବ ଦେୱାନ ପଟ୍ଟନାୟକଙ୍କ ହାଣ" ବୋଲି କୁହାଯାଏ । ଏହି ଘଟଣା ସେହି ବୋଇଗଡ ତୋଟାରେ ଏହାର ବିଚାର ହୋଇ ବାଙ୍କୋଇ କାଳିଆ ଭୂମିମୂଳଙ୍କୁ, ଏହିଠାରେ ଫାସି ଦିଆଯାଇ କୋଠକରଣ ବଂଶରୁ ଏକୋଇଶ ଜଣଙ୍କୁ ଦ୍ୱୀପାନ୍ତର ପଠାଗଲା । ସେହିଠାରୁ ଏହି ପାଞ୍ଚଗଡ ଓ ମାଣିକାଗୋଡା ଦୁଇ ଗଡ ଏପରି ସାତଗୋଟି ଗଡ ଦୁଇଟି ଜିଲ୍ଲା ନାମକରଣରେ ଖୁରଧା ଖାସମାହାଲ ସାମିଲି ହୋଇଛି । ଏହି ବୋଇଗଡରେ ଦଳବେହେରାଙ୍କ ଓ୍ୟାସ ବିଦ୍ୟମାନ ରହିଛି । ତାଙ୍କର ବଂଶଧରମାନେ ସମ୍ବଳହୀନ ଥିଲେ ମଧ ପୂର୍ବ ଗୌରବ ଲୋପ ପାଇନାହିଁ । ବୋଲଗଡ ଭିତର ଦେଇ ଖୁରଧା ଟାଉନ ମଧ୍ୟରୁ ଗୋଟିଏ ରାସ୍ତା ଗଡଜାତ ଭିତରକୁ ଯାଇଅଛି । ବୋଲଗଡରେ ପୋଲିସ ଥାନା , ପୋଷ୍ଟ ଅଫିସ, ଡାକବଙ୍ଗଳା , ମାଇନର ସ୍କୁଲ, ଡାକ୍ତରଖାନା ପ୍ରଭୃତି, ଜାତୀୟ କଂଗ୍ରେସର କେତେଟି ଅନୁଷ୍ଠାନ (ଖଦୀ ପ୍ରତିଷ୍ଠାନ ସୂତାକଟା ) ଇତ୍ୟାଦି ରହି ଗୋଟିଏ କ୍ଷୁଦ୍ର ଟାଉନରେ ପରିଣତ ହୋଇଛି ।

ଏହାଛଡା ୰ ଶ୍ରୀ ଚନ୍ଦନ ତାଙ୍କ ପୁସ୍ତକରେ ଖୋରଧା ଜିଲ୍ଲାର ୬ ନମ୍ବର ଜିଲ୍ଲା ମାଣିକାଗୋଡା ଏବଂ ୭ ନମ୍ବର ଜିଲ୍ଲା ପାଞ୍ଚଗଡ ନାମରେ ଅଭିହିତ କରିଛନ୍ତି । ପଦ୍ୟ ଆକାରରେ ଉକ୍ତ ଦୁଇ ଜିଲ୍ଲାରେ ସାମିଲ ହୋଇଥିବା ସମସ୍ତ ଗ୍ରାମ ଏବଂ ମୁଖ୍ୟ ଗ୍ରାମ ମାନଙ୍କ ସମ୍ପର୍କରେ ସଂକ୍ଷିପ୍ତ ଟୀକା ପ୍ରଦାନ କରିଛନ୍ତି । ଏହା ନିମ୍ନରେ ଦିଆଗଲା ।

ଖୁରୁଧା ଦର୍ପଣ

ଲେଖକ - ୰ଦିଗମ୍ବର ଶ୍ରୀଚନ୍ଦନ

ନମ୍ବର ଛଅ : ଜି-ମାଣିକାଗୋଡା

ଖୁରଧା କିଲାର ଯେ ଶେଷେ, ମାଣିକା ଗୋଡାଟି ପ୍ରକଟ । ୧ ।
ଆଦ୍ୟରୁ ସତାଇଶଯାଏ, ଛବିଶ୍ୱା ନାମଟି ବୋଲାଏ । ୨ ।
ଏହାର ଉତ୍ତର ପଶ୍ଚିମ, ପୂର୍ବରେ ପାଞ୍ଚଗଡ ଜାଣ । ୩ ।

| | |
|---|---|
| କେବଳ ରଣପୁର କୀଲା, | ଦକ୍ଷୀଣ ଦିଗରେ ରହିଲା । ୪ । |
| ଅଠାଇଶରୁ ଶେଷତକ, | ଦଶବିଶ୍ୱା ନାମ ଏତେକ । ୫ । |
| ବାକି କୀଲା ଯେ ଉତ୍ତରରେ , | ପାଞ୍ଚଗଡଟି ପଶ୍ଚିମରେ । ୬ । |
| ପୂର୍ବ ଦକ୍ଷୀଣେ କୁଶପଲ୍ଲା , | ଏପରି ସୀମାବଦ୍ଧ ହେଲା । ୭ । |
| ଦୁଇଭାଗରେ ଷତଷଷ୍ଠୀ, | ମଉଜା ଅଟେ ଏ ଜିଲାଟି ।୮। |
| ଦ୍ୱାତ୍ରିଂଶ ହଜାର ପାଞ୍ଚଶ, | ପୁଣି ଏକର ଚଉତ୍ରିଂଶ ।୯। |
| ଭୂମୀର ପରିମାଣ ଏହି , | ଜିଲ୍ଲାର ମୋଟ ଏ ଅଟଇ ।୧୦। |
| ମଉଜା ନାମ ଏବେ ଶୁଣ, | ଯାହା ନଂବର ଯେତେପୁଣ ।୧୧। |
| ଗବଡିହ ପାଟଣା ଏକ, | ଦୁଇରେ ହରିପୁର ଲେଖ ।୧୨। |
| ତିନିରେ * ହରିରାଜପୁର, | ଖଇରିଆ + ଚାରି ନମ୍ବର ।୧୩। |
| ଘୋରଡିଆ ନାମ ପାଞ୍ଚରେ, | ଗ୍ରାମେଶ୍ୱର ଯେ ଷଷ୍ଠମରେ । ୧୪ । |
| ସପତମେ ଖଲିପାଟଣା, | ଅଷ୍ଟମେ ପଦ୍ମପୁର ଗଣା । ୧୫ । |
| ତୃତୀୟାପଡା ନବମରେ, | ଯାନିଶ ପାଟଣା ଦଶର । ୧୬ । |

* ହରିରାଜପୁର- ଏଠାରେ ସାହେବମରା ନାମକ ଏକ ଆମ୍ବବୃକ୍ଷ ଅଛି ।

+ ଖଇରିଆ -ବହୁଜନ ପରିଚିତ ଶ୍ରୀ ଦିଗମ୍ବର ରାଉତରାଙ୍କ ନିବାସ । ସେ ଜଣେ ବଡ ସରବରାକାରଙ୍କ ମଧ୍ୟରେ ଗଣ୍ୟଥିଲେ । ପରିଶେଷରେ ଅତ୍ୟାଚାରୀ ଦୋଷାରୋପରେ ସେତକ ହରାଇଲେ । ତାଙ୍କପୁତ୍ର ଶ୍ରୀ ମଦନ ମୋହନ ଛୋଟରାୟ ଜଣେ ଉତ୍ସାହୀ ଯୁବକ । ବୋଲଗଡ ଏମ୍ .ଇ . ସ୍କୁଲର ଜଣେ ସଭ୍ୟ , ଏବଂ ସାଧାରଣ କାର୍ଯ୍ୟରେ ଉତ୍ସାହୀ ।

| | |
|---|---|
| ବୋଲଗଡ * ଜାଣ ଏଗାର, | ବ୍ରଜମୋହନପୁର ବାର ।୧୭। |
| ବ୍ରହ୍ମପୁର ଯେ ନନ୍ଦପଲ୍ଲୀ, | ତେର ଚଉଦ ଏହା ବୋଲି ।୧୮। |
| ଶ୍ୟାମସୁନ୍ଦରପୁର ଗ୍ରାମ, | ପନ୍ଦର ନମ୍ବରେ ଗଣିବ ।୧୯। |
| ମରଦାବାଡି ଷୋହଳରେ, | ପଙ୍କାଳ ସାହି ସତରରେ ।୨୦। |
| ଗୋପାଳି ପଡାଟି ଅଠର, | ସିଆଳିଆ ପଲ୍ଲୀ ତାପର ।୨୧। |
| ଡାବରଧୂଆ ନିଜେଵିଂଶ, | ପାଟଣାତାର ଏକୋଇଶ ।୨୨। |
| ବାଇଶେ + ବୁଡା ହେତୁକର, | ତେଇଶେ ଆସେ ରାମେଶ୍ୱର ।୨୩। |
| କପାସିଆ ରୋଳ ସିଂହର, | ଚବିଶ ପଚିଶ ନମ୍ବର ।୨୪। |
| ନୂଆପାଟଣମା ଯେ ଛବିଶ, | ବେଲ ପଦର ସତାଇଶ ।୨୫। |

ଖରଡ ପଲ୍ଲୀ ଅଠାଇଶେ, ସ୍ୱପନେଶ୍ୱରପୁର ପାଶେ ।୨୬।
ତ୍ରିଂଶେ ପାଟପୁର ଶାସନ, ତାପରେ ପାଟପୁର ଜାଣ ।୨୭।
ଶ୍ରୀରାମପୁର ବତିଶରେ, ସାନ ନୟାପଲ୍ଲୀ ତାପରେ ।୨୮।

*ବୋଲଗଡ-ଏହି ବୋଇଗଡ ବାରପଲ୍ଲୀ । ଏହା ଜିଲ୍ଲାର ପଶ୍ଚିମ ସୀମାନ୍ତ ଓ ପ୍ରକାଶ୍ୟ ସ୍ଥାନଅଟେ । ଧନବନ୍ତ ମଧ୍ୟରେ, ଦୟାନିଧି ମହାପାତ୍ର ଏବଂ ପୁତ୍ର ଶ୍ରୀ ବାବନ ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ଶ୍ରୀ ଘନଶ୍ୟାମ ପଟ୍ଟନାୟକ ଏ ଅଞ୍ଚଳରେ ସୁପରିଚିତ । ଏହି ବୋଲଗଡରେ ୧୯୨୫ରେ ଶ୍ରୀ ଭାଗିରଥି ମହାପାତ୍ରଙ୍କ ସଭାପତିତ୍ୱରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ସର୍ବଶ୍ରୀ ମଦନମୋହନ ଛୋଟରାୟ, ହଟମହାପାତ୍ରଙ୍କ ଉଦ୍ୟମ, ବାବନ ମହାପାତ୍ରଙ୍କ ତ୍ୟାଗ, ଦାମୋଦର ମିଶ୍ର ଜିଲ୍ଲାବୋର୍ଡ ସଭ୍ୟଙ୍କ ଉତ୍ସାହ ଓ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ନେତୃତ୍ୱ ପ୍ରଶଂସାର ଯୋଗ୍ୟ । ମହାତ୍ମାଗାନ୍ଧି ଏଠାରେ ୧୯୨୭ ଡିସେମ୍ବର ୯,୧୦,୧୧ ତାରିଖ ତିନୋଟି ରାତ୍ରି ବିଶ୍ରାମ କରିଥିଲେ ।

+ ଏହି ବୁଡାଗ୍ରାମକୁ ମହାତ୍ମାଜୀ ତାରିଖ ୧୦।୧୨।୧୯୨୭ରେ ପରିଦର୍ଶନ କରିଥିଲେ । ଶ୍ରୀ କ୍ଷେତ୍ରମୋହନ ପଟ୍ଟନାୟକ ଗ୍ରାମର ପ୍ରକାଶ୍ୟ ବ୍ୟକ୍ତି ।

ଠଣାପଲ୍ଲୀ ଚଉତିରିଶ, ଧଉଜାପଥର* ପଞ୍ଚତ୍ରୀଶ ।୨୯।
ଗୋପୀନାଥପୁର ଛତିଶ କୋଦୁଅବେରେଣି ତା ପାଶ ।୩୦।
ତଦନ୍ତେ ସାମନ୍ତରାପୁର ଗିରିଧାରୀପୁର ଆବର ।୩୧।
କାଦୁଆପଡା ଚାଳିଶରେ ପାଟଣା ତାର ତଦୁପରେ ।୩୨।
ଆରିକମା ଢ ଶଙ୍କରପୁର ବୟାଳିଶ, ତେୟାଳିଶର ।୩୩।
ଭବାନୀପୁର ମଉଡାକୁ ଚଉରାଳିଶ ଜାଣ ତାକୁ ।୩୪।
କୋଟସିଂହ ପଞ୍ଚଚାଳିଶେ କପିଳେଶ୍ୱର ଛୟାଳଇଶେ ।୩୫।
ସତଚାଳିଶେ ବାଲେଶ୍ୱର ମାଣିବନ୍ଧ ତାପରେ ଧର ।୩୬।
ଏକଡାଳିଆ ଅଣଚାଶ ସିଉଡାକୁ ଗଣ ପଚାଶ ।୩୭।
ଗିରିଗିରିଆ ଏକାବନ ଟୀକାତାଳ ଟି ଯେ ବାଉନ ।୩୮।
ତେପନେ ରଖ ପଞ୍ଚପଲ୍ଲୀ ତା ପାଶେ ବଡ ନୟାପଲ୍ଲୀ ।୩୯।
ବାଙ୍କପଲ୍ଲୀ ଯେ ପଞ୍ଚାବନ ଛାମୁଣ୍ଡିଆପଲ୍ଲୀ ଛପନ ।୪୦।
ସତାବନ+ ବଡପଦର ତେଲି, ରଙ୍ଗଣି ପାଟଣାର ।୪୧।

ନମ୍ବର ଅଠାବନ ହେଜ ରଙ୍ଗଣି ପାଟଣାକୁ ଖୋଜ ।୪୨।
ବ୍ରଜସୁନ୍ଦରପୁର ଲେଖ ଅଣଷଠିରେ ତାକୁ ଦେଖ ।୪୩।
ଦଶରଥିପୁର ଷାଠିଏ ନୂଆଗାଁ ଏକଷଠି ହୁଏ ।୪୪।
ଶ୍ୟାମ ମହାପାତ୍ର ପାଟଣା ବାଆଷଠିରେ ହେବ ଗଣା ।୪୫।
ତେଷଠି ନମ୍ବରେ ଗଣନା ଦାମୋଦରପୁର ପାଟଣା ।୪୬।
ଦଳବେହେରାଙ୍କ ପାଟଣା ଚଉଷଠି ନମ୍ବରେ ଜଣା ।୪୭।

* ଧଳାପଥର-ଏହା ଗୋଟିଏ ବ୍ୟବସାୟ ଭିତ୍ତିକ ସ୍ଥାନ ଅଟେ । ଏଠାରେ ଭଲଗୁଆକାତି ପ୍ରସ୍ତୁତ ହୁଏ । ଏଠାର ସୂତାଲୁଗା ତ୍ରୀପୁରି କଂଗ୍ରେସ ପ୍ରଦର୍ଶନୀ (୧୯୩୯)ରେ ପ୍ରଥମ ସ୍ଥାନ ପାଇଅଛି । ଶ୍ରୀ ଗଙ୍ଗାଧର ସୁବୁଦ୍ଧି ଏଗ୍ରାମର ଜଣେ ସୁପରିଚିତ ବ୍ୟକ୍ତି ଅଟନ୍ତି ।
ଢ ଆରିଢମା- ଏଠାର ରାସଲୀଳା ଖୁରଧାରେ ପ୍ରଶଂସନୀୟ । କଉଡିଭାଗିଆ ପରିବାର ଏହାର ପୃଷ୍ଠପୋଷକ ।
+ ବଡପଦର- ବଡପଦର କୋଠକରଣ ଶ୍ରୀ ରାସବିହାରୀ ପଟ୍ଟନାୟକ ତେରଜଣିଆ ମେଳିଆ ମଧ୍ୟରେ ଉଲ୍ଲେଖଯୋଗ୍ୟ ।

ଗଉଡପାଟଣା ହୋଇବ ପଞ୍ଚଷଠି ସେ ବୋଲାଇବ ।୪୮।
ଛଅଷଠି, ସତଷଠିର ଗୋପାଳପୁର ପ୍ରଥମର ।୪୯।
ଶେଷ ସାହାସପୁର ଜାଣ ଏ ଜିଲା ହୋଇଲା ସଂପୂର୍ଣ୍ଣ ।୫୦।
ଦୋଷ ନ ଧର ବିଜ୍ଞବର କହଇ ଦୀନ ଦିଗମ୍ବର ।୫୧।

******

ନମ୍ବର ସାତ : ଜି-ପାଞ୍ଚଗଡ

ଖୁରଧାକିଲା ମଧ୍ୟର ଜିଲା ଏ ସାତ ନମ୍ବର
ପାଞ୍ଚଗଡ ନାମେ ଖ୍ୟତ, ପଶ୍ଚିମବାହି
ଉତ୍ତରରେ ଖଣ୍ଡପଡା କିଲା ସରହଦେ ଯୋଡି
ଦକ୍ଷିଣ ଦିଗରେ ରଣପୁର ଯେ ରହି
ପଶ୍ଚିମରେଟି ନୟାଗଡ
ପୂର୍ବରେ ମାଣିକାଗୋଡା ଛବିଶ୍ୱବାଡି ।୧।
ଏ ଷଷ୍ଠ ବିଂଶ ହଜାର ଷଷ୍ଠଶତ ଯେ ଏକର
ଏଥିପୂର୍ବେ ପାଞ୍ଚଗୋଟି ଗଡ ଏ ଥିଲା
ତଦପର ମଉଜା ହୋଇ
ନମ୍ବର ଗୋଟିକେ ନାମ ପୃଥକ ବହି ।୨।

ଏହି ଜିଲା ଦରୋବସ୍ତ ଆଲାହେଦା ବନ୍ଦୋବସ୍ତ
ହୋଇ ଏ କିଲାରେ ତେଣୁ ସାମିଲ ନୋହି
ସମ୍ବଲପୁରର ରାଣୀ ମୁ କୁତାଦେଇଙ୍କୁ ପୁଣି
ତେଲ ହଳଦି ଖଞ୍ଜାରେ ଦାତବ୍ୟ ହୋଇ
ଅଠରଶ ଅଠର ସାଲେ
ଅସୁଲ କରି ନପାରି ଇସ୍ତଫା ଦେଲେ ।୩।
ଏ ଜିଲା ପୂର୍ବ ଚରିତ ବିଶେଷ ଭାବେ ଲିଖିତ
ହୋଇଅଛି ଜାଣ ସର୍ବେ କିଲା ମୋଟରେ
ତେଣୁ ଏଥି ଲେଖିବାରେ ଦ୍ୱିରୁକ୍ତି ହେବା ବିଚାରେ
କ୍ଷାନ୍ତ ହେଲି ବର୍ଣ୍ଣନାରୁ ବୁଝ ସୁଧୀରେ
ଏବେ ଶୁଣ ମଉଜା ନାମ
ଯେ ଯେତେ ନମ୍ବର ଯଥାକ୍ରମରେ ପୁଣ ।୪।
ତଉଜି ଏକ ନମ୍ବର ନାମ ଗୋବର୍ଦ୍ଧନପୁର
ଗୋଡଭଙ୍ଗା ଦୁଇ, ତିନି ମୁକୁନ୍ଦପୁର
ଚାରିରେ ଚଇଣାପଡା ନାଉପଦା ଫିରିଫିରା
ଛଅରେ କୁମ୍ଭାରଲୁଣ୍ଡା ମନରେ କର
ମଧୁପୁର ସାତ ନମ୍ବର
ଆଠ ନମ୍ବର ଅଟଇ ହାଟ ସାହିର ।୫।
ଚଣ୍ଡୀପାଟଣା ବିଚାର ଯେହୁଟି ନଅ ନମ୍ବର
ଦଶରେ ଯେ ରାମଚନ୍ଦ୍ରପୁର ପାଟଣା
କୁମୁଟି ସାହି ଏଗାର ରସୁଲପୁର ତାପର
ତେରରେ ଜାହାନାବାଦ ହୋଇବ ଗଣା
ବୃନ୍ଦାବନପୁର ଚଉଦ
କାଉତରାକୁ ପନ୍ଦର ନମ୍ବରେ ଭେଦ ।୬।
ମଣ୍ଡଳସିଂହ ଷୋହଳ ପଲ୍ଲୀଦିଘିରି ସତର
ଅଠର ନମ୍ବର ହେଲା ଯେ * କୋଟପଳା

* କୋଟପଳା- ଏ ମଉଜାରେ ଝିକିମିକି ନାମକ ମୁଣ୍ଡିଆ ଉପରୁ ମହାନଦୀର ଦୃଶ୍ୟ ଅତି ମନୋହର । ପାଞ୍ଚଗଡ ବ୍ଲକ ରକ୍ଷିତ ଜଙ୍ଗଲ ମଧରେ -ଏକ ମୁଣ୍ଡିଆରେ, ଏକ ଝରଣା ଓ ଏକ କୂପ ଅଛି । ଆମ୍ବ, ପଣସ, ଟଭା, କମଳା ବୃକ୍ଷମାନ ଅଛି । ଏଠାରେ

ବଳରାମ ଦାସ ନାମେ ଜଣେ ଅନ୍ନପୂର୍ଣ୍ଣା ସାଧକଙ୍କର ସିଦ୍ଧାଶ୍ରମ ଥିବାର କିମ୍ବଦନ୍ତୀ ଅଛି ।

ଉଣିଶେ ଅରଖପଲ୍ଲୀ ବିଂଶେ କୁଶପଲା ବୋଲି
ବନ୍ଧସାହି ଏକୋଇଶ ନମ୍ବର ହେଲା
ଦିଘିରି ମଉଜା ବାଇଶ
ଦିବ୍ୟସିଂହପୁର + କୁ ଯେ ଲେଖ ତେରଶ ।୭।
ମାଳିସାହି ଯେ ଚବିଶ, ଦଳାଇ ସାହି * ପଚିଶ
କଳିଙ୍ଗ ମଉଜା ନିଜେଟି ଛବିଶରେ,
ତାହାର ପାଟଣା ପୁଣ, ତିନିଗୋଟି ଅଟେ ଜାଣ
ନିଜ୍ କଳାଙ୍ଗ ପାଟଣା ସତାଇଶରେ,
ତାନାମେ ଦେଓ୍ୟାନି ପାଟଣ
ଅଠଇଶ ନମ୍ବରରରେ ହେବ ସେ ଗଣ ।୮।
ଯେ ଉନତ୍ରୀଂଶ ନମ୍ବର, ସେ ଜାନିଶି ପାଟଣାର
କମଳ ଲୋଚନପୁର ହେଉ ତିରିଶେ
ସେ ପୁଣି ହୋଇଣ ଦ୍ୱିଭାଗ
କିସିମତ ନାମବହି କରଇ ଭୋଗ ।୯।
ତଦନ୍ତେ ତ ଶିଖରପଡା, ନାଗାପଲ୍ଲୀ ଯୋଡାପଡା
ନୀଳକଣ୍ଠପୁର ଆଦି ମଉଜାଚାରି,

********

+ ଦିବ୍ୟସିଂହପୁର- ଏହା ଏକ ବ୍ରାହ୍ମଣ ଶାସନ । ଏଠାରେ ପଣ୍ଡିତ ଦୀନବନ୍ଧୁ ଷଡଙ୍ଗୀ ନାମେ ଜଣେ ନାମଯାଦା କବିରାଜ ଥିଲେ ।

* ଦଳାଇସାହି-ଖୁରଧା କିଲା ମଧରେ ବଡ ମୁସଲମାନ ବସ୍ତି ।

ତ ଶିଖରପଡା- ଏହି ମଉଜାଟି ଖଣ୍ଡପଡା କୀଲାର ସରହଦଥାଇ ଏଥି ମଧରେ ମୁଣ୍ଡିଆପଡା ନାମକ ଏକ ଛୋଟ ପର୍ବତ ଶିଖର ଦେଶରେ ଏକ ଦେବୀପୀଠ ଓ ନିର୍ମଳଝରଯୁକ୍ତ ପୁଷ୍କରିଣୀଟିଏ ମଧ ଅଛି । ସ୍ଥାନଟି କାଠଚମ୍ପା ବୃକ୍ଷରେ ସୁଶୋଭିତ ।

ପ୍ରଥମରେ ବୃତ୍ରୀଂଶ, ଯଥାକ୍ରମେ ସତତ୍ରୀଂଶ
ଅଠତ୍ରୀଂଶେ + ସଅଁପୁର, ବୁଝ ବିଚାରି
ଉନଚାଳିଶ ନମ୍ବନରରେ,
ଛୋଟରାପୁର ପାଟଣା ହେଲା ତହିଁରେ ।୧୦।

ଚାଳିଶେ ନୂଆପାଟଣା, ଏକଚାଳିଶେ ଗଣନା
କଲେଟି ଜାଣିବ ଚନ୍ଦ୍ରଶେଖରପୁର,
ବାଉତିପାଟଣା ପରେ ଗୋବିନ୍ଦପୁର ତାପରେ
ଗୋପାଳପୁରକୁ ବୁଝ ଚୌରାଳିଶର
ରାମପୁର ପଞ୍ଚଚାଳିଶ
ପଞ୍ଚୁକୋଟ ଦାଉଣିଆ ପଲ୍ଲୀ ତାପାଶ ।୧୧।
ଫାସିଓଦା, ବାଲସିଂହ, ଅଣଚାଶଯାଏ କୁହ,
ପଚାଶ ନମ୍ବର ସିଂହପୁର ହୋଇବ
ଯେବାଲସିଂହ ପାଟଣା, ଏକାବନେ ଆସେସିନ,
ପଲ୍ଲୀ ବାଲସିଂହ ଜାଣ ବାଉନ ହେବ
ସାଗରଗୁଆଁ ଯେ ତେପନେ
ତାପାଟଣା ଚଉବନେ ରଖିବ ମନେ ।୧୨।
ଜଗନ୍ନାଥପୁର ଗଣା ହଳଦିପଦା ପାଟଣା
ପଞ୍ଚାବନ, ଛପନ ଯେ କ୍ରମେ ନମ୍ବର ମଧର
ପରେର ହୋଇଅଛି ଖାରଜ
ଅଠାବନେ ଗୋଡିଆଳି ମଉଜା ବୁଝ ।୧୩।

+ ସିଂହପୁର- ଏହା ଗଉଡିଆ କେଳାମାନଙ୍କର ନିବାସ ଅଟେ । ଏମାନେ ପରିଷ୍କାର ପରିଚ୍ଛନ୍ନ, ଆଚାର ବ୍ୟବହାର ଉତ୍ତମ ଅଟେ । ଯୁବତୀ କନ୍ୟାମାନେ ସାହସର ସହିତ ବାଉଁଶ ଉପରେ ଖେଳ କସରତ ଦେଖାନ୍ତି, ଗୀତ ମଧ ଗାଆନ୍ତି । ପୁରୁଷମାନେ ମଧ ଖେଳ କସରତ୍ ଦେଖାନ୍ତି ଓ ଗୀତ ବାଦ୍ୟରେ ଯୋଗ ଦିଆନ୍ତି । ଏମାନେ ଏକ ସ୍ୱତନ୍ତ୍ର ସଂପ୍ରଦାୟଭୁକ୍ତ ।

ତାପରେ ପୋଡା ପାଟଣା ଅଣଷଠିରେ ଗର୍ଭଣୀପଦା
ଷାଠିଏ ନମ୍ବର ହେବଟି ଜରିପଡା
ଏକଷଠି କୃଷ୍ଣପୁର ପାଟବନ୍ଧ ତଦପର
ଅଠଷଠି ନମ୍ବର ଯେ + ଅରଖପଲ୍ଲୀ
ହରିପୁର ପାଟଣା ଯେହୁ
ଅଣସତୁରି ନମ୍ବର ଅଟଇ ସେହୁ ।୧୫।
ସତୁରି ଅସନପଲ୍ଲୀ କୋଡପଡା ଏକସ୍ତରି

ତିହଖଉରୁଣି ଜାଣ ଯେ ବାଆସ୍ତରି

ପୁଣି ବିଛଖଉରୁଣି ତେଏସ୍ତରି ବୋଲି ଜାଣି

ଚଉସ୍ତରି ନମ୍ବର ଯେ * ସାନକୁମାରୀ

ପଞ୍ଚସ୍ତରି ପାନ ନଗର

କାଉଁରି ପାଟଣା ଅଟେ ଛଅସ୍ତରିର ।୧୬।

+ ଅରଖପଲ୍ଲୀ-ଏଠାରେ ବହୁତଗୁଡିଏ ମୁସଲମାନଙ୍କ ଆବାସ ଅଛି । ଏମାନେ ଏପର୍ଯ୍ୟନ୍ତ ସୂତାକଟା ଛାଡିନାହାନ୍ତି । ଆଚାର ବ୍ୟବହାର ହିନ୍ଦୁମାନଙ୍କ ପରି, ଭାଷା ତ ପ୍ରାୟ ଓଡିଆ କହିଲେ ଚଳେ ।

* ସାନକୁମାରୀ- ଏ ମୌଜାର ଦରୋବସ୍ତ ଏରିଆ, ଓ ୬୮, ୮୨୨, ଲାଖରାଜବାହେଲି । ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କୁ ଓଡିଶା ମହାରାଜାଙ୍କ ପ୍ରଦତ୍ତଥାଇ ଓଡିଆ ମଠ ସାମିଲ କରାଯାଇଛି ।

ସତସ୍ତରି ନମ୍ବର ଯେ ରାଜନଗର ସେହି ଯେ

ଅଠସ୍ତରି ଯେ ଜାଣିବ ବଡକୁମାରୀ

ଅଣାଅସି ହାଟବସ୍ତ ଅଶି ହୋଇଅଛି ଖ୍ୟାତ

ଶ୍ରୀଚନ୍ଦନପୁରର ପାଟଣା ବାହାରି

ତାପରେ ଶ୍ରୀଚନ୍ଦନପୁର

ବୟାଅଶି ନମ୍ବରରେ ହରିକେଶର ।୧୭।

ତଦନ୍ତେ ଢୋଲପଥର ଏବେ ଚୌରାଶି ବିଚାର

ବେଣାଗାଡିଆ ପାଟଣା ନାମଟି ଯାର

ପଞ୍ଚାଅଶି ନମ୍ବର ଯେ ବେଣାଗାଡିଆ ଟି ନିଜେ

ଗର୍ଭିଣୀପଡା ଯେ ଛୟାଅଶି ନମ୍ବର

ସତାଅସି, ଅଠାଅସିର

ଜାଣ ରାମଚନ୍ଦ୍ରପୁର, ନୃସିଂହପୁର ।୧୮।

ପରେ ତା ବାଙ୍କୋଇଦଳ, ନବେ ଦାମୋଦରପୁର

ଏକାନବେରେ * ସହଜପୁର ହୋଇଲା

ବୟାନବେ ତେୟାନବେ ନମ୍ବରକୁ ବୁଝଏବେ

ବାରପାଟିଆ ବାଟିଆ ନାମ ବହିଲା,

ପରେ ଯେ ଗୋପୀନାଥପୁର

ବେଗୁନିଆ ମୂଳ ପଞ୍ଚାନବେରେ ଧର ।୧୯।

* ସହଜପୁର - ଏହି ଗ୍ରାମବାସୀମାନଙ୍କର ଏକତା ଗୁଣ ପ୍ରଶଂସନୀୟ । ଏ ଗ୍ରାମରେ ସବଳକାୟ ବଡ ବଡ ଯୋଦ୍ଧା ଓ ପଏକାର ମାନେଥିଲେ । ସେମାନଙ୍କର ବଂଶଧରମାନେ ଅଛନ୍ତି । ଗ୍ରାମ୍ୟପତି ପଦଚ୍ୟୁତ ହୋଇଛନ୍ତି । ତାଙ୍କ ବଂଶଧର ଶ୍ରୀ ପ୍ରିୟନାଥ ହରିଚନ୍ଦନ ଏ ଅଞ୍ଚଳରେ ଲୋକପ୍ରିୟ, ବୋଇଗଡ ମାଇନରସ୍କୁଲ ପରିଚାଳନା କମିଟିର ଜଣେ ସଭ୍ୟ ।

ସେହି ନାମେ ପାଟଣା, ସେ ଛୟାନବେରେ ଗଣା
ସତାନବେ ନମ୍ବର ଯେ କଅଁରପୁରେ
ଅସରଳା ଦେଶ ଯେହୁ, ଅଠାନବେ ହେବ ସେହୁ,
ରାମଚନ୍ଦ୍ର ପାଣ୍ଡେଙ୍କର ପଣ ଯହିଁରେ
ପଣ୍ଡିମାଞ୍ଚଳର ବ୍ରାହ୍ମଣ
ଧନବାନ ସତ୍ୟଭାଷି ଗୁଣରେ ଗଣ୍ୟ ।୨୦।
ଉନଶତ ନମ୍ବର ଯେ, ହନୁମନ୍ତ ପ୍ରସାଦ ସେ
ଏତଶତ ରାୟପୁର ପାଟଣା ହେଲା
ଏକ ମଙ୍ଗରାଜପୁର ଦୁଇ ଅସରଳା ଦଳ
ଦେଓ୍ୱାନି ପାଟଣା ଜାଣ ତିନିରେ ଗଲା
ପୁଆଣିଆ ଶତଚାରିରେ
ମାଗୁରା ମଉଜା ଏକଶତ ପାଞ୍ଚରେ ।୨୧।
ଷଷ୍ଟେ ଜଗବନ୍ଧୁପୁର ସପ୍ତେ ଭଗବାନପୁର
ଅଷ୍ଟମେ ନିଜେ ବାଙ୍କୋଇ ଦେଶ ଗଣନା
ସାନ ବାଙ୍କୋଇ ପାଟଣା, ସପ୍ତେ ଭଗବାନପୁର,
ଏକଶତ ନବ, ଦଶ, ନମ୍ବର ସିନା,
ଦୁର୍ଗାପୁର ନାମେ ଖ୍ୟାତବୁଝ ସୁଧୀରେ ।୨୨।
କନ୍ତାଇଲ ଦ୍ୱାଦଶରେ ହରେକୃଷ୍ଣପୁର ପରେ,
ଏକଶତ ତ୍ରୟୋଦଶ ଏହା ନମ୍ବର,
ଏକଶତ ଚତୁର୍ଦ୍ଦଶେ ଅସୁର ଢିପ ବିଶେଷେ,
ମାଣିକପୁରର ଯେ ଏକଶତ ପନ୍ଦର
ପଞ୍ଚଗଡ ହୋଇଲା ଶେଷ,
ଭାଷେ ଦିଗମ୍ବର ବିଜ୍ଞେ ନ ଧର ଦୋଷ ।୨୩।

ସେତେବେଳେ ପାଞ୍ଚଗଡ ଅର୍ନ୍ତଗତ ମାଣିକାଗୋଡା ଏବଂ ପାଞ୍ଚଗଡ ଜିଲ୍ଲାରେ ବର୍ତ୍ତମାନ ବୋଲଗଡ ବ୍ଲକର ଗେଡିଆପଲ୍ଲୀ, ପିଚୁକୁଳି, ସାନପଦର ଏବଂ କଡବ ଗୋପାଳପୁର ଅଞ୍ଚଳ ସାମିଲ ହୋଇନଥିଲା । ଏହି ସବୁ ଅଞ୍ଚଳ ପୁରାତନ ଖୋର୍ଦ୍ଧା କିଲ୍ଲାର ପାଞ୍ଚ ନମ୍ବର କୁଶୁପଲ୍ଲା ଜିଲ୍ଲା ଏବଂ ନଂ-୮ ଜିଲ୍ଲା ରାମେଶ୍ୱର (ବର୍ତ୍ତମାନ ବେଗୁନିଆ ଥାନା ପରିସର) ମଧ୍ୟରେ ରହିଥିଲା । ଏଣୁ ୪ ଶ୍ରୀଚନ୍ଦନଙ୍କର 'ଖୋରଧା ଦର୍ପଣ'ରୁ ପୃଷ୍ଠା- ୩୯ - ୪୨ ଏବ ପୃଷ୍ଠା - ୬୪ ରେ ଲିପିବଦ୍ଧ ଉପରୋକ୍ତ ଅଞ୍ଚଳର ଗ୍ରାମ ବିବରଣୀ ଏଠାରେ ପ୍ରଦାନ କରାଗଲା ।

'ଖୁରୁଧା ଦର୍ପଣ'ର ପୃଷ୍ଠା- ୩୯

ସପ୍ତବିଂଶେ ସାଲତରା ଶୁଣ ସୁଧୀରେ
ପରେ ଶାମୁକା ପାଟଣା ଅଷ୍ଟବିଂଶେ ଏହ ଗଣା
ଊନତ୍ରିଂଶରେ ଗେଡିଆପଲ୍ଲୀ ପାଟଣା
ତ୍ରିଂଶେ ରଘୁନାଥପୁର ଗେଡିଆପଲ୍ଲୀ ତାପର
ଦ୍ୱାତ୍ରିଂଶରେ ଗୁଡପଙ୍ଗି ନୁହେଁ କି ଜଣା
ସୋମନାଥପୁର ତେତ୍ରିଂଶ
ଦାରୁଢିପ ମଉଜା ଯେ ଚଉତିରିଶ ।୭।

'ଖୁରୁଧା ଦର୍ପଣ'ର ପୃଷ୍ଠା- ୪୨

ବାଗଲପୁର ଚଉରାଅଶି ନମ୍ବର
ଦେବୀ ପ୍ରସାଦ ପଞ୍ଚାଅଶି,
ଅଭିମାନପୁର ଛୟାଅଶିରେ ଆସି ।୧୫।

ସତାଅଶିରେ ଚଟୁଆ ଅଠାଅଶି ଜାଣ ଏହା
ଖଣନ୍ତି ବୋଲିଣ କହି ମଉଜା ନାମ,
ଗଣ ରାଧାକୃଷ୍ଣପୁର ଅଣାନବେ ଯା ନମ୍ବର
ନବେ ନମ୍ବରରେ ଗବଡିହଟି ଜାଣ
ଏକାନବେ ତଳ କଡବ
ବୟାନବେରେତ ଗଡ କଡବ ଦେବ ।୧୬।

ଯେ ତେୟାନବେ ଅଟଇ ସାନ କଡବଟି ସେହି
ଚଉରାନବେ ନମ୍ବର ଫାଳ କଡବ
ତାଳତୁଣ୍ଡ ପଞ୍ଚାନବେ ମାଣିକପୁରକୁ ଏବେ
ଛୟାନବେ ନଂବରରେ ସିନାବୁଝିବ
ସତାନବେ ଶିବ ପ୍ରସାଦ
ଅଠାନବେ ନଂବରଟି ରାମ ପ୍ରସାଦ ।୧୭।

ଅନେଶୋତ ନମ୍ବର ଯେ ଗୋପାଳପୁର ମଉଜେ
ଏକଶତ ନମ୍ବରଯେ ଅନନ୍ତାପଲ୍ଲୀ
ତଦପରେ ହରିପୁର ଏକଶତ ଏକ ତାର
ଦୁଇରେ ଲିଖିବ ନିଶ୍ଚେଟି ନୟାପଲ୍ଲୀ
ତୁଳସୀବେରଣା ତିନିରେ
ଦେଉଳି ମଉଜା ଏକଶତ ଚାରିରେ ।୧୮।

ପାଞ୍ଚରେ ଦୁର୍ଗାପ୍ରସାଦ ସପ୍ତେ + ଜାମୁସାହି ଭେଦ
* ଦକ୍ଷିଣପାରିଖେଡ଼ା ଯେ ଜାଣ ଷଷ୍ଠରେ
ଅଷ୍ଟମେ ବାଇୟା ପଲ୍ଲୀ ବିଶ୍ୱନାଥପୁର ବୋଲି
ତାହାର ନମ୍ବର ଏକଶତ ନୟରେ
ଏକଶତ ଦଶ ନମ୍ବର
ନାମ ଅଟଇ ତାହାର ** ସାନପଦର ।୧୯।

କୃଷ୍ଣଶରଣପୁର ସେ ଏକଶତ ଏଗାର ଯେ
ରାସୋଳକୁ ଜାଣ ଏକଶତ ବାଅାର
ତେଏରରେ ପିତୁକୋଳି ଚଉଦେ ଥିବା ବିଚାର
ଚମ୍ପାଇଲୋ ବୋଲି ନାମ ଅଟଇ ତାର
ଏକଶତ ପନ୍ଦରେ ଶେଷ
ଗ୍ରାମ ନାମ ସାନବାଡ ହେଲା ପ୍ରକାଶ ।୨୦।

****

+ ଜାମୁସାହି - ଏହି ଗ୍ରାମ ଜଣେ ଖଣ୍ଡାୟତ ସାମନ୍ତଙ୍କ ଦ୍ୱାରା ସ୍ଥାପିତ ହୋଇଥିଲା । କଡବ ଗଡର ଜଣେ ମୁସଲମାନ ଦଳବେହେରା, ତାଙ୍କଠାରେ ଈର୍ଷାପରାୟଣ ହୋଇ,

କପଟରେ ତାଙ୍କୁ ହତ୍ୟା କରି, ବସ୍ତିଟିକୁ ମୁସଲମାନ ବସ୍ତିରେ ପରିଣତ କରିଥିଲେ । ହିନ୍ଦୁମାନଙ୍କ ଶିବଲିଙ୍ଗ ଅନ୍ୟତ୍ର ସ୍ଥାନାନ୍ତରିତ ହୋଇଛନ୍ତି । ଖୁର୍ଦ୍ଧାରେ ଏପରି ଦୁର୍ଘଟଣା ଆଉ କେଉଁଠାରେ ଶୁଣାଯାଇନଥିଲା ।

* ଦକ୍ଷିଣପାରିଖେତା - ଏହି ଗ୍ରାମର ଦଳବେହେରା ମୁସଲମାନ ଓ ବେହେରାପ୍ରଧାନ ହିନ୍ଦୁ । ବସ୍ତିଟି ତଦ୍ରୂପ ଦୁଇ ସାହିରେ ବିଭକ୍ତ ଏବଂ ରଣପୁର ସରହିଦ ପର୍ବତ ଶ୍ରେଣୀର ପାଦଦେଶରେ ଅବସ୍ଥିତ । ଉପସ୍ଥିତ ବେହେରାପ୍ରଧାନ ଶ୍ରୀ କୁଞ୍ଜବିହାରୀ ସାମନ୍ତରା ଜଣେ ଉତ୍ସାହୀ ବ୍ୟକ୍ତି ।

** ସାନପଦର - ଏଠାରେ ଗୋଟିଏ ପୋଲିସ ଆଉଟପୋଷ୍ଟ ଥିଲା , ତାହା ଉଠିଯାଇଅଛି । ଏହା ଗୋଟିଏ ପ୍ରଧାନ ଗଡ ଥିଲା । କେତୋଟି ଧନବନ୍ତ ପରିବାର ମଧ ଅଛନ୍ତି । ସେମାନଙ୍କ ମଧରେ ଶ୍ରୀ ହଟ ମହାପାତ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ଶ୍ରୀ ଗଙ୍ଗାଧର ପାଇକରାୟ ଜଣେ ଉଦୀୟମାନ ଯୁବକ କର୍ମୀ ।

'ଖୁର୍ଦ୍ଧା ଦର୍ପଣ'ର ପୃଷ୍ଠା- ୬୪

ଉଉରେଶ୍ୱର, କୋଡଳାଙ୍ଗ ନିଜି	ଗୋଡ଼ିପାଟଣାକୁ ଥିବଟି ହେଜି
ତେୟାଳିଶ, ଚୌରାଳିଶ ନମ୍ବର	ଶେଷଟି ଜାଣ ପଞ୍ଚଚାଳିଶର ସେ
ଏ ଗଡ ତିନି ଏପରି ଯେ
ଏହାପରେ ଶୁଣ ଚଉଦ ମଉଜା	ଅଟେ ଗଡମାଣନ୍ତିରି ଯେ ।୪୨।

ବରିକୋ ମଉଜା ଅଠଚାଳିଶି,	ମୁଗମଣ୍ଡା ଅଟେ ଅଣଚାଳିଶି
ବଣୁଆ ଏକବନରେ ଗଣିବ,	ବାଉନରେ ସୀମାପଲ୍ଲୀ ଜାଣିବ ସେ
ଭାବିତ ନୋହିବ ମନେ ଯେ
ତେପନେ ନମ୍ବରେ ନାରାୟଣୀପଡା	କିଏହେବ ଚଉବନେ ଯେ ।୪୩।

ତହିଁରେ ଜାଣ ବିଶ୍ୱନାଥପୁର	ବାରବାଟି ପଞ୍ଚାବନ ନମ୍ବର
କୃଷ୍ଣଦାସପୁର ଅଟେ ଛପନେ	ରାମଚନ୍ଦ୍ରପୁରଟି ଶତାବନ ସେ
ଅଠାବନ ଅଣଷଠି ଯେ
କପିଳେଶ୍ୱରପୁର, ବାଲିବେରଣି,	ଏପରି ଏଦୁଇଗୋଟି ଯେ ।୪୪।

ଉପରୋକ୍ତ ପଙ୍କ୍ତିରେ ଦିଆଯାଇଥିବା ମୌଜା ଭିତରେ ଗୋଡ଼ିପାଟଣା, ବୋରିକ, ମୁଗମଣ୍ଡା, ସିମାପଲ୍ଲୀ, ନାରାୟଣୀପଡା, ବିଶ୍ୱନାଥପୁର, ବାରବାଟୀ ଏବଂ ଏହି ଜିଲ୍ଲାର ନଂ- ୭୦ ଗ୍ରାମ ଗୋପାଳପୁର ବର୍ତ୍ତମାନ ବୋଲଗଡ ବ୍ଲକ ପରିସୀମା ଭିତରେ ରହିଅଛି ।

**********

ବିଶେଷ ଦ୍ରଷ୍ଟବ୍ୟ- ଏହି ପାଈଗଡ ଜିଲାରେ, ପୁଷ୍କରଣୀ ଓ ଜଳାଶ୍ରୟ ସଂଖ୍ୟା ଅଧିକ, ତଥାପି ଖୁରଧା କୀଲାରେ ମରୁଡି ପ୍ରଥମେ ଏହି ଜିଲାରୁ ଆରମ୍ଭ ହୁଏ । ଜିଲାଟି ପାହାଡମାନଙ୍କ ପାଦଦେଶରେ, ସମତଳ ନ ହୋଇ ବାଇଶି ପାହାଚିଆ ମାଟି ମଟାଳ ଓ ଉର୍ବର । ଫଳ ମୂଳ ସ୍ୱାଦୁ, ଧାନ, ମୁଗ, ଉଲ୍ଲେଖଯୋଗ୍ୟ । ଗତ ଶହେବର୍ଷ ହେଲା ଜଳାଶ୍ରୟଗୁଡିକର ସଂସ୍କାର ହୋଇନାହିଁ । ସୁତରାଂ ଜଳର ଅଭାବ ଏବଂ ଜଳବାୟୁ ସ୍ୱାସ୍ଥ୍ୟପ୍ରତି ଅନୁକୂଳ ହେଉନାହିଁ । ଖଣ୍ଡପଡା- ଖୁରଧା ସରହଦ ଶିଖରପଡା ମଉଜାରେ ତୁଳସୀ ବଣିବନ୍ଧ ନାମକ ଏକବନ୍ଧ ଥିବାର କଥିତ ହୁଏ । ଉକ୍ତ ବନ୍ଧ ଦ୍ୱାରା, ଏ ଅଞ୍ଚଳର ବହୁତ ଜମି ଆବାଦ ହେଉଥିଲା । ବର୍ତ୍ତମାନ ସେବନ୍ଧର ମରାମତି ଅଭାବରୁ ସମସ୍ତ ଜଳ ଖଣ୍ଡପଡା ତରଫକୁ ବହି ଯାଉଥିବା ହେତୁ ଏ ଜିଲାର ଜଳାଭାବ ଘଟୁଥିବା ମନେହୁଏ । ବର୍ତ୍ତମାନ ଏହି ଜିଲାରେ ଗ୍ରାମେ ବହୁ ଦେବାଦେବୀ ମନ୍ଦିର ପ୍ରତିଷ୍ଠିତ ହେଉଥିବା ଦେଖାଯାଉଅଛି ।

ବର୍ତ୍ତମାନ ବୋଲଗଡ ବ୍ଲକର ପୂର୍ବତନ ୩ଟି ଗଡ ଯଥା ଟିକାଚାଳ, କଡବ, ସାନପଦର ଇଂରେଜ ଶାସନ ବେଳେ କୁଶପଲ୍ଲୀ ଜିଲ୍ଲା ଅଧିନରେ ରହିଥିଲା । ଏଣୁ 'ଖୋରଧା ଦର୍ପଣ'ରେ ହୋଇଥିବା ଏହି ସବୁ ଗଡର ବର୍ଣ୍ଣନା ଏଠାରେ ଦିଆଗଲା ।

ଗଡ ସାନପଦର- ଏହି ସାନପଦର ଗଡ ରଣପୁର-ଖଣ୍ଡପଡା ସୀମା ମଧ୍ୟରେ ମୁଣ୍ଡିଆପଡା ଘାଟି ସମ୍ମୁଖରେ ଅବସ୍ଥିତ । ରଣପୁର ପର୍ବତମାଳା ଏହାର ମୁକୁଟ ପ୍ରାୟ ଶୋଭିତ । ଏହାର ପଶ୍ଚିମ ପଟକୁ ଲାଗି, ଯେଉଁ ପାଈଗଡ ରହିଛି, ତାହା ରଣପୁର ଅନ୍ତର୍ଗତ ନୋଧା ବା ଯୋଦ୍ଧା ବୋଲି ଏକ ଅନାର୍ଯ୍ୟ ଜାତିଙ୍କ ବାସ ଭୂମି ଥିବାରୁ, ସେମାନେ ଯୋଦ୍ଧା ବୃତ୍ତିରେ ଯେପରି ପାରଙ୍ଗମ, ଲୁଟ୍‌ପାଟ୍ ବୃତ୍ତିରେ ମଧ୍ୟ ତତୋଧିକ । ଏମାନଙ୍କ ଜୀବିକା କେବଳ ଏହାହିଁ ଥିଲା । ଏହି କୁଶପଲା ପାଈଗଡ ସେମାନଙ୍କର ଚରାଭୂମି ଥିଲା । ରଣପୁର ରାଜା ଏହି କନ୍ଧଡା ପାଇକମାନଙ୍କ ବଳରେ ବଳୀୟାନ । ଯେଉଁମାନଙ୍କର ପ୍ରଧାନ ଅସ୍ତ୍ର କି ଟାଙ୍ଗିଆ, କୁନ୍ତ ଭାଲି ପ୍ରଭୃତି । କୁଶପଲା ପାଈଗଡ ମହାରାଜାଙ୍କ ପକ୍ଷରୁ ; ରଣପୁର-ଖଣ୍ଡପଡା ପକ୍ଷରୁ ବୋଲଗଡ ପାଈଗଡ ଏପରି ଦଶଗୋଟି ଗଡ ମୁଣ୍ଡିଆପଡା ଘାଟିର ରକ୍ଷକ ଥିଲେ । ଏହି ସାନପଦର ଗଡ

କୁଶପଲ୍ଲୀର ପଞ୍ଚମଗଡ । ଏ ଗଡର ଦଳବେହେରାଏ ମହାରାଜାଙ୍କର ଅତିବିଶ୍ୱାସର ପାତ୍ର ଏବଂ ସୈନ୍ୟଚାଳନା କମାଣ ସାଜିବାରେ ଧୁରନ୍ଧର ଥିବାରୁ ଏଠାରେ ଗଜ ସାହାଣ ପ୍ରଧାନ ଥିଲେ । ଗଡର ଦଳବେହେରାଏ ଜଣେ ସାମନ୍ତ ରାଜାତୁଲ୍ୟ ମାନ୍ୟତା ପାଉଥିଲେ ।

ଗଡ କଡବ- ଏହି ଗଡ କଡବ ରଣପୁର ପର୍ବତମାଳାକୁ ଲାଗି ଅବସ୍ଥିତ । ଗଡର ଦଳବେହେରା ଜଣେ ମୁସଲମାନ । ସୈନ୍ୟ ସାମନ୍ତ ଓ ବାସିନ୍ଦାଙ୍କ ମଧ୍ୟରେ ହିନ୍ଦୁ ସଂଖ୍ୟାଧିକ ।

ଗଡ ଟୀକାଟାଳ- ରଣପୁର ଖୁରଧା ସୀମାକୁ ଲାଗି ସିକୋ, କୋଡଲାଙ୍ଗ ଗଡ ମଧ୍ୟରେ ଅବସ୍ଥିତ । ଗଡାଧିଶ ଦଳବେହେରା ସାମନ୍ତଙ୍କ ବଂଶଧର ଏବଂ ସେ ଗଡର ସୈନ୍ୟସାମନ୍ତ ଶ୍ରେଣୀ ଶୀକାର ଯାତ୍ରାରେ ଅଗ୍ରଣୀ ହୋଇଥିବାର ମଧ ବୋଲାଯାଏ । ବାଙ୍କି ଅଭିଯାନରେ ଏ ଗଡର ସାହାଯ୍ୟ ଅଗ୍ରଗଣ୍ୟ ହୋଇଥିବାର ପ୍ରବାଦ ଅଛି ।



## ସ୍ୱାଧୀନତା ଆନ୍ଦୋଳନ

ପାଠକ ମାନେ ପାଇକ ବିଦ୍ରୋହ ଅଧ୍ୟାୟରେ ବୋଲଗଡ ତଥା ପାଞ୍ଚଗଡ ଅଂଚଳର ଜନସାଧାରଣଙ୍କର ବ୍ରିଟିଶ ବିରୋଧୀ ମନୋଭାବର ପରିଚୟ ପାଇଅଛନ୍ତି । ସଦା ସର୍ବଦା ମୁକ୍ତି ପାଇଁ ଆପ୍ରାଣ ଚେଷ୍ଟା ଯେକୌଣସି କାରଣରୁ ସଫଳ ନ ହେଉ ପଛକେ ଯୁଗ ଯୁଗ ଧରି ସ୍ୱାଧୀନତା ପାଇଁ ଅନ୍ତରଭିତରେ କୁହୁଳୁଥିବା ବ୍ୟାକୁଳତା ପରବର୍ତ୍ତୀ ସ୍ୱାଧୀନତା ସଂଗ୍ରାମରେ ସର୍ବ ପ୍ରଥମେ ଏଠାରେ ଗୁଂଜରିତ ହୋଇଥିଲା ।

ବୋଲଗଡରେ ୧୯୨୧ ମସିହାରେ ଅଖିଳ ଭାରତ ଚରଖା ସଂଘ ସ୍ଥାପନ ଏବଂ ସେହି ବର୍ଷ ବେଗୁନିଆ ପୋଲିସର ଏକ ମହିଳାକୁ ଧର୍ଷଣ ଖବର ପଣ୍ଡିତ ଗୋପବନ୍ଧୁ "ସମାଜ" ସଂପାଦକୀୟରେ 'ସତ୍ୟ ହୋଇଥିଲେ ସାଂଘାତିକ' ଶିରୋନାମରେ ପ୍ରକାଶ କରିଥିବା ଯୋଗୁଁ ତାଙ୍କ ନାମରେ ଇଂରେଜ ସରକାରଙ୍କ ଦ୍ୱାରା ହୋଇଥିବା ମିଥ୍ୟା ମକଦ୍ଦମା ଏବଂ ସେଥିରୁ ନିର୍ଦ୍ଦୋଷରେ ଗୋପବନ୍ଧୁଙ୍କ ଖଲାସ ହେବା ପ୍ରଭୃତି ଗୁରୁ ଗମ୍ଭୀର ଅଧ୍ୟାୟ ସ୍ଥାନୀୟ ସ୍ୱାଧୀନତା ଆନ୍ଦୋଳନକୁ ଅଧିକ ସକ୍ରୀୟ କରିଥିଲା । ୧୯୨୫ ମସିହାରେ ଉତ୍କଳ ପ୍ରଦେଶ କଂଗ୍ରେସର ବୋଲଗଡ ଠାରେ ୨ୟ

ରାଜ୍ୟସ୍ତରୀୟ ଅଧିବେଶନ ସହ ସର୍ବୋପରି ୧୯୨୭ ମସିହାରେ ମହତ୍ମା ଗାନ୍ଧୀଙ୍କର ବୋଲଗଡ ଠାରେ ଦୀର୍ଘ ୩ ଦିନ ଅବସ୍ଥାନ ସହ ସ୍ଥାନୀୟ ଖଦୀ ଆନ୍ଦୋଳନ ପ୍ରମୁଖ ଐତିହାସିକ ଘଟଣାବଳୀ ସ୍ୱାଧୀନତା ସଂଗ୍ରାମକୁ ବୋଲଗଡ ଅଂଚଳରେ ଶକ୍ତିଶାଳୀ କରିବା ସଂଗେ ସଂଗେ ଏହାଦ୍ୱାରା ବୋଲଗଡର ସମ୍ମାନ ସମଗ୍ର ଦେଶରେ ବଜାୟ ରହିଥିଲା ।

ବହୁପୂର୍ବରୁ ବୋଲଗଡ ଅଂଚଳ ସୂତା କଟା ଏବଂ ଲୁଗା ବୁଣା ପାଇଁ ପ୍ରସିଦ୍ଧି ଲାଭ କରିଥିଲା । ଆଜିକାଲି ପରି ସେତେବେଳେ ଗାଆଁ ଗହଳର ଲୋକମାନଙ୍କ ପାଇଁ କୃଷି ଛଡା ଅନ୍ୟକୌଣସି ଜୀବୀକା ନଥିଲା । ଲୋକମାନେ ବାଡିରେ ବିଶେଷ କରି ହଳଦିଆ କପା ଚାଷ କରୁଥିଲେ । ବୋଲଗଡ ନିକଟରେ କପାସିଆ ଗ୍ରାମ ନାମ ବୋଧେ ପୂର୍ବକାଳର କପାଚାଷର ସ୍ମୃତି ବହନ କରିଅଛି । ଏହି କପାରୁ ତୂଳା ଆଦାୟ କରି ଜଳାମୁଗୁନୀ ପଥର ଚକି ଅରଟ (ମାଦଳା ଅରଟ) ରେ ବିଶେଷ କରି ଘରେ ସ୍ତ୍ରୀ ଲୋକମାନେ ସୂତାକାଟି ତନ୍ତୀକୁ ଦେଇ ଲୁଗା ବୁଣାଉଥିଲେ । ଏଥିରେ ତାଙ୍କ ପରିଧାନ ସମସ୍ୟା ଦୂର ହୋଇଯାଉଥିଲା । ଏହି ବ୍ୟବସ୍ଥାକୁ ସଂଗଠିତ କରିବାକୁ ଅଖିଳ ଭାରତ ଚରଖା ସଂଘ (All India Spinners Association) ଗଠନ ହୋଇ ତାହାର ଶାଖା ଦେଶର ସୂତାକଟା ଅଂଚଳରେ ଆରମ୍ଭ ହୋଇଥିଲା । ସେଥି ମଧ୍ୟରୁ ବୋଲଗଡ ଠାରେ ୧୯୨୧ ମସିହାରେ ଏହା ଖୋଲିଥିଲା । ଏହା ସମଗ୍ର ବୋଲଗଡ ବେଗୁନିଆଁ ସହ ପୂର୍ବ ନୟାଗଡ ଏବଂ ପୂର୍ବ ରଣପୁର ଅଂଚଳରେ ସୂତା କଟା ଏବଂ ଲୁଗା ବୁଣାକୁ ସଂଗଠିତ କରାଗଲା । ଏଣୁ ନିକଟସ୍ଥ ଦିଘିରି, ମାଣିକାଗୋଡା, ସଂପୁର, ତୂଡା, କଳାଙ୍ଗ, ହଳଦୀପଦା, କାଉଁରୀପାଟଣା, ସାନପଦର, ଚମ୍ପାଇଲୋ, ଗୋଡିଆଳି ଗ୍ରାମରେ ଖଦୀ ଆଶ୍ରମର ଛୋଟ ଛୋଟ ଉପକେନ୍ଦ୍ର ଆରମ୍ଭ ହେଲା । ଏହାଦ୍ୱାରା ଗରିବ ନିରୀହ ସ୍ତ୍ରୀ ଲୋକମାନେ ସୂତାକାଟି ଖଦୀକେନ୍ଦ୍ରରେ ଦେଇ ତା ବଦଳରେ ତୂଳା ଆଣୁଥିଲେ । ଅଳ୍ପ ମଜୁରୀ ସେମାନଙ୍କର ଘର ଖର୍ଚ୍ଚ ଚଳାଇ ଦେଉଥିଲା । ଜାତୀୟ କଂଗ୍ରେସ ଖଦୀକୁ ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ଆୟୁଧ ଭାବରେ ଗ୍ରହଣ କରିଥିଲା । ଏଣୁ ସ୍ୱାଧୀନତା ସଂଗ୍ରାମୀ ମାନେ ବାଧ୍ୟତାମୂଳକ ଭାବରେ ଖଦୀ ପିନ୍ଧିବା ସଂଗେ ଏହାର ପ୍ରଚାର ଏବଂ ପ୍ରସାର କରିବାକୁ ବଦ୍ଧ ପରିକର ହେଉଥିଲେ । ବୋଲଗଡ ଖଦୀ କେନ୍ଦ୍ର ଅଧୀନରେ ୧୦ ହଜାର ସୂତା କଟାଳୀ ଥିଲେ । ଏହା ଓଡିଶାର ସର୍ବବୃହତ ଖଦୀ ଉତ୍ପାଦନ କେନ୍ଦ୍ର ଭାବରେ ସ୍ୱୀକୃତି ଲାଭ କରିଥିଲା ।

୧୯୭୨ ମସିହା ଅଗଷ୍ଟ ୧୫ ସ୍ୱାଧୀନତା ଦିବସ ଦିନ ସ୍ୱାଧୀନତାର ରୌପ୍ୟ ଜୟନ୍ତୀ ପାଳନ ଅବସରରେ ଆମ ଅଂଚଳର ବିଶିଷ୍ଟ ସଂଗ୍ରାମୀ ୰ ପତିତପାବନ ହୋତାଙ୍କ ଠାରୁ ସ୍ୱାଧୀନତା ଆନ୍ଦୋଳନ ସମୟରେ ବୋଲଗଡ ଅଂଚଳର ଭୂମିକା

ସମ୍ପର୍କରେ ପଚାରି ବୁଝିବା ସଙ୍ଗେ ସଙ୍ଗେ ବୋଲଗଡ ଥାନାରୁ ପୁରୁଣା କାଗଜ ପତ୍ର ଆଣ୍ଡେଇ କେତେକ ତଥ୍ୟ ପାଇଥିଲି ।

ସର୍ବୋପରି ଲେଖକଙ୍କର ପିତା ୰ ଗଣେଶ୍ୱର ପରିଡା ସ୍ୱାଧୀନତା ଆନ୍ଦୋଳନର ୧୯୩୦ ମସିହା ଲବଣସତ୍ୟାଗ୍ରହରେ ଯୋଗ ଦେଇଥିବାରୁ ତାଙ୍କର ଜୀବିତ ଅବସ୍ଥାରେ ଶୁଣିଥିବା ଅନୁଭୂତିକୁ ପାଥେୟକରି ସର୍ବପ୍ରଥମେ ୧୯୨୦ ମସିହା ଠାରୁ ୧୯୪୭ ପର୍ଯ୍ୟନ୍ତ ସ୍ୱାଧୀନତା ଆନ୍ଦୋଳନରେ ବୋଲଗଡ ଅଂଚଳରେ ଘଟିଥିବା ପ୍ରମୁଖ ଘଟଣାର ଏକ ବିବରଣୀ ପ୍ରକାଶ କରିଥିଲି । ଏହି ଲିଖିତ ବିବରଣୀ ସେତେବେଳେ ଖୋରଧାର 'ସମାଜ' ପ୍ରତିନିଧି ଶ୍ରୀ ରାଜକିଶୋର ରାମ ଦୈନିକ ସମାଜର ସାପ୍ତାହିକୀରେ ପ୍ରକାଶ କରିଥିଲେ । ୧୯୯୫ ରେ ଜାନକୀ ବାବୁ ଏଠାରୁ ବିଧାୟକ ଥାଇ ରାଜ୍ୟ ମୁଖ୍ୟମନ୍ତ୍ରୀ ଥିବାରୁ ତାଙ୍କର ଏକ ଫଟୋ ଚିତ୍ର ସେଥିରେ ପ୍ରକାଶ ପାଇଥିଲା । ବୋଧହୁଏ ବୋଲଗଡରେ ସ୍ୱାଧୀନତା ଆନ୍ଦୋଳନର ଏହା ସର୍ବପ୍ରଥମ ସଂକ୍ଷିପ୍ତ ଇତିହାସ ।

୧୯୯୭ ମସିହା ବେଳକୁ ଯେଉଁ ୬ ଜଣ ସ୍ୱାଧୀନତା ସଂଗ୍ରାମୀ ଥିଲେ । ସେମାନେ - (୧). ଗଂଗାଧର ପାଇକରାୟ, ସାନପଦର (୨). ପର୍ଶୁରାମ ପଦାତିକରାୟ, ମାଣିକାଗୋଡା (୩). ଅର୍ଜୁନ ଫତେସିଂହ, ଚମ୍ପାଇଲୋ (୫). ଦୀନବନ୍ଧୁ ପ୍ରଧାନ, ବୋଲଗଡ (୬). ନାରାୟଣ ସୁବୁଦ୍ଧି, ମାଳିସାହି । ସେମାନଙ୍କ ମଧ୍ୟରୁ ବଞ୍ଚିଥିବା ଚମ୍ପାଇଲୋ ଗ୍ରାମର ଅର୍ଜ୍ଜୁନ ଫତେସିଂହ ଚଳିତ ୨୦୦୪ ଡିସେମ୍ବର ୬ ତାରିଖ ରାତ୍ର ପ୍ରାୟ ୧.୩୦ ସମୟରେ ଇହଲୀଳା ସମ୍ବରଣ କରିଛନ୍ତି । ସେ ସ୍ୱାଧୀନତା ସଂଗ୍ରାମୀ ମାନଙ୍କ ମଧ୍ୟରେ ଏ ଅଞ୍ଚଳରେ ଶେଷ ପ୍ରଦୀପ ଶିଖା ସଦୃଶ ବଞ୍ଚିରହିଥିଲେ ।

ପିଲାଦିନେ ବାପାଙ୍କ ପାଖରେ ରାତିରେ ଶୋଉଥିଲାବେଳେ ସେ ସ୍ୱାଧୀନତା ଆନ୍ଦୋଳନର ଅନୁଭୂତି କହିବା ସହ ସେ ସମୟର ଏକ ପୁରୁଣା ଗୀତ ବଡପାଟିରେ ବୋଲୁଥିଲେ । ତାହା ହେଉଛି -

ଲାଗିଲାରେ ଯୁଦ୍ଧ ଲାଗିଲା
ଦେଖ ସ୍ୱାଧୀନତା ଯୁଦ୍ଧ ଲାଗିଲା
ଯେଉଁ ପଞ୍ଜାବ ଅତ୍ୟାଚାର କଲା
କଲା ଅସହଯୋଗକୁ ପ୍ରଚାର
ସେହି ପଞ୍ଜାବର ସ୍ୱାଧୀନତା ଭେରୀ
ଗଗନେ ପବନେ ବାଜିଲା

ଦେଖ ସ୍ୱାଧୀନତା ଯୁଦ୍ଧ ଲାଗିଲା
ଇତ୍ୟାଦି ଇତ୍ୟାଦି............

ଏହଛଡା ସ୍ୱାଧୀନତା ଆନ୍ଦୋଳନ ବେଳେ ଆମ ପରିବାର ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଆଶ୍ରୟସ୍ଥଳ ହୋଇଥିବାର ଶୁଣାଯାଏ । ଏ ସମ୍ପର୍କରେ ଖୋରଧାର ବିଶିଷ୍ଟ ଐତିହାସିକ ତଥା ପ୍ରାକ୍ତନ ପ୍ରଧାନ ଶିକ୍ଷକ ଶ୍ରୀ ମୁରଲିଧର ପ୍ରଧାନଙ୍କ ଦ୍ୱାର ଲିଖିତ 'ଲାଲ ମାଟିର ସୌରଭ' ନାମରେ ଏକ ପୁସ୍ତକ ପ୍ରକାଶ ପାଇଅଛି । ସେଥିରେ ଖୋର୍ଦ୍ଧା ଅଂଚଳର ବହୁ ପ୍ରଖ୍ୟାତ କିମ୍ବଦନ୍ତୀ ପୁରୁଷଙ୍କର ଜୀବନୀ ପ୍ରକାଶ ପାଇଅଛି । ସେଥି ମଧ୍ୟରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଏବଂ କୃଷକ ନେତା ୰ ପର୍ଶୁରାମ ପଦାତିକ ରାୟଙ୍କର ଜୀବନୀ 'ମାଣିକାଗୋଡାର ମାଣିକ୍ୟ' ଶିରୋନାମାରେ ସ୍ଥାନ ପାଇଛି । ସେଥିରେ ୧୪୫ ପୃଷ୍ଠାରେ ଲେଖାଯାଇଥିବା ବିବରଣୀର କେତେକ ଅଂଶ ନିମ୍ନରେ ଦିଆଗଲା ।

- ୧୯୩୦ ମସିହା କଥା । ନିଶାନିବାରଣ ଆନ୍ଦୋଳନ ଜୋରସୋରରେ ଚାଲିଥାଏ । ସାକ୍ଷୀଗୋପାଳ ନିକଟ ଶ୍ରୀରାମଚନ୍ଦ୍ରପୁର ଶାସନ ଗ୍ରାମର କଂଗ୍ରେସ କର୍ମୀ ପ୍ରଚାରକ ତ୍ୟାଗୀ ଅନନ୍ତ ମିଶ୍ର ବୋଲଗଡ ଅଂଚଳରେ ନିଶାନିବାରଣ ନିମନ୍ତେ ପୁରୀରୁ ଏକ ଯୁବକର୍ମୀ ଦଳ ପଠାଇଲେ । ସେମାନେ ହେଲେ ପୁରୀ ସହରର ରଘୁନାଥ ମିଶ୍ର, ବିଶ୍ୱନାଥ ମିଶ୍ର, ନୂଆହାଟର ନଟବର ମହାନ୍ତି, ବହୁଗିରି ପୋଦୁଆଳର ଗୋପାଳ ମିଶ୍ର । ସେମାନଙ୍କ ସହ ପର୍ଶୁରାମ, ଅକ୍ରୁର ସାହୁ ଏବଂ କେତେକ ସ୍ଥାନୀୟ ଯୁବକ ଯୋଗ ଦେଲେ । ଆନ୍ଦୋଳନ ଖୁବ ଜୋରସୋରେ ଚାଲିଲା । ପ୍ରଥମ ଲକ୍ଷ ରହିଲା ବୋଲଗଡ ଥାନା । ମଦ, ଗଞ୍ଜେଇ, ଅଫିମ ଦୋକାନ ଆଗରେ ସେମାନେ ପିକେଟିଙ୍ଗ କଲେ । ଯେଉଁମାନେ କିଣିବାକୁ ଆସୁଥିଲେ ସେମାନଙ୍କୁ ମନାକଲେ । କ୍ରେତାମାନଙ୍କ ଗୋଡତଳେ ପଡିଯାଇଥିଲେ । ବ୍ରିଟିଶ ସରକାରଙ୍କର ଏହା ଏକଚାଟିଆ ବାଣିଜ୍ୟ କାରବାର ଥିଲା । ତେଣୁ ରାଜସ୍ୱରେ ବିପୁଳ କ୍ଷତି ହେବା ଜାଣି ପୁଲିସ ମାନେ ଆନ୍ଦୋଳନକାରୀମାନଙ୍କୁ ଧରିନେଲେ । ମାଡ ଗାଳି ଦେଲେ । ସଂଧ୍ୟା ପର୍ଯ୍ୟନ୍ତ ଥାନାରେ ଅଟକାଇ ରଖୁଥିଲେ । ସଂଧ୍ୟାପରେ ଛାଡି ଦେଉଥିଲେ । ପୁଲିସ ଡରରେ ସେମାନଙ୍କୁ କେହି ବାସ ଦେଉ ନଥିଲେ । ବାହାରେ ପଦାରେ ଗଛମୂଳେ ସେମାନେ ରହିଲେ । କେତେବେଳେ ଖାଇଲେ ତ କେତେବେଳେ ନାହିଁ । ବୋଲଗଡରେ ଆଇନ ଅମାନ୍ୟ ସମୟରେ କାମନା ଘର ବୃହତ କଦମ୍ବ ଗଛ ମୂଳରେ ସେମାନଙ୍କର ଅବସ୍ଥାନ ଥିଲା । ବେଳେ ବେଳେ ଏ କାଳର ଦୁର୍ଦ୍ଧର୍ଷ ସଂଗ୍ରାମୀ ରବୀନ୍ଦ୍ର କୁମାର ପରିଡାଙ୍କ ଜେଜମା ପାର୍ବତୀ ଦେଈ ଆନ୍ଦୋଳନକାରୀ ଯୁବ ସତ୍ୟାଗ୍ରହୀ ମାନଙ୍କୁ ଖାଇବାକୁ ଦେଉଥିଲେ ।

ତାଙ୍କର ଡର ଭୟ ନଥିଲା । ତାଙ୍କ ପୁତ୍ର ଗଣେଶ୍ୱର ପରିଡା ୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ୪ ମାସ ଜେଲ ବରଣ କରିଥିଲେ । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ ଥିଲେ । ମୃତ୍ୟୁ ପର୍ଯ୍ୟନ୍ତ ସୂତାକାଟି ଲୁଗା ପିନ୍ଧୁଥିଲେ । ବୋଲଗଡ ଠାରେ ସତ୍ୟାଗ୍ରହୀମାନେ କେତେଦିନ କଷ୍ଟମୟ ଜୀବନ ଯାପନ କରିବା ପରେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ପରାମର୍ଶରେ ସେମାନେ ଖୋରଧାକୁ କ୍ୟାମ୍ପ ଉଠାଇନେଲେ ।

ସ୍ୱାଧୀନତା ଆନ୍ଦୋଳନ ପ୍ରାରମ୍ଭରେ ବାଙ୍କୋଇ ଗଡରେ ୰ ପତିତପାବନ ପଟ୍ଟନାୟକ ଏବଂ ମଧୁସୂଦନ ପଟ୍ଟନାୟକଙ୍କ ନେତୃତ୍ୱରେ ଏହି ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ବାଙ୍କୋଇ ଗ୍ରାମର ପୂର୍ବତନ ଶିକ୍ଷକ ଶ୍ରୀ ଭଗବାନ ପଟ୍ଟନାୟକ, ପୂର୍ବତନ ସରପଞ୍ଚ ଶ୍ରୀ ଲିଙ୍ଗରାଜ ପାତ୍ରଙ୍କର ବିବରଣୀ ଅନୁସାରେ ସ୍ୱାଧୀନତା ସଂଗ୍ରାମୀ ପତିତପାବନ ପଟ୍ଟନାୟକ ସେତେବେଳେ କାରାବରଣ କରି ପୁରୀ ଜେଲରେ ମୃତ୍ୟୁବରଣ କରିଥିଲେ । ତାଙ୍କ ପରେ ତାଙ୍କର ପୁତ୍ର ୰ ଦୟାନିଧି ପଟ୍ଟନାୟକ ଏବଂ ୰ ଯୁଗଳକିଶୋର ପଟ୍ଟନାୟକ ଏ ଅଞ୍ଚଳର ସକ୍ରୀୟ ସ୍ୱାଧୀନତା ସଂଗ୍ରାମୀ ଥିଲେ । ୰ ମଧୁସୂଦନ ପଟ୍ଟନାୟକ ସ୍ୱାଧୀନତା ଆନ୍ଦୋଳନରେ କାରାବରଣ କରିଥିଲେ । ସର୍ବପ୍ରଥମେ ୰ ମଧୁସୂଦନ ପଟ୍ଟନାୟକ ବାଙ୍କୋଇ ଅଞ୍ଚଳର ୧୪ ଜଣ ସର୍ବରାକାରଙ୍କ ଉପସ୍ଥିତିରେ ଏକ ବୈଠକ କରି ଅସହଯୋଗ ଆନ୍ଦୋଳନ ପାଇଁ ଡାକିଥିଲେ । ଏହି ବୈଠକରେ ଦସ୍ତଖତ କରିଥିବା ୧୪ ଜଣ ସର୍ବରାକାରଙ୍କର ନାମ ପୋଲିସ ଜାଣିବା ପରେ ବ୍ରିଟିଶ ସରକାର.ସେମାନଙ୍କର ସର୍ବରାକାରୀ ଉଚ୍ଛେଦ କରିଥିଲା । ଖଙ୍ଗୁରିଆ ଗ୍ରାମର ୰ ଦିଗମ୍ବର ରାଉତରାୟ ସେତେବେଳେ ଅମିନ ଭାବରେ ସରକାରଙ୍କ ଅଧୀନରେ ନିଯୁକ୍ତ ଥିଲେ । ଏହି ୧୪ ଜଣ ସର୍ବରକାରଙ୍କ ଅଞ୍ଚଳ ବ୍ରିଟିଶ ସରକାର ୰ ଦିଗମ୍ବର ରାଉତରାୟଙ୍କ ଦାୟୀତ୍ୱରେ ରହିଲା ପରେ ଖଙ୍ଗୁରିଆ ଜଗଦ୍ଦେବ ପରିବାର ବହୁ ସମ୍ପତ୍ତିର ଅଧିକାରୀ ହେବା ସଙ୍ଗେ ସଙ୍ଗେ ତାଙ୍କର ବାଙ୍କୋଇ ସାଗରଗାଁ ଅଞ୍ଚଳରେ ପ୍ରତିପତ୍ତି ବଢିଯାଇଥିଲା ।

***********

ଏଥିରୁ ଲେଖକଙ୍କୁ ଗଭୀର ପ୍ରେରଣା ମିଳିଥିଲା । ଲେଖକ ୰ ପତିତପାବନ ହୋତାଙ୍କ ଠାରୁ ଶୁଣିଥିବା ବକ୍ତବ୍ୟ ଅନୁଯାଇ ୧୯୨୦ ମସିହାରେ ନାଗପୁର କଂଗ୍ରେସରୁ ଫେରି ପଣ୍ଡିତ ଗୋପବନ୍ଧୁ ଦାଶ ବୋଲଗଡ ଜଗନ୍ନାଥ ମଣ୍ଡପରେ ଏକ ସଭାକରି ଅସହଯୋଗ ଆନ୍ଦୋଳନ ଏବଂ ଜାତୀୟ କଂଗ୍ରେସର ବାର୍ତ୍ତା ପ୍ରଚାର କରିଥିଲେ । ସ୍ୱର୍ଗତ ପତିତପାବନ ହୋତା -ଖଙ୍ଗୁରିଆ, ୰ ପଣ୍ଡିତ ଦାମୋଦର ମିଶ୍ର -ଦିବ୍ୟସିଂହପୁର ପ୍ରମୁଖ ସର୍ବପ୍ରଥମେ ଏଥିରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ ଦେଇଥିଲେ ।

ଏଠାରେ ପଣ୍ଡିତ ଦାମୋଦର ମିଶ୍ର ମୁଖ୍ୟ ଖଦୀ ସଂଯୋଜକ ଥିଲେ । ଇଂରେଜ ଶାସକଙ୍କ ଭୟରେ ଖଦୀ କାର୍ଯ୍ୟପାଇଁ କୌଣସି ଲୋକ ଘର ଦେବାକୁ ମନା କରିଦେଲେ । ବୋଲଗଡର ୰ ମହନ ସିଂହ ଜଣେ ନିର୍ଭୀକ ସ୍ୱାଧୀନଚେତା ବ୍ୟକ୍ତି ଥିଲେ । ସେ ନିର୍ଭୟ ଭାବରେ ତାଙ୍କର ଘର ଖଦୀ କାର୍ଯ୍ୟପାଇଁ ଦେଇଥିଲେ । ଏହି ଘର ଡିହ ପରେ ଘୋରଡିଆର ମୋହନ ସାମନ୍ତରାୟ କିଣି ନେଇଥିଲେ । ତାହା ବର୍ତ୍ତମାନ ବୋଲଗଡ ବାମନ ହାଇସ୍କୁଲର ସାମନା ବଂଶୀଧର ପାଟଶାଣୀଙ୍କର ନବନିର୍ମିତ ପକ୍କା ଦୋକାନ ଗୃହ । ଏହି ଘରର ପୂର୍ବ ଦିଗରେ ବର୍ତ୍ତମାନ ଅବସ୍ଥିତ ମୂଳି ସିଂହଙ୍କର ଦୋକାନ ଗୃହ ଠାରେ ଖଣ୍ଡପଡାର ପୂର୍ବତନ ରାଜା ୰ ରାମଚନ୍ଦ୍ର ସିଂ ମର୍ଦ୍ଦରାଜ କିଛି ଦିନ ପାଇଁ ବୋଲଗଡରେ ଆଶ୍ରୟ ନେଇଥିଲା ବେଳେ ସେହି ଠାରେ ରହିଥିଲେ । ପରେ ତାଙ୍କର ଭାଇ ଖଣ୍ଡପଡାର ପୂର୍ବତନ ରାଜା ୰ ନଟବର ସିଂ ତାଙ୍କୁ ଡକାଇ ନେଲା ପରେ ତାଙ୍କ ପରେ ସେ ଖଣ୍ଡପଡାର ରାଜା ଭାବରେ ଅଭିଷିକ୍ତ ହୋଇଥିଲେ । ବହୁ ବର୍ଷ ପର୍ଯ୍ୟନ୍ତ ରାମଚନ୍ଦ୍ର ସିଂ ମର୍ଦ୍ଦରାଜ ନିବାସ କରିଥିବା ଏହି ଘରର ଭଙ୍ଗା କାନ୍ଥ ରହିଥିବା ଗ୍ରାମର ବୟବୃଦ୍ଧ ଖଦୀ କର୍ମୀ କାଳୀ ପ୍ରସନ୍ନ ରଥଙ୍କ ଠାରୁ ଶୁଣାଯାଏ । ଏହାଛଡା ସେତେବେଳେ ବିଶିଷ୍ଟ ମହାଜନ ୰ ରଘୁନାଥ ସାହୁ ଗ୍ରାମର ଅନ୍ୟତମ ମୁଖ୍ୟବ୍ୟକ୍ତି ତଥା ସ୍ୱାଧୀନଚେତା ବ୍ୟକ୍ତି ଥିଲେ । ସେ ତାଙ୍କର ବର୍ତ୍ତମାନ ବୋଲଗଡ ପୁରୁଣା ବଜାର (ଏବେ ଗଣେଶ ବଜାର) ରେ ଥିବା ଏକଧାଉଡି ଚାଳଘର ଖଦୀ କାର୍ଯ୍ୟ ପାଇଁ ଦେଇଥିଲେ । ତାହା ବର୍ତ୍ତମାନ ବୋଲଗଡ ଗଣେଶ ବଜାରରେ ଥିବା ତ୍ରିନାଥ ମନ୍ଦିରର ଉତ୍ତର ପାର୍ଶ୍ୱର ପକ୍କା ଦୋକାନ ଗୃହ ସମୂହ ।

ଏହି ଖଦୀ ସଂଗଠନ କାର୍ଯ୍ୟରେ ଖଦୀ କର୍ମୀ ଭାବରେ ଖଣ୍ଡୁରିଆର ବାଇଧର ରାଉତରାୟ, ବୋଲଗଡର ବଳଭଦ୍ର ସାହୁ, ୰ ଦାମୋଦର ସାହୁ, ୰ ଚକ୍ରଧର ମହାପାତ୍ର ପ୍ରମୁଖ ଯୋଗଦେଇଥିଲେ । ପରେ ବୋଲଗଡର ବାଞ୍ଛାନିଧି ସାହୁ, କାଳୀ ପ୍ରସନ୍ନ ରଥ, ତାରା ପ୍ରସନ୍ନ ରଥ, ଖଣ୍ଡୁରିଆର ଜନାର୍ଦ୍ଦନ ପଟ୍ଟନାୟକ, ରାଧାଚରଣ ରାଉତରାୟ, ବିଦ୍ୟାଧର ହୋତା ପ୍ରଭୃତି କାମ କରିଥିଲେ । ନୟାଗଡ ଅଂଚଳରେ ବହୁ କଟାଳୀ ସୂତା କାଟୁଥିବାରୁ ଏବଂ ସେଠାରେ ରାଜାଙ୍କ ଶାସନ ଥିବାରୁ ଖଦୀ କାର୍ଯ୍ୟକୁ ନୟାଗଡ ରାଜା ବିରୋଧ କରୁଥିଲେ । ଫଳରେ ନୟାଗଡ ଅଂଚଳର ଖଦୀ କାର୍ଯ୍ୟ ତଦାରଖ କରିବାକୁ ବୋଲଗଡ ଏବଂ ନୟାଗଡ ସୀମାର ଦିଘିରୀ ଗ୍ରାମରେ ଏକ ଖଦୀ ଆଶ୍ରମ ସ୍ଥାପନ ହେଲା । ଏହା ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ମୁଖ୍ୟ କେନ୍ଦ୍ର ଥିଲା । ଖଦୀ କାର୍ଯ୍ୟକ୍ରମ ଯୋଗୁ ବହୁ ଗରିବ ଲୋକଙ୍କର କର୍ମସଂସ୍ଥାନ ହେବା ସଂଗେ ସଂଗେ ସେମାନେ ବିଶେଷ କରି ସ୍ତ୍ରୀ ଲୋକମାନେ ସୂତାକାଟି ଦୁଇପଇସା ରୋଜଗାର କରିବାରୁ ସ୍ୱାଧୀନତା ଆନ୍ଦୋଳନ ଗ୍ରାମାଞ୍ଚଳକୁ ବ୍ୟାପିଲା ଏବଂ ସେମାନେ କଂଗ୍ରେସର

ସମର୍ଥକ ହୋଇଗଲେ ।

ଏହି ପରିପ୍ରେକ୍ଷୀରେ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ୨ୟ ରାଜ୍ୟସ୍ତରୀୟ ଅଧିବେଶନ ପୁରୀ ଜିଲ୍ଲାର ୨ଟି ମଫସଲ ଅଂଚଳରେ କରିବାକୁ ସ୍ଥିରୀକୃତ ହୋଇଥିଲା ଏବଂ ତାହା ସାକ୍ଷୀଗୋପାଳ ଏବଂ ବୋଲଗଡ ଗ୍ରାମ ଥିଲା । ସେତେବେଳେ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଆଚାର୍ଯ୍ୟ ହରିହର ଦାଶ ଥାଆନ୍ତି । ପଣ୍ଡିତ ଗୋପବନ୍ଧୁ ଦାଶ ପାଦରେ ଚାଲି ଚାଲି ଆସି ବୋଲଗଡରେ ପହଞ୍ଚିଲେ । ବୋଲଗଡ ଠାରେ ଏହି ପ୍ରାଦେଶିକ ସମ୍ମିଳନୀ ବିଷୟରେ ରଘୁନାଥ ସାହୁ ମହାଜନଙ୍କ ସହ ଆଲୋଚନା କରି ତତ୍କାଳୀନ ପ୍ରଦେଶ କଂଗ୍ରେସ ସଭାପତି ଆଚାର୍ଯ୍ୟ ମହାଶୟଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ପୋଷ୍ଟକାର୍ଡ ଲେଖିଥିଲେ । ଏହାର ବିଷୟ ବସ୍ତୁ ଥିଲା, 'ଆଚାର୍ଯ୍ୟ ହରିହର ବୋଲଗଡ ଆସି ମହାଜନ ୰ ରଘୁନାଥ ସାହୁ ଏବଂ ଅନ୍ୟାନ୍ୟ କଂଗ୍ରେସ କର୍ମୀଙ୍କ ସହ ଆଲୋଚନା କରିବେ' । ଏହି ତଥ୍ୟ ଡଃ. ରାଧାନାଥ ରଥ ତାଙ୍କର ଆତ୍ମଜୀବନୀ "ଜେଲ ସ୍ମୃତି"ରେ ଲେଖିଛନ୍ତି । ବହୁବର୍ଷ ପୂର୍ବେ ଏହି କଥା ଦୈନିକ 'ସମାଜ' ରେ "ଜେଲ ସ୍ମୃତି" ଅଧ୍ୟାୟ ଧାରାବାହିକ ଭାବରେ ବାହାରୁଥିଲା । ଲେଖକ ଉକ୍ତ ବିଷୟ ସେତିକିବେଳେ ସମାଜରୁ ପାଠ କରିଥିଲେ ।

୧୯୬୪ ମସିହାରେ ଭୁବନେଶ୍ୱର ଠାରେ ଐତିହାସିକ ଭାରତୀୟ ଜାତୀୟ କଂଗ୍ରେସର ମହା ଅଧିବେଶନ ହୋଇଥିଲା । ଏହି ଅବସରରେ ରାଜ୍ୟ ଯୁବ କଂଗ୍ରେସ ତରଫରୁ ଏକ ସ୍ମରଣିକା ପ୍ରକାଶ ପାଇଥିଲା । ଏହି ସ୍ମରଣିକାରେ ବିଶିଷ୍ଟ ଐତିହାସିକ ଡଃ. ନବୀନ କୁମାର ସାହୁଙ୍କର ଇଂରେଜୀ ଭାଷାରେ ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ତାହାର ନାମ - Congress Movement in Orissa.

ଏଥିରେ ଉଲ୍ଲେଖ ଥିଲା -"The 2nd Session of Pradesh Committee was held in Bolgarh in the year of 1925 on 25th November presided by Mr. Bhagirathi Mahapatra."

ଏହି ଅଧିବେଶନର ଏକ ପୂର୍ଣ୍ଣାଙ୍ଗ ବିବରଣୀ ସ୍ଥାନୀୟ ୰ ହରେକୃଷ୍ଣ ପଟ୍ଟନାୟକ (ବେଙ୍ଗ ପଟ୍ଟନାୟକ) ଠାରୁ ଲେଖକ ଗ୍ରହଣ କରି ଆମୂଳଚୂଳ ପାଠ କରିଥିଲେ । ମାତ୍ର ତାହା ହଜି ଯାଇଅଛି । ବାଣୀବିହାରର ଅବସର ପ୍ରାପ୍ତ ଓଡିଆ ପ୍ରଫେସର ଅଧ୍ୟାପକ ଡଃ. ନିତ୍ୟାନନ୍ଦ ଶତପଥୀ ଗୋପବନ୍ଧୁଙ୍କ ଜୀବନୀ ଉପରେ 'ହେ ସାଥି ହେ ସାରଥି' ନାମରେ ଏକ ପୁସ୍ତକ ରଚନା କରିଛନ୍ତି । ଏହି ପୁସ୍ତକରେ '୧୯୨୫ ମସିହା ଖଣ୍ଡିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟି' ଶୀର୍ଷକ ଏକ ଅଧ୍ୟାୟ ଅଛି । ତାହା ଲେଖକ ଉକ୍ତ ପୁସ୍ତକରୁ ପାଠ କରିଥିଲା । ଏହି ଅଧିବେଶନରେ କଂଗ୍ରେସ ନେତାଙ୍କ ମଧ୍ୟରେ ତୀବ୍ର ମତଭେଦ ଲାଗିଥିବାର ଅନୁମାନ କରାଯାଏ । ପଣ୍ଡିତ ଗୋଦାବରୀଶ

ମିଶ୍ର ସଭାପତି ଏବଂ ଡଃ. ଅଟଳ ବିହାରୀ ଆଚାର୍ଯ୍ୟ ସାଧାରଣ ସଂପାଦକ ହୋଇଥିବା କଥା ସେଥିରେ ଲେଖା ଅଛି ।

ଏଠାରେ ଅନୁଷ୍ଠିତ ପ୍ରାଦେଶିକ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିରେ ଉତ୍କଳ ସମ୍ମିଳନୀର ମିଶ୍ରଣ ହୋଇ ଯାଇଥିଲା । ଭାଷା ଭିତ୍ତିରେ ପ୍ରଦେଶ ଗଠନ ପ୍ରସ୍ତାବକୁ କଂଗ୍ରେସ ଗହଣ କରି ନେଇଥିବାରୁ ଉତ୍କଳ ସମ୍ମିଳନୀର ଆଉ ଆବଶ୍ୟକତା ନ ଥିଲା ବୋଲି ତତ୍‌କାଳୀନ ନେତୃବୃନ୍ଦ ଅନୁଭବ କରୁଥିଲେ । ସେତେବେଳେ ପଣ୍ଡିତ ଗୋପବନ୍ଧୁ ଦାଶ ଓଡିଶାରେ ଜାତୀୟ କଂଗ୍ରସ ଜରିଆରେ ସ୍ୱତନ୍ତ ଉତ୍କଳ ପ୍ରଦେଶ ଗଠନର ପକ୍ଷପାତୀ ଥିଲେ । ସେତେବେଳେ ଓଡିଶା ବିହାର ପ୍ରଦେଶରେ ମିଶିରହିଥିଲେ ମଧ ଓଡିଶା ସ୍ୱତନ୍ତ୍ର ପ୍ରଦେଶର ମାନ୍ୟତା ଲାଭ ପୂର୍ବରୁ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟି ଗଠନ ହୋଇ ସର୍ବଭାରତୀୟ କଂଗ୍ରସ କମିଟି ଦ୍ୱାରା ସ୍ୱୀକୃତି ଲାଭ କରିଥିଲା । ଭାଷାଭିତ୍ତିରେ ପ୍ରଦେଶ ଗଠନ ପ୍ରସ୍ତାବକୁ କଂଗ୍ରେସ ଗ୍ରହଣ କରିଥିବାରୁ ନବଗଠିତ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିରେ ସିଂହଭୂମିର ଷଢେଇକଳା ଖରସୁଆଁ ଅଂଚଳ ଥିଲା । ଏଣୁ ବୋଲଗଡ ଠାରେ ଅନୁଷ୍ଠିତ ଉତ୍କଳ ପ୍ରଦେଶ କମିଟି ସହ ଉତ୍କଳ ସମ୍ମିଳନୀର ମିଶ୍ରଣ ହୋଇଯାଇଥିଲା । ଏଣୁ ଜନମୁଖରେ ଏହା ଉତ୍କଳ ସମ୍ମିଳନୀ ବୋଲି ଅଦ୍ୟାବଧି ଶୁଣାଯାଏ । ଏହି ଅଧିବେଶନରେ ଶ୍ରୀ ଭାଗୀରଥି ମହାପାତ୍ର ସଭାପତିତ୍ୱ କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାଶ, ଆଚାର୍ଯ୍ୟ ହରିହର, ନୀଳକଣ୍ଠ ଦାଶ, କୃପାସିନ୍ଧୁ ହୋତା, ପଣ୍ଡିତ ଗୋଦାବରୀଶ ପ୍ରଭୃତି ପ୍ରାଦେଶିକ ନେତା ଯୋଗଦେଇଥିଲେ । ଏହି ଅଧିବେଶନ ବର୍ତ୍ତମାନ ଥିବା ଫରେଷ୍ଟ ଅଫିସ ପଛପାଖ ଗୁଡିଆ ଘର ତୋଟାରେ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନରେ ବାବଜୀ ରାମ ଦାଶ ଯୋଗ ଦେଇଥିଲେ । ସେ ଜଣେ ବିଶିଷ୍ଟ ବକ୍ତା ଥିଲେ । ସେ ଭାଷଣ ଦେଲାବେଳେ ହାତରେ ବିଧା ମାରି ଏକ ଟେବୁଲ ଭାଙ୍ଗି ଦେଇଥିବା ଶୁଣାଯାଏ । ସ୍ୱର୍ଗତ ଦାମୋଦର ମିଶ୍ର (ଦିବ୍ୟସିଂହପୁର ଶାସନ), ୰ ପତିତପାବନ ହୋତା, ଚକ୍ରଧର ମହାପାତ୍ର, ବାଙ୍କନିଧି ପରିଡା, ଗୋଲାମ ମୁସ୍ତଫା, ବଳଭଦ୍ର ସାହୁ ପ୍ରଭୃତି ଯୁବକର୍ମୀ ମାନେ ସମ୍ମିଳନୀର ସଫଳତା ପାଇଁ ସାହାଯ୍ୟ କରିଥିଲେ । ଏହି ସମ୍ମିଳନୀ ବିଷୟ ୰ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ରଚିତ 'ଖୁରୁଧା ଦର୍ପଣ' ବହିରେ ସମ୍ୟକ ସୂଚନା ଦେଇଛନ୍ତି ।

(ଖୁରୁଧା ଦର୍ପଣ, ପୃ- ୪୬)

ଏହି ବୋଲଗଡରେ ୧୯୨୫ରେ ଶ୍ରୀ ଭାଗିରଥି ମହାପାତ୍ରଙ୍କ ସଭାପତିତ୍ୱରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ସର୍ବଶ୍ରୀ ମଦନମୋହନ ଛୋଟରାୟ, ହଟମହାପାତ୍ରଙ୍କ ଉଦ୍ୟମ, ବାମନ ମହାପାତ୍ରଙ୍କ ଅପ୍ରକାଶୀ ତ୍ୟାଗ,

ଦାମୋଦର ମିଶ୍ର ଜିଲ୍ଲାବୋର୍ଡ ସଭ୍ୟଙ୍କ ଉତ୍ସାହ ଓ ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ନେତୃତ୍ୱ ପ୍ରଶଂସାର ଯୋଗ୍ୟ । ମହାତ୍ମାଗାନ୍ଧୀ ଏଠାରେ ୧୯୨୭ ଡିସେମ୍ବର ୯,୧.୧୧ ତାରିଖ ତିନୋଟି ରାତ୍ର ବିଶ୍ରାମ କରିଥିଲେ ।

********

ସେତେବେଳେ ବୋଲଗଡ ଗ୍ରାମ ସାମିଲ ତୃତୀୟା ପଡାର ବିଖ୍ୟାତ ଚୌଧୁରୀ ପରିବାରର ସ୍ୱର୍ଗତ ମାଧବ ଚୌଧୁରୀ ରେଭେନ୍ସା କଲେଜର ଛାତ୍ର ଥିଲେ । ସେ ଜଣେ ଉଚ୍ଚ କୋଟିର କବି ଥିଲେ ଏବଂ ଡଃ. ମାୟାଧର ମାନସିଂହଙ୍କ ସହପାଠୀ ତଥା ସଙ୍ଗୀତ ଥିଲେ । ତାଙ୍କ ଲିଖିତ କବିତା ଗୁଡିକ ସେତେବେଳେ 'ଉତ୍କଳ ସାହିତ୍ୟ','ନବଭାରତ', 'ମୁକୁର', 'ସହକାର' ଏବଂ 'ନବଜୀବନ' ରେ ପ୍ରକାଶିତ ହେବା ସଂଗେ ସଂଗେ ରେଭେନ୍ସା କଲେଜ ମାଗାଜିନରେ ପ୍ରକାଶ ପାଇଥିଲା । ସେ ସମସ୍ତ କବିତାକୁ ଏକାଠି କରି 'ଝଙ୍କାର' (କବିତା ଗୁଚ୍ଛ) ନାମରେ ଏକ ପୁସ୍ତକର ପ୍ରଥମ ସଂସ୍କରଣ ୧୯୩୪ ଏବଂ ପରିବର୍ଦ୍ଧିତ ସଂସ୍କରଣ ୧୯୮୬ ରେ ପ୍ରକାଶ ପାଇଥିଲା । ୧୯୨୫ ମସିହାରେ ବୋଲଗଡ ଠାରେ ଅନୁଷ୍ଠିତ ପ୍ରାଦେଶିକ ସମ୍ମିଳନୀ ପାଇଁ ତାଙ୍କ ଦ୍ୱାରା ଲିଖିତ ୪ ଗୋଟି କବିତା ବର୍ତ୍ତମାନ ହସ୍ତଗତ ହୋଇଅଛି । ସେଥିରୁ ୩ ଟି କବିତା ପ୍ରାରମ୍ଭିକ ସଂଗୀତ ଏବଂ ବିଦାୟ ସଂଗୀତ ହୋଇଥିଲା ବେଳେ ଗୋଟିଏ 'ଶାନ୍ତହୁଅ' ଶୀର୍ଷକ କବିତା ପ୍ରକାଶ ପାଇଅଛି । ଶେଷଟି ଏହି ଅବସରରେ ନାରୀନେତ୍ରୀ ସରଳାଦେବୀଙ୍କ ଅଧ୍ୟକ୍ଷତାରେ ଏଠାରେ ଅନୁଷ୍ଠିତ ନିଖିଳ ଉତ୍କଳ ନାରୀ ସମ୍ମିଳନୀରେ ପଠିତ ହୋଇଥିବା କଥା ଲେଖକ ସୂଚନା ଦେଇଛନ୍ତି । ଏହି ଅଧିବେଶନରେ ଅଶାନ୍ତ ଅବସ୍ଥାକୁ ଶାନ୍ତ କରିବାକୁ ଏକ 'ଶାନ୍ତ ହୁଅ' କବିତା ରଚନା ହୋଇଥିବାର ସୂଚନା ମିଳେ । ୰ ମାଧବ ଚୌଧୁରୀଙ୍କ ରଚିତ ଏହି ଶାନ୍ତ ହୁଅ କବିତାଟି ପାଠକ ମାନଙ୍କ ଅବଗତି ପାଇଁ ନିମ୍ନରେ ଦିଆଗଲା । ୰ ମାଧବ ଚୌଧୁରୀଙ୍କ ସାରସ୍ୱତ ସାଧନା ବିଷୟ ବୋଲଗଡର ସାହିତ୍ୟ ଅଧ୍ୟାୟରେ ବିଶଦଭାବରେ ବର୍ଣ୍ଣନା କରାଯିବ ।

## ଶାନ୍ତହୁଅ

(୧୯୨୫ ରେ ବୋଲଗଡ ଠାରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀରେ ପଠିତ)

(ଧୀର ଚକ୍ର ହ୍ରଦ ପଦ୍ମ, ମିହିର ବୃତ୍ତେ, ଆଷାଢ, ଶୁକ୍ଳ ବୃତ୍ତ)

କୋଳାହଳ କିପାଁ ସଭା ଅଙ୍ଗନେ
ଆସିଛ କାହିଁକି ନାହିଁକି ମନେ, ?
ସୁଦୂରୁଁ ଏ ଦେଶ ନେତୃ ମଣ୍ଡଳ

ସବୁ ପଥ କଷ୍ଟ ପଦରେ ଦଳି
ଆସିଛନ୍ତି ଧାଇଁ, କାନେ ତୁମ୍ଭ ମନ୍ତ୍ର ପଢ଼ିବା ପାଇଁ ।୧।
ସ୍ଥିର ଚିତ୍ତେ ଶୁଣ ଦେଶ ବାରତା
ଜ୍ଞାନ ଜ୍ୟେଷ୍ଠ ମୁଖୁଁ ଅମୃତ କଥା,
ଯେ ଦୀକ୍ଷାଦେବେ ସେ ଘେନହେ ଆଜି
ସାଧୁ ଉପଦେଶେ ନୁହଁ ଅରାଜି,
ମୋହନିଦ୍ରା ଭାଙ୍ଗି, ଅଣ୍ଟାଭିଡ ଭାଇ, ସ୍ୱଦେଶ ଲାଗି ।୨।
ଏ ମଧୁ ମିଳନେ ଏ କିବା କାଣ୍ଡ
ସବୁ ପଥଶ୍ରମ ହେବଟି ପଣ୍ଡ;
ଏଥିକି କରିବା ସିଦ୍ଧିର ଆଶା,
ବୁଝୁନାହଁ ହେବା କି ଲୋକହସା
ବାମନ ଚନ୍ଦ୍ରକୁ ଧରିବା କଥା ଯୋଗାଏ ଆମ୍ଭକୁ ।୩।
ରଖ ହେ ଶୃଙ୍ଖଳା ଆଣ ହେ ଶାନ୍ତି
ତେବେ ଆମ ଜାତି ରଖିବ ଖ୍ୟାତି,
ଛାଡ଼ି ଅଭିମାନ ଗର୍ବ ଅଯଥା,
ଖୋଲ ଭାଇ ଆଗେ ହୃଦର ବ୍ୟଥା,
ସେ ବୁଝିବେ ସିନା, ଆଶ୍ୱାସିବେ ଆଉ କେ ତାଙ୍କ ବିନା ? ।୪।

*********

ଉକ୍ତ ପ୍ରାଦେଶିକ ନାରୀ ସମ୍ମିଳନୀରେ ମାଣିକାଗୋଡାର ସ୍ୱାଧୀନତା ସଂଗ୍ରାମୀ ଗୋଲାମ ମୁସ୍ତଫାଙ୍କର ଧର୍ମପତ୍ନୀ, ମାଳିସାହି ଗ୍ରାମର ସ୍ୱାଧୀନତା ସଂଗ୍ରାମୀ ସୁଦର୍ଶନ ମହାପାତ୍ରଙ୍କ ଧର୍ମପତ୍ନୀ ଏବଂ ଗୋବର୍ଦ୍ଧନପୁର ଗ୍ରାମର ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ପାହାଡ଼ାସିଂହଙ୍କ ଧର୍ମପତ୍ନୀ ଯୋଗଦେଇଥିବାରୁ ସେମାନଙ୍କୁ ସମାଜରୁ ବାସନ୍ଦ କରାଯାଇଥିଲା ।

ଏହି ସମ୍ମିଳନୀ ପରେ ବୋଇଗଡ ଅଂଚଳରେ ସ୍ୱାଧୀନତା ଆନ୍ଦୋଳନ, ଖଦୀ ସଂଗଠନ ଏବଂ କଂଗ୍ରେସ ଭାବଧାରା ଅଧିକ ପ୍ରଚାର ହୋଇଥିଲା । ପଣ୍ଡିତ ଗୋଦାବରୀଶ ମିଶ୍ର ଏଠାରେ ସଭାପତି ହୋଇଥିଲେ ମଧ ସେ ବେଶୀ ଦିନ ରହିପାରିନଥିଲେ । ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା ବୋଲି ଜଣାଯାଏ ।



# ମହତ୍ମାଗାନ୍ଧିଙ୍କ ବୋଲଗଡରେ ଅବସ୍ଥାନ

୧୯୨୫ ପରେ ୧୯୨୭ ମସିହା ବୋଲଗଡ ଇତିହାସରେ ସବୁଠାରୁ ବଡ ସ୍ମରଣୀୟ ଘଟଣା । ସେହି ବର୍ଷ ମହତ୍ମା ଗାନ୍ଧିଙ୍କର ୩ୟ ଥର ଓଡିଶା ଗସ୍ତ ଥିଲା । ଏହି ଗସ୍ତ ଖଦୀ ସଂଗଠନ ଏବଂ ରୟତଙ୍କ ଦୁଃଖ ଦୁର୍ଦ୍ଦଶା ବୁଝିବା ପାଇଁ ଉଦ୍ଦିଷ୍ଟ ଥିଲା । ସେତେବେଳେ ଓଡିଶାର ଜାତୀୟ ବାଦୀ ନେତା ୰ ନିରଞ୍ଜନ ପଟ୍ଟନାୟକ (ଆସିକା, ଗଞ୍ଜାମ) ଓଡିଶାରେ ଖଦୀ ସଂଗଠନର ମୁଖ୍ୟ ସଂଯୋଜକ ଥିଲେ । ତାଙ୍କର ଦେଶପ୍ରୀତି, ଜାତୀୟତାବୋଧ ସର୍ବୋପରି ତାଙ୍କ ଦ୍ୱାରା ଲିଖିତ ଜ୍ଞଷର ଙ୍କସଚବ ଗଝଙ୍ଖରଞ୍ଚରଭଫ ପୁସ୍ତକ ସେତେବେଳେ ଚହଳ ପକାଇଥିଲା । ସ୍ୱତନ୍ତ୍ର ଓଡିଶା ଗଠନରେ ତାଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ଓଡେନେଲ କମିଟି ଆଗରେ ସାକ୍ଷ୍ୟ ପ୍ରଦାନ କରି ସ୍ୱତନ୍ତ୍ର ଓଡିଶା ଗଠନ ପାଇଁ ଯେଉଁ ବଳିଷ୍ଠ ଯୁକ୍ତି ଉପସ୍ଥାପିତ କରିଥିଲେ ତାକୁ ଓଡେନେଲ କମିଟି ଗ୍ରହଣ କରିଥିଲା । ସେହି ସମୟରେ ଅନୁଷ୍ଠିତ କଲିକତା ଜାତୀୟ କଂଗ୍ରେସ ଅଧିବେଶନରେ ସ୍ୱତନ୍ତ୍ର ଓଡିଶା ଗଠନ ଦାବି ଉପରେ ସେ ଭାଷଣ ଦେବା ସମୟରେ ଅଧିବେଶନରେ ସଭାପତିତ୍ୱ କରୁଥିବା ପଣ୍ଡିତ ମୋତିଲାଲ ନେହେରୁ ଗ୍ରହଣ କରିନଥିଲେ । ଏହାର ପ୍ରତିବାଦରେ ସେ ରାଜ ରାସ୍ତାକୁ ଆସି ସମଗ୍ର କଲିକତା ସହରରେ କାର୍ଯ୍ୟରତ ଓଡିଆ ଶ୍ରମିକ ମାନଙ୍କୁ ଏକାଠି କରି ବିରାଟ ସଭା କରିଥିଲେ । ଏହାପରେ ନିଜେ ମହତ୍ମା ଗାନ୍ଧି ନିରଞ୍ଜନ ବାବୁଙ୍କୁ ଡାକି ଆଲୋଚନା କରିବା ସଂଗେ ସଂଗେ ଓଡିଶାର ଦାବିକୁ ଗ୍ରହଣ କରିନେଇଥିଲେ । ସେ ଦେଶର ସର୍ବମାନ୍ୟ କଂଗ୍ରେସ ନାରୀ ନେତ୍ରୀ ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକଙ୍କର ପିତା ଏବଂ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଶ୍ୱଶୁର ଅଟନ୍ତି । ସେ ଗାନ୍ଧିଜୀଙ୍କୁ ନିମନ୍ତ୍ରଣ କରି ବୋଲଗଡ ଆଣିଥିଲେ । ଗାନ୍ଧିଜୀ ଗଂଜାମ ଗସ୍ତ ଶେଷ କରି ୧୯୨୭ ମସିହା ଡିସେମ୍ବର ମାସ ୯ ତାରିଖ ବୁଧବାର ଦିନ ସଂଧ୍ୟାରେ ବୋଲଗଡ ଠାରେ ପହଞ୍ଚିଥିଲେ । ତାଙ୍କ ସହ ନିରଞ୍ଜନ ବାବୁ ଓ ଅନ୍ୟ ସହକର୍ମୀ ସ୍ଥାନୀୟ ଚରଖା ସଂଘ କାର୍ଯ୍ୟାଳୟରେ ପହଞ୍ଚିଥିଲେ । ମାତ୍ର ୮୦ ଜଣ ସ୍ଥାନୀୟ ଲୋକ ତାଙ୍କୁ ଉପସ୍ଥିତ ରହି ସ୍ୱାଗତ ଜଣାଇଥିଲେ । ଗାନ୍ଧିଜୀଙ୍କୁ ଜ୍ୱର ହେବାରୁ ସେ ସ୍ଥାନୀୟ ଡାକ ବଙ୍ଗଳାରେ ୯,୧୦ ଏବଂ ୧୧ ତାରିଖ ଏପରି ୩ ଦିନ ଅବସ୍ଥାନ କରି ୧୨ ତାରିଖରେ ବେଗୁନିଆଁରେ ଏକ ସଭାକରି ୧୨ ତାରିଖ ଦିନ ଖୋରଧା ଦେଇ ଜଟଣୀରେ ପହଞ୍ଚିଲେ । ସେଠାରୁ ରେଳ ଯୋଗେ ପୁରୀ ଯାଇଥିଲେ । ବୋଲଗଡଠାରେ ତାଙ୍କର ସ୍ମରଣୀୟ ରହଣି ବିଷୟ ଜାତି ଇତିହାସରେ ଏକ ଯୁଗାନ୍ତକାରୀ ଅଧ୍ୟାୟ ହୋଇ ରହିଅଛି । ଏଠାରୁ ଗାନ୍ଧିଜୀ ଚକ୍ରବର୍ତ୍ତୀ

ରାଜଗୋପାଳଚାରୀ ଏବଂ ଶ୍ରୀ ପ୍ରକାଶଙ୍କୁ ପତ୍ର ଲେଖିଥିବା କଥା ଆତ୍ମଜୀବନୀରେ ଲିପିବଦ୍ଧ ହୋଇଅଛି । ସେ ଡିସେମ୍ବର ୧୦ ତାରିଖ ଦିନ ସକାଳ ପ୍ରାତଃ ଭ୍ରମଣରେ ନିକଟସ୍ଥ ବୃଡା ଗ୍ରାମକୁ ବୁଲିବାକୁ ଯାଇଥିଲେ । ବୃଡା ଗ୍ରାମରେ ହିନ୍ଦୁ ମୁସଲମାନ ମାନେ ମିଳିମିଶି ଚଳୁଥିବାରୁ ତାର ଉଚ୍ଚ ପ୍ରଶଂସା କରିଥିଲେ । ୧୧ ତାରିଖ ଦିନ ମଧ୍ୟାହ୍ନରେ ଏକ ହରିଜନ ଲୋକ ତାଙ୍କ ଦର୍ଶନ ପାଇଁ ଆସିଥିଲା ବେଳେ ତାଙ୍କ ବ୍ୟକ୍ତିଗତ ସହାୟକ ମହାଦେବ ଦେଶାଇଙ୍କ ସହାୟତାରେ ଉକ୍ତ ହରିଜନ ଲୋକ ସହ ଅନ୍ତରଙ୍ଗ ଆଲୋଚନା କରିଥିଲେ । ଯାହା ସେ ନିଜେ 'ଆମର ଲଜ୍ଜା ଓ ସେମାନଙ୍କର ଲଜ୍ଜା' ଶିର୍ଷକ ଲେଖା ସେହି ବର୍ଷ ଡିସେମ୍ବର ୨୨ ତାରିଖରେ 'ୟଙ୍ଗ ଇଣ୍ଡିଆ' ରେ ପ୍ରକାଶ କରିଥିଲେ । ଏହି ଲେଖାରେ ତାଙ୍କର ଅନ୍ତରାତ୍ମାର ବେଦନା କିପରି କୁହୁଳୁଥିଲା ତାହା ସେତେବେଳେ ସମଗ୍ର ଦେଶରେ ଚହଳ ପକାଇଦେଇଥିଲା । ସେତେବେଳେ ଗାନ୍ଧୀଜିଙ୍କୁ ଦେଖିଥିବା ଏକ ମାତ୍ର ବୟସ୍କ ବ୍ୟକ୍ତି ଶ୍ରୀ ଅଗାଧୁ ଚୌଧୁରୀ (ବୁଲା) ଙ୍କର ନିକଟରେ ପରଲୋକ ହୋଇଅଛି ।

ଗାନ୍ଧିଜୀଙ୍କ ରହଣିବେଳର ୩ ଗୋଟି କଥା ଲେଖକ ଦିବ୍ୟସିଂହପୁର ଶାସନ ନିବାସୀ ସ୍ୱାଧୀନତା ସଂଗ୍ରାମୀ ୰ ଜୟକୃଷ୍ଣ ମିଶ୍ର ଏବଂ ବର୍ତ୍ତମାନ ଗାନ୍ଧୀବାଦୀ କର୍ମୀ ଶ୍ରୀ ରାଧାଚରଣ ରାଉତରାୟ ଏବଂ ଗଙ୍ଗାଧର ପାଇକରାୟଙ୍କ ଠାରୁ ଶୁଣିଥିଲେ । ତାହା ପାଠକ ମାନଙ୍କ କୌତୂହଳ ପାଇଁ ଏଠାରେ ପ୍ରକାଶ କରାଗଲା ।

-ଗାନ୍ଧିଜୀଙ୍କ ସହ ବୋଲଗଡକୁ ମହାଦେବ ଦେଶାଇ, ଡଃ. କୈଳାସ ନାଥ କାଟ୍ଜୁ, ମିରା ବେନ (ବ୍ରିଟିଶ ରାଜବଂଶର ରାଜକନ୍ୟା), ଦିନବଂଧୁ ଆଣ୍ଡ୍ରୁଜ ପ୍ରଭୃତି ଜାତୀୟସ୍ତରର ନେତୃମଣ୍ଡଳୀ ଆସିଥିଲେ । ମିରା ବେନଙ୍କ ସୂତା କଟା ଶିକ୍ଷା ପାଇଁ ଚରଖାର ଦରକାର ପଡିଲା । ଗାନ୍ଧିଜୀଙ୍କ କ୍ୟାମ୍ପରେ ଥିବା ସ୍ୱେଚ୍ଛାସେବୀଙ୍କ ମଧରେ ୰ ବଳଭଦ୍ର ସାହୁ ଥିଲେ । ଏକ ଚରଖା ଡାକବଙ୍ଗଳାରେ ପହଞ୍ଚାଇବା ପାଇଁ ଯୁବକ ବଳଭଦ୍ରଙ୍କୁ କୁହାଗଲା । ସେ ସଂଗେ ସଂଗେ ଡାକବଙ୍ଗଳାରୁ ଆସି ସ୍ଥାନୀୟ ଖଦୀ କେନ୍ଦ୍ରରୁ ଏକ ବଡ ଅରଟ (ମାଦଳା ଅରଟ) ମୁଣ୍ଡାଇ ଡାକବଙ୍ଗଳାକୁ ନେଇ ଗଲେ । ସେତେବେଳେ ଡାକବଙ୍ଗଳାକୁ ଯିବାର ମୁଖ୍ୟ ରାସ୍ତା ବୋଲଗଡ ଗ୍ରାମର ଫରେଷ୍ଟ ଅଫିସ ସାମାନାରେ ଥିଲା । ୰ ସାହୁ ଅରଟ ନେଇଗଲା ବେଳେ ବର୍ତ୍ତମାନ ଗ୍ରା.ପ. କାର୍ଯ୍ୟାଳୟ ପଛପାଖ ବଙ୍ଗଳାକୁ ଯିବା ରାସ୍ତାରେ ପୋଲିସ ଅଟକାଇଲେ । ଯୁବକ ବଳଭଦ୍ର ପୋଲିସକୁ ଏକ ଧକ୍କାମାରି ଆଗକୁ ଅଗ୍ରସର ହୋଇ କହିଲେ, ଯାଆ ଗାନ୍ଧିଙ୍କୁ ପଚାର, ମୋତେ ଅଟକାଉଛୁ କାହିଁକି ? ଏତିକିରେ ପୋଲିସ ଆଉ କିଛି କହି ନ ଥିଲେ । ତାପରେ ଏହି ଚରଖା ଡାକବଙ୍ଗଳାରେ ପହଞ୍ଚିବା ପରେ ମୀରା ବେନ ସୂତାକଟା ଶିକ୍ଷା କରିଥିଲେ । ଗାନ୍ଧିଜୀଙ୍କ ପ୍ରଭାବରେ କିପରି ନିର୍ଭୟର ବାତାବରଣ ଏ

ଅଞ୍ଚଳରେ ଖେଳିଯାଇଥିଲା ଏହା ତାହାର ଏକ ଜ୍ୱଳନ୍ତ ଉଦାହରଣ । ଏକଥା ସ୍ୱାଧୀନତା ସଂଗ୍ରାମୀ ୰ ଜୟକୃଷ୍ଣ ମିଶ୍ର ତାଙ୍କର ପୂର୍ବକଥା ସ୍ମୃତିଚାରଣ କଲାବେଳେ ତାଙ୍କଠାରୁ ଲେଖକ ଏକଥା ଶୁଣିଥିଲେ ।

ଡିସେମ୍ବର ୧୦ ତାରିଖ ଦିନ ବୃନ୍ଦା ଗ୍ରାମ ପରିଦର୍ଶନରେ ଗାନ୍ଧିଜୀ ଗଲାବେଳେ ସେତେବେଳେ ପରଦା ପ୍ରଥାର ପ୍ରଭାବ ସମାଜରେ ପ୍ରଚଳିତ ଥିବାରୁ ୰ ଘନ ସ୍ୱାଇଁଙ୍କ ଅଗଣାରେ ସ୍ତ୍ରୀ ଲୋକମାନଙ୍କର ମିଳିତ ସୂତାକଟା ଦେଖି ଗାନ୍ଧି ମୁଗ୍ଧ ହୋଇଯାଇଥିଲେ । ମୁସଲମାନ ବସ୍ତି ଦେଇ ଫେରିଲା ବେଳେ ମୁସଲମାନ ମହିଳା ମାନଙ୍କ ସୂତ୍ୟକଟା ଦେଖି ସେ ଆନନ୍ଦ ପ୍ରକାଶ କରିଥିଲେ । ଏହି ସୂତାକଟା ଚାଲିଥିଲା ବେଳେ ଗୋଟିଏ ଅରଟରୁ ହଠାତ୍ ମାଳଟିଏ ଛିଣ୍ଡିଗଲା । ସେଠାରେ ଉପସ୍ଥିତ ଥିବା ଯୁବ ଖଦୀ କର୍ମୀ ୰ ବାଇଧର ରାଉତରାୟ ମାଳକୁ ଯୋଡି ଅରଟ ଚଳାଇ ଦେଇଥିଲେ । ଏଥିରେ ଗାନ୍ଧୀ ଅତ୍ୟନ୍ତ ଖୁସୀ ହୋଇ 'ସାବାସ୍ ଲଡକା' ବୋଲି କହି ୰ ରାଉତରାୟଙ୍କ ପିଠିରେ ହାତମାରି ବାଃ ବାଃ କରିଥିଲେ । ଶ୍ରୀ ରାଧାଚରଣ ରାଉତରାୟ ତାଙ୍କ ପିତା ୰ ବାଇଧର ରାଉତରାୟଙ୍କ ସ୍ମୃତିଚାରଣ କଲାବେଳେ ଏହି କଥା କୁହନ୍ତି । ଏହି ସଭାରେ ୰ ଗଙ୍ଗାଧର ପାଇକରାୟ ୧୩ ବର୍ଷର ହୋଇଥିଲା ବେଳେ ତାଙ୍କର ବାପା ରାଜୀବ ପାଇକରାୟଙ୍କ ସହ ସାନପଦର ଗ୍ରାମରୁ ଆସି ଯୋଗଦେଇଥିଲେ । ଗାନ୍ଧିଜୀ ବୋଲଗଡ ସଭାରେ ଜନସାଧାରଣଙ୍କୁ ନିର୍ଭୟ ହେବା ପାଇଁ ଯେଉଁ ବାଣୀ ପ୍ରଚାର କରିଥିଲେ ତାର ପ୍ରଭାବ ଗଙ୍ଗାଧର ପାଇକରାୟଙ୍କ ଉପରେ ପଡିଥିବାର ଜଣାଯାଏ । ଯାହାଫଳରେ ଗଙ୍ଗାଧର ପାଇକରାୟ ପରବର୍ତ୍ତୀ ଜୀବନରେ ଜଣେ ନିର୍ଭୀକ ନେତା ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ରୟତ ମାନଙ୍କୁ ଗାନ୍ଧିଜୀ ଦେଇଥିବା ଉପଦେଶ ଗଙ୍ଗାଧର ପାଇକରାୟଙ୍କ ଉପରେ ପଡିଥିଲା ।

ଏଠାରେ ଗାନ୍ଧିଜୀଙ୍କୁ ୰ ହାବୁ ବାରିକ (ବୋଲଗଡ ବନ୍ଧ ସାହି) ପ୍ରତିଦିନ ଷ୍ୟୁର କରୁଥିଲେ । ଶ୍ରଦ୍ଧାରେ ଗାନ୍ଧୀଜୀ ହାବୁଙ୍କୁ ଏକ ଖଦୀ ଧୋତି ଏବଂ ଗାମୁଛା ଉପହାର ଦେଇଥିଲେ । ସେ ବହୁଦିନ ପର୍ଯ୍ୟନ୍ତ ତାହା ସାଇତି ରଖିଥିଲେ । ପ୍ରତ୍ୟେକ ଦିନ ଗାନ୍ଧିଜୀ ଛେଳୀ କ୍ଷିର ପିଉଥିଲେ । ଏଥିପାଇଁ ମାଣିକାଗୋଡା ଗ୍ରାମରୁ ସ୍ୱାଧୀନତା ସଂଗ୍ରାମୀ ଗୋଲାମ ମୁସ୍ତଫା ଦୁଇଟି ଦୁଧିଆଳି ଛେଳି ଆଣି ବଙ୍ଗଳାରେ ବାନ୍ଧିଥିଲେ । ଦିବ୍ୟସିଂହପୁର ଶାସନ ପଣ୍ଡିତ ଦାମୋଦର ମିଶ୍ର ଗାନ୍ଧିଜୀଙ୍କର ରହଣୀର ସମସ୍ତ ବ୍ୟବସ୍ଥା ବୁଝୁଥିଲେ । ଯେଉଁ ସବୁ ସ୍ୱେଚ୍ଛାସେବୀ ମାନେ ଗାନ୍ଧିଜୀ ଅବସ୍ଥାନ କଲାବେଳେ ଡାକବଙ୍ଗଳା ଦ୍ୱାରଦେଶରେ ଥିଲେ ତାର ମୁଖ୍ୟ ବୋଲଗଡ ଚୌଧୁରୀ ସାହିର ୰ ରାମଚନ୍ଦ୍ର ସାହୁ ଥିଲେ । ତାଙ୍କୁ ମିଳିଥିବା ବ୍ୟାଚ (ହୁଦା) ବହୁଦିନ ପର୍ଯ୍ୟନ୍ତ ସେ ସାଇତି ରଖିଥିବାର ଲେଖକ ଛାତ୍ରବସ୍ଥାରେ ୰ ସାହୁଙ୍କ ଦୋକାନରେ ଦେଖିଛନ୍ତି । ଏହି କଥା ସହ ଗାନ୍ଧିଜୀଙ୍କ

ବୋଲଗଡ ଠାରେ ରହଣି ବିଷୟରେ ସ୍ୱଲିଖିତ ତଥ୍ୟ ଏବଂ ତାଙ୍କ ସହ ପଦଯାତ୍ରାରେ ଥିବା କେତେକ ସହକର୍ମୀଙ୍କ ତଥ୍ୟ ଯାହା ଡଃ. ହରେକୃଷ୍ଣ ମହତାବ ଗତ ୧୯୬୯ ମସିହା ଗାନ୍ଧୀ ଜନ୍ମ ଶତବାର୍ଷିକୀ ଅବସରରେ 'ଗାନ୍ଧିଜୀ ଓ ଓଡିଶା' ପୁସ୍ତକରେ ରଚନା କରିଅଛନ୍ତି ତାହା ନିମ୍ନରେ ଦିଆଗଲା ।

-ଏହାଛଡା ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଗାନ୍ଧିବାଦୀ ନେତା ଓଡିଶାରେ ଗାନ୍ଧିଙ୍କ ଗସ୍ତ ସମୟରେ 'ସମାଜ' ଖବର କାଗଜ ତରଫରୁ ଗାନ୍ଧିଜୀଙ୍କ ସଂପର୍କରେ ତଥ୍ୟ ସଂଗ୍ରହ କରୁଥିବା ସାମ୍ୟାଦିକ ଏବଂ ଜ୍ଞାନ ମଣ୍ଡଳର ପ୍ରତିଷ୍ଠାତା ୰ ବିନୋଦ କାନୁନଗୋଙ୍କର ସୁପୁତ୍ର ପ୍ରାଧ୍ୟାପକ ପାବକ କାନୁନଗୋ 'ଓଡିଶା ଓ ଗାନ୍ଧି' ନାମରେ ଏକ ତଥ୍ୟ ସଂବଳିତ ଗ୍ରନ୍ଥ ଜ୍ଞାନ ମଣ୍ଡଳ ପ୍ରକାଶନ ତରଫରୁ ପ୍ରକାଶ କରିଛନ୍ତି । ଏହି ଦୁଇଟି ତଥ୍ୟ ଛଡା ଗାନ୍ଧିଜୀଙ୍କ ଜୀବନୀ ଲେଖକ ତେନ୍ଦୁଲକର ଲେଖାକୁ ଆଧାରକରି ସ୍ୱର୍ଗତ ଚିନ୍ତାମଣି ପାଣିଗ୍ରାହୀ ବହୁବାର ବୋଲଗଡରେ ଗାନ୍ଧିଜୀଙ୍କର ରହଣି ବିଷୟ ପ୍ରବନ୍ଧ ଲେଖିଛନ୍ତି । ସମସ୍ତ ଲେଖାର ମୌଳିକ ବିଷୟ ବସ୍ତୁ ଏକଥିବାରୁ ଡଃ. ହରେକୃଷ୍ଣ ମହତାବ ଏବଂ ପ୍ରାଧ୍ୟାପକ ପାବକ କାନୁନଗୋଙ୍କ ଲିଖିତ ତଥ୍ୟ ଏଠାରେ ସ୍ଥାନିତ ହେଲା ।

<u>ଗାନ୍ଧୀଜୀ ଓ ଓଡିଶା</u> (ଡଃ. ହରେକୃଷ୍ଣ ମହତାବ, ପୃଷ୍ଠା.- ୩୬-୪୧)

<u>ଆମର ଲଜ୍ଜା ଓ ସେମାନଙ୍କ ଲଜ୍ଜା</u>

ବିଳମ୍ବରେ ଓଡିଶାକୁ ଆସିଲି, ମାତ୍ର ଏଥରକାର ଓଡିଶା ଭ୍ରମଣ ଦୁଃଖ ଓ ଲଜ୍ଜାର ପାତ୍ର ପୂର୍ଣ୍ଣ କରିଦେଇଛି । ନିକଟବର୍ତ୍ତୀ ରେଲଷ୍ଟେସନ ଠାରୁ ଏକତ୍ରିଶ ମାଇଲରେ ଥିବା ବୋଲଗଡରେ ବସି ଦୀନବନ୍ଧୁ ଏଣ୍ଡ୍ରୁଜଙ୍କ ସହ ତା ୧୧ ରିଖ ଦିନ କଥା ହେବା ସମୟରେ, ଜଣେ ମଇଳା ଲୁଗା ଆଣ୍ଠୁ ପର୍ଯ୍ୟନ୍ତ ପିନ୍ଧିଛି, ଅଣ୍ଟା ନଗ୍ନ ଯାଇଛି, ନଙ୍ଗ ନଙ୍ଗ ଆମ ଆଗକୁ ଆସିଲା । କୁଟା ଖଣ୍ଡିଏ ଉଠାଇ ଦାନ୍ତରେ ଧରିଲା ଓ ପରେ ଲମ୍ବ ତମ୍ବ ହୋଇ ଗୋଡ ତଳେ ପଡିଗଲା । ତା'ପରେ ହାତ ଯୋଡି ପ୍ରଣାମ କଲା । କୁଟାଖଣ୍ଡକ ମୁହଁରୁ କାଢି ମୁଣ୍ଡରେ ଖୋସିଦେଲା ଏବଂ ଯିବାପାଇଁ ବାହାରିଲା । ଏ ଦୃଶ୍ୟ ଦେଖୁଥିବା ବେଳେ ମୁଁ ଦୁଃଖରେ ଛଟପଟ ହେଉଥାଏ । ଏ ଦୃଶ୍ୟ ଶେଷ ହେବାମାତ୍ରେ ମୁଁ ଜଣକୁ ଡାକି ପକାଇଲି ମୋ କଥା ବୁଝାଇ କହିବା ପାଇଁ । ତାପରେ ମୁଁ ଦଥା ଆରମ୍ଭ କଲି । ସେ ଲୋକଟି ଜଣେ ଅସ୍ପୃଶ୍ୟ ଜାତିର ଲୋକ, ଛଅ ମାଇଲ ଦୂରରେ ତାର ଘର । ଜାଳେଣି କାଠ ବୋଝେ ମୁଣ୍ଡରେ ନେଇ ବୋଲଗଡ ଆସିଥିଲା ବିକିବାପାଇଁ । ମୁଁ ଆସିବା ଶୁଣି ମୋତେ ଦେଖିବାପାଇଁ ଆସିଥିଲା । କୁଟା ଖଣ୍ଡକ କାହିଁକି ମୁହଁରେ ଦେଲା ପଚରା ଯିବାରୁ ସେ କହିଲା ମୋ ପ୍ରତି ସମ୍ମାନ ଦେଖାଇବା ପାଇଁ । ଲଜ୍ଜାରେ ମୁଁ ମୁଣ୍ଡ ତଳକୁ

କରିଦେଲି । ଏ ପ୍ରକାର ସମ୍ମାନର ମୂଲ୍ୟ ମୋ ପକ୍ଷରେ ସହ୍ୟ କରିବା କଠିନ ବୋଲି ମନେ ହେଲା । ମୋତେ ହିନ୍ଦୁ ଭାବରେ ଗଭୀର ଆଘାତ ଲାଗିଲା । ମୁଁ ତାକୁ କିଛି ଦେବାପାଇଁ କହିଲି । ସେ ତା'ର ଅଣ୍ଟିରେ ପଇସା ଖୋଜିଲା । 'ପଇସା ମୁଁ ମାଗୁ ନାହିଁ, ମୁଁ ଆଉ କିଛି ଭଲ ଜିନିଷ ମାଗୁଛି' ମୁଁ କହିଲି । ସେ କହିଲା 'ମୁଁ ଦେବି' ।

ମୁଁ ତା'ଠାରୁ ଜାଣିଥିଲି ଯେ ସେ ତାଡି ପିଏ ଓ ମଲା ପଶୁଙ୍କ ମାଂସ ଖାଏ, କାରଣ ଏହା ତାଙ୍କ ଜାତିରେ ପ୍ରଚଳନ ଅଛି ।

ମୁଁ ଯାହା ମାଗୁଛି ତାହା ଏହି "କଥା ଦେ, ଦୁନିଆର କୌଣସି ଲୋକପାଇଁ କେବେ ହେଲେ ଆଉ ମୁହଁରେ ତିରଣ ଧରିବୁ ନାହିଁ । ଏପରି କରିବା ମନୁଷ୍ୟ ପକ୍ଷରେ ସମ୍ମାନହାନୀଜନକ, ଆଉ ତାଡି ବା ମଦ ପିଇବୁ ନାହିଁ, ଆଉ କେବେ ମଲା ଜୀବଙ୍କ ମାଂସ ଖାଇବୁ ନାହିଁ, କାରଣ ଏହା ହିନ୍ଦୁ ଧର୍ମ ବିରୁଦ୍ଧ । କୌଣସି ସଭ୍ୟ ମଣିଷ ମଲା ଜୀବର ମାଂସ ଖାଏ ନାହିଁ ।"

ବିଚାରି କହିଲା -"ମୋତେ ଜାତିରୁ ଅଟକ କରିବେ ମୁଁ ତାଡି ନ ପିଇଲେ, ମଲା ଜୀବ ମାଂସ ନ ଖାଇଲେ ।"

"ଜାତିରୁ ଅଟକାନ୍ତୁ, ଦରକାର ପଡିଲେ ଗାଁ ଛାଡି ଚାଲିଯାଅ ।"

ଏହି ଦଳିତ ବିଚାରି ପ୍ରତିଶ୍ରୁତି ଦେଲା । ଯଦି ସେ ତା'ର ପ୍ରତିଶ୍ରୁତି ପାଳନ କରେ, ତେବେ ବଦାନ୍ୟ ଦେଶବାସୀ ମୋତେ ଯେଉଁ ଅର୍ଥ ଦାନ କରୁଛନ୍ତି ତା'ଠାରୁ ସେ ଦାନ ବେଶି ମୂଲ୍ୟବାନ ।

ଏହି ଅବିସ୍ମରଣୀୟ ଘଟଣା ମୋର ଦୁଃଖ ଓ ଲଜ୍ଜାର ଏକମାତ୍ର ଅଂଶ ନୁହେଁ । ୧୯୧୬ରେ ଚମ୍ପାରନ ଦିନଠାରୁ ଆଜି ସୁଦ୍ଧା ଏପରି ମରଣର ଶାନ୍ତି ମୁଁ ଆଉ ଦେଖି ନାହିଁ, ଯେପରି ବାଣପୁର ବାଟେ ଆସିବା ବେଳେ ରାଜନୈତିକ ଓଡିଶାରେ ଦେଖିଲି । ଚମ୍ପାରନ ଠାରୁ ଓଡିଶାର  ଶାନ୍ତି ଆହୁରି ଖରାପ ବୋଲି ମୋର ଆଶଙ୍କା । ଚମ୍ପାରନରେ କିଛି ଦିନ ରହିବା ପରେ ରୟତମାନଙ୍କର ଟିକିଏ ତେଜ ଆସିଲା । ଓଡିଶାର ରୟତ ମାନେ ଏତେ ଶୀଘ୍ର ଜାଗି ଉଠିବେ ନାହିଁ ବୋଲି ସନ୍ଦେହ ହେଉଛି । ମୁଁ ଶୁଣିଲି ଯେ ଜମିଦାର, ରାଜା ଓ ପୋଲିସ ମିଳିମିଶି ମୋ ପାଖକୁ ନ ଆସିବା ପାଇଁ ଲୋକଙ୍କୁ ଭୟ ଦେଖାଉଛନ୍ତି । ମୋର ଏକ ଆତ୍ମସନ୍ତୋଷ ଥିଲା ଯେ ରାଜା, ଜମିଦାର ଓ ତଳିଆ ପୋଲିସ କର୍ମଚାରୀ ମୋତେ ଅବିଶ୍ୱାସ ବା ଭୟ କରୁନାହାନ୍ତି । ଓଡିଶାର ଅଭିଜ୍ଞତା ମୋତେ ସଂଶୋଧନ କରିଛି । ଚାରିଆଡେ ଯିବା ପାଇଁ ମୋର ଶକ୍ତି ନଥିବାରୁ ମୁଁ ବନ୍ଧୁମାନଙ୍କୁ ଲୋକଙ୍କ ଭିତରକୁ ଯାଇ କାରଣ ଜାଣିବାପାଇଁ ପଠାଇଥିଲି । ସେମାନେ ଆସି ଖବର ଦେଇଛନ୍ତି ଯେ ଲୋକଙ୍କୁ କୁହାଯାଇଛି ଯେ ମୋ ନିକଟକୁ ଆସିଲେ ବା ମୋତେ ସମ୍ମାନ ଦେଖାଇବା ପାଇଁ ଶୋଭାଯାତ୍ରା କଲେ ସେମାନଙ୍କୁ ଦଣ୍ଡ ଦିଆଯିବ ।

ଏ ପ୍ରକାର ସତର୍କବାଣୀ ପୂର୍ବରୁ ଅନ୍ୟ ପ୍ରଦେଶ ମାନଙ୍କରେ ଦିଆହୋଇଛି । କିନ୍ତୁ ଆଜି ପରି ସାଧାରଣ ସମୟରେ ସେ କଥା କିଛି ପ୍ରଭାବ ପକାଇ ପାରିନାହିଁ । କିନ୍ତୁ ଓଡିଶାର ରୟତମାନେ ସର୍ବଦା ଭୟରେ ବାସ କରୁଛନ୍ତି ବୋଲି ମନେ ହୁଏ । ତେଣୁ ସାମାନ୍ୟ ଚେଷ୍ଟାରେ ସେମାନେ ଭୀତତ୍ରସ୍ତ ହୋଇଯାଉଛନ୍ତି ।

ଏହି ହେଉଛି ଲଜ୍ଜା ଯାହାର ଭାଗୀଦାର ଆମେ ଓ ବିଦେଶୀ ଶାସକ ଗୋଷ୍ଠୀ । ରାଜା, ଜମିଦାର ଓ ପୋଲିସ କର୍ମଚାରୀ ଆମର ଭାଇବନ୍ଧୁ । ଏହା ସତ୍ୟ । କିନ୍ତୁ  ଭୟର ମୂଳ ରହିଛି ଶାସକ ଗୋଷ୍ଠୀରେ । ସେମାନଙ୍କ ଶାସନ ଭୟ ଉପରେ ପ୍ରତିଷ୍ଠିତ । ସମ୍ମାନ ନାମରେ ସେମାନେ ଆମ ଭିତର ସର୍ବ ସମ୍ମାନିତ ବ୍ୟକ୍ତିଙ୍କୁ ମଧ ମୁଣ୍ଡ ନୁଆଁଇବାକୁ ଯେ କୌଣସି ଉପାୟରେ ବାଧ କରାଇଛନ୍ତି । ସେମାନେ ଭୟ ସୃଷ୍ଟି କରି ନଥିଲେ ମଧ ସେମାନେ ଭୟକୁ ଘନୀଭୂତ କରିଛନ୍ତି । ସେମାନେ ଜାଣନ୍ତି ଯେ, ରୟତମାନଙ୍କ ମଧ୍ୟରେ ହୀନ ଧରଣର ଭୟ ଅଛି । ସେ ଭୟକୁ ଦୂର କରିବା ପାଇଁ ଶାସକ ମାନେ କିଛି କରିନାହାନ୍ତି । ବରଂ ସେମାନଙ୍କ ଶାସନର ସ୍ୱାର୍ଥପାଇଁ ଭୟର ଅବସ୍ଥାକୁ ସ୍ୱାଗତ କରିଛନ୍ତି । ମୁଁ ଯେଉଁ କରୁଣ ଦୃଶ୍ୟମାନ ଦେଖିଲି ସେଥିପାଇଁ ଶାସକ ମାନେ ପ୍ରତ୍ୟକ୍ଷ ଭାବରେ ଦାୟୀ ନ ହେଲେ ମଧ ସେମାନେ ସେହି ଦାୟିତ୍ୱର ଭାଗୀଦାର ହେବାରୁ ମୁକ୍ତ ହୋଇପାରିବେ ନାହିଁ ।

କିନ୍ତୁ ଆମର ତ ଆହୁରି ବେଶି ଲଜ୍ଜା । ଆମେ ଯଦି ମଜବୁତ ଆତ୍ମସମ୍ମାନଶୀଳ ହୋଇଥାନ୍ତୁ ଓ ଭୟ ପ୍ରଦର୍ଶନରେ ଭୀତ ହେବାର ନହୋଇଥାନ୍ତୁ, ତେବେ ବିଦେଶୀ ଶାସକମାନଙ୍କର ଅନିଷ୍ଟ ସାଧନ କରିବାର ଶକ୍ତି ନ ଥାନ୍ତା । ଯେଉଁମାନେ ଭୀତ ହୁଅନ୍ତି, ସେହିମାନଙ୍କୁ ଅନ୍ୟମାନେ ଭୟ ଦେଖାନ୍ତି । ଏହା ମଧ ସ୍ୱୀକାର କରିବାକୁ ହେବ ଯେ, ବ୍ରିଟିଶ ଆସିବା ବହୁ ପୂର୍ବରୁ ରାଜା ଜମିଦାର ଭୟ ଦେଖାଇବାରେ ଆମେ ଅଭ୍ୟସ୍ତ ଥିଲୁ । ପୂର୍ବରୁ ସ୍ଥୂଳ ରୂପରେ ଯାହା ଥିଲା, ଆଜିର ଶାସକମାନେ ତାହାକୁ ହିଁ ବୈଜ୍ଞାନିକ ପ୍ରଣାଳୀରେ ପରିଣତ କରିଛନ୍ତି । ଓଡିଶାର କର୍ମୀମାନେ ରୟତମାନଙ୍କୁ କାପୁରୁଷତା ସୃଷ୍ଟି କରୁଥିବା ମନୋବୃତ୍ତି ଦୂର କରିବାକୁ ଶିକ୍ଷା ଦିଅନ୍ତୁ । ରାଜା ଜମିଦାର ପୋଲିସ-କର୍ମଚାରୀଙ୍କୁ ଗାଳିଦେଇ ଏ ଶିକ୍ଷା ସେମାନେ ଦେବେନାହିଁ । ଲୋକେ କାପୁରୁଷତା ଅଭ୍ୟାସ ଛାଡିଦେଲେ ଏହିମାନେ ପୁଣି ବିନମ୍ର ଓ ବନ୍ଧୁ ହୋଇଯିବେ ।

ଏହି ସମ୍ପର୍କରେ ମହାଦେବ ଦେଶାଇ 'ୟଙ୍ଗ ଇଣ୍ଡିଆ' ଡିସେମ୍ବର ତା୨୨ରିଖରେ ପୂର୍ଣ୍ଣ ବିବରଣୀ ଦେଇ ଲେଖିଛନ୍ତି -

<u>କବରର ଶାନ୍ତି</u>

ବୋଲଗଡରେ ଗାନ୍ଧିଜୀଙ୍କୁ ଟିକିଏ ବିଶ୍ରାମ ଦେବାପାଇଁ ସିଦ୍ଧାନ୍ତ କରି ଯେତେବେଳେ ସେଠାକୁ ବାହାରିଛୁଁ, ସେତିକିବେଳେ ବାଣପୁରରୁ ବନ୍ଧୁମାନେ ଆସି

କହିଲେ ଯେ ସେଠାରେ ପୋଲିସ ଲୋକଙ୍କୁ ଭୟ ଦେଖାଉଛନ୍ତି ଓ ଗାନ୍ଧୀ ସଭାକୁ ଗଲେ ନାନାପ୍ରକାର ଦଣ୍ଡ ଦିଆଯିବ ବୋଲି ଧମକାଉଛନ୍ତି ଏବଂ ଗାନ୍ଧିଜୀ ସେଠାକୁ ଯାଇ ଲୋକଙ୍କୁ ସାହସ ନ ଦେଲେ ଲୋକେ ଦବିଯିବେ । ଅନ୍ୟ ଉପାୟ ନଥିଲା । ଆମେ ଗଲୁ । ଗଞ୍ଜାମ ଜିଲ୍ଲାରେ ଆମେ ଓଡିଆମାନଙ୍କୁ ଦେଖିଲୁ । ସେଠାରେ ଜନତା ଗହଳକୁ ସମ୍ଭାଳିବା କଷ୍ଟକର ହେଉଥିଲା । ଚିତ୍କାର ଓ କୋଳାହଳ ଅସହନୀୟ ଥିଲା । ଏଠି ମଧ୍ୟ ସେହି ଓଡିଶା; କିନ୍ତୁ ଏମାନେ ଆଉ ଏକ ରାଜ୍ୟର ବୋଲି ମନେ ହେଲା । ବ୍ୟବସ୍ଥା ସଭାର ସଦସ୍ୟ ବାବୁ ଗୋଦାବରୀଶ ମିଶ୍ର ସଭାର ଆୟୋଜନ କରିଥିଲେ ଓ ମାନପତ୍ର ପାଠ କଲେ ; କିନ୍ତୁ ମାନପତ୍ରରେ ଯେଉଁ ଭାବମାନ ବ୍ୟକ୍ତ କରାଯାଇଥିଲା, ସେ ସବୁର ଉପଯୋଗୀ ବାୟୁମଣ୍ଡଳ ନଥିଲା । ଏପରିକି ସେହି ଭାବଗୁଡିକ ମଧ୍ୟ ଅସହାୟ ଭାବରୁ ମୁକ୍ତ ନଥିଲା । ଲୋକଙ୍କର ଜନ ନେତାଙ୍କ ଠାରୁ ଏ ପ୍ରକାର ଅସହାୟଭାବ ଶୁଣିବାକୁ କାହାରି ମନ ବଳିବ ନାହିଁ ।

ଗାନ୍ଧିଜୀ କହିଲେ -

"କାହିଁକି ତୁମେ ଭୟ କରୁଛ ? ଯେ କୌଣସି ଅପରାଧ କରିନାହିଁ ତାର କୌଣସି ଭୟ କରିବାର ନାହିଁ । ମନେରଖ, ଯଦି ତୁମେ ଭୀତ ହେବାକୁ ଅସ୍ୱୀକାର କର, ତୁମକୁ ଭୟ ଦେଖାଇବାକୁ କେହି ନଥିବେ । ଯା ହେଉ ପଛକେ, ପୋଲିସ ଲୋକ ଆମର ବନ୍ଧୁ-ବାନ୍ଧବ । ସେମାନେ ଯେତେବେଳେ ଭୟ ଦେଖାଇବାକୁ ଆସୁଛନ୍ତି ପଚାର ସେମାନଙ୍କୁ, ସେମାନେ ସେଥିରୁ କି ଲାଭ ପାଇବେ । ଯଦି ସେମାନେ ତୁମକୁ ଜେଲକୁ ନିଅନ୍ତି, ତୁମେ ବାଧା ଦିଅନାହିଁ । ଯଦି ସେମାନେ ତୁମକୁ ଗାଳି ଦିଅନ୍ତି, ତୁମେ ସେମାନଙ୍କୁ ଗାଳି ଦିଅନାହିଁ । ହସିକରି ତାକୁ ଉଡାଇଦିଅ । ଯଦି ସେମାନେ ତୁମକୁ ମାଡ ଦିଅନ୍ତି, ତୁମେ ମାଡ ବଦଳରେ ମାଡ ଦିଅନାହିଁ । ତୁମେ ଯାଇ ନିକଟରେ ଥିବା ଲୋକପ୍ରତିନିଧିଙ୍କୁ କହ । ମୁଁ ସାବଧାନ କରିଦେଉଛି, ଆଇନ ଅଦାଲତକୁ ଯାଅନାହିଁ । କାରଣ ଆମେ ପୋଲିସଙ୍କୁ ଦଣ୍ଡିତ ହେବା ଚାହୁଁନାହୁଁ । ଆମେ ଚାହୁଁ ସେମାନେ ଅନୁତାପ କରନ୍ତୁ । କିନ୍ତୁ ଯଦି ଭାବ ଯେ ମକଦ୍ଦମା କରିବାକୁ ହେବ, ତେବେ କରିପାର । କୌଣସି ଅବସ୍ଥାରେ ଦବିଯାଅ ନାହିଁ । କାରଣ ରୋଗଠାରୁ ଭୟ ଆହୁରି ମାରାତ୍ମକ । ଯେଉଁ ମନୁଷ୍ୟ ଅନ୍ୟ ଜଣେ ମନୁଷ୍ୟକୁ ଭୟ କରେ, ସେ ମନୁଷ୍ୟ ପଦବାଚ୍ୟ ନୁହେଁ । କେବଳ ଈଶ୍ୱରଙ୍କୁ ଭୟ କର । ମୁଁ ଏଠାରେ କାଲି ଦୁଇଟା ପର୍ଯ୍ୟନ୍ତ ଅଛି । ତୁମେ ଆସି କଅଣ କହିବାର ଅଛି, ମୋତେ କହିପାର ।"

କେହି ଆସିଲେ ନାହିଁ । ପରଦିନ ଆମେ ବୋଲଗଡ ଗଲୁଁ । ସେଠି ନିଖିଳ-ଭାରତ ଚରଖା ସଂଘର ଏକ ଉତ୍ପାଦନ କେନ୍ଦ୍ର ଅଛି । ସେଠାରେ ସେହି କବରର

ଶାନ୍ତି । ଲୋକ ଅଛନ୍ତି ମାତ୍ର କେହି ଗାନ୍ଧିଜୀଙ୍କ ପାଖକୁ ଆସିବାକୁ ସାହସ କରୁନାହାନ୍ତି । ଯେଉଁ ଜିଲ୍ଲାବୋର୍ଡ ଡାକବଙ୍ଗଳାରେ ଆମେ ରହିଲୁ, ତାକୁ ଭଡାରେ ପାଇବାପାଇଁ ମଧ ଅସୁବିଧା ହୋଇଥିଲା ବୋଲି ଶୁଣିଲୁ । ବାଣପୁରରେ ଶ୍ରୀ ଗୋଦାବରୀଶ ମିଶ୍ର କିଛି ପାଣ୍ଠି ସଂଗ୍ରହ କରିଥିଲେ । କିନ୍ତୁ ବୋଲଗଡରେ ପାଣ୍ଠି କଥା ଚିନ୍ତାର ବାହାରେ । ତଥାପି ଉଭୟ ସ୍ଥାନରେ ଆମେ କିଛି ସଂଗ୍ରହ କରିଥିଲୁ । ଲୋକ ମୁକ୍ତ ହସ୍ତରେ ତମ୍ବା ପଇସା ଦାନ କରିଥିଲେ । ବାଣପୁରରେ କନ୍ଧମାନେ ଓ ଅସ୍ପୃଶ୍ୟ ଜାତିର ଲୋକେ ଗାନ୍ଧିଜୀଙ୍କୁ କେତୋଟି ବୋଇତ କଖାରୁ ଓ ବାଇଗଣ ଉପହାର ଦେଇଥିଲେ । ସ୍ଥାନର ଦରିଦ୍ରତା ଏଥିରୁ ଜଣାପଡିବ ଯେ ନିଲାମରେ ଦୁଇଜଣ ମାତ୍ର ଗୋଟିଏ କଖାରୁ ବା ବାଇଗଣକୁ ଟଙ୍କାଟିଏ ଦେଇଥିଲେ । ଅନ୍ୟ ସବୁ ଦୁଇଅଣା ତିନିଅଣାରେ ଗଲା । ଏହାହିଁ ଏ ସବୁର ବଜାରଦର ।

************

## ଓଡିଶା ଓ ଗାନ୍ଧୀ

(ପ୍ରାଧାପକ ପାବକ କାନୁନଗୋ,
ଜ୍ଞାନମଣ୍ଡଳ ଫାଉଣ୍ଡେସନ, ପୃଷ୍ଠା.- ୧୦୧-୧୦୭)

ବାଣପୁରରେ ପହଞ୍ଚିଲେ -

ଡିସେମ୍ବର ୮ ତାରିଖ ଦିନ ବାପୁଜୀ ଛତ୍ରପୁରରୁ ଆସି ପୁରୀ ଜିଲ୍ଲାର ବାଣପୁରଠାରେ ପହଞ୍ଚିଲାବେଳକୁ ଏକାବେଳକେ କ୍ଳାନ୍ତ ହୋଇପଡିଥାନ୍ତି । ବିଶ୍ରାମ ନେବା ତାଙ୍କର ଖୁବ୍ ଦରକାର ଥାଏ । ତେଣୁ ଗସ୍ତର ବ୍ୟବସ୍ଥାପକ ମାନେ ବିଚାରିଲେ ଯେ ଯଦି ସଭାସମିତି ଆଦି କରିବା ଦ୍ୱାରା ମହାତ୍ମାଙ୍କ ସ୍ୱାସ୍ଥ୍ୟ ବିପନ୍ନ ହୁଏ ତେବେ ଆରମ୍ଭ ହୋଇଥିବା ଓଡିଶା ଗସ୍ତ ପୁରା ହୋଇପାରିବ ନାହିଁ । ତେଣୁ ସେମାନେ ସଭାସମିତି ପାଇଁ ବ୍ୟସ୍ତ ନହୋଇ ନିଜର ଉତ୍ସାହକୁ ଦବାଇ ରଖି ମହାତ୍ମାଙ୍କୁ ବିଶ୍ରାମ ଦେବା ପାଇଁ ସୁବିଧା ସୁଯୋଗ ଦେଲେ । ସଭାରେ ମାନପତ୍ର ଆଦି ପଢା ହେବାର ବ୍ୟବସ୍ଥା ଥାଏ । ଉଦ୍ୟୋକ୍ତା ମାନେ ଅଧିକ ସମୟ ନଷ୍ଟ ନକରିବା ଦୃଷ୍ଟିରୁ ଲିଖିତ ମାନପତ୍ର ପ୍ରକୃତରେ ନପଢି ପଢାଗଲା ବୋଲି ଘୋଷଣା କରିଦେଲେ । ତହୁଁ ଗାନ୍ଧୀଜୀ କୌତୁକରେ କହିଲେ - "ମାନପତ୍ର ପଢାଗଲା ବୋଲି ଧରିନିଆଗଲା - ମୋତେ ଖୁସି ଲାଗୁଛି । ବକ୍ତୃତା ଦିଆ ହୋଇଗଲା ବୋଲି ଭାବି ନିଅନ୍ତେ କି ଭଲ ହୁଅନ୍ତା, କିନ୍ତୁ ଥଳି ଭେଟି ଦିଆ ହୋଇଗଲା ବୋଲି ମନରେ ଭାବି ନେଲେ ଚଳିବ ନାହିଁ (I am glad the address has been taken as read, I wish the speech also as taken as made, though not the purse taken as given)

ବାଣପୁର ସଭାରେ ସଂକ୍ଷିପ୍ତ ଭାଷଣଟିଏ ଦେଇ ଗାନ୍ଧୀଜୀ କହିଲେ - "ଆପଣମାନଙ୍କ ଅଭିନନ୍ଦନ ଓ ଥଳି ଭେଟି ପାଇଁ ଧନ୍ୟବାଦ ଦେଉଛି । ଚିକିତ୍ସକମାନଙ୍କର ପରାମର୍ଶ ଯୋଗୁଁ ମୁଁ ଯେ ବାଣପୁର ଆସିପାରିବି - ଏ ଆଶା ଛାଡି ଦେଇଥିଲି । କିନ୍ତୁ ଯେତେବେଳେ ଶୁଣିଲି ଯେ ଯଦି ଲୋକମାନେ ସଭାକୁ ଆସିବେ ସେମାନଙ୍କ ଉପରେ ଘୋଡା ଚଢେଇ ଦିଆଯିବ ଓ ଗୁଳିକରି ଦିଆଯିବ ବୋଲି କହି ପୁଲିସ ସେମାନଙ୍କୁ ଡରାଉଛି, ସେତେବେଳେ ମୁଁ ସ୍ଥିର କରିଦେଲି ନିଶ୍ଚୟ ବାଣପୁର ଆସିବି" ।

<u>ସାହସୀ ହୁଅ -</u>

ଗାନ୍ଧିଜୀ ବାଣପୁରରୁ ଆସି ଡିସେମ୍ବର ୯ ତାରିଖ ଦିନ ବୋଲଗଡରେ ପହଞ୍ଚିଲେ । ଏଇଟି ଗୋଟିଏ ଚାଷୀ ବହୁଳ ଅଞ୍ଚଳ । ଦାରିଦ୍ର୍ୟ ତାହାର ଉତ୍କଟ ରୂପ ବୋଲଗଡରେ ଦେଖାଉଥାଏ । ବଡ ବଡ ଜମି ମାଲିକ ମାନେ ଗରିବ ଭୂମି ହୀନଙ୍କୁ ଶୋଷଣ କରୁଥାନ୍ତି । ୧୯୨୭ ବେଳକୁ ବୋଲଗଡ ଗୋଟିଏ ପ୍ରସିଦ୍ଧ ଖଦୀ ଉତ୍ପାଦନ କେନ୍ଦ୍ର ଭାବରେ ଜଣାଶୁଣା ହୋଇଯାଇଥାଏ । ସେଠାରେ ଅଖିଳ ଭାରତ ଚରଖା ସଂଘ (All India Spinners' Association) ଖଦୀ କାମ ଚଳାଉଥାନ୍ତି । ଏବେ ବି ସେ ଅଞ୍ଚଳରେ ଅଗଣିତ ନରନାରୀ ସୂତାକାଟି ନିଜର ଗୁଜୁରାଣ ମେଣ୍ଟାନ୍ତି । ବୋଲଗଡକୁ ଗୋଟିଏ ଖଦୀ ଅଞ୍ଚଳ ବୋଲି କହିଲେ କିଛି ଭୁଲ ହେବନାହିଁ । ସେହି ସମୟରେ ଗାନ୍ଧିଜୀ ସାମାନ୍ୟ ଅସୁସ୍ଥ ବୋଧ କରିବାରୁ ସେଠାରେ ୨ ଦିନ ବିଶ୍ରାମ କରିଥିଲେ । ସେ ଯେଉଁଠାକୁ ଯାଉଥାନ୍ତି ତାଙ୍କୁ ପାଣ୍ଠି ଦିଆଯାଉଥାଏ । ବାଣପୁରଠାରେ ଗୋଟିଏ ଅଳ୍ପ ଟଙ୍କାର ଥଳୀ ତାଙ୍କୁ ଅର୍ପିତ ହୋଇଥିଲା । କିନ୍ତୁ ବୋଲଗଡଠାରେ ପୁଲିସର ଡରରେ ଆଦୌ ଚାନ୍ଦା ଉଠିପାରିଲା ନାହିଁ । ତେଣୁ ବାପୁଜୀଙ୍କ ହାତରେ ଥଳୀ ଦିଆଯାଇପାରିଲା ନାହିଁ । ଗାନ୍ଧିଜୀତ ସଭାରେ ପଇସା ମାଗନ୍ତି । ସେଠାରେ ସାଧାରଣ ସଭାରେ ବହୁ ଗରିବ ଲୋକ ଅଧଲାଏ ପଇସାଟିଏ କରି ନିଃସଂକୋଚ ଭାବରେ ଗାନ୍ଧିଜୀଙ୍କ ହାତରେ ଦେଲେ । ଏପରିକି କେତେ ଆଦିବାସୀ ହରିଜନ ସାଧାରଣ ସଭାରେ କଖାରୁ, ବାଇଗଣ ଆଦି ଗାନ୍ଧିଜୀଙ୍କୁ ବଢାଇ ଦେଉଥାନ୍ତି ।

ବୋଲଗଡ ସାଧାରଣ ସଭାରେ ବାଣପୁର ପରି ଲୋକଙ୍କ ଭିତରୁ ଭୟ ଦୂର କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ସେ କହିଲେ -

ଭୟ ବସନ୍ତ, ହଇଜା, ମେଲେରିଆ ଭଳି ରୋଗ ଠାରୁ ଅଧିକ ମାରାତ୍ମକ । ରୋଗ ହେଲେତ ଶରୀରର କ୍ଷତି ହୁଏ । କିନ୍ତୁ ଭୟ ଆତ୍ମାକୁ ନଷ୍ଟ କରିଦିଏ । ଯେଉଁମାନେ ଭୟ କରୁଛନ୍ତି ସେମାନେ ଈଶ୍ୱରଙ୍କ ଠାରୁ ମଧ ଦୂରେଇ ଯିବେ । ଯିଏ ଭଗବତ ବିଶ୍ୱାସୀ,

ସେ ଅନ୍ୟ ମନୁଷ୍ୟଙ୍କୁ ଡରେ ନାହିଁ । ମୁଁ ଖବର ପାଇଛି ଯେ ପୁଲିସ ଓ ଅନ୍ୟମାନେ ଲୋକଙ୍କୁ ଭୟ ଦେଖାଇ କହୁଛନ୍ତି ଯେ ଯେଉଁମାନେ ମୋ ସଭାକୁ ଆସିବେ ସେମାନଙ୍କୁ ଗିରଫ କରି ନିଆଯିବ । ମୁଁ ଏପରି କିଛି କାରଣ ଦେଖୁନାହିଁ ଯେଉଁଥିପାଇଁ ସରକାର ଲୋକଙ୍କୁ ଗିରଫ କରିନେବ । ମୁଁ ସଂଗ୍ରହ କରୁଥିବା ପାଣ୍ଠିକୁ ଦାନ ନ କରିବା ପାଇଁ ସରକାରଙ୍କ ପକ୍ଷରୁ ଲୋକଙ୍କୁ କୁହାଯାଇନାହିଁ ବୋଲି ମୋର ବିଶ୍ୱାସ । ଓଡିଶାଟି ଗରିବ ରାଜ୍ୟ ହୋଇଥିବାରୁ ଜମିଦାର ଓ ସରକାରୀ ଅଫିସରମାନେ ସେମାନଙ୍କ ନିଜ ସ୍ୱାର୍ଥ ରକ୍ଷା ପାଇଁ ଲୋକଙ୍କୁ ଡରାଇ ରଖୁଛନ୍ତି । ବାଣପୁରରେ ଆସି ପହଞ୍ଚିବା ପରେ ସେଠାରେ ଯାହା ଘଟିଥିଲା ଏଠାରେ ସେହିପରି ଘଟୁଛି ବୋଲି ମୁଁ ଦେଖୁଛି । ମୋଠାରୁ ଲୋକଙ୍କୁ ଦୂରରେ ରଖିଲେ ବା ଖଦି କାମରେ ବାଧା ସୃଷ୍ଟି କଲେ ସରକାରଙ୍କର କଣ ଲାଭ ହେବ ମୁଁ ବୁଝି ପାରୁନାହିଁ । ଏକଥା ମୁଁ ଚିନ୍ତା କରିପାରୁନାହିଁ ଯେ ଜଣେ ଅନ୍ୟ ଉପରେ ଏପରି ଅତ୍ୟାଚାର କରିପାରେ । ସରଳ ଗରିବ ଲୋକଙ୍କ ପ୍ରତି ଏଭଳି ଆଚରଣ ଯୋଗୁଁ ମୁଁ ଲଜ୍ଜିତ । ମୁଁ ଆହୁରି ଅପମାନିତ ମନେ କରୁଛି ଯେ ବିଦେଶୀମାନେ ତ ଆମ ଉପରେ ଅତ୍ୟାଚାର କରୁଛନ୍ତି, ତାହା ସହିତ ଆମ ଦେଶର ଜମିଦାର ଓ ଅଫିସରମାନେ ଲୋକଙ୍କୁ ମଧ ଆତଙ୍କିତ କରୁଛନ୍ତି । ଯେଉଁମାନେ ଏପରି ଭୟର ଶିକାର ହୋଇଛନ୍ତି ସେମାନଙ୍କ ନାମ କହିଲେ ମୁଁ ସେମାନଙ୍କ ପାଖରେ ଯାଇ ପହଞ୍ଚିବି । ଏପରିକି ଦରକାର ପଡିଲେ ଆମେମାନେ ଜମିଦାରଙ୍କ ନିକଟକୁ ଯାଇ ସେମାନଙ୍କ ସହିତ ଏ ବିଷୟରେ ଆଲୋଚନା କରିବାକୁ ପ୍ରସ୍ତୁତ । ମଦଖିଆ, ଜୁଆଖେଳ ଓ ବେଶ୍ୟାଘରକୁ ଯିବା ଭଳି କୁଅଭ୍ୟାସ ତ୍ୟାଗ କରିବାକୁ ଗାନ୍ଧୀଜୀ ବୋଲଗଡ ସଭାରେ ଲୋକଙ୍କୁ ଅନୁରୋଧ କରିଥିଲେ । ଏହା ହୋଇପାରିଲେ ସେମାନଙ୍କର ଆତ୍ମା ପବିତ୍ର ହେବ ଓ ସେମାନଙ୍କଠାରେ ଈଶ୍ୱର ପ୍ରାପ୍ତି ହୋଇପାରିବ । ସେ ଶେଷରେ କହିଲେ - ଅବଶ୍ୟ ପାଣ୍ଠି ସଂଗ୍ରହ ପାଇଁ ମୁଁ ଓଡିଶାକୁ ଆସିନାହିଁ, କିନ୍ତୁ ଖାଦ୍ୟ ପାଇଁ ଲୋକଙ୍କୁ ଭିଖ ମାଗିବାକୁ ମୋ କୁଣ୍ଠା ନାହିଁ । ଈଶ୍ୱର ତୁମ୍ଭମାନଙ୍କୁ ଆଶୀର୍ବାଦ କରନ୍ତୁ ।

<u>ମୋ ପାଖରେ ଶପଥ କର -</u>

ବୋଲଗଡ ଠାରେ ସ୍ୱାସ୍ଥ୍ୟ କାରଣରୁ ଗାନ୍ଧୀଜୀ ଦୁଇ ତିନି ଦିନ ଅଟକି ଯିବା ଫଳରେ ବୋଲଗଡ ଓ ଆଖପାଖ ଅଞ୍ଚଳର ପରିସ୍ଥିତି ସମ୍ବନ୍ଧରେ ସେ ଯଥେଷ୍ଟ ଅଧ୍ୟୟନ କରିପାରିଥିଲେ । ସେଠାର ରୟତମାନଙ୍କ ଦୁର୍ଦ୍ଦଶା ସଂପର୍କରେ ଗୋଟିଏ ପ୍ରାଣସ୍ପର୍ଶୀ ଲେଖା ସେ ପ୍ରକାଶ କରିଥିଲେ । ଲେଖାଟି ଏହିପରି -

ବହୁଦିନରୁ ବାକି ଥିବା ମୋର ଓଡିଶା ଗସ୍ତ ଆରମ୍ଭ ହୋଇଯାଇଛି । ଏହା ଫଳରେ ମର୍ମନ୍ତୁଦ, ଦୁଃଖ ଓ ଅପମାନର ପିଆଲା ଭରିଗଲା । ବୋଲଗଡ ବୋଲି

ଗୋଟିଏ ଜାଗା, ନିକଟତମ ରେଳଷ୍ଟେସନ ଠାରୁ ୩୧ ମାଇଲ ଦୂର । ମୁଁ ସେଇଠାରେ ଏହି ଏଗାର ତାରିଖ (ଡିସେମ୍ବର ୧୯୨୭) ଦିନ ସକାଳେ ଦୀନବନ୍ଧୁ ଆଣ୍ଡ୍ରୁଜଙ୍କ ସହିତ ବସି ଆଲୋଚନା କରୁଥାଏ । ଏତିକିବେଳେ ଜଣେ ଲୋକ ଆସି ପହଞ୍ଚିଲା । ତାର ପିଠି କୁଜା ହୋଇଯାଇଛି ଓ କେବଳ ଖଣ୍ଡିଏ କୋଚଟ ମଇଳା ଆଣ୍ଠୁଲୁଚା ଲୁଗା ପିନ୍ଧିଛି । ସେ ଆସି ଆମ ସାମନାରେ ହଠାତ ନଇଁ ପଡିଲା । ଖଣ୍ଡିଏ କୁଟା ଉଠାଇ ଆଣି ତା' ଦାନ୍ତରେ ଦେଇ ସାଷ୍ଟାଙ୍ଗ ଭାବରେ ଲମ୍ବ ହୋଇ ତଳେ ଶୋଇପଡିଲା । ତହୁଁ ଉଠି ହାତ ଯୋଡି ମୁଣ୍ଡ ନୁଆଁଇ ପ୍ରଣାମ କଲା । କୁଟାଖଣ୍ଡକ ଦାନ୍ତରୁ କାଢି ମୁଣ୍ଡ ବାଳରେ ଖୋସିଦେଲା ଏବଂ ଯିବାପାଇଁ ବାହାରିଲା । ଏ ଦୃଶ୍ୟ ଦେଖୁଥିବା ବେଳେ ମୁଁ ଦୁଃଖରେ ଛଟପଟ ହେଉଥାଏ । ଏ ଦୃଶ୍ୟ ଶେଷ ହେବାମାତ୍ରେ ମୁଁ ଜଣକୁ ଡାକ ପକାଇଲି ମୋ କଥା ବୁଝାଇ କହିବା ପାଇଁ । ତାପରେ ମୁଁ କଥା ଆରମ୍ଭ କଲି । ସେ ଲୋକଟି ଜଣେ ଅସ୍ପୃଶ୍ୟ ଜାତିର ଲୋକ, ଛଅ ମାଇଲ ଦୂରରେ ତାର ଘର । ଜାଳେଣି କାଠ ବୋଝେ ମୁଣ୍ଡରେ ନେଇ ବୋଲଗଡ ଆସିଥିଲା ବିକିବାପାଇଁ । ମୁଁ ଆସିବା ଶୁଣି ମୋତେ ଦେଖିବାପାଇଁ ଆସିଥିଲା । କୁଟା ଖଣ୍ଡକ କାହିଁକି ମୁହଁରେ ଦେଲା ପଚରା ଯିବାରୁ ସେ କହିଲା ମୋ ପ୍ରତି ସମ୍ମାନ ଦେଖାଇବା ପାଇଁ । ଲଜ୍ଜାରେ ମୁଁ ମୁଣ୍ଡ ତଳକୁ କରିଦେଲି । ଏ ପ୍ରକାର ସମ୍ମାନର ମୂଲ୍ୟ ମୋ ପକ୍ଷରେ ସହ୍ୟ କରିବା କଠିନ ବୋଲି ମନେ ହେଲା । ମୋର ହିନ୍ଦୁ ଭାବରେ ଗଭୀର ଆଘାତ ଲାଗିଲା । ମୁଁ ତାକୁ କିଛି ଦେବାପାଇଁ କହିଲି । ସେ ତା'ର ଅଣ୍ଟିରେ ପଇସା ଖୋଜିଲା । ମୁଁ ତାକୁ କହିଲି - 'ପଇସା ମୁଁ ମାଗୁ ନାହିଁ, ମୁଁ ଆଉ କିଛି ଭଲ ଜିନିଷ ମାଗୁଛି' ମୁଁ କହିଲି । ସେ କହିଲା 'ମୁଁ ଦେବି' । ମୁଁ ଆଗରୁ ଜାଣିଥିଲି ଯେ ସେ ମଦ ପିଏ ଓ ପଚାସଡା ମାଂସ ଖାଏ, କାରଣ ଏହା ତାଙ୍କର ଚଳଣି ।

ତାକୁ କହିଲି, 'ମୁଁ ତୁମଠାରୁ ଏହି ଦାନ ଚାହେଁ ଯେ ଏହି ମହିମଣ୍ଡଳରେ ଯେକୌଣସି ଲୋକ ସାମନାରେ ତୁମେ ଏଣିକି ମୁହଁରେ କୁଟା ଦେବ ନାହିଁ । ଏହି ପ୍ରତିଜ୍ଞା କର । ଏହା ମଣିଷ ପକ୍ଷରେ ସମ୍ମାନଜନକ ନୁହେଁ । କାରଣ ତାହା ମଣିଷକୁ ପଶୁ ସମାନ କରିଦିଏ । ଆଉ ତୁମେ କଦାପି ପଚାସଡା ମାଂସ ଖାଇବ ନାହିଁ, କାରଣ ତାହା ହିନ୍ଦୁ ଧର୍ମର ନୀତି ବିରୁଦ୍ଧ । କେହି ହେଲେ ଜଣେ ସଭ୍ୟ ଲୋକ ତାହା ଖାଏ ନାହିଁ ।'

ମୋ କଥା ଶୁଣି ଗରିବ ଲୋକଟି କହିଲା - 'ମୁଁ ଯଦି ମଦ ନ ପିଇବି ଓ ମାଂସ ନ ଖାଇବି ତେବେ ମୋତେ ଜାତିରେ ବାସନ୍ଦ କରିବେ ।' ତୁମେ ସେଥିପାଇଁ ବାସନ୍ଦକୁ ସହିବ ଓ ଦରକାର ହେଲେ ଗାଁ ଛାଡିଦେବ । ଗରିବ ନିଷ୍ପେସିତ ଲୋକଟି ଶପଥ ନେଲା । ଯଦି ସେ ଏହି ଶପଥ ରକ୍ଷା କରେ ତାହା ଦ୍ୱାରା ସେ ଯେଉଁ ତ୍ରିବିଧ

ଦାନ ଦେବ ତାହା ଦେଶର ସହାନୁଭୂତିଶୀଳ ଲୋକେ ମୋତେ ଯେଉଁ ଟଙ୍କା ପଇସା ସମର୍ପି ଦେଉଛନ୍ତି ତାହାଠାରୁ ବହୁଗୁଣରେ ଅଧିକ ମୂଲ୍ୟବାନ ହେବ । ଏହି ଅସ୍ପୃଶ୍ୟତା ଆମର ସବୁଠାରୁ ବଡ କଳଙ୍କ ।

ଏହି ଘଟଣାଟିରୁ ଜଣାପଡୁଛି ଯେ, ଗାନ୍ଧିଜୀ କିପରି ସାଧାରଣ ଲୋକଠାରୁ ନିଜକୁ ଉପର ସ୍ତରକୁ ଉଠାଇ ନେଇ ବିଚାରିବା ଆରମ୍ଭ କରି ଦେଉ ନଥିଲେ ସେ କ'ଣ ବିଚାରୁଛି । ନିଜକୁ ତାହାରି ସ୍ଥାନରେ ରଖି ସେ ବିଚାରୁଥିଲେ । ତେଣୁ ତା' ମନକଥା ବୁଝିପାରୁଥିଲେ - ତାକୁ ଠିକ୍ ପରାମର୍ଶ ଦେଇ ପାରୁଥିଲେ । ସେଇଥିପାଇଁ ସାଧାରଣ ଲୋକ ସହିତ ସେ ନିଜକୁ ଖାପ ଖୁଆଇଦେଇ ପାରିଥିଲେ ।

ଏଠାରେ ତିନିବର୍ଷ ରହନ୍ତି କି ?

କିନ୍ତୁ ଏହି ଅଭୁଲା ଘଟଣାଟି ଦୁଃଖ ଓ ଲଜ୍ଜାର ଗୋଟିଏ ଅଂଶମାତ୍ର । ମୁଁ ବାଣପୁର ବାଟେ ମୋଗଲବନ୍ଦୀ ଓଡିଶାକୁ ପଶିଲାବେଳେ ଯେଉଁ ଶ୍ମଶାନର ଶାନ୍ତି ଦେଖିବାକୁ ପାଇଲି ୧୯୧୬ର ଚମ୍ପାରଣ ସତ୍ୟାଗ୍ରହ ପରଠାରୁ ସେପରି କୁତ୍ରାପି ଦେଖିବାକୁ ପାଇ ନ ଥିଲି । ଓଡିଶାର ସ୍ପନ୍ଦନହୀନତା ତ ଚମ୍ପାରଣ ଠାରୁ ସାଂଘାତିକ । ଚମ୍ପାରନର ଚାଷୀମାନଙ୍କ ଭିତରେ କିଛି ଦିନ ରହିଲା ପରେ ସେମାନଙ୍କ ଭିତରେ ଜାଗରଣ ଆସିଥିଲା । ଓଡିଶାର ଚାଷୀ ଯେ ଏତେ ଶୀଘ୍ର ଜବାବ ଦେଇପାରିବେ ସେଥିରେ ମୋର ସନ୍ଦେହ ହେଉଛି । ମୁଁ ଶୁଣିଲି ଓଡିଶାର ଜମିଦାର, ରାଜା ଓ ପୋଲିସ ମାନେ ମିଶିକରି ଲୋକଙ୍କୁ ମୋ ପାଖକୁ ନ ଆସିବା ପାଇଁ ଧମକାଇ ଷଡଯନ୍ତ୍ର କରୁଥିଲେ । ମୁଁ ମନେ ମନେ ବିଶ୍ୱାସ କରିନେଇଥିଲି ରାଜା, ଜମିଦାର, ପୋଲିସ ମାନେ ମୋତେ ଅବିଶ୍ୱାସ କରିବେ ନାହିଁ କିମ୍ବା ଡରିବେ ନାହିଁ । ଓଡିଶାର ଅଭିଜ୍ଞତା ମୋତେ ଶୁଦ୍ଧ କରିଦେଲା । ସେତେବେଳେ ମୁଁ ବେଶୀ ବୁଲିବା ପାଇଁ ଭାରୀ ଦୁର୍ବଳ ଥିବାରୁ ଲୋକମାନଙ୍କ ଭିତରକୁ ମୋର ବନ୍ଧୁ ମାନଙ୍କୁ ପଠାଇ ଏତେ ଅବିଶ୍ୱାସ ବା ଡରର କାରଣ ବୁଝୁଥିଲି । ସେମାନେ ଖବର ଆଣିଲେ ଯେ ଲୋକଙ୍କୁ ମୋ ପାଖକୁ ଆସିବା ପାଇଁ ଓ ମୋ ପାଇଁ ଯେଉଁ ସବୁ ସମ୍ମାନ ପ୍ରଦର୍ଶନର ଆୟୋଜନ କରାଯାଇଥିଲା ସେଥିରେ ଭାଗ ନେବା ପାଇଁ ମନା କରାଯାଇଥିଲା ଏବଂ ସେପରି କଲେ ମାଡ ବା ଅନ୍ୟ ଦଣ୍ଡ ଦିଆଯିବ । ବୋଲି ଡରାଇ ଦିଆଯାଇଥିଲା । ଅନ୍ୟ ପ୍ରଦେଶ ମାନଙ୍କରେ ଆମକୁ ସେହିପରି ଧମକ ଅନେକ ଥର ଦିଆଯାଇଛି । କିନ୍ତୁ ସାଧାରଣ ସମୟରେ ତାହାର ଫଳ କିଛି ହୋଇନାହିଁ । ମୋର ମନେ ହେଲା, ଓଡିଶାର ରୟତମାନେ ଏକ ଚିର ଭୟାତୁର ଅବସ୍ଥାରେ ରହିଛନ୍ତି ଏବଂ ଟିକିଏ ଏପଟ ସେପଟ ହେଲେ ଦଣ୍ଡ ଭୋଗୁଛନ୍ତି ।

ଏପରି ଅବସ୍ଥା ଦେଶବାସୀ ଆମ ପାଇଁ ଓ ଆମର ବିଦେଶୀ ଶାସକ ଉଭୟଙ୍କ ପାଇଁ ସମାନ ଭାବରେ ଲଜ୍ଜାକର । ହଁ ରାଜା, ଜମିଦାର ଓ ସରକାରୀ କର୍ମଚାରୀ ଏମାନେ ସମସ୍ତେ ଆମରି ନିଜର ଲୋକ କିନ୍ତୁ ଏହି ଡରର ମୂଳ ଆଧାର ହେଉଛି ଶାସକମାନଙ୍କ ଠାରେ । ଡରାଇ ଶାସିବାର ନୀତି ଏଠାରେ ଚାଳିଛି । ଆଦାବକାୟଦା ନାଁରେ ଆମ ଭିତରେ ଯିଏ ସବୁଠୁ ଉଚ୍ଚ ଲୋକ ତାଙ୍କୁ ମଧ ବାଧ୍ୟକରି ନୁଆଁଇ ଦେଇଛନ୍ତି । ସେମାନେ ଆମକୁ ଭୀରୁ କରିଦେଇଛନ୍ତି । ଚାଷୀ ମୂଲିଆଙ୍କ ଭିତରେ ଥିବା ଭୟ କଥା ସେମାନେ ଜାଣିଥିଲେ ମଧ ସେମାନେ ଏହାକୁ ବା ଏହାର କାରଣକୁ ଦୂର କରିବା ପାଇଁ କିଛି କରିନାହାନ୍ତି । ଯଦିଓ ମୁଁ ଯେଉଁ ଦୟନୀୟ ଦୃଶ୍ୟ ଦେଖିଲି ସେଥିପାଇଁ ସେମାନଙ୍କୁ ପ୍ରତ୍ୟକ୍ଷ ଭାବରେ ଦାୟୀ କରାଯାଇପାରିବ ନାହିଁ, ତଥାପି ସେମାନେ ଯେ ଏହି ଦୋଷରୁ ସଂପୂର୍ଣ୍ଣ ମୁକ୍ତ ଏକଥା କୁହାଯାଇ ପାରିବ ନାହିଁ ।

ଆମ ପାଇଁ ଏହା ଅତ୍ୟନ୍ତ ଲଜ୍ୟାକର । ଆମର ମନବଳ ଯଦି ଦୃଢ ଥାଏ, ଆମର ଯଦି ଆତ୍ମ ସମ୍ମାନ ଥାଆନ୍ତା ଓ ଆମେ ଡରକୁଳା ହୋଇ ନଥାନ୍ତୁ ବିଦେଶୀ ଶାସକ ମାନେ ଶକ୍ତିହୀନ ହୋଇପଡନ୍ତେ । ଯେଉଁମାନେ ଭୟପ୍ରଦର୍ଶନ ଦ୍ୱାରା ଡରିଯାନ୍ତି ସେମାନଙ୍କୁ ଡରାଇବା ସହଜ । ଏକଥା ଅବଶ୍ୟ ସ୍ୱୀକାର କରିବାକୁ ପଡିବ ଯେ ଇଂରେଜମାନେ ଏ ଦେଶକୁ ଆସିବାର ବହୁ ପୂର୍ବରୁ ଆମ ଲୋକେ ରାଜା ଜମିଦାରଙ୍କୁ ଭୟ କରୁଥିଲେ । ଅତୀତରେ ଯେଉଁଟା ଅସଂଗଠିତ ହୋଇଥିଲା ବର୍ତ୍ତମାନ ତାହାକୁ ଏକ ସଂଗଠିତ ରୂପରେ ଦେଖିବାକୁ ମିଳୁଛି । ତେଣୁ ରୟତମାନଙ୍କ ଭିତରୁ ଏହି ଭୟ ମିଶ୍ରିତ ଭୀରୁତାକୁ ଦୂରକରିବା ପାଇଁ ସେମାନଙ୍କ ନିକଟରେ ପହଞ୍ଚନ୍ତୁ । ଜମିଦାର, ରାଜା ବା ପୁଲିସ ଅଫିସରମାନଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ସେମାନେ ଏହା କରିପାରିବେ ନାହିଁ । ସେମାନେ ଯେତେବେଳେ ଦେଖିବେ ଯେ ରୟତମାନଙ୍କର ମନୋବଳ ବଢିଗଲାଣି ସେତେବେଳେ ସେମାନେ ନରମ ବ୍ୟବହାର ଦେଖାଇବେ । ମୋର ତ ଇଚ୍ଛା ହେଉଛି ଏଠାରେ ତିନିଦିନ ବା ତିନିମାସ ନରହି ତିନିବର୍ଷ ରହିବାକୁ ।

ଏହାପରେ ମହାଦେବ ଦେଶାଇ ଓ ଅନ୍ୟ କର୍ମୀମାନେ ଆଖପାଖ କୋଡୋଟି ଗ୍ରାମକୁ ଯାଇ ଲୋକଙ୍କ ସହିତ ମିଳାମିଶା କରିଥିଲେ । ସେମାନେ ଅନୁଭବ କଲେ ଯେ ସବୁଠାରେ ଭୟ ଓ ଦାରିଦ୍ର୍ୟ ପୂରି ରହିଛି । ସେହି ଅନୁଭୂତି ସଂପର୍କରେ ମହାଦେବ ଲେଖିଥିଲେ -

ସର୍ବତ୍ର 'ଶୋଇଲା କୁକୁର ପଡିଥାଉ'- ଏହି ଭାବ ଭୟରୁ ହିଁ ଏହା ଜାତ । ଅସଲ ରୋଗ ହେଉଛି ଭୟ । କର୍ଜନ (ଭାରତର ଭାଇସରାୟ) ଭାରତୀୟଙ୍କୁ ତାରିଫ କରି କହିଥିଲେ ଯେ ସେମାନେ ଆନ୍ଦୋଳନ କରନ୍ତି ନାହିଁ । ଏଥିରେ ବିସ୍ମିତ ହେବାର କିଛି ନାହିଁ । ଶାସକମାନଙ୍କର ଆଉ ଜଣେ ପ୍ରବକ୍ତା ଏମାନଙ୍କୁ 'ଆଇନ ମାନୁଥିବା

ଲୋକ, ଆପତ୍ତି ଅଭିଯୋଗ କରନ୍ତି ନାହିଁ କିମ୍ବା ଶାନ୍ତି ଭଙ୍ଗ କରନ୍ତି ନାହିଁ ' ବୋଲି ବର୍ଣ୍ଣନା କରିଛନ୍ତି । ସବୁ ଓଡିଆ ଭାଷାଭାଷୀ ଅଞ୍ଚଳକୁ ଗୋଟିଏ ଶାସନ ଅଧୀନରେ ରଖିବା ପାଇଁ ଯେଉଁ ଦାବୀ ହେଉଛି ସେଥିରେ କାହାର କିଛି ଆପତ୍ତି କରିବାର ନାହିଁ । ଆନ୍ଦୋଳନକାରୀଙ୍କ ଦ୍ୱାରା ବଙ୍ଗ ବିଚ୍ଛେଦ ରଦ ହେଲା, କିନ୍ତୁ ଆନ୍ଦୋଳନ କରୁ ନ ଥିବା ଓଡିଆଙ୍କ ଚିତ୍କାର କାହାରି କାନରେ ପଡିଲା ନାହିଁ । ଆଣ୍ଡ୍ରୁଜ କହିଛନ୍ତି ଯେ, ଗୁଜରାଟରେ ବହୁ କର୍ମୀ ଓ ବିପୁଳ ଶକ୍ତି ଥିବାରୁ ସେଠାରେ ଏପରି ଆନ୍ଦୋଳନ ହେଲା ଯେ, ସେଠା ବିପଦ ପ୍ରତି ସରକାର ତଥା ସାରା ଦେଶର ଦୃଷ୍ଟି ପଡିଲା ଓ ବନ୍ୟା ସାହାଯ୍ୟ ପାଇଁ ଦୁଇ କୋଟିରୁ ଊର୍ଦ୍ଧ୍ୱ ଟଙ୍କା ମିଳିଲା । ଓଡିଶାର ଦୁର୍ଦ୍ଦଶା ଗୁଜରାଟର ଦୁର୍ଦ୍ଦଶା ଠାରୁ ତିନିଭାଗରୁ ଭାଗେ ଠାରୁ କମ୍ ନଥିଲେ ସୁଦ୍ଧା ଓଡିଶାକୁ ମିଳିଲା ମାତ୍ର ପାଞ୍ଚଲକ୍ଷ ଟଙ୍କା । ନିଜକୁ ସାହାଯ୍ୟ କରିବାର ଶକ୍ତିର ଏକାନ୍ତ ଅଭାବ, ଉତ୍ସାହର ଏକାନ୍ତ ଅଭାବ ଓ କର୍ମୀଙ୍କ ଅଭାବ - ଏସବୁ ହେଉଛି ଭୟର ପରିଣାମ । ବିଦେଶୀ ଶାସନରେ ଲୋକଙ୍କୁ ହୀନବୀର୍ଯ୍ୟ କରିବା ନୀତିର ଫଳ ହେଉଛି ଭୟ - ଏହାହିଁ ହେଉଛି ଓଡିଶାର ବ୍ୟାଧି । ଏ ରୋଗ ବନ୍ୟା ବା ଦୁର୍ଭିକ୍ଷ ଠାରୁ ଆହୁରି ମାରାତ୍ମକ । ବୋଲଗଡରେ ଗାନ୍ଧୀଜୀ କହିଲେ - ମ୍ୟାଲେରିଆ ବା କାଲାଜର ଠାରୁ ବଳି ଭୟର ରୋଗ । ମାଲେରିଆ ବା କାଲାଜର ଶରୀରକୁ ନାଶକରେ, କିନ୍ତୁ ଭୟ ଆତ୍ମାକୁ ମାରିଦିଏ । ଭୟଗ୍ରସ୍ତ ମନୁଷ୍ୟ କେବେ ଈଶ୍ୱରଙ୍କୁ ଜାଣିପାରିବ ନାହିଁ । ଯେ ଈଶ୍ୱରଙ୍କୁ ଜଣେ ସେ ଛାର ମନୁଷ୍ୟକୁ ଭୟ କରିବ ନାହିଁ । ତୁମର ବଞ୍ଚିରହିବାଟାକୁ ଯେଉଁ ଭୟ ବିପଦ ଭିତରକୁ ଟାଣି ନେଉଛି ତାକୁ ପରିତ୍ୟାଗ କର । ମହାଦେବ ଦେଶାଇ ଶେଷରେ ଲେଖିଥିଲେ - ହୃଦୟର ବେଦନା ପ୍ରସୂତ କଥା ସବୁ ଶୂନ୍ୟରେ ଉଡିଗଲା ପରି ମୋର ଆଶଙ୍କା ହେଲା । ଦିନେ ବା ଦୁଇ ଦିନରେ ଏ ଲୋକଙ୍କ ପାଇଁ କିଛି କରି ହେବ ନାହିଁ । ଗାନ୍ଧୀଜୀ କହିଲେ - 'ଏଠି ତିନିଦିନ ନୁହେଁ, ତିନିମାସ ନୁହେଁ, ତିନିବର୍ଷ ମୁଁ ରହିବି ।'

<u>ରାଜଗୋପାଳଚାରୀଙ୍କୁ ପତ୍ର</u>

ବୋଲଗଡରେ ବିଶ୍ରାମ ନେଉଥିଲାବେଳେ ଗାନ୍ଧୀଜୀ ଚକ୍ରବର୍ତ୍ତୀ ରାଜଗୋପାଳଚାରୀଙ୍କୁ ଡିସେମ୍ବର ୧୦ ତାରିଖ ଦିନ ଖଣ୍ଡିଏ ଚିଠି ଲେଖି ନିଜର ସ୍ୱାସ୍ଥ୍ୟବସ୍ଥା ସଂପର୍କରେ ଜଣାଇ ଥିଲେ । ସେ ଲେଖିଥିଲେ -

ତୁମେ ଜାଣି ବିସ୍ମିତ ହେବ ଯେ ମୁଁ ଗୋଟିଏ ଛୋଟ ସୁନ୍ଦର ଗାଁରେ ତିନିଦିନ କାଳ ନିରୋଳାରେ ବିଶ୍ରାମ ନେଇ ପାରିଲି । ଏଠାକୁ ଆସିବା ପୂର୍ବରୁ ଗଞ୍ଜାମ ଗ୍ରସ୍ତକ୍ରମ ସୁରୁଖୁରୁରେ ଶେଷ ହେଲା ନାହିଁ - ଏପରିକି ସିଂହଳ କାର୍ଯ୍ୟକ୍ରମ ଠାରୁ ଏହ ଅଧିକ ଖରାପ । ଅବଶ୍ୟ ସେଠାରେ କୋଡିଏ ହଜାର ଟଙ୍କା ଚାନ୍ଦା ମିଳିଥିଲା । ଜଣେ ଡାକ୍ତର

ଆସି ମୋର ରକ୍ତ ଚାପ ମାପିଲେ । ତୁମେ ରକ୍ତଚାପ ମାପିବାକୁ ଯେଉଁଭଳି ବ୍ୟବସ୍ଥା କରିଥିଲ ନିରଞ୍ଜନ ବାବୁ ମଧ୍ୟ ଠିକ୍ ସେହିପରି କରିଥିଲେ । ଡାକ୍ତର ଯେତେବେଳେ ଦେଖିଲେ ଯେ ରକ୍ତଚାପ ୧୯୦ କୁ ଉଠିଲାଣି ସେତେବେଳେ ସେ (ନିରଞ୍ଜନ ବାବୁ) ଏକଦମ ଡରିଗଲେ ଓ ସବୁ କାର୍ଯ୍ୟକ୍ରମକୁ ଏପାଖ ସେପାଖ କରାଗଲା । ତେଣୁ ମୋତେ ବିଶ୍ରାମ ନେବାକୁ ହେଲା । ବ୍ୟକ୍ତିଗତ ଭାବରେ ଡାକ୍ତରଙ୍କ କଥା ବିଶ୍ୱାସ କରିବାକୁ ମୁଁ ପ୍ରସ୍ତୁତ ନ ଥିଲି । କିନ୍ତୁ ଏହା ଭୁଲ ହେଲେ ମଧ ଏହା ଦ୍ୱାରା ଭଲ ହେଲା । ଆଜି କଟକରୁ ଜଣେ ନୂଆ ଡାକ୍ତର ଆସିଥିଲେ । ରକ୍ତଚାପ ୧୫୫ ରୁ ୧୬୦ ପର୍ଯ୍ୟନ୍ତ ଥିବାର ସେ ଦେଖିଲେ । ମହାଦେବ ଓ ପ୍ୟାରେଲାଲ କହିଲେ ଯେ ଏହା ୧୬୫ ରେ ରହିଛି । ଏହି ମାପ ଯଦି ଠିକ୍ ହୋଇଥାଏ ତେବେ ପୂର୍ବରୁ ରକ୍ତଚାପ ସଙ୍ଗେ ଏହା ସମାନ । ଏଥିପାଇଁ ବ୍ୟସ୍ତ ହେବାର କିଛି ନାହିଁ ।

ଡିସେମ୍ବର ୧୧ ତାରିଖ ଦିନ ବୋଲଗଡରୁ ଗାନ୍ଧୀଜୀ ଶ୍ରୀ ପ୍ରକାଶଙ୍କ ନିକଟକୁ ଖଣ୍ଡିଏ ଚିଠି ଲେଖି ଉତ୍କଳର ଏକ ଅଜଣା ଗାଁରେ ବାଧ୍ୟ-ବିଶ୍ରାମ ନେଉଥିବାରୁ ସେ ତାଙ୍କର ବାକିକାମତକ କିପରି ଶେଷ କରିଦେଉଛନ୍ତି ତାହାର ଉଲ୍ଲେଖ କରିଥିଲେ ।

ଉତ୍କଳ ମହିଳାମାନଙ୍କର କରୁଣ ଚିତ୍ର

ଡିସେମ୍ବର ୧୨ ତାରିଖଟି ଥିଲା ମୌନବାର । ସେହିଦିନ ବୋଲଗଡରୁ ଆଶ୍ରମର ଭଉଣୀମାନଙ୍କ ଉଦ୍ଦେଶ୍ୟରେ ଗାନ୍ଧୀଜୀ ଲେଖିଥିଲେ -

ମୋ ଚାରି ପାଖରେ ଗଭୀର ବିଜନତା ବିରାଜୁଛି । କିନ୍ତୁ ଏହା ହେଉଛି ଗୋଟିଏ କୋଠରୀର ନିର୍ଜନତା । ଏଠା ଲୋକଙ୍କର ଅବସ୍ଥା ଦେଖି ମୋ ହୃଦୟ ଜର୍ଜରିତ ହୋଇ ଯାଉଛି ଏବଂ ମୋର ଇଛା ହେଉଛି ଏଠାରେ ଆହୁରି ଅନେକ ଦିନ ରହନ୍ତି କି ? ତୁମମାନଙ୍କ ଭିତରୁ ଯଦି କେହି ଏଠାକୁ ଆସିବାକୁ ଆଗ୍ରହୀ ତେବେ ମୁଁ ତାଙ୍କୁ ଏଠାକୁ ଡାକିବି । ଏଠାରେ ସ୍ତ୍ରୀ ଲୋକମାନେ ପରଦାସୀନ । ଲୋକଙ୍କର ନା ଅଛି ପୂରା ପରିଧାନ ନା ଅଛି ଖାଦ୍ୟ । ମୁଁ ଓଡିଶାରେ ପ୍ରବେଶ କରିବାର ଠିକ୍ ପୂର୍ବରୁ ମୀରାବେନ୍ କହିଲେ ଯେ ଆମେ ଆହୁରି କମ ଲୁଗାରେ କାମ ଚଳାଇ ନେବା ଉଚିତ । ମୋତେ ଏକଥା ଶୁଣି ବଡ ଅଡୁଆ ଲାଗିଲା । ଏଠାକାର ବ୍ୟବସ୍ଥା ନିଜେ ଦେଖିଲାପରେ ଭାବୁଛି ସେ ଯାହା କହିଥିଲେ ଠିକ୍ । ସ୍ତ୍ରୀ ଲୋକମାନେ ମାତ୍ର ଖଣ୍ଡିଏ ଲୁଗା ପିନ୍ଧନ୍ତି - ଅଧା ଅଣ୍ଟାରେ ରହେ, ଆଉ ଅଧେକ ଦେହର ଉପର ଅଂଶରେ । କ୍ଷୀର ବା ଘିଅ ସେମାନଙ୍କ ପାଇଁ ସ୍ୱପ୍ନ । ସେମାନେ ଭୀତତ୍ରସ୍ତ ଅବସ୍ଥାରେ ଅଛନ୍ତି । ପୁଲିସ ଭୟରେ ସେମାନେ ମୋ ପାଖକୁ ଆସିବାକୁ ମଧ୍ୟ ଡରୁଛନ୍ତି । ମୁଁ ମୀରାବେନଙ୍କୁ ଜଣକ ଘରେ ଛାଡିଦେଇ ଆସିଥିଲି । ସଂଗେ ସଂଗେ ପ୍ରାୟ ପଚାଶ ଜଣ ମହିଳା ଘେରି ଯାଇ ତାଙ୍କ ଠାରୁ ନାନା

କଥା ଜାଣିବାକୁ ଚାହିଁଲେ । ତୁମମାନଙ୍କ ଭିତରୁ ଯଦି ଏହି ମହିଳା ମାନଙ୍କ ଭିତରେ କାମ କରିବାକୁ କିଏ ଆଗ୍ରହୀ ତେବେ ସେ ବହୁତ କିଛି କରିପାରିବ ବୋଲି ମୁଁ ଭାବୁଛି ।

ଗାନ୍ଧିଜୀଙ୍କ ବୋଲଗଡରେ ଅବସ୍ଥାନ ସମ୍ପର୍କରେ ଭାରତ ସରକାରଙ୍କର **Ministry of Information & Boardcasting, Govt. of india, New Delhi** (ସୂଚନା ପ୍ରସାରଣ) ବିଭାଗ **(Publication Division)** ଦ୍ୱାରା ସଙ୍କଳନ **The collected works of Mahatma Gandhi (Volume - Thirty Five)(Sept, 1927- Jan, 1928)** ବହିର ବିଷୟ ବସ୍ତୁ ନିମ୍ନରେ ଦିଆଗଲା । ବୋଲଗଡ ଠାରେ ଅବସ୍ଥାନ ସମୟରେ ଗାନ୍ଧୀଜୀ ବିଭିନ୍ନ ନେତୃବର୍ଗ ଏବଂ ଆଶ୍ରମ ଅନ୍ତେବାସିନୀ ମହିଳା ମାନଙ୍କ ଉଦ୍ଦେଶ୍ୟରେ ଲେଖିଥିବା କେତେକ ଚିଠିର ଅବିକଳ ନକଲ ଏଠାରେ ଉପସ୍ଥାପନ କରାଗଲା ।

## 253. SPEECH AT PUBLIC MEETING, BOLGARH

December 10, 1927

Fear is more deadly than disease, such as cholera, smallpox or malaria. Disease wastes only the body, while fear destroys the soul; and men of fear cannot understand God. He who is godfearing, takes the name of God, cannot fear men. I cannot dismiss as untrue reports of friends who have informed me that you have been frightened by the Police and others who have told you that Government would arrest all those who came to me. I am aware of nothing for which Government should make arrests and for aught I know Government has not till now asked people not to contribute to funds raised by me. I under stand that Orissa being poor, zamindars and officials want to keep people under fear for their own selfish interests. I have found something striking in the satmoshpere since Banpur. I cannot make out how it will satisfy Government if people are kept off from me, or khadi work is interfered with, I cannot bear the thought that anyone should oppress another and feel ashamed that such poor unsophisticated people receive such treatment. I feel humiliated that whereas I cannot put up with oppression for m

foreigners, my own country's zamindars or officials have been frightened are given to me I propose visiting them and if the names of the zamindars are also given I shall go and discuss the subject with them . Fear is more deadly than diseases, and I ask them to give up fear, so that the work of those who frighten might automatically cease. Give up drink, gambling and prostitution, so that you can be pure enough to attain God. Though I have not come to raise purses in Orissa I don't hesitate to beg even from the poor for the sake of Khadi. May God bless you.

## 251. LETTER TO C.F. ANDREWS

[BOLGARH,
December 10, 1927]

MY DEAR CHARLIE,

I am now going through the whole programme. Sambalpore will be dropped. I am thankful you are not sending me to Jamshedpur. I am here till Monday. I reach Skhigopal Monday night and Balasore Wednesday. The rest is uncertain. Yes, indeed, the Kharagpur victory was God's gift.

MOHAN [PS]

I am better.

C.F. ANDREWS, BALASOREE

## 252. LETTER TO C. RAJAGOPALACHARI

BOLGARH,
December 10, 1927

MY DEAR C.R.,

You will be surprised to know that at least I have three days of quiet in a beautiful little village. Before that the Ganjam programme was worse if possible even than the Ceylon programme, though it yielded twenty thousand. Then a doctor came to take my blood-pressure. Niranjan Babu has made the same arrangements for examination of blood-pressure that you had. And when the doctor read 190 he got frightened and the whole of

1 From the postmark

2 In august-September 1927, the Bengal Nagpur Railway

Administration decided to reduce the labour force in the Kharaghpur Workshop by 1,600 hands. The workmen adopted passive resistance. The workshops were closed on 12th September and were reopened on 8th December when, as the result of an enquiry, some workmen who had been discharged were reinstanted and in the few cases the compensation payable to the discharged workmen was enhanced (Indian in 1927, pp.. 177-8)

## 260 LETTER TO SRI PRAKASA

BOLGARH (ORISSA),
December 11, 1997

MY DEAR SRI PRAKASA,

You must forgive me for not replying to your letter for such a long time, but I have been worked beyond my strength and have had no time left for dealing with voluminous correspondence. It is only because I am having enforced rest at an unknown and out-of-the-way village in Utkal, that I am able to deal with the arrears, and in the natural course I have come upon your letter. Here is the receipt sent to me with your letter from the Ashram.

The *Aaj* people should not complain. Complimentary copies have been sent only to well-known English papers. Even well-known friends have not been supplied with copies simply because after all *Young India and Navajivan* are at present very poor concerns. They do not command the circulation of 1920 and 1921, and yet the rigid rule of remaining self-supporting in spite of the handicaps in the shape of not taking advertisements, etc., is observed, and whenever there is anything left over from the running of these papers, the whole of it goes for public cause. Should *Aaj* then expect a free copy, it would be simply taking so much out of poor people's pockets. If in spite of this explanation, you or the workers at the *Aaj* office expect a free copy, tell me and I shall ask Swamin Anand to send one. Of course I know that *Aaj* is a leading paper on your side as is *Basumati* for instance in Calcutta. But so far as I am aware, on vernacular paper has had the English copy.

Do please take me in your confidence either by letter or by coming to me. I would love to share your burdens. Do regard me therefore as a friend who would treasure your confidence and endeavour to lighten your burdens. I am at Sabarmati n January. I am sorry I shall have to go to Kathiawar for a few days during that month. But if you will be there for the whole of the month, you can go with me to Kathiawar also and see that weird country.

Do take up the charkha regularly and once you have obtained mastery over it, you will not want to give it up, and it will be a faithful companion speaking to you only at your behest. But you will find all the joy in the handling of it only if you will connect it and through it yourself with the meanest of our people. And why should there be any shame in carrying on the *takli*, if there is no shame in identifying with the poorest. I suppose you do know that the shepherds in Almora and in many other parts of India carry their *taklis*, spinning wool wherever they go.

Yours

SJ. SRI PRAKASH, BANARAS

From a microfilm: S.N. 12646

**261. LETTER TO HARJIVAN KOTAK**

BOLGARH, ORISSA,

December 11, 1927

When the mind is disturbed by impure thoughts, instead of trying to drive them out one should occupy it in some work, that is, engage it in purposeful thoughts. Or one may engross it in Ramanama, engage it in reading or in some bodily labour which requires mental attention too. Never let the eyes follow their inclination. If they fall on a woman, withdraw them immediately. It is scarcely necessary for anyone to look straight at a man's or woman's face. This is the reason why *brahmacharis*, and others too, are enjoined to walk with their eyes lowered. If we are sitting,

we should keep them steady in one direction. This is an external remedy, but a most valuable one. You may undertake a fast if and when you find one necessary.

It is not necessary for you to go to Satavalekarji. He will certainly teach you some *asanas*. If you wish to go to him to learn them, you may certainly do so. I know him very well. He is a fine man.

You should not be afraid even if you get involuntary discharges during a fast. Vaids say that, even when impure desires are absent, such discharges occur because of pressure in the bowels. But, instead of believing that, it helps us more to believe that they occur because of impure desires. We are not always conscious of such desires. I had an involuntary discharge I sleep twice during the last two weeks. I cannot recall any dream. I never practiced masturbation. One cause of these discharges is of course my physical weakness, but I also know that there are impure desires deep down in me. I am able to keep out such thoughts during waking hours. But what is present in the body like some hidden poison, always makes its way, even forcible sometimes. I feel unhappy about this, but am not nervously afraid. I am always vigilant. I can supperss the enemy but have not been able to expel him altogether. If I am truthful, I shall succeed in doing that too. The enemy will not be able to endure the power of truth. If you are in the same condition as I am, learn from my experience. In its essence, wife or some other woman. Its results differ. At the moment, we are thinking of the enemy in his essential nature. Understand, therefore, that so far as one's wife is concerned you are not likely to find anyone as lustful as I was. That is why I have described my pitiable condition to you and tried to give you courage. If Ba is as a mother to me now, this is the result of long ever, afflicts me. I, in return, try to overcome it and , with God's grace, shall overcome it in this very life. [From Gujarati]

From the manuscript of Mahadev Desai's Diary.

Courtesy : Narana Desai.

## 262. LETTER TO ASHRAM WOMEN

BOLGARH,
Silence Day, December 12, 1927

SISTERS,

There is profound solitude around me, but it is the solitude of a sick man's room. When I see the state of peo;oe here my heart burns within me, and I very much long to stay on here. If any of you is willing to come here, I would invite her to do so. All the women here observe *purdah*. The people have neither enough clothes to wear nor food to eat. When Mirabehn suggested, before I went to Orissa, that it was our duty to put on still fewer clothes, I felt embarrassed. But when I see things here, I feel that her suggestion was indeed proper. Women here put on only one dhoti, one half covers the lower part, and the other half the upper part of their bodies. They get neither milk nor ghee.

ରାଜ୍ୟ ଅଭିଲେଖାଗାର (State Archives) ରେ ସଂରକ୍ଷିତ ବୋଲଗଡରେ ଗାନ୍ଧିଜୀଙ୍କର ରହଣୀ ସମ୍ପର୍କରେ ତଥ୍ୟ

**Confidential report of the detective sub-inspector of police dated 10-12-1927 to the Superintendent of Police, Puri.**

I beg to report that Mr. Gandhi did not arrive Bolgarh on the 8th. About 100 people including men who came for marksting as it was the Hat day assembled on the road near the Dak bungalow crossing but they returned disappointed. The assembly consisted of 40 volunteers amongst whom 17 adults were found clad in Khadar and other were boys. The prominent amongst them were N.C.O s Kripasindhu Hotta and Murari Tripathy.

One Karunakar Panigrahi of Balasore also came to discuss with Mr. Gandhi about his tour programme of Balasore. This

gentleman was found accusing the leaders of Puri district as selfish and hypocrit.

Mr. Gandhi accompanied by Mahadeb Desai, Pearl lal, Professor Karlekar, Niranjan Patnaik and Raj Krishna Bose arrived at Bolgarh Dak Bungalow at 5 pm on 9-12-1927. About 60 men were waiting on the road to receive him.

Miss Slads and Mira Bai who has been accompanying him throughout his tour in Orissa arrived in a separate car at 10 pm. In all they engaged 3 cars.

Mr. Gandhi visited village Chura on the morning of 10th. He visited about 6 or 7 houses and talked with the house holders about their condition of life. he advised them to use Khadar and stick to spinning.

On return from that village he received an address from the people of Bolgarh in a pandal arected in a mango grove just in front of the Dak bungalow crossing. About 300 people assembled. No purse was presented. The meeting commenced at 10.10 am and dispersed at 1.30 am.

The address was read out by N.C.O. Kripasindhu Hotta copy of which is attached.

In reply to the address Mr. Gandhi gave a lecture in Hindi which was interpreted in Oriya by Raj Krishna Bose. The reporters of C.I.D. attended the meeting. The English translation of the speech has been submitted by them.

In response to the call of lonations by Mr. Gandhi Rs. 41-14-0 were collected at the meeting.

Mr. Gandhi also had some conversation with the untouchables present at the meeting. He advised them to give up drinking and the habit of taking flash of dead cattle which he had never heard in any part of India except Orissa.

The following were prominent amongst present in the meeting.

1. Dr. Atalbahari Acharya of Cuttack.
2. Raghunath Mohapatra, NCO

3. Kripasindhu Hotta, NCO
4. Raj Krishna Bose, NCO
5. Murari Tripathy, NCO
6. Dukhisyam Mohanty, NCO
7. Raghunath Sahu of Bolgarh
8. Baban Mohapatra of Bolgarh
9. Rafiuddin Khan of Daleisahi
10. Golam Mustaffa of Daleisahi
11. Balkrishna Patnaik of Khanguria

No Sarbarakar is said to have attended the meeting.

It was expressed by Mr. Gandhi that he would leave Bolgarh on 12th afternoon for Satyabadi.

It is said that he will visit Sunakhala and Begunia tomorrow.

Dr. Atalbehari Acharya of Cuttack has come down here to examine Mr. Gandhi as to the condition of his present health to continue his tour.

*****

P.S.-

As regards the attack (vide Gandhi's speech) I beg to inform that there was nothing practically done by Bolgarh Police to prevent people from coming to see Mr. Gandhi. The attendance in the meeting and also at the time of his reception was very poor. The NCOs have misrepresented this in order to put an excuse before Mr. Gandhi. I have made confidential and careful enquiry about the allegation but I have found it a direct lie.

************

ସେତେବେଳେ ବୋଲଗଡ ମଧ୍ୟସ୍ଥଳରେ ଅବସ୍ଥିତ ଜଗନ୍ନାଥ ମଣ୍ଡପ ସ୍ୱାଧୀନତା ସଂଗ୍ରାମୀଙ୍କର ଆଶ୍ରୟ ସ୍ଥଳ ଥିଲା । ବର୍ତ୍ତମାନ ଯେଉଁଠାରେ ବୋଲଗଡ କାମନା ଘର ନିକଟରେ କଦମ୍ବ ଗଛ ଅଛି ପୂର୍ବରୁ ସେତେବେଳେ ସେଠାରେ ଏକ କଦମ୍ବ ଗଛ ଥିଲା । ସେଠାରେ ସ୍ୱାଧୀନତା ସଂଗ୍ରାମୀ ମାନେ ଗଂଜେଇ ଅଫିମ ଦୋକାନ ଆଗରେ ପିକେଟିଙ୍ଗ କରିବାକୁ ଗଲାବେଳେ ହାଣ୍ଡିରେ ଭାତ ଏବଂ ଅନ୍ୟ ଜିନିଷପତ୍ର ରଖି ଯାଉଥିଲେ । କେତେକ ଇଂରେଜ ସପକ୍ଷବାଦୀମାନେ ଛୋଟ ଛୋଟ ପିଲାଙ୍କୁ

ଟେକା ମାରିବାକୁ ଉଦ୍ୟମ କଲାବେଳେ ରଘୁନାଥ ସାହୁ, ହଟ ସାମନ୍ତରାୟ ପ୍ରମୁଖ ବ୍ୟକ୍ତି ମାନେ ତାଙ୍କୁ ବିରୋଧ କରୁଥିଲେ । ୧୯୫୦ ଦଶକରୁ ୮୦ ଦଶକ ପର୍ଯ୍ୟନ୍ତ ସ୍ୱାଧୀନତା ସଂଗ୍ରାମୀ ୰ ଚକ୍ରଧର ମହାପାତ୍ର ବୋଲଗଡର ମୁଖ୍ୟ ମୁରବୀ ଥିଲେ । ସେ ଖଦୀ କର୍ମୀ ଭାବରେ କାମ ଆରମ୍ଭ କରିଥିଲେ । ଗଡଜାତ ଅଂଚଳକୁ ସବୁବେଳେ ଯିବାଆସିବା କରି ନୟାଗଡ, ଖଣ୍ଡପଡା, ରଣପୁର, ଦଶପଲ୍ଲା ପ୍ରଜାମଣ୍ଡଳ କର୍ମୀଙ୍କ ସହ ଯୋଗାଯୋଗ ରଖୁଥିଲେ । ସେ ଡଃ. ହରେକୃଷ୍ଣ ମହତାବ ଏବଂ ପଣ୍ଡିତ ନୀଳକଣ୍ଠଙ୍କର ବିଶ୍ୱସ୍ତ ଥିଲେ । ବୋଲଗଡ ହାଇସ୍କୁଲ ପ୍ରତିଷ୍ଠା ଠାରୁ ବ୍ଲକ ଏବଂ କଲେଜ ପ୍ରତିଷ୍ଠା ଯାଏ ତାଙ୍କର ମୁଖ୍ୟ ଉଦ୍ୟମ ଥିଲା । ସେ ନିର୍ଭୀକ ଏବଂ ମୁହଁରେ କହିବା ଲୋକ ଥିଲେ । ତାଙ୍କ ପଛରେ ସମାଲୋଚନାର ସ୍ୱର ଖୁବ ଉଚ୍ଚ ଥିଲେ ମଧ ଅସୁବିଧା ବେଳେ ସମସ୍ତେ ତାଙ୍କ ଦ୍ୱାରସ୍ଥ ହେଉଥିଲେ ଏବଂ ସେ ସମସ୍ତଙ୍କୁ ସାହାଯ୍ୟ କରୁଥିଲେ । ଥରେ ୱାର୍ଡ ମେମ୍ବର ଏବଂ ଥରେ ସ୍ଥାନୀୟ ସେବା ସମବାୟ ସମିତିର ସଭାପତି ଭାବରେ ତାଙ୍କୁ ଲୋକମାନେ ଦେଖୁଥିଲେ ମଧ କୌଣସି ଉଚ୍ଚ ପଦ ପାଇଁ ସେ ଚେଷ୍ଟିତ ଥିଲାବେଳେ ତାଙ୍କ ଦ୍ୱାରା ଉପକୃତ ହୋଇଥିବା ଲୋକ ତାଙ୍କୁ ଆଗକୁ ଛାଡୁ ନଥିଲେ । ସ୍ୱାଧୀନତା ସଂଗ୍ରାମୀ ବୁଲା ପ୍ରଧାନ ଗଡଜାତ ଆନ୍ଦୋଳନ ବେଳେ ନୟାଗଡ, ଖଣ୍ଡପଡା ଅଂଚଳକୁ ଯାଇ ପ୍ରଜାମଣ୍ଡଳ କର୍ମୀଙ୍କ ସହ ଯୋଗାଯୋଗ କରୁଥିଲେ । ପରବର୍ତ୍ତୀ ପିକେଟିଙ୍ଗ ସମୟରେ ଯୋଗଦେଇଥିଲେ । ୧୯୩୦ ମସିହା ବେଳକୁ ସ୍ୱାଧୀନତା ଆନ୍ଦୋଳନ ତୀବ୍ରତର ହୋଇଥିଲା । ୧୯୩୦ ଐତିହାସିକ ଲବଣ ସତ୍ୟାଗ୍ରହରେ ବୋଲଗଡ ଠାରେ ଏକ ବିଜୟ ବାହିନୀ ଗଠନ କରାଯାଇଥିଲା । ପତିତପାବନ ହୋତା, ମାଳିସାହିର ସୁଦର୍ଶନ ମହାପାତ୍ର ଏଠାରେବିଜୟ ବାହିନୀ ବା ବାନର ସେନା ନାମରେ ସଂଗଠନ ଗଠନ କରିଥିଲେ । ଏହି ବାନର ସେନାରେ ବୋଲଗଡ ଅଞ୍ଚଳରୁ ସୁଦର୍ଶନ ମହାପାତ୍ରଙ୍କ ନେତୃତ୍ୱରେ ୰ ବାସୁଦେବ ସୁବୁଦ୍ଧି, ଗୋଲାମ ମୁସ୍ତଫା ଖାଁ, ପର୍ଶୁରାମ ପଦାତିକ ରାୟ, ଗଣେଶ୍ୱର ପରିଡା, ରାମକୃଷ୍ଣ ମିଶ୍ର, ଯୁଗଳ ପଟ୍ଟନାୟକ, ଦୟାନିଧି ପଟ୍ଟନାୟକ, ରଘୁନାଥ ପାହାଡାସିଂହ, ମଧୁସୂଦନ ମିଶ୍ର, ବାନାମ୍ବର ମହାପାତ୍ର, ବାନାମ୍ବର ରାଉତରାୟ, ଲଛମନ ପରିଡା, ଲିଙ୍ଗରାଜ ବେହେରା, ଦୀନବନ୍ଧୁ ପ୍ରଧାନ, ଜୟକୃଷ୍ଣ ମିଶ୍ର ପ୍ରଭୃତି ବହୁ ସ୍ୱାଧୀନତା ସଂଗ୍ରାମୀ କାକଟପୁର ଅଞ୍ଚଳରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ୪ ମାସ କାରାବାସ କରିବା ପରେ ଗାନ୍ଧୀ-ଇରୋଇନ ଚୁକ୍ତି ଅନୁସାରେ ଖଲାସ ହୋଇଥିଲେ ।

ଚମ୍ପାଇଲୋ ଗ୍ରାମର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ୰ ବିଶ୍ୱନାଥ ସାମନ୍ତ ଏବଂ ତାଙ୍କର ସାନ ଭାଇ ଶ୍ରୀ ଅର୍ଜୁନ ଫତେସିଂହ ତାଙ୍କର ପିତା ସ୍ୱର୍ଗତ ଡମ୍ବରୁଧର ସାମନ୍ତରାୟଙ୍କ ପ୍ରେରଣାରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ସଂଗ୍ରାମରେ

ଯୋଗଦେଇଥିଲେ । ୰ ବିଶ୍ୱନାଥ ସାମନ୍ତ ଜଣେ ଦକ୍ଷ ସଂଗଠକ, ଖଦୀ କର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ଭାବରେ ପରିଚିତ ଥିଲେ । ତାଙ୍କର ପିତା ୰ ତମ୍ବୁଧର ସାମନ୍ତରାୟ ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ଗୋପବନ୍ଧୁ ଦାଶ, ଆଚାର୍ଯ୍ୟ ହରିହର, ପଣ୍ଡିତ କୃପାସିନ୍ଧୁଙ୍କର ଅନ୍ତରଙ୍ଗ ଥିଲେ । ସେ ତତ୍‌କାଳୀନ ଖୋର୍ଦ୍ଧା ସବଡିଭିଜନର ପ୍ରଥମ ରାଜବନ୍ଦୀ ଥିଲେ । ତାଙ୍କ ଘରର ସମ୍ପତ୍ତି ବ୍ରିଟିଶ ସରକାର ନିଲାମ କରିଥିଲେ । ଦେଶ ସ୍ୱାଧୀନ ପରେ ମଧ୍ୟ ସେ କଂଗ୍ରେସର ଦକ୍ଷ ସଂଗଠକ ଭାବରେ ବୋଲଗଡ ବେଗୁନିଆରେ ସୁନାମ ଅର୍ଜନ କରିଥିଲେ ।

୧୯୩୨ ମସିହା ଜାନୁୟାରୀ ୨୬ ତାରିଖ ଦିନ ପୂର୍ଣ୍ଣ ସ୍ୱାଧୀନ ଘୋଷଣା କରି ତ୍ରିରଙ୍ଗା ପତାକା ଉତ୍ତୋଳନ କରିବାକୁ ଅଖିଳ ଭାରତୀୟ କଂଗ୍ରେସ କମିଟିରୁ ନିର୍ଦ୍ଦେଶ ଆସିଥିଲା । ବୋଲଗଡ ଠାରେ ୰ ପତିତପାବନ ହୋତା, ସାନପଦର ଠାରେ ୰ ଗଂଗାଧର ପାଇକରାୟ, ଚମ୍ପାଇଲୋ ଠାରେ ୰ ବିଶ୍ୱନାଥ ସାମନ୍ତ ଏବଂ ଅର୍ଜୁନ ଫତେସିଂହ, ମାଣିକାଗୋଡା ଠାରେ ସୁଦର୍ଶନ ମହାପାତ୍ରଙ୍କ ଦ୍ୱାରା ଏହି କାର୍ଯ୍ୟକ୍ରମ କରିବାକୁ ସ୍ଥିର କରାଯାଇଥିଲା । ମାତ୍ର କୌଣସି କାରଣରୁ ଏହା ବୋଲଗଡ ଠାରେ ହୋଇପାରିଲା ନାହିଁ । ମାତ୍ର ମାଣିକାଗୋଡା ଠାରେ ସୁଦର୍ଶନ ମହାପାତ୍ର, ସାନପଦର ଠାରେ ୰ ଗଂଗାଧର ପାଇକରାୟ ଏବଂ ଚମ୍ପାଇଲୋ ଗ୍ରାମ ଠାରେ ୰ ବିଶ୍ୱନାଥ ସାମନ୍ତ ଏବଂ ତାଙ୍କ ସାନ ଭାଇ ୰ ଅର୍ଜୁନ ଫତେସିଂହ ତ୍ରିରଙ୍ଗା ପତାକା ଉଡାଇ ପୂର୍ଣ୍ଣ ସ୍ୱରାଜ୍ୟ ଘୋଷଣା ପତ୍ର ପାଠ କରି ଗିରଫ ହୋଇ ଖୋରଧା ଚାଲାଣ ହେଲାପରେ ପୁରୀ ଜେଲକୁ ସେମାନଙ୍କୁ ପଠାଯାଇଥିଲା । ଏ ସମ୍ପର୍କରେ ଏବଂ ବୋଲଗଡ ଅଂଚଳର ସ୍ୱାଧୀନତା ସଂଗ୍ରାମର ପ୍ରତ୍ୟକ୍ଷ ଅନୁଭୂତି ସମ୍ପର୍କୀତ ୨ଟି ପ୍ରବନ୍ଧ ହସ୍ତଗତ ହୋଇଅଛି ।



## ସ୍ୱାଧୀନତା ଆନ୍ଦୋଳନର ପ୍ରତ୍ୟେକ୍ଷଦର୍ଶୀ ତଥ୍ୟ

୧୯୮୬ ମସିହାରେ ୰ ପତିତପାବନ ହୋତାଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ ପାଳନ ଅବସରରେ ନନ୍ଦିଘୋଷ ଅନୁଷ୍ଠାନର ସେତେବେଳର ଯୁଗ୍ମ ସଂପାଦକ ବାସୁଦେବ ପଟ୍ଟନାୟକଙ୍କ ସଂଯୋଜନାରେ 'ପତିତପାବନ ସ୍ମରଣିକା' ପ୍ରକାଶ ପାଇଥିଲା । ସେଥିରେ ୰ ସୁଦର୍ଶନ ମହାପାତ୍ର ଏବଂ ୰ ପର୍ଶୁରାମ ପଦାତିକରାୟ ୨ଟି ପ୍ରବନ୍ଧ ଲେଖିଥିଲେ । ବୋଲଗଡ ଅଞ୍ଚଳରେ ହୋଇଥିବା ସ୍ୱାଧୀନତା ଆନ୍ଦୋଳନର ପ୍ରତ୍ୟକ୍ଷ ଅନୁଭୂତି ସମ୍ପର୍କରେ ଜାଣିବା ପାଇଁ ଉକ୍ତ ୨ଟି ପ୍ରବନ୍ଧ ଏଠାରେ ଦିଆଗଲା ।

ପତିତପାବନ ସ୍ମରଣିକା (ପୃଷ୍ଠା .- ୮)

## ବୋଲଗଡରେ ସ୍ୱାଧୀନତା ଆନ୍ଦୋଳନ ଓ ମୋର ଅନୁଭୂତି

- ଶ୍ରୀ ସୁଦର୍ଶନ ମହାପାତ୍ର

ଦେଶରେ ସ୍ୱାଧୀନତା ପାଇଁ ମୁଖ୍ୟତଃ ତିନିଗୋଟି ଆନ୍ଦୋଳନ ହୋଇଥିଲା । ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ (ସତ୍ୟାଗ୍ରହ) ଓ ଭାରତ ଛାଡ ଆନ୍ଦୋଳନ । ଏହି ତିନି ଗୋଟି ଆନ୍ଦୋଳନରେ ବୋଲଗଡ ଜନସାଧାରଣ ପୁରାପୁରି ଭାଗ ନେଇଛନ୍ତି । ସେଥିପାଇଁ ପଞ୍ଚସଖା ମଧ୍ୟରୁ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ ଓ ପଣ୍ଡିତ ଗୋଦାବରୀଶ ମିଶ୍ର ଦେଇଥିବା ଭାଷଣ ମାନଙ୍କରେ ବୋଲଗଡକୁ ଓଡିଶାର ବର୍ଦ୍ଦୋଳୀ ଆଖ୍ୟା ଦେଇଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାଶ ସାକ୍ଷୀଗୋପାଳକୁ କର୍ମକେନ୍ଦ୍ର କରିଥିଲେ ମଧ ବୋଲଗଡକୁ ମୁଖ୍ୟ କର୍ମ କେନ୍ଦ୍ର ରୂପରେ ବାଛି ନେଇଥିଲେ । ।

ସେ ଓଡିଶାର କୌଣସି ଅଞ୍ଚଳ ମନୋନୀତ ନକରି ବୋଲଗଡରେ ଉତ୍କଳ ସମ୍ମିଳନୀ ପାଇଁ ସ୍ଥାନ ନିରୂପଣ କରିଥିଲେ । ୧୯୨୫ ମସିହାରେ ଏହି ସମ୍ମିଳନୀ ବୋଲଗଡରେ ଅନୁଷ୍ଠିତ ହୋଇଥିଲା । ଓଡିଶାର ବିଭିନ୍ନ ଜିଲ୍ଲାରୁ ନେତୃସ୍ଥାନୀୟ ବ୍ୟକ୍ତି ଶ୍ରୀଯୁକ୍ତ ଭାଗିରଥି ମହାପାତ୍ର, ବାବାଜୀ ରାମ ଦାଶ, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ଡକ୍ଟର ହରେକୃଷ୍ଣ ମହତାବ ପ୍ରମୁଖ ଓ ନାରୀ ନେତ୍ରୀ ଶ୍ରୀମତୀ ସରଳା ଦେବୀ ଓ ସୁନାମଣି ଦେବୀ ପ୍ରଭୃତି ଉପସ୍ଥିତ ଥିଲେ । ବୋଲଗଡ ମଫସଲ ହେଲେ ମଧ ବିଭିନ୍ନ ଗ୍ରାମରୁ ପରଦା ପ୍ରଥା ସତ୍ତ୍ୱେ ବହୁ ସଂଖ୍ୟାରେ ମହିଳାମାନେ ସମ୍ମିଳନୀରେ ଯୋଗ ଦେଇଥିଲେ । ମଫସଲ ଅଞ୍ଚଳରେ ଏହି ନାରୀ ଜାଗରଣ ସର୍ବ ପ୍ରଥମ ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ଏଠାରେ ବିଶେଷ ଉଲ୍ଲେଖ ଯୋଗ୍ୟ ବିଷୟ ଏହି ଯେ, ଗୋଲାମ ମୁସ୍ତଫା ଖାଁଙ୍କ ସ୍ତ୍ରୀ ମାଣିକାଗୋଡାର ତିନି ଶହ ଘର ମୁସଲମାନ ପରିବାର ମଧ୍ୟରୁ ଏକାକି ସମ୍ମିଳନୀର ମହିଳା ମାନଙ୍କ ମେଳାରେ ଯୋଗ ଦେଇଥିବାରୁ ଗ୍ରାମରେ ଏକ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏପରିକି ମୁସ୍ତଫା ବାବୁଙ୍କ ଶ୍ୱଶୁର ମୃତ୍ୟୁ ପର୍ଯ୍ୟନ୍ତ ସମ୍ପର୍କ ଛିନ୍ନ କରିଥିଲେ । ବ୍ରିଟିଶ ସରକାରଙ୍କ କଟକଣା ତଥା ପୋଲିସଙ୍କ ବାରଣ ସତ୍ତ୍ୱେ ବହୁଲୋକଙ୍କ ସମାଗମରେ ସମ୍ମିଳନୀର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇଥିଲା ।

ଶ୍ରୀଯୁକ୍ତ ମୋହନ ସିଂହ, ଦାମୋଦର ମିଶ୍ର, ରଘୁନାଥ ପାହାଡସିଂହ, ଗୋଲାମ ମୁସ୍ତଫା ଖାଁ, ପତିତପାବନ ହୋତା, ଯୁଗଳକିଶୋର ପଟ୍ଟନାୟକ, ଦୟାନିଧି ପଟ୍ଟନାୟକ, ବାଙ୍କନିଧି ପରିଡା ଓ ବଳଭଦ୍ର ସାହୁ ପ୍ରଭୃତି କର୍ମୀମାନେ ଉତ୍ସାହରେ ସମ୍ମିଳନୀ ପାଇଁ କାର୍ଯ୍ୟ କରିଥିଲେ ।

**ଅସହଯୋଗ ଆନ୍ଦୋଳନ -**

୧୯୨୭ ମସିହାରେ ମହାତ୍ମାଗାନ୍ଧୀ ବୋଲଗଡ ଆସି ତିନିଦିନ ଡାକବଙ୍ଗଳାରେ ଅବସ୍ଥାନ କରିଥିଲେ । ଗାନ୍ଧିଜୀଙ୍କର "କୁଟି ଖାଅ ଓ କାଟି ପିନ୍ଧ" ମୁଖ୍ୟ ବାଣୀ ଥିଲା । ସେ କହୁଥିଲେ 'ଅରଟ ତାକୁଡିର ଅଗ୍ରଭାଗରେ ସ୍ୱରାଜ୍ୟ ଝୁଲୁଛି' । ଏହି ବାଣି ବୋଲଗଡ ଅଞ୍ଚଳବାସୀ ବୁଝିଥିଲେ ଓ ଘରେ ଘରେ ଅରଟ ଚଳାଉଥିଲେ । ମହାତ୍ମାଗାନ୍ଧୀଙ୍କ ତିନି ଦିନ ରହଣି ମଧ୍ୟରେ ବୋଲଗଡ ନିକଟବର୍ତ୍ତି ବୁଡା, ଘୋରଡିଆ, ଡାବରଧୁଆ ଓ ଅରଖପଲ୍ଲୀ ଗ୍ରାମ ବୁଲି ଘରେ ଘରେ ଚରଖା ଚାଲୁଥିବାର ଦେଖି ଖୁସି ହୋଇଥିଲେ ।

ବୋଲଗଡରେ ନିଖିଳ ଭାରତ ଚରଖା ସଂଘ ଓ ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା ସଂଘ ତରଫରୁ ସୂତାକଟା ଓ ଲୁଗା ବୁଣାକେନ୍ଦ୍ର ଖୋଲା ଯାଇଥିଲା । ଏହି କେନ୍ଦ୍ର ମାନଙ୍କରୁ ମାସିକ ପଚାଶ ମହଣ ପର୍ଯ୍ୟନ୍ତ ହାତକଟା ସୂତା ଆଦାୟ ହେଉଥିଲା । ବୋଲଗଡ ଛଡା କେନ୍ଦୁପାଟଣା ଓ କୋଦଳାଠାରେ ଏହିଭଳି କେନ୍ଦ୍ର ଥିଲେ ମଧ ବୋଲଗଡ ଖଦୀ ବିଶେଷ ପ୍ରଶଂସିତ ହେଉଥିଲା । ଖଦୀ କାର୍ଯ୍ୟ ଛଡା ନିଶା ନିବାରଣ, ବିଦେଶୀ ବର୍ଜନ ଓ ଅସ୍ପୃଶ୍ୟତା ନିବାରଣ ପ୍ରଭୃତି ସାଙ୍ଗଠନିକ କାର୍ଯ୍ୟ କରିବା ପାଇଁ କଂଗ୍ରେସର ତଥା ଗାନ୍ଧିଜୀଙ୍କର ନିର୍ଦ୍ଦେଶ ଥିଲା ।

ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ ଓ ଆଚାର୍ଯ୍ୟ ହରିହର ଦାଶ ଉଭୟେ ଅସହଯୋଗ ଆନ୍ଦୋଳନ ସମୟରେ ବୋଲଗଡ ବହୁତ ଥର ଆସିଥିଲେ । ଅସ୍ପୃଶ୍ୟତା ଦୂର କରିବା ପାଇଁ ଓ ବିଲାତି ଲୁଗା ବର୍ଜନ କରିବା ପାଇଁ ଭାଷଣ ଦେଇଥିଲେ । ତାଙ୍କ ଭାଷଣରେ ଅନୁପ୍ରାଣିତ ହୋଇ ସଭାସ୍ଥଳରେ ଉପସ୍ଥିତ ଥିବା ଲୋକମାନେ ପିନ୍ଧିଥିବା ବିଲାତି ଲୁଗା ନିଆଁ ଲଗାଇ ଖଦୀ ପରିଧାନ କରିବା ପାଇଁ ଶପଥ ନେଇଥିଲେ ।

ଆଇନ ଅମାନ୍ୟ ଆନ୍ଦୋଳନ ବା ସତ୍ୟାଗ୍ରହ -

୧୯୩୦ ମସିହାରେ ମହାତ୍ମାଗାନ୍ଧି ସର୍ବ ପ୍ରଥମେ ୬୦ ଜଣ ସତ୍ୟାଗ୍ରହୀଙ୍କୁ ନେଇ ଗୁଜୁରାଟର ଦାଣ୍ଡି ଠାରେ ଲୁଣମରା ଆରମ୍ଭ କଲେ । ଏହାପରେ କଂଗ୍ରେସର ନିର୍ଦ୍ଦେଶ କ୍ରମେ ଭାରତ ତମାମ ଉପକୂଳ ଅଞ୍ଚଳରେ ସତ୍ୟାଗ୍ରହୀ ମାନେ ଲୁଣ ମାରିଥିଲେ ।

୧୯୩୦ ମସିହା ଅପ୍ରେଲ ମାସରେ ପଣ୍ଡିତ କୃପାସିନ୍ଧୁ ହୋତା ସତ୍ୟାଗ୍ରହୀ ସଂଗ୍ରହ କରିବା ପାଇଁ ଆମ ଗ୍ରାମ ମାଳିସାହି (ଦିବ୍ୟସିଂହପୁର)କୁ ଆସି ରାତ୍ରରେ ସଭା କଲେ । ଗ୍ରାମର କୋଡିଏ ଜଣ ଯୁବକ ସତ୍ୟାଗ୍ରହରେ ଯୋଗଦେବା ପାଇଁ ନାମ ଲେଖାଇଲେ, ମାତ୍ର ପଣ୍ଡିତ ମହାଶୟଙ୍କ ସଙ୍ଗରେ ମୁଁ ଏକାକି ଲବଣ ସତ୍ୟାଗ୍ରହରେ

ଯୋଗଦେବା ପାଇଁ ସାକ୍ଷୀଗୋପାଳ ଗଲି । ତା ପରଦିନ ପଣ୍ଡିତ ଲିଙ୍ଗରାଜ ମିଶ୍ର କାରରେ ମୋତେ କାକଟପୁର, ଓଳଙ୍ଗର ଲୁଣମରା କେନ୍ଦ୍ରରେ ଛାଡିଦେଇ ଫେରି ଆସିଲେ । ମୁଁ ଅନ୍ୟାନ୍ୟ କର୍ମୀମାନଙ୍କ ସଙ୍ଗେ ଲୁଣମାରି ଫେରୁଥିବା ଅବସ୍ଥାରେ ପୋଲିସ ମାନେ ଲୁଣ ଛଡାଇନେଲେ । ମୁଁ ଲୁଣ ନ ଛାଡିବାରୁ ପୋଲିସଙ୍କର ଲାଠି ମାଡରେ ମୋର ଡାହାଣ ହାତର କଚଟି ଜଖମ ହୋଇଥିଲା ।

ଗାନ୍ଧୀ ଇରିଉଇନ ଚୁକ୍ତିପରେ ଆମେ କର୍ମୀମାନେ ପୁରୀ ଫେରି ଆସିଲୁ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶଙ୍କୁ ଶ୍ରାଦ୍ଧୋତ୍ସବରେ ନେତ୍ରୋତ୍ସବ ଦିନ ପୁରୀ ବଡଦାଣ୍ଡରେ ପ୍ରଚାରକ ଅନନ୍ତ ମିଶ୍ରଙ୍କ ନେତୃତ୍ୱରେ ଏକ ଶୋଭାଯାତ୍ରା ବାହାରିଲା । ଟାଉନ ଥାନା ସାମନାରେ ପ୍ରଚାରକ ମହାଶୟଙ୍କ ସହିତ ଆମେ ପାଞ୍ଚଜଣ ଗିରଫ୍ ହେଲୁ । ପୁରୀ ଡେପୁଟି ମାଜିଷ୍ଟ୍ରେଟ ପି.କେ. ଦାସଙ୍କ କୋର୍ଟରେ ବିଚାର ହେଲା । ଆମ ପାଞ୍ଚଜଣଙ୍କୁ ତିନିମାସ ଲେଖାଁଏ ଜେଲ ଦଣ୍ଡ ଆଦେଶ ହେଲା । ଆମ୍ଭେମାନେ ପୁରୀ ଜେଲରେ ରହିଲୁ ।

ଜେଲରୁ ଖଲାସ ହେବାପରେ ସତ୍ୟାଗ୍ରହୀ ସଂଗ୍ରହ କରିବା ପାଇଁ ମୁଁ ବୋଲଗଡ ଆସିଲି । ବୋଲଗଡର ବିଭିନ୍ନ ଗ୍ରାମରୁ ସର୍ବଶ୍ରୀ ପତିତପାବନ ହୋତା, ଗଣେଶ୍ୱର ପରିଡ଼ା, ବାସୁଦେବ ସୁବୁଦ୍ଧି, ମଧୁସୂଦନ ମିଶ୍ର, ରାମକୃଷ୍ଣ ମିଶ୍ର, ବିଶ୍ୱୟର ମହାପାତ୍ର ଓ ଗଦାଧର ମହାପାତ୍ର ପ୍ରମୁଖ ୨୦ ଜଣ କର୍ମୀଙ୍କୁ ନେଇ ଗୋଟିଏ ବିଜୟ ବାହିନୀ ଗଠିତ ହେଲା । ଏହି ଦଳ ଚମ୍ପେଇଲ, ସାନପଦର, ପରିଛଳ ଓ ଟାଙ୍ଗୀରେ ସାଧାରଣ ସଭାକରି ବାଣପୁର ବାଟେ ଟ୍ରେନରେ ପୁରୀ ଗଲୁ । ପୁରୀର ସତ୍ୟାଗ୍ରହୀମାନେ ଷ୍ଟେସନଠାରୁ ହରଚଣ୍ଡୀ ସାହି କ୍ୟାମ୍ପକୁ ଏକ ଶୋଭାଯାତ୍ରାରେ ଆମ୍ଭ ମାନଙ୍କୁ ନେଇଥିଲେ । ପୁରୀର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ଜଗନ୍ନାଥ ମିଶ୍ର ଆମ ସଙ୍ଗେ ଥିଲେ । ବୋଲଗଡରୁ ଆସିଥିବା କର୍ମିମାନଙ୍କୁ ଜିଲ୍ଲାର ବିଭିନ୍ନ ସ୍ଥାନରେ ପିକେଟିଙ୍ଗ କରିବା ପାଇଁ ପଠାଗଲା । ପରେ ଜିଲ୍ଲା କଂଗ୍ରେସ ଡିକ୍ଟେଟର ପଚାରକ ଅନନ୍ତ ମିଶ୍ରଙ୍କ ନିର୍ଦ୍ଦେଶ ମତେ ବୋଲଗଡରେ ପିକେଟିଙ୍ଗ କରିବା ପାଇଁ ମୋ ନେତୃତ୍ୱରେ ୧୦ ଜଣ କର୍ମୀ ପଠାଇଲେ । ଆମେମାନେ ବୋଲଗଡର ଜଗନ୍ନାଥ ମଣ୍ଡପରେ ଆଶ୍ରୟ ନେଲୁ । ପୋଲିସ ମାନେ ଆମର ରୋଷେଇ ହାଣ୍ଡି ଭାଙ୍ଗି ଦେବାରୁ ମଣ୍ଡପ ସାମନାରେ ଥିବା କଦମ୍ବଗଛ ଡାଳରେ ରୋଷେଇ ହାଣ୍ଡି ଓହଳାଇ ଦେଇ ବାହାରକୁ ଯାଉ । ଦିନବେଳେ ଆମ୍ଭମାନଙ୍କ ପାଖକୁ କେହି ଆସନ୍ତି ନାହିଁ । ମାତ୍ର ସନ୍ଧ୍ୟାରେ ଶ୍ରୀଯୁକ୍ତ ହୃଷିକେଶ ପଟ୍ଟନାୟକ ଓ ଶ୍ରୀ ବଳଭଦ୍ର ସାହୁ ଚାଉଳ ସଂଗ୍ରହ କରି ରାତିରେ ଆମକୁ ଦିଅନ୍ତି । ବୋଲଗଡର ଆର୍ତ୍ତବନ୍ଧୁ ପରିଡାଙ୍କ ସ୍ତ୍ରୀ (ବର୍ତ୍ତମାନ କର୍ମୀ ରବିନ୍ଦ୍ର କୁମାର ପରିଡ଼ାଙ୍କ ଜେଜୀ ମା) ଓ ବଳଭଦ୍ର ସାହୁ ସତ୍ୟାଗ୍ରହୀ ମାନଙ୍କର ତତ୍ତ୍ୱ ନିଅନ୍ତି । ଉଭୟ ପରିବାର

ସତ୍ୟାଗ୍ରହୀ ମାନଙ୍କର ଆଶ୍ରୟ ସ୍ଥଳ ଥିଲା । ସତ୍ୟାଗ୍ରହୀମାନେ ପିକେଟିଙ୍ଗ କରିବା ସମୟରେ ଶ୍ରୀଯୁକ୍ତ ହଟ ସାମନ୍ତରାୟ, ରଘୁନାଥ ସାହୁ ପ୍ରମୁଖ ବିଶିଷ୍ଟ ବ୍ୟକ୍ତିମାନେ ସତ୍ୟାଗ୍ରହୀ ମାନଙ୍କୁ ଉତ୍ସାହିତ କରୁଥିଲେ । ପିକେଟିଙ୍ଗ ହେବା ଫଳରେ ଅଫିମ ଗଞ୍ଜା ଦୋକାନ ବନ୍ଦ ହୋଇଯାଇଥିଲା । ଏହି ସମୟରେ ବୋଲଗଡରୁ ବାନାମ୍ବର ମହାପାତ୍ର, ଦୀନବନ୍ଧୁ ପ୍ରଧାନ, ଡାବରଧୁଆରୁ ଲକ୍ଷ୍ମଣ ସାହୁ, ମାଣିକାଗୋଡାରୁ ବାନାମ୍ବର ରାଉତରାୟ, ପର୍ଶୁରାମ ପଦାତିକ ରାୟ, ଅକ୍ରୁର ସାହୁ, ମାଳିସାହିରୁ ପଞ୍ଚୁ ମହାପାତ୍ର, ନାରଣ ସୁବୁଦ୍ଧି ପ୍ରମୁଖ ସତ୍ୟାଗ୍ରହୀମାନେ ଜଟଣୀ ଓ ଖୋର୍ଦ୍ଧା ପ୍ରଭୃତି ସ୍ଥାନମାନଙ୍କରେ ପିକେଟିଙ୍ଗ କରି ବନ୍ଦୀ ହୋଇଥିଲେ । ସତ୍ୟାଗ୍ରହୀ ସଂଗ୍ରହ କରି ପଠାଇବାରେ ଶ୍ରୀଯୁକ୍ତ ବଳଭଦ୍ର ସାହୁଙ୍କ ଉଦ୍ୟମ ଯଥେଷ୍ଟ ପ୍ରଶଂସନୀୟ ।

୧୯୩୨ ମସିହା ଜାନୁଆରୀ ୨୬ ତାରିଖରେ ସ୍ୱାଧୀନତା ଦିବସ ପାଳନ କରିବା ପାଇଁ କଂଗ୍ରେସରୁ ନିର୍ଦ୍ଦେଶ ଆସିଲା । ମୁଁ ଏଇଦିନ ମାଣିକାଗୋଡାରେ ସାଧାରଣ ସଭାକରି ଶପଥ ପତ୍ର ପାଠ କରିଥିଲି । ଫଳରେ ପୋଲିସ ସବଇନିସପେକ୍ଟର ସଦଳବଳେ ଆସି ମୋତେ ଗିରଫ କରି ଖୋର୍ଦ୍ଧା କୋର୍ଟକୁ ପଠାଇଲେ । ଏହି ଦିନ ଚମ୍ପେଇଲୋରୁ ଶ୍ରୀ ବିଶ୍ୱନାଥ ସାମନ୍ତ, ଅର୍ଜ୍ଜୁନ ଫତେସିଂହ ପ୍ରମୁଖ ଶପଥ ପାଠକରି ଗିରଫ ହୋଇଥିଲେ । ଆମେ ସମସ୍ତେ ଖୋର୍ଦ୍ଧା ସବ୍ ଜେଲରେ ରହିଲୁ । ଖୋର୍ଦ୍ଧା ଏସ.ଡି.ଓ. ଶ୍ରୀଯୁକ୍ତ ରାଧାଚରଣ ଦାସଙ୍କ କୋର୍ଟରେ ବିଚାର ହେଲା । ମୋତେ ୬ ମାସ ଜେଲ ଦଣ୍ଡ ଓ ପଚାଶ ଟଙ୍କା ଜୋରିମନା ଦଣ୍ଡ ହୋଇଥିଲା । ଜୋରିମାନା ନଦେଲେ ୩ ସପ୍ତାହ ଅଧିକ ଜେଲ୍ ଦଣ୍ଡ ଭୋଗ କରିବାକୁ ଆଦେଶ ହେଲା ।

ସରକାର ଆମ ଘର କୋରଖ କରି ୫୦ ଟଙ୍କା ଆଦାୟ କରି ନେଇଥିବାରୁ ମୋତେ କେବଳ ୬ ମାସ ଜେଲ୍ ଦଣ୍ଡ ଭୋଗ କରିବାକୁ ପଡିଥିଲା ।

ରାୟ ପରେ ଆମକୁ ପୁରୀ ଜେଲ ଓ ସେଠାରୁ ବିହାର ଓଡିଶା ରାଜଧାନୀ ବାଙ୍କୀପୁର ପାଟଣା କ୍ୟାମ୍ପ ଜେଲ୍‌କୁ ପଠାଗଲା । ଆମେ ଚାରିହଜାର ରାଜନୈତିକ ବନ୍ଦୀଙ୍କ ସହିତ କ୍ୟାମ୍ପ ଜେଲରେ ରହିଲୁ ।

ଭାରତ ଛାଡ ଆନ୍ଦୋଳନ -

ଏହି ଆନ୍ଦୋଳନରେ ଶ୍ରୀ ପତିତପାବନ ହୋତା ଓ ଗୋଲାମ ମୁସ୍ତଫା ଖାଁ ଗିରଫ ହୋଇ ବର୍ଷେରୁ ଅଧିକ ସମୟ ବ୍ରହ୍ମପୁର କ୍ୟାମ୍ପ ଜେଲ୍‌ରେ ବନ୍ଦୀ ହୋଇ ରହିଥିଲେ । ନୟାଗଡ ଓ ଖଣ୍ଡପଡା ପ୍ରଜା ଆନ୍ଦୋଳନରେ ବୋଲଗଡର ଶ୍ରୀ ଚକ୍ରଧର ମହାପାତ୍ର, ନାରାୟଣ ଦାସ ଓ ନୀଳମଣୀ ସାମନ୍ତରା ପ୍ରଭୃତି କର୍ମୀମାନେ ଯୋଗଦେଇଥିଲେ ।

ଖଣ୍ଡପଡା ରାଜାଙ୍କର ଦୌରାତ୍ମ୍ୟରେ ଖଣ୍ଡପଡା ଆଖପାଖ ଶହ ଶହ ଲୋକ ମାଣିକାଗୋଡା ଓ କଳାଙ୍ଗରେ ଆଶ୍ରୟ ନେଇଥିଲେ । ସ୍ଥାନୀୟ କର୍ମୀମାନେ ସେମାନଙ୍କର ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ ।

ଭୂଦାନ ଆନ୍ଦୋଳନ -

ମହାତ୍ମା ଗାନ୍ଧୀଙ୍କର ପ୍ରିୟତମ ଶିଷ୍ୟ ବିନୋବା ଭାବେ ବୋଲଗଡ ଓ ଟାଙ୍ଗୀସାହି ଗ୍ରାମରେ ଦୁଇଟି ମିଟିଙ୍ଗ କରିଥିଲେ । ଏହି ଅଞ୍ଚଳର ବହୁ ଲୋକ ଭୂଦାନକୁ କିଛି କିଛି ଦାନ କରିଥିଲେ ।

**********

ପତିତପାବନ ସ୍ମରଣିକା (ପୃଷ୍ଠା .- ୧୭)

## ସେବେଳର ବୋଲଗଡ ଓ ପତିତ ଭାଇନା

- ଶ୍ରୀ ପର୍ଶୁରାମ ପଦାତିକରାୟ, ମାଣିକାଗୋଡା

ସ୍ୱର୍ଗତଃ ପତିତପାବନ ହୋତାଙ୍କୁ ମୁଁ ଶ୍ରଦ୍ଧାରେ 'ପତିତ ଭାଇନା' ବୋଲି ଡାକେ । ସେ ମୋ ଠାରୁ ବୟସରେ ବଡ ଓ ଜାତିରେ ବ୍ରାହ୍ମଣ । ଜଣେ ନିଷ୍ଠାପର, ସଚ୍ଚୋଟ କଂଗ୍ରେସ କର୍ମୀ ଓ ସ୍ୱାଧୀନତା ସଂଗ୍ରାମୀ ଭାବେ ଆମ ସମସ୍ତଙ୍କର ସେ ଶ୍ରଦ୍ଧାଭାଜନ ଥିଲେ । ସେ ପ୍ରାୟ ବର୍ଷେ ହେଲା ଆମ ଠାରୁ ଦୂରେଇ ଯାଇଛନ୍ତି । ତାଙ୍କର ପ୍ରଥମ ଶ୍ରାଦ୍ଧବର୍ଷିକୀ ହେଉଛି ୧୯୮୬ ଅପ୍ରେଲ ପହିଲା ଦିନ । ଏଥିପାଇଁ ଗୋଟିଏ ସ୍ମରଣିକା ପ୍ରକାଶ କରାଯିବା ପାଇଁ ସ୍ଥିର କରାଯାଇଛି । ଅତୀତର ଅନୁଭୂତିକୁ ପାଥେୟ କରି ପତିତ ଭାଇନାଙ୍କ ସମ୍ପର୍କରେ କିଛି ଲେଖିବାକୁ ଯାଉଛି ।

ଆମ ବୋଲଗଡ ଅଞ୍ଚଳର ଅତୀତ ଐତିହ୍ୟ ଓ ପରମ୍ପରା ଅତୀବ ଗୌରବମୟ । ଏ ଅଞ୍ଚଳ ଦଳେଇ, ଦଳବେହେରା ଓ ରଣପିପାସୁ ପାଇକ ପୁଅ ମାନଙ୍କ ନିବାସ ସ୍ଥଳୀ । ଭୀରୁ କାପୁରଷ ମାନଙ୍କର ଏଠାରେ ସ୍ଥାନ ନାହିଁ । ମରହଟ୍ଟା ବର୍ଗୀମାନଙ୍କ ଦୌରାତ୍ମ୍ୟ ଓ ବ୍ରିଟିଶ ସରକାରଙ୍କ ଶୋଷଣରୁ ନିଜକୁ ରକ୍ଷା କରିବାକୁ ଏ ଅଞ୍ଚଳର ପାଇକ ପୁଅ ମାନେ ସଂଗ୍ରାମ କରି ଆସିଛନ୍ତି । ଏ ସବୁ ବୀରତ୍ୱପୂର୍ଣ୍ଣ ଐତିହ୍ୟର ମୂକ ସାକ୍ଷୀରୂପେ ମାଣିକାଗୋଡା, ବୋଲଗଡ, ସଂପୁର, ବାଙ୍କୋଇ ଓ ମାଣିବନ୍ଧର ଭଗ୍ନ ଗଡଖାଇ ଓ ପ୍ରଚଳିତ କିମ୍ବଦନ୍ତୀମାନ ରହିଅଛି । ଦଶହରା ପର୍ବରେ ପାଇକ ମାନଙ୍କ ସମର ବିଳାସ ଅଭିନୟ ଲୁପ୍ତ ଗୌରବର କ୍ଷୀଣ ଆଭାସ ମାତ୍ର । ଏହି ବୀର ଭୂମି ବୋଲଗଡ ଅଞ୍ଚଳରେ ଅବସ୍ଥିତ ଖଇଗୁରିଆ ଗ୍ରାମରେ ପତିତପାବନ ହୋତାଙ୍କ ଜନ୍ମ । ଦରିଦ୍ର ପରିବାରରେ ଜନ୍ମ ହୋଇଥିଲେ ମଧ୍ୟ ମନ ଥିଲା ତାଙ୍କର ଖୁବ୍ ବଡ । ନିଜେ

କ୍ଷୀଣକାୟ ଥିଲେ ମଧ୍ୟ ବଳବାନ୍ ଠାରୁ ଅଧିକ ବଳବାନ୍ ଥିଲେ ସାହସ ଓ ଧୈର୍ଯ୍ୟରେ ।

୧୯୨୧ ମସିହାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଭାରେ ଯୋଗଦାନ କରି ସେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ସେତେବେଳକୁ ସେ ବାଙ୍କୀ ହାଇସ୍କୁଲରେ ୮ମ ଶ୍ରେଣୀର ଛାତ୍ର ଥିଲେ । ଗୋପବନ୍ଧୁ ବାବୁ ସେତେବେଳେ ଓଡିଶାରେ କଂଗ୍ରେସର ବାର୍ତ୍ତା ପ୍ରଚାରରେ ଲାଗିଥାନ୍ତି । ସମସ୍ତ ଓଡିଆ ଭାଷାଭାଷୀ ଅଞ୍ଚଳକୁ ସଙ୍ଗଠିତ କରି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ତାଙ୍କର ଭିତିରି ଉଦ୍ଦେଶ୍ୟ ଥିଲା । କଂଗ୍ରେସ ଅନୁଷ୍ଠାନ ମାଧମରେ ଏହି କାର୍ଯ୍ୟ ସହଜ ହେବ ବୋଲି ସେ ଭାବିଥିଲେ ।

୧୯୨୫ ମସିହାରେ ଦ୍ୱିତୀୟ ପ୍ରାଦେଶିକ ସମ୍ମିଳନୀ ପୁରୀ ସହରରେ ବସିବା ସ୍ଥିର ହୋଇଥାଏ । ପଣ୍ଡିତ କୃପାସିନ୍ଧୁ ହୋତା, ପଣ୍ଡିତ ନୀଳକଣ୍ଠ ଓ ଗୋଦାବରୀଶ ପ୍ରଭୃତି ନେତୃବର୍ଗଙ୍କୁ ପ୍ରଭାବିତ କରି ପତିତ ଭାଇନା ଏହି ସମ୍ମିଳନୀକୁ ବୋଲଗଡଠାରେ କରାଇଥିଲେ । ସେତେବେଳେ ଆମ ଅଞ୍ଚଳର ଦାମୋଦର ମିଶ୍ର (ଦିବ୍ୟସିଂହପୁର ଶାସନ) ସୋମନାଥ ମହାପାତ୍ର, ଗୋଲମ ମୁସ୍ତଫା ଖାଁ (ମାଣିକାଗୋଡା) ରଘୁନାଥ ସାହୁ (ଗୋବର୍ଦ୍ଧନ ପୁର) ରଘୁନାଥ ପାହାଡ ସିଂହ, ମଦନ ରାୟ, ସାମନ୍ତ ଦୟାନିଧି ପଟ୍ଟନାୟକ, ଯୁଗୋଳ କିଶୋର ପଟ୍ଟନାୟକ ପ୍ରଭୃତି ଅନେକ ଯୁବକ କର୍ମୀ ବୋଲଗଡରେ ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ପ୍ରାଦେଶିକ ସମ୍ମିଳନୀ ବସାଇବାକୁ ପତିତ ଭାଇନାଙ୍କ ସହ ସହଯୋଗ କରୁଥାନ୍ତି । ପୁରୀ ଜିଲ୍ଲାର ନେତୃବୃନ୍ଦ ଯୁବକ କର୍ମୀମାନଙ୍କ ଆଗ୍ରହକୁ ପ୍ରତ୍ୟାଖ୍ୟାନ ନକରି ପାରି ବୋଲଗଡଠାରେ ଦ୍ୱିତୀୟ ପ୍ରାଦେଶିକ ସମ୍ମିଳନୀ ଡକାଇଲେ । ଉକ୍ତ ସମ୍ମିଳନୀରେ ବିଛିନ୍ନ ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାକୁ ଦାବୀ ଗୁଡିକ ପ୍ରସ୍ତାବ କରାଯାଇଥିଲା । ଏଣୁ ସ୍ୱତନ୍ତ୍ର ଉତ୍କଳ ଗଠନ ପାଇଁ ବୋଲଗଡ ଅଞ୍ଚଳର ଅବଦାନ କେତେ ତାହା ଆପଣମାନେ ସମସ୍ତେ ବିଚାର କରିବେ । ଯେଉଁ ଯୁବକ କର୍ମୀମାନେ ଉତ୍ସାହର ସହିତ ବୋଲଗଡ ଠାରେ ଏହି ସମ୍ମିଳନୀ ବସିବାର ଆୟୋଜନ କରିଥିଲେ ସେମାନେ ଆମର ନମସ୍ୟ ।

ସେତେବେଳେ ସୂତାକଟା ଏ ଅଞ୍ଚଳର ଗରିବ ଜନସାଧାରଣଙ୍କର ଏକ ପ୍ରଧାନ ଜୀବିକା ଥିଲା । ଲୋକମାନେ ପୁରୁଣା କାଳିଆ ପଥର ଚକିଥିବା ଅରଟରେ ସୂତା କାଟୁଥିଲେ । ଏହି ଅରଟରେ ଗାଁର କମାର ଦୋମୁହାଁ ତାକୁଡି ବ୍ୟବହାର କରାଯାଉଥିଲା । କପାଖାଇରେ କପାକୁ ଭର୍ତ୍ତିକରି ତୁଳା ବାହାର କରାଯାଉଥିଲା । କଟାଳୀମାନେ ତୁଳାକୁ ଏକ ବାଉଁଶ ତିଆରି ଧନୁରେ ଭିଣି ଝିଙ୍କି କାଠରେ କିମ୍ବା ଆଖୁ ସରରେ ବଳଣା ତିଆରି କରି ସୂତା କାଟୁଥିଲେ । ବୋଲଗଡର ଆଖପାଖ ଗ୍ରାମମାନଙ୍କ ମଧ୍ୟରେ ଅରଖପଲ୍ଲୀ, ଚୂଡା, ମାଣିକାଗୋଡା ଓ ବାଙ୍କୋଇ ପ୍ରଭୃତି ଗ୍ରାମ ସୂତାକଟା

ପାଇଁ ପ୍ରସିଦ୍ଧ ଲାଭ କରିଥିଲା । ସେତେବେଳେ ଧାନକୁଟି ଓ ସୂତାକାଟି ଅନେକ ଗରିବ ଲୋକ ନିଜର ପେଟ ପୋଷୁଥିଲେ । ସୂତାକଟା ପାଇଁ ଏ ଅଞ୍ଚଳ ସମଗ୍ର ଓଡିଶାରେ ପ୍ରସିଦ୍ଧି ଲାଭ କରିବା ହେତୁ ମହାତ୍ମାଗାନ୍ଧୀ ବୋଲଗଡ ପ୍ରତି ଆକୃଷ୍ଟ ହୋଇ ୧୯୨୭ ମସିହାରେ ଏଠାକୁ ଆସି ତିନି ଦିନ କାଳ ଅବସ୍ଥାନ କରିଥିଲେ । ମହତ୍ମା ଗାନ୍ଧୀଙ୍କ ବୋଲଗଡ ଆଗମନ ଏ ଅଞ୍ଚଳର ବହୁ ସ୍ୱାଧୀନ ଚେତା ଯୁବକଙ୍କୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେବା ପାଇଁ ପ୍ରେରଣା ପ୍ରଦାନ କରିଥିଲା ।

ଖଦୀ କାମ ଓ ସୂତାକଟାକୁ ଉତ୍ସାହିତ କରିବା ପାଇଁ ସେତେବେଳ ବୋଲଗଡ ଠାରେ ଚରଖା ସଂଘ ତରଫରୁ ଗୋଟିଏ ଖଦୀ କେନ୍ଦ୍ର ଖୋଲାଯାଇଥିଲା । ସେତେବେଳେ ସୂତାକଟା ଓ ଲୁଗାବୁଣାକୁ ସରକାର ଘୃଣା କରୁଥିଲେ ଓ ଖଦଡ ପିନ୍ଧୁଥିବା ଲୋକମାନଙ୍କୁ ସନ୍ଦେହ ଚକ୍ଷୁରେ ଦେଖୁଥିଲେ । ଏଣୁ ସ୍ୱାଧୀନତା ସଂଗ୍ରାମ ଚାଲିଥିବା ବେଳେ ଖଦୀ କାମ ଏକ ସରକାର ବିରୋଧ୍ କାର୍ଯ୍ୟରୂପେ ଗଣାଯାଉଥିଲା । ତଥାପି ଏ ସବୁ ତାଡନାକୁ ଭୃକ୍ଷେପ ନକରି ବୋଲଗଡ ଅଞ୍ଚଳରେ ବାଳକୃଷ୍ଣ ନନ୍ଦ (ଖଦୀ କେନ୍ଦ୍ର ମ୍ୟାନେଜର), ବଳଭଦ୍ର ସାହୁ, ଚକ୍ରଧର ମହାପାତ୍ର ଓ ଖଇରିଆର ବାଇଧର ରାଉତରାୟ ପ୍ରଭୃତି ନିର୍ଭିକ ଯୁବକମାନେ ଆଖପାଖ ଖଣ୍ଡପଡା ଓ ନୟାଗଡ ଅଞ୍ଚଳର କଟାଳୀମାନଙ୍କୁ ସୂତା ବଦଳରେ ତୁଳା ଯୋଗାଇ ଦେବାକୁ ଗଲାବେଳେ ରାଜାଙ୍କ କର୍ମଚାରୀ ଓ ପୋଲିସମାନଙ୍କ ତାଡନା ସହ୍ୟ କରିବାକୁ ପଡୁଥିଲା । ମୋର ମନେଅଛି, ଗାନ୍ଧୀଜୀଙ୍କ ବୋଲଗଡ ଆଗମନ ସମୟରେ ଖଣ୍ଡପଡା, ଦଶପଲ୍ଲା, ନୟାଗଡ ଓ ରଣପୁର ଅଞ୍ଚଳର କଟାଳୀ ଓ ଜନସାଧାରଣ କିପରି ବୋଲଗଡ ନଆସି ପାରିବେ ସେଥିପାଇଁ ରାଜାମାନେ ନିଜ ନିଜ ରାଜ୍ୟରେ ନିଷେଧାଦେଶ ଜାରୀ କରିଥିଲେ ଓ କଡା ପ୍ରହରୀ ନିଯୁକ୍ତ କରିଥିଲେ । ଗଡଜାତ ରାଜାମାନେ ସେତେବେଳେ ବ୍ରିଟିଶ୍ ସରକାରଙ୍କର ଚାମୁଚାଗିରି କରୁଥିଲେ । ଯେଉଁମାନେ ସେତେବେଳେ ଖଦଡିଆଙ୍କୁ ଘୃଣା କରୁଥିଲେ ଆଜି ସେମାନେ ଓ ସେମାନଙ୍କ ପିଲାମାନେ କଂଗ୍ରେସର ନେତା ଆସନରେ ଅଧିଷ୍ଠିତ । ଧନ୍ୟ ଏ ସୁବିଧାବାଦୀ ଗୋଷ୍ଠୀ ଓ ଧନ୍ୟ ଏ ଦେଶ ।

୧୯୩୦ ମସିହାରେ ମହାତ୍ମାଗାନ୍ଧୀଙ୍କ ଆହ୍ୱାନରେ ଦେଶସାରା ଲୁଣମରା ଆନ୍ଦୋଳନ ଓ ନିଶା ନିବାରଣ ପାଇଁ ସତ୍ୟାଗ୍ରହ ଚାଲିଥାଏ । ବୋଲଗଡରୁ ଗୋଟିଏ 'ବିଜୟ ବାହିନୀ' ପୁରୀ ନେବା ପାଇଁ ପଡିତ ଭାଇନା ଯୋଗାଡ କରୁଥାନ୍ତି । ଏହା ପୂର୍ବରୁ ସେ ସ୍ୱର୍ଗତ ଗଙ୍ଗାଧର ମିଶ୍ର (ରଣପୁର- ସାରଙ୍ଗଧରପୁର ଶାସନ) ଓ ସୁଦର୍ଶନ ମହାପାତ୍ର (ମାଳିସାହି) ଙ୍କ ସହ ସତ୍ୟାଗ୍ରହରେ ଯୋଗଦେଇ ବୋଲଗଡ ଫେରିଥାନ୍ତି । ଏମାନଙ୍କ ପୂର୍ବରୁ ଖଇରିଆର ରାଧାକୃଷ୍ଣ ସାମନ୍ତରା ବାଲେଶ୍ୱର ଜିଲ୍ଲାର ଇଞ୍ଚୁଡି ଠାରେ ଲୁଣମରା ଆନ୍ଦୋଳନରେ ଯୋଗଦେଇ ଛଅମାସ କାରାଦଣ୍ଡ

ଭୋଗୁଥାନ୍ତି । ରାଧାକୃଷ୍ଣ ସାମନ୍ତରାଙ୍କ କଥା ଭାବିଲେ ଆଜି ଆଖିରେ ଲୁହ ଆସେ । ଦେଶ ସ୍ୱାଧୀନତାର ବହୁ ପୂର୍ବରୁ ୧୯୩୫ ମସିହାରେ ସେ ବେମାରରେ ପଡି ଔଷଧ ଚିକିଏ ନପାଇ ବିଚରା ଅକାଳରେ ମୃତ୍ୟୁ ବରଣ କଲେ । ତାଙ୍କ ଦେଶପ୍ରେମ ଓ ସାହସିକତା ପ୍ରଶଂସନୀୟ ।

ପତିତ ଭାଇନାଙ୍କ ନେତୃତ୍ୱରେ ଯେଉଁ ବିଜୟ ବାହିନୀ ପୁରୀକୁ ପଦଯାତ୍ରା କରି ଲବଣ ସତ୍ୟାଗ୍ରହରେ ଯୋଗଦେବାକୁ ଯାଇଥିଲେ ସେମାନଙ୍କ ମଧ୍ୟରେ ବୋଲଗଡର ଗଣେଶ୍ୱର ପରିଡା, ଦୀନବନ୍ଧୁ ପ୍ରଧାନ, ଙ୍ଗପୁରର ବାସୁ ସୁବୁଦ୍ଧି, ଦିବ୍ୟସିଂହପୁର ଶାସନର ଜୟକୃଷ୍ଣ ମିଶ୍ର, ମଧୁସୂଦନ ମିଶ୍ର, ରାମକୃଷ୍ଣ ମିଶ୍ର, ମାଣିକାଗୋଡାର ବିଶ୍ୱୟର ମହାପାତ୍ର ଓ ଅକ୍ରୁର ସାହୁ, ମାଳିସାହିର ଗଦାଧର ମହାପାତ୍ର ପ୍ରଭୃତିଙ୍କ ନାମ ଉଲ୍ଲେଖ ଯୋଗ୍ୟ । ବୋଲଗଡର 'ବିଜୟ ବାହିନୀ' ପୁରୀକୁ ପଦଯାତ୍ରା କଲାବେଳେର ଦୃଶ୍ୟ ଲୋକମାନଙ୍କ ମନରେ ବଡ କୌତୂହଳ ସୃଷ୍ଟି କରିଥିଲା । ଦଳେ ଯୁବକ ଖଦଡର ଆଣ୍ଠୁ ଲୁଚୁ ନଥିବା ଲୁଗା ଓ ହାପ୍ ସାର୍ଟ ପିନ୍ଧି କାନ୍ଧରେ ଙ୍ଗ୍ରେସ ପତାକା ଲାଗିଥିବା ଗୋଟିଏ ଲେଖାଁ ଠେଙ୍ଗା ଧରି ବୀର ଦର୍ପରେ ଖେଦି ଚାଲିଥାନ୍ତି ପୁରୀ ଅଭିମୁଖେ । ଶୀତରୁ ରକ୍ଷା ପାଇବା ପାଇଁ ଗୋଟିଏ ଲେଖାଁଏ ଚଦର ଅଣ୍ଟାରେ ବନ୍ଧା ହୋଇଥାଏ । ବାଟ ଗାଁ ମାନଙ୍କରେ କିଏ ଖାଇବାକୁ ଦେଲେତ ଖାଇଲେ, ନହେଲେ ଉପବାସ । ସେଥିପାଇଁ ଭୂକ୍ଷେପ ନଥାଏ । ସ୍ଲୋଗାନ ଦେଇ ଦେଇ ଚାଲିଥାନ୍ତି ସେମାନେ । ତରୁଣ ପ୍ରାଣର କି ଉନ୍ମାଦ । ବୋଲଗଢର 'ବିଜୟ ବାହିନୀ' ପୁରୀ ସହର ପ୍ରଦକ୍ଷିଣ କରି ସହର ବାସୀଙ୍କ ମନରେ ଚମକ ସୃଷ୍ଟି କରିଥିଲେ ଓ ନେତାମାନଙ୍କ ପ୍ରାଣରେ ନୂତନ ଉତ୍ସାହ ଉଦ୍ଦୀପନା ଖେଳାଇ ଦେଇଥିଲେ । ସେତେବେଳର ବୋଲଗଡ ଓ ଆଜିର ବୋଲଗଡ ମଧ୍ୟରେ କି ଆକାଶ ପାତାଳ ପ୍ରଭେଦ । କୁଆଡେ ଉଭେଇଗଲା ଏତେ ବେଗେ ସେ ସ୍ୱାଧୀନ ଚିନ୍ତାଧାରା ଓ ବିପ୍ଳବାତ୍ମକ ମନୋବୃତ୍ତି । ବୋଲଗଡର ଜନସାଧାରଣ ଆଜି ଇତିହାସ ସୃଷ୍ଟି କରିବା ଗୌରବକୁ ଭୁଲିଯାଇ କେବଳ ବଞ୍ଚିରହିବା ଧର୍ମୀ ହୋଇପଡିଛନ୍ତି ।

ବୋଲଗଡର 'ବିଜୟ ବାହିନୀ' ପୁରୀରେ ପହଞ୍ଚିବା ପରେ ସେଠାରୁ ଏକ ପାଞ୍ଚ ଜଣିଆ ସତ୍ୟାଗ୍ରହୀ ଦଳ ବୋଲଗଡରେ ଥିବା ଗଞ୍ଜେଇ ଅଫିମ ଦୋକାନ ମାନଙ୍କରେ ପିକେଟିଙ୍ଗ କରିବାକୁ ଆସି ପହଞ୍ଚିଲେ ଆମ ଘରଠାରେ । ଏହି ଦଳରେ ଥିଲେ ପୁରୀ ଟାଉନର ଖନା ବିଶ୍ୱନାଥ ମିଶ୍ର, ସଦର ରଘୁନାଥ ମିଶ୍ର, ଗୋପ ନୂଆହାଟର ନଟବର ମହାନ୍ତି, ବ୍ରହ୍ମଗିରି ଗୋଲୁଆଳର ଗୋପାଳ ମିଶ୍ର । ବୋଧହୁଏ ପୁରୀଠାରେ ପତିତ ଭାଇନା ସେମାନଙ୍କୁ ମୋ ନାମ କହିଥିଲେ । ତେଣୁ ସେମାନେ ସିଧା ବୋଲଗଡ ନଆସି ମାଣିକାଗୋଡା ଯାଇଥିଲେ । ସେମାନଙ୍କ ସହିତ ମୁଁ

ପିକେଟିଙ୍ଗରେ ଯୋଗ ଦେବାକୁ ପ୍ରସ୍ତୁତ ହୋଇ ଘରୁ ବାହାରି ପଡିଲି । ସରକାରଙ୍କ ଭୟରେ ଲୋକମାନେ ସେତେବେଳେ ଆମ ସତ୍ୟାଗ୍ରହୀଦଳକୁ ପିଣ୍ଡାକୁ ଉଠାଇବାକୁ ପ୍ରସ୍ତୁତ ନଥିଲେ । ଏଣୁ ଆମେ ଦିନଯାକ ପିକେଟିଙ୍ଗ କରି ସଂଧ୍ୟାରେ ବୋଲଗଡ ଜଗନ୍ନାଥଙ୍କ ମଣ୍ଡପରେ ଆଶ୍ରୟ ନେଉଥିଲୁ । ସେତେବେଳେ ଆମକୁ ସାହାଯ୍ୟ କରୁଥିଲେ ବୋଲଗଡର ଦାମୋଦର ସାହୁ (ସେ ଏବେ ନାହାନ୍ତି), ବଳଭଦ୍ର ସାହୁ, ଚକ୍ରଧର ମହାପାତ୍ର, ରଘୁନାଥ ପାହାଡ ସିଂହ, ବୋଲଗଡରେ ଅବସ୍ଥାନ କରୁଥିବା ପଞ୍ଜାବୀ ମୋଟର ବାଲା ଓ ଭାଗ୍ୟରଥି ସିଂହ (ଡାକନାମ ଦଉଲତ୍) ।

ଆମ୍ଭେମାନେ ଅଫିମ ଦୋକାନରେ ପିକେଟିଙ୍ଗ କଲା ସମୟରେ ଦୋକାନକୁ ନିଶାଖୋରମାନେ ଅଫିମ ଗଞ୍ଜେଇ କିଣିବାକୁ ଆସିଲେ ପୋଲିସ ସେମାନଙ୍କୁ କିଣିବାରେ ସାହାଯ୍ୟ କରୁଥିଲେ । ଆମ୍ଭେମାନେ ସେମାନଙ୍କୁ ବିନୟ ଭାବେ ନିବାରଣ କଲେ ଆମକୁ ପୋଲିସ କୁଭାଷାରେ ଗାଳି ବର୍ଷଣ କରୁଥିଲେ। ଯଦି ବା ପୋଲିସ ସହ ଠେଲା ପେଲାରେ ଆମ ଭିତରୁ କେହି ତଳେ ପଡିଯାଉଥିଲେ ତାହେଲେ ତାକୁ ଦଳାକୁଦା କରିବା ଓ ଗୋଇଠା ମାରିବା ଇତ୍ୟାଦି ନିର୍ଯ୍ୟାତନାର ସୁଯୋଗ ନେଉଥିଲେ । ଏ ସବୁ ଯାତନା ସତ୍ୟାଗ୍ରହୀମାନଙ୍କୁ ସହ୍ୟ କରିବାକୁ ପଡୁଥିଲା । ଜଗନ୍ନାଥ ମନ୍ଦିର ସାମନା କଦମ୍ବ ଗଛ ଥିଲା ଆମ୍ଭମାନଙ୍କର ଆଶ୍ରୟସ୍ଥଳ । ଆମ ସଙ୍ଗରେ ବୋଲଗଡର ବାନାମ୍ବର ମହାପାତ୍ର ଓ ଲିଙ୍ଗରାଜ ବେହେରା ( ଏ ଦୁହେଁ ଆଉ ନାହାନ୍ତି ) ଯୋଗ ଦେଇଥାନ୍ତି । କଦମ୍ବ ଗଛମୂଳେ ରୋଷେଇ କରି ଆମେ ଖାଉ ଓ ଗଛରେ ଆଟିକାକୁ ଓହଳାଇ ଦେଇ ସତ୍ୟାଗ୍ରହ କରିବାକୁ ଦିନଯାକ ଚାଲିଯାଉ । ଦିନେ ଦିନେ ସଂଧ୍ୟାରେ ଫେରି ଦେଖିଲା ବେଳକୁ ଆଟିକାକୁ କିଏ ଭାଙ୍ଗି ଦେଇଥାଏ । ଏ ସବୁ କାମ ପୋଲିସ ମାନଙ୍କର ବୋଲି ଜାଣି ନୀରବ ରହୁ । ବେଳେବେଳେ ଦଉଲତ ଆମ ପାଇଁ ପଞ୍ଜାବୀ ମଟର ବାଲା ଘରେ ଆମର ଖାଇବା ପିଇବାର ସୁବିଧା ରାତିବେଳା କରିଦିଏ । ପଞ୍ଜାବୀ ମାଲିକ ପଇସାପତ୍ର ଏଥିପାଇଁ ନିଏ ନାହିଁ। ସତ୍ୟାଗ୍ରହୀମାନଙ୍କ ପ୍ରତି ତାର ଯେଉଁ ଦରଜ ଥିଲା ତାହା ବାସ୍ତବିକ ପ୍ରଶଂସନୀୟ । ବୋଲଗଡରେ ଆମ୍ଭେମାନେ ସତ୍ୟାଗ୍ରହ ଚଳାଉଥିବା ସମୟରେ ଖବର ପାଇଲୁ ଯେ ପତିତ ଭାଇନାଙ୍କ ନେତୃତ୍ୱରେ ଯେଉଁ ୧୧ ଜଣିଆ 'ବିଜୟ ବାହିନୀ' ପୁରୀ ଅଭିମୁଖେ ଯାତ୍ରା କରିଥିଲେ ସେ ସମସ୍ତେ ପୁରୀଠାରେ ଲୁଣମରା ଅପରାଧରେ ବନ୍ଦୀ ହୋଇ ପୁରୀ ଜେଲକୁ ପଠାଗଲେ । ଆମ୍ଭେମାନେ ବୋଲଗଡରେ ଦୁଇମାସ ସତ୍ୟାଗ୍ରହ ଚଳାଇ କଂଗ୍ରେସ ନେତୃବୃନ୍ଦଙ୍କ ନିର୍ଦ୍ଦେଶରେ ଅନ୍ୟତ୍ର ଚାଲିଗଲୁ । ଏ ସବୁ ୧୯୩୦ ମସିହାର ଘଟଣାବଳୀ । ଏହି ବର୍ଷ ଟାଙ୍ଗି ଥାନା ସୋରଣଠାରେ ଲବଣ ସତ୍ୟାଗ୍ରହ କରି ପୁନର୍ବାର ପତିତ ଭାଇନା ଗିରଫ ହେଲେ ଓ ତାଙ୍କର ସହକର୍ମୀ ସ୍ୱର୍ଗତ ପ୍ରାଣନାଥ ପଟ୍ଟନାୟକ ଓ ଗୋକୁଳ ମୋହନ ରାୟ ଚୂଡାମଣି

ପ୍ରଭୃତିଙ୍କ ସହ କାରାବରଣ କଲେ ।

୧୯୩୨ ମସିହାରେ ପୁରୀଠାରେ ନିଖିଳ ଭାରତ କଂଗ୍ରେସ ଅଧିବେଶନ ହେବାର ଆୟୋଜନ ଚାଲିଥାଏ । 'ବିଜୟ ବାହିନୀ'ର ବହୁକର୍ମୀ ସ୍ୱେଚ୍ଛାସେବକ ରୂପେ ବଙ୍କିଆ ପଣ୍ଡାର ବିସ୍ତୃତ ବାଲୁକା ପ୍ରାନ୍ତରରେ ଅଧିବେଶନ ପାଇଁ ଗୃହ ନିର୍ମାଣ କାର୍ଯ୍ୟରେ ନିଯୁକ୍ତ ଥାନ୍ତି । ସେତେବେଳକୁ ପତିତ ଭାଇନା ସାକ୍ଷୀଗୋପାଳ ଗୋପବନ୍ଧୁ ଦରିଦ୍ର ନାରାୟଣ ସେବା କେନ୍ଦ୍ରରେ ରହି ପୁରୀ ଯିବା ଆସିବା କରି ଅଧିବେଶନ କାମରେ ସାହାଯ୍ୟ କରୁଥାନ୍ତି । ମୁଁ ପୁରୀରେ ରହି କଂଗ୍ରେସର ସ୍ୱେଚ୍ଛାସେବୀ ରୂପେ ଅଧିବେଶନ ପାଇଁ କାର୍ଯ୍ୟବ୍ୟସ୍ତ ଥାଏ । ସମୟେ ସମୟେ ତାଙ୍କ ସହିତ ମୋର ଦେଖା ସାକ୍ଷାତ ହୁଏ ।

୧୯୩୧ ମସିହାରେ ଗାନ୍ଧୀ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଗଲେ ଓ ସେଠାରୁ ଫେରିବା ପରେ ଇଂରେଜ ସରକାର କଂଗ୍ରେସକୁ ବେଆଇନ ଘୋଷଣା କଲେ । ଏହି ସମୟରେ ଅର୍ଥାତ ୧୯୩୨-୩୩ ମସିହା ଭିତରେ ଭାଇନା ଇଂରେଜ ସରକାରଙ୍କ ଆଇନକୁ ଅମାନ୍ୟ କରିବା ଅପରାଧରେ ଚାରିଥର ଆରେଷ୍ଟ ହୋଇ ପ୍ରାୟ ୯ ମାସ ଖଣ୍ଡେ ଜେଲରେ କଟାଇଥିଲେ । ସେ ସବୁ ବିବରଣୀ ଏଠାରେ ପ୍ରକାଶ କରିବା ମୋ ପକ୍ଷେ ସମ୍ଭବ ନୁହେଁ । ୧୯୩୨-୧୯୪୨ ପର୍ଯ୍ୟନ୍ତ ପତିତ ଭାଇନାଙ୍କ ତ୍ୟାଗପୂତ ଜୀବନର ଧାରାବାହିକ ବିବରଣୀ ମୁଁ ପ୍ରଦାନ କରିପାରୁନାହିଁ । କେବଳ ମନେ ପଡୁଛି ଯେ, ୧୯୩୮ ମସିହାରେ ଜିଲ୍ଲା ବୋର୍ଡ ନିର୍ବାଚନରେ ବୋଲଗଡର ପ୍ରତିନିଧି ରୂପେ ନିର୍ବାଚିତ ହୋଇ ପ୍ରାୟ ତିନିବର୍ଷ ସେଠାରେ ରହି ଲୋକମାନଙ୍କ ଉନ୍ନତି ମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ।

ଏହାପରେ ୧୯୪୨ ମସିହାର "ଭାରତ ଛାଡ" ଆନ୍ଦୋଳନ ଆସି ପହଞ୍ଚିଲା । ସାରା ଭାରତ ବର୍ଷର ସର୍ବତ୍ର କଂଗ୍ରେସ ନେତା ଓ କର୍ମୀମାନେ ବିପ୍ଳବୀ ହୋଇ ଉଠିଲେ । ଜେଲ ଓ କଏଦୀଖାନାକୁ ଭୟ କଲେ ନାହିଁ । ଦେଶରେ ଚାଲିଲା ଥାନା, ଅଫିସ ଓ ଡାକଘର ପୋଡି । ସମସ୍ତ ପ୍ରକାର ଯୋଗାଯୋଗକୁ ଅକାମୀ କରିଦେବାକୁ ସ୍ଥିର କରାଯାଇଥାଏ । ଡାକ ତାର କାଟି ଦିଆଯିବ ଓ ଯାନବାହନ ନଷ୍ଟ କରିଦିଆଯିବ । ଶାସନକୁ ପଙ୍ଗୁ କରିଦେବା କଂଗ୍ରେସ କର୍ମୀମାନଙ୍କ ଲକ୍ଷ୍ୟ ରହିଲା । ଏହି ସମୟରେ ସରକାର ଦିଘିରି ଓ ବୋଲଗଡ ଖଦୀ କେନ୍ଦ୍ରକୁ ବେଆଇନ ଘୋଷଣା କରି ସେଥିରେ ତାଲା ପକାଇଦେଲେ । ଫଳରେ ବୋଲଗଡ, ନୟାଗଡ, ରଣପୁର, ଖଣ୍ଡପଡା ଅଞ୍ଚଳର ହଜାର ହଜାର କଟାଳୀ କର୍ମଶୂନ୍ୟ ହୋଇ ବସି ରହିଲେ ।

"ଭାରତ ଛାଡ" ଆନ୍ଦୋଳନରେ ବୋଲଗଡର ଭୂମିକା କ'ଣ ହେବ ତାହା ସ୍ଥିର କରି କାର୍ଯ୍ୟ ପନ୍ଥା ସମ୍ପର୍କରେ ଆମ୍ଭମାନଙ୍କୁ ବେଳେବେଳେ ସମବେତ ଆଲୋଚନା

ଲୁକ୍କାୟିତ ଭାବେ କରିବାକୁ ପଡୁଥାଏ । ଗଞ୍ଜାମ ଜିଲ୍ଲାର ଜଗନ୍ନାଥ ମିଶ୍ରେ (ବୋଲଗଡ ଖଦୀକେନ୍ଦ୍ର ମ୍ୟାନେଜର) ଗାଁକୁ ଗାଁ ବୁଲି କର୍ମୀମାନଙ୍କୁ ବୈପ୍ଳବିକ ପନ୍ଥା ଗ୍ରହଣ କରିବାକୁ ଉତ୍ସାହିତ କରୁଥାନ୍ତି । ଦିନେ ଆମ୍ଭେମାନେ ପ୍ରସ୍ତାବ କଲୁ ଯେ ବୋଲଗଡ ଥାନା ଓ ଡାକଘରକୁ ନିଆଁ ଲଗାଇ ଦେବା ଓ ଖଦୀ କେନ୍ଦ୍ରକୁ ବଳପୂର୍ବକ ଅଧିକାର କରି ସେଥିରେ ଥିବା ଲୁଗାପଟା ଓ ଅନ୍ୟାନ୍ୟ ସରଞ୍ଜାମ ଗୁଡିକୁ ଗରିବ ଲୋକ ମାନଙ୍କୁ ବାଣ୍ଟିଦେବା । ଏହି ପ୍ରସ୍ତାବରେ କେତେକ କର୍ମୀ ରାଜି ନ ହେବାରୁ ଶେଷରେ ସ୍ଥିର କରାଗଲା ଯେ ସେପ୍ଟେମ୍ବର ମାସ ୧୨ ତାରିଖ ଦିନ ବୋଲଗଡ ଅଞ୍ଚଳର ସମସ୍ତ କଟାଳୀମାନଙ୍କୁ ସମବେତ କରାଇ ଗୋଟିଏ ପ୍ରତିବାଦ ସଭା କରାଯିବ ଓ ଖଦୀ କେନ୍ଦ୍ରରୁ ପୋଲିସ ଫଉଜ ଘୁଞ୍ଚାଇ ନେଇ ଚାବି ଖୋଲିବାକୁ ଦାବି କରାଯିବ । ସେହି ନିର୍ଦ୍ଦିଷ୍ଟ ଦିନ ହଜାର ହଜାର ସଂଖ୍ୟକ ସ୍ତ୍ରୀ, ପୁରୁଷ କଟାଳୀମାନେ ଚାରିଆଡୁ ଆସି ଦିନ ୧୦ଟା ବେଳକୁ ସ୍କୁଲ ପଡିଆରେ ଜମା ହେଲେ । ସେଦିନ ସେମାନଙ୍କ ନେତୃତ୍ୱ ନେବାର ଥିଲା ଜଗନ୍ନାଥ ମିଶ୍ରଙ୍କର । କିନ୍ତୁ ଏ ଖବର ଆଗରୁ ଖୋର୍ଦ୍ଧା ଏସ.ଡି.ଓ. ସାହେବ ପାଇ ସଭାସ୍ଥଳୀରୁ ବୋଲଗଡ ପୋଲିସଙ୍କ ସାହାଯ୍ୟରେ ତାଙ୍କୁ ବନ୍ଦୀ କରି ନେଇଗଲେ । ତାପରେ ବନ୍ଧୁକ ଓ ଲାଠିଧାରୀ ପୋଲିସମାନେ ସମବେତ ମରଦ ଓ ମାଇପି ମାନଙ୍କୁ ବାଡେଇ ଘଉଡାଇବାକୁ ଲାଗିଲେ । ତଥାପି କଟାଳୀ ମାନେ ଭୟଭୀତ ନହୋଇ ନିଜ ନିଜ ଜାଗାରେ ବସି ନୀରବରେ ଘରୁ ଆଣିଥିବା ଅରଟରେ ସୁତା କାଟିବାକୁ ଲାଗିଲେ । ପଡିଆ ସାରା କଟାଳୀ ଓ ଅରଟରେ ପୂର୍ଣ୍ଣ । ଏହା ଏକ ଅପୂର୍ବ ଦୃଶ୍ୟ । ଯେତେ ଘଉଡାଇଲେ ମଧ୍ୟ ଲୋକମାନେ ଯେତେବେଳେ ପଡିଆ ଛାଡିଲେ ନାହିଁ, ପୋଲିସ ମାନେ ଅତି ଅଭଦ୍ର ଭାଷାରେ ମାଇପି କଟାଳିମାନଙ୍କୁ ଗାଳି ଦେବାକୁ ଲାଗିଲେ । ସେତେବେଳକୁ ପତିତ ଭାଇନା ତତ୍‌କାଳୀନ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଆନନ୍ଦ ଚନ୍ଦ୍ର ରଥଙ୍କ ସହ ତାଙ୍କ କ୍ୱାର୍ଟର୍ସ ବାରଣ୍ଡାରେ ବସି କଥାବାର୍ତ୍ତା ହେଉଥିଲେ । ପୋଲିସର ଏ କଟୁବାଣୀ ସେ ଆଉ ସହ୍ୟ କରିପାରିଲେ ନାହିଁ । କ୍ଷିପ୍ର ଗତିରେ ଧାଇଁ ଆସି ପୋଲିସ କାର୍ଯ୍ୟ କଳାପର ସେ ଦୃଢ ପ୍ରତିବାଦ କଲେ ଓ ଏକାକୀ ନିଜେ ବିଭିନ୍ନ ସ୍ଲୋଗାନ ଦେବାକୁ ଲାଗିଲେ । 'ସ୍ୱାଧୀନ ଭାରତ', 'ଜାତୀୟ ପତାକା', 'ମହାତ୍ମା ଗାନ୍ଧୀ' ଙ୍କ ଜୟଧ୍ୱନିରେ ବୋଲଗଡର ନଭମଣ୍ଡଳ ନିନାଦିତ ହେବାକୁ ଲାଗିଲା । ସଂଗେ ସଂଗେ ବୋଲଗଡ ପୋଲିସ ଅଫିସର ସେଠାକୁ ଆସି ତାଙ୍କୁ ବାନ୍ଧି ନେଇଗଲେ । ପତିତ ଭାଇନା ଯଦି ସେତେବେଳେ ଉପସ୍ଥିତ ନହୋଇଥାନ୍ତେ ତାହେଲେ ନିରୀହ କଟାଳୀମାନଙ୍କ ଉପରେ ପୋଲିସର ନିର୍ମମ ଅତ୍ୟାଚାର ଚାଲିଥାନ୍ତା । ପତିତ ଭାଇନାଙ୍କ ଗିରଫ ଖବର ବିଜୁଳି ବେଗରେ ବୋଲଗଡ ଅଂଚଳର ପ୍ରତ୍ୟେକ ଗ୍ରାମ ମାନଙ୍କରେ ଖେଳିଗଲା ଓ ଶହ ଶହ ଲୋକ ତାଙ୍କୁ ସମବେଦନା ଜଣାଇବାକୁ ଥାନାକୁ ଆସିଲେ ।

କିନ୍ତୁ ନୀରବ ସମବେଦନା ଜ୍ଞାପନ କରିବା ବ୍ୟତୀତ ସେମାନଙ୍କର ଅନ୍ୟ ଉପାୟ ନଥିଲା । ସେଦିନ ବୋଲଗଡରେ ଯେଉଁ ଜନ ସମାଗମ ହୋଇଥିଲା ତାହା ବୋଲଗଡର ପ୍ରସିଦ୍ଧ ଚନ୍ଦନ ଯାତ୍ରାର ଗହଳି ଠାରୁ ଅଧିକ ଥିଲା । ଦୈବାତ ଏହି ଘଟଣାର ଅଳ୍ପ ଦିନ ପରେ ଓଡିଶାର ତତକାଳୀନ ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ଅନ୍ୟ କେତେଜଣ ମନ୍ତ୍ରୀଙ୍କ ସହ ବୋଲଗଡ ଡାକ ବଙ୍ଗଳାରେ ଆସି ପହଞ୍ଚିଲେ । ଏ ଖବର ପାଇ କଟାଳୀମାନେ ତାଙ୍କୁ ସେଦିନର ସମସ୍ତ ବିବରଣୀ ଜଣାଇଲେ ଓ ସେମାନଙ୍କର ଦାବି ଗୁଡିକ ଉପସ୍ଥାପନ କଲେ । ସେମାନେ ମଧ ସହାନୁଭୂତି ସହ କଟାଳୀ ମାନଙ୍କ କଥା ଶୁଣି ସେମାନଙ୍କ ଦାବୀ ଗୁଡିକ ମାନି ନେଲେ । କିନ୍ତୁ ପତିତ ଭାଇନାଙ୍କୁ ଓ ଜଗନ୍ନାଥ ମିଶ୍ରଙ୍କୁ ଛଡା ଗଲା ନାହିଁ । ତା ପରଦିନ ତାଙ୍କୁ ଖୋର୍ଦ୍ଧା ଜେଲକୁ ପଠାଇ ଦିଆଗଲା ଓ ସେଠାରୁ ତାଙ୍କୁ ବ୍ରହ୍ମପୁର ଜେଲକୁ ଯିବାକୁ ହୋଇଥିଲା ।

ବୋଲଗଡରେ କଟାଳୀ ଆନ୍ଦୋଳନରେ ମୁଁ କୌଣସି ଭୂମିକା ନେଇ ନଥିଲି । କାରଣ ସେତେବେଳକୁ ମୁଁ ବାହାରେ ନିଜକୁ କଂଗ୍ରେସ କର୍ମୀ ରୂପେ ପରିଚୟ ଦେଉଥିଲେ ସୁଦ୍ଧା ମୋର ବିଶେଷ ଭୂମିକା ଥିଲା ସ୍ୱର୍ଗତ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଦ୍ୱାରା ସଂଗଠିତ କମ୍ୟୁନିଷ୍ଟ ଦଳୀୟ କାର୍ଯ୍ୟକ୍ରମରେ । ଜଣେ ନିଷ୍ଠାପର କମ୍ୟୁନିଷ୍ଟ ଭାବେ ସେତେବେଳେ ମୋତେ ଦଳୀୟ ସାଙ୍ଗଠନିକ କାର୍ଯ୍ୟ କରିବାକୁ ପଡୁଥିବାରୁ ଆଉ ଭାଇନାଙ୍କ ସହ ଏକାଠି କାମ କରିବା ପାଇଁ ମୋ ପକ୍ଷେ ସମ୍ଭବ ହୋଇନଥିଲା ।

ଏହାର ବର୍ଷକ ପରେ ପତିତ ଭାଇନା ହଠାତ୍ ଦିନେ ବ୍ରହ୍ମପୁର ଜେଲରୁ ଛୁଟି ନେଇ (ପାରୋଲରେ) କିଛିଦିନ ପାଇଁ ନିଜ ଗାଁକୁ ଆସିଲା । ସେ ନିଜ ଗାଁ ଖଣ୍ଡୁରିଆକୁ ଯିବା ପୂର୍ବରୁ ବୋଲଗଡରେ ଅଟକି ଯାଇଥାନ୍ତି । ମୁଁ ସେଦିନ ବୋଲଗଡ ଆସିଥାଏ । ଖବର ପାଇଲି ପତିତ ଭାଇନା ପାରୋଲରେ ଆସିଛନ୍ତି । ତାଙ୍କୁ ସାକ୍ଷାତ କରିବାକୁ ଯାଇ ଦେଖିଲି, ସେ ପୋଷ୍ଟ ଅଫିସ ପାଖରେ ବସିଛନ୍ତି ଓ ତାଙ୍କ ପାଖରେ ବଳଭଦ୍ର ସାହୁ, ଚକ୍ରଧର ମହାପାତ୍ର ପ୍ରଭୃତି କେତେକ କର୍ମୀ ଠିଆ ହୋଇ ଆଲୋଚନା କରୁଛନ୍ତି । ମୁଁ ଯାଇ ତାଙ୍କ ପାଖରେ ପହଞ୍ଚିଗଲି ଓ ନମସ୍କାର କରି ଅଭିବାଦନ ଜଣାଇଲି । ମୋତେ ଦେଖି ସେ ବଡ ଖୁସି ହୋଇଗଲେ ଓ କହିଲେ- 'ପରଶୁ ବାବୁ' ଚାଲ ସାଙ୍ଗ ହୋଇ ଆମ ଗାଁକୁ ଯିବା । ଏକଥା ଶୁଣି ମୁଁ କହିଲି - ଆମେ ଦୁହେଁ ଏକା ଯିବା କାହିଁକି ? ଆମେ ସମସ୍ତେ ସାଙ୍ଗ ହୋଇ ଗୋଟିଏ ଶୋଭାଯାତ୍ରାରେ ଆପଣଙ୍କୁ ଘରେ ଛାଡିଦେଇ ଆସିବୁ ।

ଏକଥା ସେତେବେଳକୁ ଅନ୍ୟ କାହାରି ମୁଣ୍ଡକୁ ଢୁକି ନଥାଏ । ସଂଗେ ସଂଗେ ବୋଲଗଡ ବାଜାବାଲାଙ୍କୁ ଖବର ଦିଆଗଲା । ସେମାନେ ଢ଼ୁମ ଓ ଚାଙ୍ଗୁ ଧରି ପହଞ୍ଚିଲେ । ଖଣ୍ଡୁରିଆକୁ ଖବର ଦିଆଗଲା, ଗ୍ରାମବାସୀ ପାଇକ ଆଖଡା ଦଳକୁ

ବୋଲଗଡ ପଠାଇଲେ । ବୋଲଗଡ଼ ପାଇକ ଆଖଡା ଦଳ ମଧ୍ୟ ସେମାନଙ୍କ ଶହ ଶୋଭାଯାତ୍ରାରେ ବାହାରି ପଡିଲେ । ବୋଲଗଡ କର୍ମୀ ଓ ଜନସାଧାରଣ ତରଫରୁ ଫଂଗେ ଫଂଗେ ଫୁଲମାଳ ମାନ ଆସି ପହଞ୍ଚିଲା । ଖଇଁରିଆ ଗ୍ରାମର ଆବାଳ ବୃଦ୍ଧ ବନିତା ଏ ଶୋଭାଯାତ୍ରାରେ ଯୋଗଦେଇଥିଲେ । ତାଙ୍କ ଗାଁ ଦାଣ୍ଡରେ ଆମ ଶୋଭାଯାତ୍ରା ଗଲାବେଳେ ଦେଖିବାକୁ ମିଳିଥିଲା ଯେ, ପ୍ରତ୍ୟେକ ଲୋକଙ୍କ ଦୁଆରେ ଆମ୍ରପତ୍ର ସୁଶୋଭିତ କଳସମାନ ସ୍ଥାପନ କରାଯାଇଛି । ବିପୁଳ ଜନଧ୍ୱନି ଓ ହୁଳହୁଳି ମଧ୍ୟରେ ଗ୍ରାମବାସୀ ତାଙ୍କୁ ସ୍ୱାଗତ ଜଣାଇଥିଲେ । ଏହିପରି ବିପୁଳ ସମ୍ବର୍ଦ୍ଧନା ମଧ୍ୟରେ ଆମେ ତାଙ୍କୁ ତାଙ୍କ ଘରେ ଛାଡି ଦେଇ ଆସିଥିଲୁ । ଏହାଥିଲା ବୋଲଗଡ ବାସୀଙ୍କର ଏକ ଗୌରବର ଦିନ । ସ୍ୱାଧୀନ ଚିନ୍ତାଧାରାର ବ୍ୟକ୍ତିଙ୍କୁ ଉପଯୁକ୍ତ ସମ୍ମାନ ଦେଇ ଶିଖିଥିଲା ଏଇ ବୋଲଗଡ ମାଟି । ଯେତେଦିନ ପର୍ଯ୍ୟନ୍ତ ଏ ମାଟି ତାର ଏ ବୈଶିଷ୍ଟ୍ୟ ରକ୍ଷା କରିଥିବ ସେତେ ଦିନ ପର୍ଯ୍ୟନ୍ତ ଅନ୍ୟମାନେ ଆମକୁ ସମ୍ମାନ ଦେବାକୁ ବାଧ ହେଉଥିବେ ଓ ସମସ୍ତଙ୍କର ଆମ ପ୍ରତି ଭୟ ଥିବ । ଯେଉଁଦିନ ତାହା ଆମେ ଭୁଲିଯିବା ସେ ଦିନ ଆମ ମହତ୍ତ୍ୱ ଆମେ ହରାଇ ବସିବା । ଏଣୁ ମୋର ଅଞ୍ଚଳ ବାସୀଙ୍କ ଆଗରେ ଏ ମାଟିରେ ଜନ୍ମ ନେଇଥିବା ତ୍ୟାଗପୂତ ବ୍ୟକ୍ତି ମାନଙ୍କ ଦୁଃସାହସିକ କାର୍ଯ୍ୟବଳୀର ଉପସ୍ଥାପନ ଏକାନ୍ତ ବାଞ୍ଛନୀୟ ।

୧୯୪୭ ରେ ଦେଶ ସ୍ୱାଧୀନ ହେଲା । ପତିତ ଭାଇନା ପ୍ରଭୃତି ତ୍ୟାଗୀ କର୍ମୀମାନଙ୍କ କର୍ଷଣର ପୁରସ୍କାର ସ୍ୱରୂପ 'ଅଭିଳାଷିତ ସ୍ୱରାଜ୍ୟ' ସେମାନଙ୍କର ହସ୍ତଗତ ହେଲା । ଏହାର ସୁଯୋଗ ନେଇ କେତେ ସ୍ୱାର୍ଥାନ୍ୱେଷୀ କଂଗ୍ରେସ କର୍ମୀ ଶାସନ ନେତୃତ୍ୱ ନେଇ ବ୍ୟକ୍ତିଗତ ଭୋଗ ବିଳାସ ପ୍ରତି ଅଧିକ ଯତ୍ନବାନ ହେଲେ ଓ ଅସତ ପନ୍ଥାରେ ବ୍ୟକ୍ତିଗତ ସମ୍ପତ୍ତି ବଢାଇବାରେ ଲାଗିଲେ । ପତିତ ଭାଇନା ଭିନ୍ନ ଉପାଦାନରେ ଗଢା ହୋଇଥିଲେ । କ୍ଷମତାଯୁକ୍ତ ରାଜନୈତିକ କ୍ଷେତ୍ରରେ ପ୍ରବେଶ କରିବାକୁ ତାଙ୍କୁ ଅନେକ ଥର ନିମନ୍ତ୍ରଣ କରାଯାଇଥିଲା । କିନ୍ତୁ, ପ୍ରତ୍ୟେକ ଥର ସେ ଅମ୍ଳାନ ଚିତ୍ତରେ ପ୍ରତ୍ୟାଖାନ କରିଥିଲେ । ଅତି ଖୋଲା ହୃଦୟରେ କହିଥିଲେ 'ଦେଶ ସ୍ୱାଧୀନ ହେଲା, ଏଥର ଆମ କାମ ସରିଯାଇଛି' । ଏଣୁ ଜୀବନର ଅବଶିଷ୍ଟ ସମୟତକ ସେ କଂଗ୍ରେସର ଜଣେ ସଚ୍ଚୋଟ ସମର୍ଥକ ଓ କର୍ମୀ ରୂପେ ଅତିବାହିତ କରିଥିଲେ । ପ୍ରାକ୍ ସ୍ୱାଧୀନତା କାଳରେ ତାଙ୍କ ସଂଗ୍ରାମୀ ଜୀବନର ତେଜ, ଦୀପ୍ତି ଓ ଆତ୍ମବିଶ୍ୱାସ ଯେପରି ଜାଜ୍ଜ୍ୱଲ୍ୟମାନ ସ୍ୱାଧୀନତା ପରେ ତାଙ୍କ ସାଧୁତା, ଉଦାସୀନତା ଓ ସେବା ମଧ୍ୟ ସେହିପରି ଅଭିନନ୍ଦନୀୟ ।

ପତିତ ଭାଇନା ମୋର ଜଣେ ପରମ ହିତୈଷୀ ଥିଲେ । ଦଳୀୟ ରାଜନୀତି ଦୃଷ୍ଟିରୁ ଆମ୍ଭେ ପରସ୍ପର ଠାରୁ ଦୂରେଇ ଯାଇଥିଲେ ସୁଦ୍ଧା ସ୍ନେହ ଓ ଓ ଆନ୍ତରିକତା

କ୍ଷେତ୍ରରେ ଆମ୍ଭେ ଦୁହେଁ ପରସ୍ପରର ଅତି ନିକଟବର୍ତ୍ତୀ ଥିଲୁ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମୋ ଠାରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ବିଶେଷତଃ ବାର୍ଦ୍ଧକ୍ୟରେ ଦେଶର ଖବର ଜାଣିବା ପାଇଁ ସେ ମୋତେ, ଗଙ୍ଗାଧର ପାଇକରାୟ ଓ ସ୍ୱର୍ଗତ ଗଙ୍ଗାଧର ମିଶ୍ରଙ୍କୁ ସବୁକଥା ପଚାରୁଥିଲେ । ଆମ୍ଭପ୍ରତି ତାଙ୍କର ଦୃଷ୍ଟିକୋଣ ଅନ୍ୟାନ୍ୟ କଂଗ୍ରେସ କର୍ମୀ ମାନଙ୍କ ଅପେକ୍ଷା ସଂପୂର୍ଣ୍ଣ ଭିନ୍ନ ଥିବା କଥା ମୁଁ ମର୍ମେ ମର୍ମେ ଅନୁଭବ କରିଛି । ସଂକୀର୍ଣ୍ଣତା ତାଙ୍କ ବିଶାଳ ହୃଦୟରେ ସ୍ଥାନ ବା ପାଆନ୍ତା କିପରି ?

ପତିତ ଭାଇନାଙ୍କ ବିୟୋଗରେ ବୋଲଗଡ ଅଞ୍ଚଳ ଜଣେ ତ୍ୟାଗପୂତ ସ୍ୱାଧୀନତା ସଂଗ୍ରାମୀଙ୍କୁ ଚିରଦିନ ହରାଇ ବସିଲା । ଆଜି ତାଙ୍କର ପବିତ୍ର ପ୍ରଥମ ଶ୍ରାଦ୍ଧ ବାର୍ଷିକ ଦିବସରେ ତାଙ୍କ ଅମର ଆତ୍ମା ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

************

ଏହାପରେ ବୋଇଗଡ ଅଂଚଳରେ ସ୍ୱାଧୀନତା ଆନ୍ଦୋଳନର ମୋଡ ଅଲଗା ଆଡକୁ ଗତିକଲା । ୪ ଗଂଗାଧର ପାଇକରାୟ ଏବଂ ପର୍ଶୁରାମ ପଦାତିକ ରାୟ ପୁରୀ ଜିଲ୍ଲା କଂଗ୍ରେସ କମିଟିରେ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ସର୍ବଭାରତୀୟ ସ୍ତରରେ ଆଚାର୍ଯ୍ୟ ନରେନ୍ଦ୍ର ଦେବଙ୍କ ନେତୃତ୍ୱରେ କଂଗ୍ରେସ ସୋସିଆଲିଷ୍ଟ ପାର୍ଟି ଗଠନ ହେଲାପରେ ତାହାର ପ୍ରଭାବ ଓଡିଶାରେ ପଡିଲା । ଓଡିଶାରେ ନବକୃଷ୍ଣ ଚୌଧୁରୀ, ମାଳତୀ ଦେବୀ, ଭଗବତୀ ଚରଣ ପାଣିଗ୍ରାହୀ ଏବଂ ପ୍ରାଣନାଥ ପଟ୍ଟନାୟକ ଏହାର ନେତୃତ୍ୱ ନେଇଥିଲେ । ଏହି ଦଳରେ ଗଂଗାଧର ପାଇକରାୟ ଏବଂ ପର୍ଶୁରାମ ପଦାତିକରାୟ ଯୋଗଦେଇ ପରେ କମ୍ୟୁନିଷ୍ଟ ପାର୍ଟି ଗଠନ କଲେ । ସ୍ୱାଧୀନତା ପୂର୍ବରୁ କୃଷକ ଆଦିବାସୀ ଭାଗଚାଷୀ ସଂଗଠନ କରି କମ୍ୟୁନିଷ୍ଟ ପାର୍ଟିକୁ ଏଠାରେ ସଂଗଠିତ କରିବାକୁ ଲାଗିଲେ । ତାର ଫଳ ସ୍ୱରୂପ ଗଂଗାଧର ପାଇକରାୟ ଦୀର୍ଘଦିନ ପର୍ଯ୍ୟନ୍ତ ବୋଇଗଡ ବେଗୁନିଆଁର ଅଜ୍ଞାତ ଶବର ପଲ୍ଲୀ ସହ ସାନପଦର ରାସୋଲ ନିକଟ ପାହାଡକୁ ନିଜର ଆଶ୍ରୟ ସ୍ଥଳୀ ଭାବରେ ବାଛିନେଲେ । କେତେବେଳେ ସାପ କେତେବେଳେ ବାଘ ଆଉ କେତେବେଳେ ହାତୀ ମୁହଁରୁ ରକ୍ଷା ପାଇବା ସହ କେତେବେଳେ ଅଜ୍ଞାତ ବାସ ବେଳେ ଅନ୍ଧକାର ରାତ୍ରିରେ ଚୋର ଡକାୟତର ଆଖ୍ୟା ପାଇବାକୁ ପଛାଇନଥିଲେ । ତାଙ୍କର ଜୀବନ ଚର୍ଯ୍ୟା ଏକ ଦୁଃସାହସିକ ବ୍ୟାପାର ଥିଲା ।

୧୯୩୮ ମସିହା ବେଳକୁ ଓଡିଶାର ଗଡଜାତ ଆନ୍ଦୋଳନ ତୀବ୍ରତର ହୋଇଥିଲା । ବୋଇଗଡ ୩ ପାଖରେ ରଣପୁର, ନୟାଗଡ ଏବଂ ଖଣ୍ଡପଡା ଗଡଜାତ । ବୋଇଗଡ ଅଂଚଳର ସମସ୍ତ ଗ୍ରାମର ବନ୍ଧୁବାନ୍ଧବ ସବୁ ଗଡଜାତ ଅଂଚଳରେ ବହୁକାଳରୁ ଅଛନ୍ତି । ବୋଇଗଡକୁ ଗାନ୍ଧୀ ଆସିଲା ବେଳେ ଖଣ୍ଡପଡାର ସଂଗ୍ରାମୀ

ମଧୁସୂଦନ ପଟ୍ଟନାୟକ, ରଘୁନାଥ ସିଂହ ସାମନ୍ତ, ନୟାଗଡ଼ରୁ ବାଞ୍ଛାନିଧି ସେନାପତି, ନାରାୟଣ ବେହେରା (ଭାଗବତ ବେହେରାଙ୍କ ବାପା), ଲକ୍ଷ୍ମଣ ମହାରଣା, ଶ୍ରୀଧର ଦାସ, ନରସିଂହ ନନ୍ଦ, ଶୁକ୍ରୁ ବେହେରା ପ୍ରମୁଖ ଦେଖିବାକୁ ଆସିଥିବାର ସେମାନଙ୍କ ଠାରୁ ଲେଖକ ବହୁବାର ଶୁଣିବାକୁ ପାଇଥିଲେ । ଓଡ଼ିଶା ଗଡ଼ଜାତ ଆନ୍ଦୋଳନର ପ୍ରମୁଖ ନେତା ପୂର୍ବତନ ଉପମୁଖ୍ୟ ମନ୍ତ୍ରୀ ୰ ପବିତ୍ର ମୋହନ ପ୍ରଧାନଙ୍କର ସହ ଥରେ ରାଜ୍ୟ ଜନ କଂଗ୍ରେସ ଭୁବନେଶ୍ୱର କାର୍ଯ୍ୟାଳୟରେ ସାକ୍ଷାତ ହୋଇଥିଲା । ସେ ଆମ ଘର ବୋଲଗଡ଼ ବୋଲି ଶୁଣିବାରେ ହଠାତ୍ ଭାବବିହ୍ୱଳ ହୋଇ କହି ପକାଇଲେ 'ରବି ମୋର ଜେଜେବାପାଙ୍କ ବାପା ମହେଶ୍ୱର ମଉଗଜସିଂହ ତୁମ ବୋଲଗଡ଼ ଥାନା ଦିଘିରି ଗ୍ରାମରୁ ତାଳଚେର ଯାଇଥିଲେ । ଏଣୁ ଆମେ ତୁମ ବୋଲଗଡ଼ ଲୋକ' । ମୁଁ ଏହାଶୁଣି ବିଶେଷ ଆନନ୍ଦିତ ହୋଇଥିଲି ।

ଗଡ଼ଜାତର ପ୍ରଜା ଆନ୍ଦୋଳନ ବେଳେ ସଂଗ୍ରାମୀ ମାନଙ୍କ ଉପରେ ଗଡ଼ଜାତ ରାଜାମାନେ ଅକଥନୀୟ ଅତ୍ୟାଚାର କରୁଥିଲେ । ନୟାଗଡ଼ର ଥୁଆବାରି ଗୁଳିକାଣ୍ଡ, ଶହୀଦ କଷ୍ଟି ଡାକୁଆ, ନୟାଗଡ଼ ଜେଲରେ ପଥର ତାସେରୀରେ ସଂଗ୍ରାମୀ କସ୍ତୁରୀ ପରିଡ଼ାଙ୍କୁ ବୈଶାଖ ମାସର ଦିନ ଦ୍ୱିପ୍ରହରର ଖରାରେ ବସାଇବାର ଫଳ ସ୍ୱରୂପ ରକ୍ତ ଝାଡ଼ାରେ ତାଙ୍କର ନିଧନ ପରି ବହୁ ଅଜଣା ଅଧ୍ୟାୟ ଇତିହାସର ଗର୍ଭରେ ରହିଯାଇଅଛି ।

ଏଣୁ ପ୍ରଜାମଣ୍ଡଳର ସଂଗ୍ରାମୀ ମାନଙ୍କର ବୋଲଗଡ଼ ସୀମାବର୍ତ୍ତୀ ମାଣିକାଗୋଡ଼ା ଗ୍ରାମ ପ୍ରଧାନ ଆଶ୍ରୟ ସ୍ଥଳ ଥିଲା । ବୋଲଗଡ଼ର ସଂଗ୍ରାମୀ ମାନେ ବିଶେଷ କରି ସାନପଦ ଗ୍ରାମର, ଗଂଗାଧର ପାଇକରାୟ, ଫକୀର ମହାନ୍ତି, ବାଞ୍ଛାନିଧି ସୁବୁଦ୍ଧି; ଡାବରଧୁଆର ୰ ବାଙ୍କନିଧି ପରିଡ଼ା, ଲକ୍ଷ୍ମଣ ସାହୁ, ରୋଳସିଂହ ଗ୍ରାମର ବାନାମ୍ବର ମାର୍ଥା ଏବଂ ଗୋକୁଳ ମାର୍ଥା ରଣପୁର ସଂଗ୍ରାମୀ ମାନଙ୍କ ସହ ଯୋଗାଯୋଗ ରଖୁଥିଲେ । ନୟାଗଡ଼ ପ୍ରଜାମଣ୍ଡଳ ସହ ଖଦୀ କାର୍ଯ୍ୟକ୍ରମ ମଧ୍ୟରେ ବଳଭଦ୍ର ସାହୁ, ଚକ୍ରଧର ମହାପାତ୍ର, ବୁଲା ପ୍ରଧାନ, ମଦନ ରାୟ, ବାଇଧର ରାଉତରାୟ; ମାଣିକାଗୋଡ଼ାର ଗୋଲାମ ମୁସ୍ତଫା, ପର୍ଶୁରାମ ପଦାତିକରାୟ, ତାଙ୍କ ଭାଇ ନୀଳମଣି ସାମନ୍ତରାୟ, ଅଧିକାରୀ ମହାନ୍ତି, ବାନାମ୍ବର ରାଉତରାୟ; ଗୋବର୍ଦ୍ଧନପୁରର ରଘୁନାଥ ପାହାଡ଼ାସିଂହ ଏବଂ ତାଙ୍କ ପୁତ୍ର ମହେନ୍ଦ୍ର ଛୁଆଳସିଂହ; ସପୁର ର ବାସୁଦେବ ସୁବୁଦ୍ଧି, ଯୁଗଳ ପଟ୍ଟନାୟକ ଓ ବାବାଜୀ ଦାସ ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀ ମାନେ ମୁଖ୍ୟତଃ ଖଣ୍ଡପଡ଼ା ପ୍ରଜା ଆନ୍ଦୋଳନ ସହ ସମ୍ପର୍କ ସ୍ଥାପନ କରିଥିଲେ ।

ଓଡ଼ିଶାର ଗଡ଼ଜାତ ମାନଙ୍କରେ ପ୍ରଜାଙ୍କ ଉପରେ ହେଉଥିବା ଅତ୍ୟାଚାରର ତଦନ୍ତ ପାଇଁ ଅଖିଳ ଭାରତ କଂଗ୍ରେସ କମିଟି ଏକ ତଦନ୍ତ କମିଟି ଗଠନ କରିଥିଲେ ।

ଡଃ. ହରେକୃଷ୍ଣ ମହତାବ ଏ କମିଟିର ମୁଖ୍ୟ ଥିଲେ । ସେ ନୟାଗଡ, ରଣପୁର, ଖଣ୍ଡପଡା ପ୍ରଭୃତି ଗଡଜାତର ପ୍ରଜାଙ୍କ ଉପରେ ହେଉଥିବା ଅତ୍ୟାଚାରର ତଦନ୍ତ ନିମନ୍ତେ ୧୯୩୮ ମସିହାରେ ବୋଲଗଡ ଆସିଥିଲେ । ଏ ସମ୍ପର୍କରେ 'ନୟାଗଡ ପ୍ରଜାମଣ୍ଡଳ'ର ଇତିହାସ ଲେଖକ ସ୍ୱାଧୀନତା ସଂଗ୍ରାମୀ ଶ୍ରୀଧର ଦାସଙ୍କର ତଥ୍ୟ ଏଠାରେ ସ୍ଥାନିତ ହେଲା ।

ନୟାଗଡ ପ୍ରଜାମଣ୍ଡଳ ଇତିହାସ (ପୃଷ୍ଠା -୨୭)

## ନୟାଗଡ ପ୍ରଜାମଣ୍ଡଳ ଗଠନ

ଡାଙ୍ଗିବନ୍ଧ କର୍ମୀ ସମ୍ମିଳନୀ ପ୍ରସ୍ତାବମତେ ତା ୨୮-୦୬-୧୯୩୮ ଦିନ ଓଡଗାଁ ରଘୁନାଥଜୀଉଙ୍କ ପୂଣ୍ୟ ପୀଠରେ ଶହଶହକର୍ମୀଙ୍କ ଉପସ୍ଥିତିରେ ଏକ ବୈଠକ ହୋଇ ଅସ୍ଥାୟୀ ଭାବେ ନୟାଗଡ ପ୍ରଜାମଣ୍ଡଳ ଗଠନ କରାଗଲା । ଶ୍ରୀ ନାରାୟଣ ନନ୍ଦ ପ୍ରଜାମଣ୍ଡଳର ଅସ୍ଥାୟୀ ସଭାପତି ନିର୍ବାଚିତ ହେଲେ ଓ ନିମ୍ନଲିଖିତ ବ୍ୟକ୍ତିମାନେ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟିର ସଭ୍ୟ ନିର୍ବାଚିତ ହେଲେ । କୁବେର ସାହୁ - ଉପସଭାପତି, ଭରତ ନାୟକ -ସଂପାଦକ ଏବଂ ଲକ୍ଷ୍ମଣ ମହାରଣା, ବଞ୍ଚାନିଧି ସେନାପତି, ସୁଦର୍ଶନ ପୃଷ୍ଟି, ଜନାର୍ଦ୍ଦନ ସୁବୁଦ୍ଧି, ହରିବନ୍ଧୁ ଆଚାର୍ଯ୍ୟ, ଈଶ୍ୱର ପାଟଶାଣୀ ଓ ଲକ୍ଷ୍ମଣ ସାହୁ ପ୍ରମୁଖ ସଭ୍ୟଭାବେ ନିର୍ବାଚିତ ହେଲେ । ପ୍ରଜାମଣ୍ଡଳ ଗଠନ ପରେ ପରେ ଗଡଜାତ ତଦନ୍ତ କମିଟି ଆଗରେ ସାକ୍ଷୀ ଦେବାପାଇଁ ସେହି ଦିନ ଅଧିକାଂଶ ସଭ୍ୟ ବୋଲଗଡ ଯାଇଥିଲେ । ନୟାଗଡରେ ହେଉଥିବା ବେଠି, ଭେଟି, ମାଗଣ, ରସଦ ପ୍ରଭୃତି ବେଆଇନ ଓ ଅତ୍ୟାଚାର ମୂଳକ କାର୍ଯ୍ୟର କରୁଣ କାହାଣୀ ବର୍ଣ୍ଣନା କରିବା ସହିତ ପ୍ରତ୍ୟକ୍ଷ ତଥ୍ୟ ପ୍ରଜାମଣ୍ଡଳର ସଭାପତି ତଥା କାର୍ଯ୍ୟକାରୀ କମିଟିର ସଭ୍ୟମାନେ ତଦନ୍ତ କମିଟି ଆଗରେ ଉପସ୍ଥାପିତ କରିବା ସଂଗେ ସଂଗେ ବହୁ ପ୍ରମାଣ ସମ୍ବଳିତ ଦଲିଲ କମିଟିକୁ ଦେଇଥିଲେ । ଏହି ତଦନ୍ତ ବେଳେ ନୟାଗଡ ପ୍ରଜାମଣ୍ଡଳ କାର୍ଯ୍ୟକାରୀ କମିଟି ସଭ୍ୟମାନଙ୍କ ବ୍ୟତୀତ ବହୁ କର୍ମୀ ଓ ସାଧାରଣ ଲୋକ ବ୍ୟକ୍ତିଗତ ଭାବେ କମିଟି ଆଗରେ ସାକ୍ଷ୍ୟ ପ୍ରମାଣ ଦେଇଥିଲେ ।

***********

ଏମାନଙ୍କ ଠାରୁ ଅତ୍ୟାଚାରର ବିବରଣୀ ସଂଗ୍ରହ କରି ଚକ୍ରଧର ମହାପାତ୍ରଙ୍କ ଜରିଆରେ ଡଃ. ହରେକୃଷ୍ଣ ମହତାବଙ୍କ ପାଖକୁ ଦିଆଯାଇଥିଲା । ଏତଦ୍‌ବ୍ୟତୀତ ଡଃ. ମହତାବ ମାଣିକାଗୋଡା, କଳାଙ୍ଗ ଗୋହ୍ଲାବାରି ପଡିଆ ଏବଂ ମାଳିସାହି ତିନି ଦୋଳ ପଡିଆ ଠାରେ କ୍ୟାମ୍ପ କରି ଖଣ୍ଡପଡା, ନୟାଗଡ, ରଣପୁର ପ୍ରଭୃତି ଗଡଜାତର ପ୍ରଜା ଅତ୍ୟାଚାର ବିବରଣୀ ବିଷୟରେ ତଦନ୍ତ କରିଥିଲେ ।

୧୯୩୯ ମସିହା ଜାନୁୟାରୀ ମାସ ୫ ତାରିଖ ପୁଷ ପୂର୍ଣ୍ଣିମା ଦିନ ଦିବାଲୋକରେ ରଣପୁର ଗଡରେ ଉତ୍ୟକ୍ତ ଜନତା ଓଡିଶା ଗଡଜାତ ସମୁହର ପଲ୍ଲିକାଲ ଏଜେଣ୍ଟ ବେଜଲ ଗେଟଙ୍କୁ ଠେଙ୍ଗାରେ ପିଟି ପିଟି ହତ୍ୟା କଲେ । ତାପରେ ରଣପୁରରେ ଅକଥନୀୟ ଦମନଲୀଳା ଚାଲିଲା । ତା ପର ଦିନ ରାତି ପାହିଲା ବେଳକୁ ରଣପୁରର ହଜାର ହଜାର ଜନତା ବୋଲଗଡ ବେଗୁନିଆଁର ସମସ୍ତ ସୀମାବର୍ତ୍ତି ଗ୍ରାମ ମାନଙ୍କରେ ଭରି ହୋଇଗଲେ । ସପ୍ତାହ ବ୍ୟାପୀ ସେମାନଙ୍କର ରହିବାର ଖାଇବାର ସମସ୍ତ ବ୍ୟବସ୍ଥା ଗ୍ରାମବାସୀ ଅକୁଣ୍ଠ ଚିତ୍ତରେ କରିଥିଲେ । ଗଂଗାଧର ପାଇକରାୟ, ପ୍ରାଣନାଥ ପଟ୍ଟନାୟକ ଏବ ପର୍ଶୁରାମ ପଦାତିକରାୟ ଡିଫେନ୍ସ କମିଟି କରି ପ୍ରଜାକୁଳଙ୍କୁ ସାହାଯ୍ୟ କଲେ । ତାଙ୍କୁ ବ୍ରିଟିଶ ସରକାର ବେଜେଲ ଗେଟ ହତ୍ୟାକାଣ୍ଡରେ ସମ୍ପୃକ୍ତ କରି ଥିଲେ ମଧ ତତକାଳୀନ ଓଡିଶାର ପ୍ରଥମ ପ୍ରଧାନ ମନ୍ତ୍ରୀ ୰ ବିଶ୍ୱନାଥ ଦାଶଙ୍କ ହସ୍ତକ୍ଷେପ ଯୋଗୁଁ ରକ୍ଷା ପାଇଥିଲେ ।

ପାଠକ ମାନଙ୍କ ଅବଗତି ପାଇଁ 'ରଣପୁର ଇତିହାସ'ରୁ ସତ୍ୟବାଦୀ ବଳିଆରସିଂହଙ୍କ ବେଜେଲ ଗେଟ ହତ୍ୟାକାଣ୍ଡ ଅଧାୟ ଏବଂ ଖୋର୍ଦ୍ଧା ଅଂଚଳର ଓଳସିଂହ ଗ୍ରାମର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରଘୁନାଥ ପଟ୍ଟନାୟକଙ୍କର ସଦ୍ୟ ପ୍ରକାଶିତ ପୁସ୍ତକ 'ଆଗାମୀ ସ୍ୱାଧୀନତା ସଂଗ୍ରାମର ସହଜ ସୂତ୍ର' ର ଅଂଶ ଯଥାକ୍ରମେ ଏଠାରେ ଦିଆଗଲା ।

<u>ରଣପୁର ଇତିହାସ</u> (ଲେଖକ - ସତ୍ୟବାଦୀ ବଳିଆରସିଂହ)
ବେଜେଲ ଗେଟ୍ ହତ୍ୟାକାଣ୍ଡ (ପୃଷ୍ଠା.- ୮୭-୯୦)

ପ୍ରଜାମଣ୍ଡଳ ପକ୍ଷରୁ ଅନୁଷ୍ଠିତ ଆନ୍ଦୋଳନ କ୍ରମଶଃ ଭୟଙ୍କର ହେଲା । ଫଳରେ ସଂଗ୍ରାମୀ କୃପାସିନ୍ଧୁ ମିଶ୍ରଙ୍କୁ ଗିରଫ କରାଗଲା । ଏହି ଗିରଫଦାରୀ ପ୍ରତିବାଦରେ ସାରା ରଣପୁରରେ ବିଦ୍ରୋହର ନିଆଁ ଜଳି ଉଠିଲା । ରାଜା ଆତଙ୍କିତ ହୋଇ ପଲଟିକାଲ ଏଜେଣ୍ଟ 'ମେଜର ବେଜଲଗେଟ୍' ଙ୍କ ସାହାଯ୍ୟ ଲୋଡିଲେ ।

ମେଜର ବେଜଲଗେଟ୍ ରଣପୁର ଆସୁଥିବା ଖବର ତଡିତବେଗରେ ଚାରିଆଡେ ଖେଳିଗଲା । ଅଜଣା ଆତଙ୍କରେ ଲୋକେ ଶିହରି ଉଠିଲେ । ଲୋକମାନେ ଆଶଙ୍କା କଲେ ସାହେବ ନିଶ୍ଚୟ କୃପାସିନ୍ଧୁ ମିଶ୍ର ସମେତ ଅନ୍ୟ ବନ୍ଦୀମାନଙ୍କୁ ମାରିଦେବ ।

ରଣପୁର ରାଜାଙ୍କ ସ୍ୱତନ୍ତ୍ର ଦୂତଠାରୁ ୧୯୩୯ ଜାନୁୟାରୀ ୪ ତାରିଖରେ ପତ୍ର ପାଇ ପଲିଟିକାଲ ଏଜେଣ୍ଟ ରଣପୁର ଅଭିମୁଖେ ଯାତ୍ରା ଆରମ୍ଭ କରିବା ପାଇଁ ଚିନ୍ତା କଲେ । ଉକ୍ତ ଦିନ ନୟାଗଡ ଡାକ ବଙ୍ଗଳାରେ ମେମ୍ ସାହେବ (ବେଜଲଗେଟ୍‌ଙ୍କ

ପତ୍ନୀ) ତାଙ୍କ ସଙ୍ଗେ ଥିଲେ । ଜାନୁୟାରୀ ୫ ତାରିଖ ପ୍ରଭାତରେ ମେମ୍ ସାହେବ କେତେକ ଅଶୁଭ ସଙ୍କେତ ଦେଖିଲେ । ବିଲାତର ଲୋକ ହେଲେ ମଧ ତାଙ୍କ ହୃଦୟ ଆଶଙ୍କା ମଧରେ ବୁଡି ରହିଲା । ଏଣୁ ବେଜଲଗେଟ ରଣପୁର ଆସିବା ପାଇଁ ଉଦ୍ୟମ କରନ୍ତେ ସେ କାକୁତିମିନତି କରି ବାରଣ କଲେ । କିନ୍ତୁ ଶେଷରେ ତାଙ୍କର ସମସ୍ତ ଅନୁରୋଧ ବୃଥା ହେଲା । ପ୍ରତାପୀ ମେଜର ବେଜଲଗେଟ ବୀର ଦର୍ପରେ ରଣପୁର ଅଭିମୁଖେ ଅଗ୍ରସର ହେଲେ । ଏହି ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ ନୟାଗଡ ଡାକ ବଙ୍ଗଳାର ତତ୍କାଳୀନ ଦରଓ୍ୱାନ ଗୋକୁଳ ଡାକୁଆ ।

ମେଜର ବେଜଲଗେଟ୍ ୧୯୩୯ ମସିହା ଜାନୁୟାରୀ ମାସ ପାଞ୍ଚ ତାରିଖରେ ଇଟାମାଟି ଶିବିରରୁ ଫୋର୍ସ ନେଇ ରଣପୁର ଅଭିମୁଖେ ଯାତ୍ରା କଲେ । ଏଣେ ରଣପୁର-ରାଜସୁନାଖଳା ରାସ୍ତାର ଲୋଧାବୁଆ ଠାରେ ଅନେକ ବିଦ୍ରୋହୀ ରାସ୍ତାର ଦୁଇ କଡରୁ ଗଛମାନ କାଟି ରାସ୍ତା ମଝିରେ ପକାଇ ପଥ ଅବରୋଧ କରିଥିଲେ । ସେମାନଙ୍କର ଉଦ୍ଦେଶ୍ୟ ବେଜଲଗେଟ ସାହେବ ରାସ୍ତା ଅବରୋଧ ଯୋଗୁଁ ଫେରିଗଲେ ବନ୍ଦୀମାନଙ୍କୁ ରାଜା ହୁଏତ ବିପୁଳ ପ୍ରଜା ସମାବେଶ ଦେଖି ଭୟରେ ମୁକ୍ତି ଦେବେ । ଏଣେ ବେଜଲଗେଟର ମନରେ କ୍ରୋଧ, ହୃଦୟରେ କୋହ ଓ ଆଖିରେ ଲୋଲୁପ ଦୃଷ୍ଟି । ରଣପୁର ବାସୀଙ୍କୁ ଉପଯୁକ୍ତ ଶିକ୍ଷା ଦେବ । ଢେଙ୍କାନାଳର ବାଜି ରାଉତ ସମେତ ଅନେକଙ୍କୁ ହତ୍ୟା ଓ ଗର୍ଭଣୀ ସ୍ତ୍ରୀଙ୍କ ଉପରେ ହାତୀ ଚଳାଇ ଦମନଲୀଳା ଚଳାଇବାରେ ପାରଙ୍ଗମ ବେଜଲଗେଟ ଏ ସାମାନ୍ୟ ପଥ ଅବରୋଧରେ ଦବିଯିବାର ପାତ୍ର ନଥିଲେ । ସାଥିରେ ଥିବା ପୋଲିସ ଜମାଦାର ଭୋବନି ପୃଷ୍ଟି ଓ କାଶୀ ରାଉତଙ୍କୁ ରାସ୍ତା ଅବରୋଧ ଅଭିଯୋଗରେ ନିସ୍ଠୁର ପ୍ରହାର କରି ରକ୍ତରଂଜିତ ଅବସ୍ଥାରେ ପକାଇଥିଲେ । ସେ ପୋଲିସଙ୍କ ସାହାଯ୍ୟରେ ରାସ୍ତା ପରିଷ୍କାର କରି ରାଜ ପ୍ରାସାଦରେ ପହଞ୍ଚିଲେ । ସେତେବେଳେ ରଣପୁର ଗଡ ଲୋକାରଣ୍ୟ । ସେମାନେ "କୃପାସିନ୍ଧୁ ମିଶ୍ରଙ୍କୁ ଖଲାସ କର" ଓ "ବେଠି ନିର୍ଯାତନା" ବନ୍ଦକର ଆଦି ଧ୍ୱନି ଦେଉଥିଲେ ।

ପ୍ରଜାମଣ୍ଡଳର ସଂପାଦକ ରଘୁନାଥ ମହାନ୍ତି ଓ ସଂଗଠନ ସଂପାଦକ ବିଦ୍ରୋହୀ ଦିବାକର ପରିଡା ରାଜବାଟୀ ସାମନାରେ ଉପସ୍ଥିତ ଜନତାଙ୍କ ମେଳରେ ଦେଓ୍ୱାନ ଚଣ୍ଡେଶ୍ୱର ମିଶ୍ରଙ୍କ ସହ ୨୬-୧୧-୧୯୩୮ ତାରିଖରେ ରାଜ-ଦରବାରଙ୍କ ଘୋଷିତ ଦାବୀ ସମ୍ପର୍କୀୟ ଘୋଷଣାପତ୍ରର ଆଲୋଚନାରେ ବ୍ୟାପୃତ ଥିଲେ । ଏହି ସମୟରେ ପଲିଟିକାଲ ଏଜେଣ୍ଟ ମେଜର ବେଜଲଗେଟ ସେଠାରେ ଉପସ୍ଥିତ ହେଲେ । ଦେଓ୍ୱାନ ସାହେବ ପଲିଟିକାଲ ଏଜେଣ୍ଟଙ୍କୁ ପ୍ରଜାମାନଙ୍କର କେଉଁ କେଉଁ ଦାବି ପୂରଣ ହୋଇଛି ତାହା ଘୋଷଣାପତ୍ରରୁ ପଢି ଇଂରେଜୀ ଅନୁବାଦ କରି ବୁଝାଇଥିଲେ । ଏହି ସମୟକୁ ଉତ୍ତ୍ୟକ୍ତ ଜନତା ମଧରେ ଦେଖାଗଲା ଏକ ନୂତନ ଆଲୋଡନ । ଏକ ଶଗଡ ନିକଟରେ

ଭୀଷଣ ଜନଗହଳି । ମଣିଷ ଦ୍ୱାରା ଟଣାଯାଉଥିବା ଶଗଡ କ୍ରମଶଃ ରାଜପ୍ରାସାଦ ନିକଟରେ ପହଞ୍ଚିଲା । ଯେଉଁ ଲୋକମାନେ ବେଢ଼ଲଗେଟଙ୍କ ସହ ହେଉଥିବା ଆଲୋଚନାର ଫଳାଫଳ ଶୁଣିବାକୁ ଉତ୍କଣ୍ଠାର ସହ ବସି ରହିଥିଲେ, ସେମାନେ ଶଗଡ ପଛେ ପଛେ ଚାଲିଲେ ।

ଶଗଡ ଓ ତା ପଛେ ପଛେ ଏପରି ଜନଗହଳିର କାରଣ ସାହେବ ଜାଣିବାକୁ ଚାହିଁଲେ । ଦେୱାନ ବୁଝାଇ ଦେଲେ ଯେ ସେ ରଣପୁରକୁ ଆସିବା ସମୟରେ ଲୋଧାଚୁଆଠାରେ ଲୋକଙ୍କୁ ଗୁଳିକରି ମାରି ଦେଇଛନ୍ତି । ସେମାନେ ମୁମୂର୍ଷୁ ଅବସ୍ଥାରେ ଅଛନ୍ତି । ସେମାନଙ୍କୁ ଟାଙ୍ଗି ଡାକ୍ତରଖାନାକୁ ନିଆଯାଉଛି । ଏଣୁ ଶଗଡ ପଛେ ପଛେ ଭୀଷଣ ଜନଗହଳି ରହିଛି । ସେତେବେଳକୁ ଜନରବ ହୋଇଥିଲା ଯେ ସାହେବ ଲୋଧାଚୁଆଠାରେ ଗୁଳି କରି ଭୋବନି ପୃଷ୍ଟି ଓ କାଶୀ ରାଉତର ଅବସ୍ଥା ସଂକଟାପନ୍ନ କରିଦେଇଛି । ବେଜଲଗେଟ ଏ ବିଷୟରେ ଅନୁସନ୍ଧାନ କରିବାକୁ ହଠାତ୍ ରାଜପ୍ରସାଦରୁ ବାହାରି ଆସିଲେ । ସାଥୀରେ ନିଜର ଦେହରକ୍ଷୀ ସୁବେଦାର ନୁର ମହମ୍ମଦ ବ୍ୟତୀତ ପୋଲିସ ବାହିନୀର ଅନ୍ୟ କେହି ନଥିଲେ । ଦେୱାନ ଚଣ୍ଡେଶ୍ୱର ମିଶ୍ର, ଜମାଦାର ମୋହରମ ଖାଁ, ସିପାହୀ ସମିର ଖାଁ, ସିପାହୀ ତଚାର ଖାଁ, ସିପାହି ହସିମ ଖାଁ ଓ ଶେଖ୍ ଇଲ୍ଲୋ ବେଜଲଗେଟଙ୍କ ପଛେ ପଛେ ୬୦/୭୦ ଫୁଟ ଅନ୍ତରରେ ଯାଉଥିଲେ ।

ଲୋକମାନଙ୍କ ଗହଣରେ ଶଗଡ ଟାଙ୍ଗୀ ଅଭିମୁଖେ ରାଜଦାଣ୍ଡରେ ଚାଲିଥାଏ । ରଣପୁର ଡାକ୍ତରଖାନା ରାଜାଙ୍କ ଅଧୀନରେ ଥିବାରୁ ଖାସମାହାଲ ଅନ୍ତର୍ଗତ ଟାଙ୍ଗୀ ଡାକ୍ତରଖାନାକୁ ଶଗଡ ଯାଉଥିଲା । ଶଗଡ ନନେବାକୁ ବେଢ଼ଲଗେଟ ନିର୍ଦ୍ଦେଶ ଦେଲେ । କିନ୍ତୁ ଲୋକମାନେ ତାଙ୍କ କଥା ନମାନି ଶଗଡ ଧରି ଚାଲିଲେ । ସେ ଶଗଡ ବଳଦଟଣା ନଥିଲା । ଲୋକମାନେ ହିଁ ଶଗଡ ଟାଣୁଥିଲେ । ଲୋଧାଚୁଆ ଠାରୁ ଗୋବିନ୍ଦ ପୃଷ୍ଟି, କଳେଇ ରାଉତ, ରଘୁ ପୃଷ୍ଟି, ଚକ୍ରଧର ନାୟକ ଓ ଚିନ୍ତା ନାୟକଙ୍କୁ ଶଗଡ ଟାଣିବାକୁ ପଡିଥିଲା । ରଣପୁରଠାରେ ବହୁ ଲୋକ ଶଗଡ ଟଣାରେ ଭାଗ ନେଇଥିଲେ । ସାହେବ ଶଗଡକୁ ନଯିବା ପାଇଁ ଭିଡି ଧରିଲେ ମଧ ଏହି ଠେଲା ପେଲା ମଧ୍ୟରେ ସାହେବ, ଶଗଡ ଓ ଲୋକେ ବଡଦାଣ୍ଡ ଅତିକ୍ରମ କରି ଭଣ୍ଡାରି ସାହି ଛକର ସଂକୀର୍ଣ୍ଣ ରାସ୍ତାକୁ ଚାଲିଯାଇଥିଲେ । ସାହେବଙ୍କ ପାଖରୁ ତାଙ୍କ ଦେହରକ୍ଷୀ ସୁବେଦାର ନୁର ମହମ୍ମଦ ଠେଲାପେଲାରେ ଅଲଗା ହୋଇଗଲେ । ସାହେବ ଦୁଇଜଣ ଲୋକଙ୍କୁ ମାରି ଦେଇଥିବା ଜନରବ ହୋଇଥିବାରୁ ଲୋକମାନେ କ୍ରୋଧାନ୍ୱିତ ହୋଇଥିଲେ । ଲୋକଙ୍କ ଭିତରୁ ଜଣେ କେହି ଚିତ୍କାର କଲା, "ଭାଇମାନେ, ଏ ପଲିଟିନା ସାହେବ ଆମ ଲୋକଙ୍କୁ ମାରିଛି, ଶଳାକୁ ଧର ଧର ମାର ମାର ।" ଏହାପରେ ୩୩ ବର୍ଷର ଦୀର୍ଘକାୟ ବଳିଷ୍ଠ ଯୁବକ ଅର୍ଜୁନ ରାଉତ ବେଜଲଗେଟ୍‌ର ସମ୍ମୁଖରେ ଦଣ୍ଡାୟମାନ

ହୋଇ ଦୁଇହସ୍ତ ପ୍ରସାରକରି ତାଙ୍କୁ ଅବରୋଧ କଲେ । ବେଜଲଗେଟଙ୍କୁ ଚାରିପଟୁ ଲୋକ ଘେରି ଯାଇଥିବାରୁ ସେ କୌଣସି ଆଡକୁ ଯିବାକୁ ବାଟ ପାଇଲେ ନାହିଁ । ଏଣେ ଅର୍ଜୁନ ରାଉତ ଦୁଇହସ୍ତ ପ୍ରସାରି ଅଟକାଇ ଥିବାରୁ ସାହେବ ଆକ୍ରମଣର ଆଶଙ୍କା କଲେ । ଏଣୁ ସେ ବାଧ ହୋଇ ପିସ୍ତଲରୁ ଗୁଳି ଫାଏର କଲେ । ଫଳରେ ସାମନାରେ ଠିଆ ହୋଇଥିବା ଯୁବକ ଅର୍ଜୁନ ରାଉତ ଗୁଳି ଚୋଟରେ ଟଳି ପଡିଲା । ଏହାପରେ ସାହେବ ଅନ୍ୟ ଏକ ଗୁଳି ଫାଏର କଲେ । ଏହି ଗୁଳି ନାଥ ଭୋଳର କାନରେ ବାଜି ପୁନର୍ବାର ଅର୍ଜୁନ ରାଉତର ବକ୍ଷଭେଦ କଲା । ପିଚ୍ ପିଚ୍ ରକ୍ତସ୍ରାବ ଦେଖି ଉପସ୍ଥିତ ଜନତାର ରକ୍ତ ଗରମ ହୋଇ ଉଠିଲା । ଫଳରେ ଉତ୍ୟକ୍ତ ଜନତା ଭଣ୍ଡାରି ସାହି ବିମ୍ବା ପଡିଆରୀଙ୍କ ଦ୍ୱାରଠାରେ ବେଜଲଗେଟଙ୍କୁ ପିଟି ପିଟି ମାରିଦେଲେ ।

୧୯୩୯ ମସିହା ଜାନୁୟାରୀ ୫ ତାରିଖ ପୌଷ ପୂର୍ଣ୍ଣମୀ ଦିନ ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ସମୂହର ରାଜ ପ୍ରତିନିଧି ବେଜଲଗେଟଙ୍କର ରଣପୁର ପ୍ରଜାଙ୍କ ଠେଙ୍ଗା ମାଡରେ ମୃତ୍ୟୁ ହେଲା । ଏହା ଥିଲା ତତ୍କାଳୀନ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସର ଅଭୂତପୂର୍ବ ଘଟଣା କାରଣ ପୂର୍ବରୁ ଘଟିଥିବା କୌଣସି ବିପ୍ଲବରେ ବ୍ରିଟିଶ ସୈନ୍ୟବାହିନୀର ମେଜର ଭଳି ଉଚ୍ଚ ପଦସ୍ଥ ଅଫିସରଙ୍କୁ ହତ୍ୟା କରାଯାଇ ନଥିଲା । ମେଜର ବେଜଲଗେଟଙ୍କ ମୃତ୍ୟୁ ଓଡିଶାର ଏକ କ୍ଷୁଦ୍ର ଗଡଜାତରେ ଘଟିବା ପରେ ଓଡିଆମାନେ ଭୀରୁ ବୋଲି ସର୍ବଭାରତୀୟ ସ୍ତରରେ ଯେଉଁ ଅପବାଦ ଥିଲା ତାହା ଦୂରୀଭୂତ ହୋଇଥିଲା । ଏ ପ୍ରସଙ୍ଗରେ ତତ୍କାଳୀନ ପଲିଟିକାଲ ଡିପାର୍ଟମେଣ୍ଟର ରେସିଡେଣ୍ଟ କର୍ଣ୍ଣେଲ ବାର୍ଟନ ସାହେବ ଡଃ. ହରେକୃଷ୍ଣ ମହତାବଙ୍କୁ କହିଥିଲେ, 'ଆମେ ଯଦିବା ଜାଣିଥାନ୍ତୁ ଓଡିଶା ଲୋକେ ଏତେ ହିଂସ୍ର, ତେବେ ନିଶ୍ଚିତଭାବେ ଏକ ସୈନ୍ୟବାହିନୀ ପଠାଇ ଥାଆନ୍ତୁ ।'

**********

<u>ଆଗାମୀ ସ୍ୱାଧୀନତା ସଂଗ୍ରାମର ସହଜ ସୂତ୍ର</u> (ପୃଷ୍ଠା - ୩)

ଲେଖକ.- ଶ୍ରୀ ରଘୁନାଥ ପଟ୍ଟନାୟକ

୧୯୩୯ ରେ ପଲିଟିକାଲ୍ ଏଜେଣ୍ଟ ବେଜଲଗେଟ୍‌ର ରଣପୁରରେ ହତ୍ୟା ମୋ ରାଜନୈତିକ ଜୀବନରେ ଏକ ଅତି ଉତ୍ତେଜନାର ମୁହୂର୍ତ୍ତ ଥିଲା । ରାତି ଭିତରେ ଶହ ଶହ ରଣପୁର ଶରଣାର୍ଥୀ ଷ୍ଟେଟ ବାହାର ସୀମାନ୍ତ ଗାଁ ମାନଙ୍କରେ ଭର୍ତ୍ତି । ସେମାନଙ୍କର ଥଇଥାନର ବ୍ୟବସ୍ଥା, ରାତିପାହିଲା ବେଳକୁ ବୋଲଗଡ, ବେଗୁନିଆ, ଖୋର୍ଦ୍ଧା, ବାଣପୁର, ପୋଲିସଙ୍କର ଗାଁ ମାନଙ୍କରେ ପଇନ୍ତରା । ସି.ଆଇ.ଡି. ପୋଲିସ ଇନସପେକ୍ଟର ମନବୋଧ ପଣ୍ଡା ଆସି ମୋତେ ବାରମ୍ବାର ଜେରା କରିବା ତା ପରବର୍ତ୍ତୀ କାଳରେ ଏକ୍ସ୍ଟ୍ରାଡିକସନ ୱାରେଣ୍ଟରେ ଗିରଫ କରିବା ପାଇଁ ଗଡଜାତ ପୁଲିସଙ୍କର ଚେଷ୍ଟା

ଓ ମୋହନ ଦାସଙ୍କ ଚତୁରତା ଯୋଗୁଁ ସେତେବେଳର ଓଡ଼ିଶାର ପ୍ରଧାନମନ୍ତ୍ରୀ ବିଶ୍ୱନାଥ ଦାଶଙ୍କ ହସ୍ତକ୍ଷେପ ଯୋଗୁଁ ମୁଁ, ପ୍ରାଣନାଥ ବାବୁ, ଗଙ୍ଗାଧର ପାଇକରାୟ, ଲକ୍ଷ୍ମଣ ପଟ୍ଟନାୟକ, ଗୋକୁଳ ମୋହନ ରାୟଚୁଡ଼ାମଣୀ ଓ ପର୍ଶୁରାମ ପଦାତିକରାୟ ଆଦି ଗିରଫରୁ ବର୍ତ୍ତିଗଲୁ । ଗିରଫ ହୋଇଥିଲେ ବେଜଲ ଗେଟ ହତ୍ୟା ଅପରାଧରେ ଆମକୁ ସଂପୃକ୍ତ କରି ଫାଶୀଦଣ୍ଡ ନିଶ୍ଚିତ ହୋଇଥାନ୍ତା ।

*****

## ମହାନ ୧୯୪୨ ଅଗଷ୍ଟ ଆନ୍ଦୋଳନ

୧୯୪୨ ମସିହାରେ ସ୍ୱାଧୀନତା ଆନ୍ଦୋଳନ ଏକ ଚରମ ଅଧ୍ୟାୟରେ ପହଞ୍ଚିଲା । ସେତେବେଳେ ଗାନ୍ଧୀ ନରମପନ୍ଥୀଙ୍କ ନେତୃତ୍ୱ ନେଉଥିଲେ । ତାଙ୍କର ମତ ଥିଲା ୨ୟ ବିଶ୍ୱଯୁଦ୍ଧରେ ବ୍ରିଟିଶ ଜାତି ପକ୍ଷଭୁକ୍ତ ହୋଇଥିବାରୁ ଶତ୍ରୁକୁ ବିପଦ ବେଳେ ଅସୁବିଧାରେ ନପକାଇ ଯୁଦ୍ଧରେ ସାହାଯ୍ୟ କରିବା ପରେ ସେ ବିପଦରୁ ମୁକୁଳିଲେ ତାଠାରୁ ସ୍ୱାଧୀନତା ଦାବୀ କରିବା । ମାତ୍ର କଂଗ୍ରେସର ଚରମପନ୍ଥୀ ମାନଙ୍କର ଜିଦ୍ ଏତିକିବେଳେ ଶତ୍ରୁ (ବ୍ରିଟିଶ) ଙ୍କୁ ଚାପଦେଇ ସ୍ୱାଧୀନତା ହାସଲ କରିବା । ଏହି ପରିସ୍ଥିତିରେ କଂଗ୍ରେସ ଭାଗ ଭାଗ ହୋଇଯିବା ଉପରେ । ଏଥି ନିମନ୍ତେ ୧୯୪୨ ଅଗଷ୍ଟ ୮ ତାରିଖ ଦିନ ବମ୍ବେରେ ଐତିହାସିକ କଂଗ୍ରେସ ଅଧିବେଶନ ବସିଥିଲା । ଏତିକି ବେଳେ ଭାରତର ଜାତୀୟ କଂଗ୍ରେସକୁ ଭାଙ୍ଗିଦେବାକୁ ଏକ ଗୁପ୍ତ ଚିଠି ବଣ୍ଟନ ନିମନ୍ତେ ଲଣ୍ଡନରୁ ପ୍ରେରିତ ହୋଇଥିଲା । କଟକର ବିଶିଷ୍ଟ ଓକିଲ ଭୂପେନ୍ଦ୍ର କୁମାର ବସୁଙ୍କ ଠାରୁ ଡଃ. ହରେକୃଷ୍ଣ ମହତାବ ଏ ଚିଠିଟି ନେଇ ବମ୍ବେଠାରେ ଗାନ୍ଧିଜୀଙ୍କୁ ଦେଖାଇବା ପରେ ପରିସ୍ଥିତି ବଦଳି ଗଲା । କଂଗ୍ରେସ କର ବା ମର (Do or Die) ଏବଂ ଭାରତ ଛାଡ (Quiet India) ନିଷ୍ପତ୍ତି ନେଲା । ଏହି ଐତିହାସିକ ନିଷ୍ପତ୍ତି ନେବାର ନେପଥ୍ୟରେ ଜଣେ ଓଡ଼ିଆଙ୍କର ହାତ ଅଛି ଏହା ଅଦ୍ୟାବଧି ଏକ ଅଜ୍ଞାତ ଅଧ୍ୟାୟ ହୋଇ ରହିଅଛି । ଏହାର ସବିଶେଷ ତଥ୍ୟ ସଂକଳିତ ଏକ ପ୍ରବନ୍ଧ ଲେଖକ ଚଳିତ ୨୦୦୪ ଅଗଷ୍ଟ ୯ ତାରିଖ ସଂଖ୍ୟାରେ କଟକରୁ ପ୍ରକାଶିତ ସାପ୍ତାହିକ "ରାଷ୍ଟ୍ରଦୀପ" ରେ ପ୍ରକାଶ କରିଥିଲେ । ଏହି ପ୍ରବନ୍ଧ ପ୍ରକାଶ ପାଇଲା ପରେ ଅନେକ ଧନ୍ୟବାଦ ପତ୍ର ଓଡ଼ିଶାର ବିଭିନ୍ନ ସ୍ଥାନରୁ ଲେଖକ ପାଇଥିଲେ ।

ବିଜୁଳି ବେଗରେ ଆକୁମାରୀ ହିମାଚଳ ଖେଳିଯାଇଥିବା ଅଗଷ୍ଟ ବିପ୍ଳବ ବେଳେ ବୋଲଗଡ ଏବଂ ଦିଘିରୀ ଖଦୀକେନ୍ଦ୍ର ସ୍ଥାନୀୟ ସ୍ୱାଧୀନତା ଆନ୍ଦୋଳନର କେନ୍ଦ୍ରବିନ୍ଦୁ ଥିବାରୁ ଇଂରେଜ ସରକାର ଏହି ଦୁଇଟି କେନ୍ଦ୍ରରେ ଚାବି ପକାଇଦେଲେ । ଫଳରେ ବୋଲଗଡ ଏବଂ ନୟାଗଡ ଅଂଚଳର ସୂତାକଟାଳୀ ମାନଙ୍କ ମଧ୍ୟରେ ପ୍ରବଳ ଉତ୍ତେଜନା ଦେଖାଦେଲା । ଦିଘିରିରୁ ଖଦୀ ସଂଗଠକ ଜଗନ୍ନାଥ ମିଶ୍ର ଗିରଫ ହେଲେ ।

ସମଗ୍ର ପୂର୍ବ ନୟାଗଡ ଏବଂ ବୋଲଗଡ ଅଂଚଳରୁ ୧୦ ହଜାର କଟାଳିଙ୍କର ଶୋଭାଯାତ୍ରା ବୋଲଗଡ ଆସିଲା । କଟାଳିଙ୍କ ଉପସ୍ଥିତିରେ ସଂଗ୍ରାମୀ ପତିତପାବନ ହୋତା ବୋଲଗଡ ଖଦୀ କେନ୍ଦ୍ରର ତାଲା ଭାଙ୍ଗି ଖଦୀକେନ୍ଦ୍ର ଖୋଲିଦେଲେ । ତାପରେ ତାଙ୍କୁ ଗିରଫ କରିନିଆଗଲା । ସେସମ୍ପର୍କରେ ବାମନ ହାଇସ୍କୁଲ ପ୍ରତିଷ୍ଠାତା ପ୍ରଧାନ ଶିକ୍ଷକ ୰ ଆନନ୍ଦ ରଥଙ୍କର ବାମନ ପ୍ରଦୀପ ପତ୍ରିକାରେ ମୋର ବୋଲଗଡ ସ୍ମୃତି ଶିରୋନାମାରେ ଏକ ପ୍ରବନ୍ଧ ପ୍ରକାଶ ପାଇଥିଲା । ସେ ତାଙ୍କ କ୍ୱାର୍ଟର ବାରଣ୍ଡାରେ ବସିଥିଲା ଅବସ୍ଥାରେ ପୋଲିସ ତାଙ୍କ ସାମନାରେ କିପରି ୰ ପତିତପାବନ ହୋତାଙ୍କୁ ଗିରଫ କରିନେଲେ ସେ ସମ୍ପର୍କିତ ପ୍ରତ୍ୟକ୍ଷଦର୍ଶୀ ଘଟଣା ପାଠକଙ୍କ ଅବଗତି ନିମନ୍ତେ ଏଠାରେ ଉପସ୍ଥାପିତ ହେଲା ।

ପତିତପାବନ ସ୍ମରଣିକା (ପୃଷ୍ଠା - ୬)

- ୧୯୪୨ ମସିହା ଭାରତ ଛାଡ ଆନ୍ଦୋଳନର ସମୟ । ସେତେବେଳେ ବୋଲଗଡ ଏବଂ ଦିଘିରୀ ଖଦୀ କେନ୍ଦ୍ର ସ୍ୱାଧୀନତା ତଥା କଂଗ୍ରେସ ଆନ୍ଦୋଳନର ପ୍ରଧାନ ମନ୍ତ୍ରଣାସ୍ଥଳ ବୋଲି ବିଦେଶୀ ସରକାରଙ୍କର ଧାରଣା ହେବାରେ ବନ୍ଧୁକଧାରୀ ପୋଲିସ ବାହିନୀକୁ ଆଣି ଏହି ଦୁଇ ଖଦୀ କେନ୍ଦ୍ରକୁ ଚାବି ପକାଇବାକୁ ଉଦ୍ୟମ କଲେ । ଏହାର ପ୍ରତିବାଦ କରିବାକୁ ଯାଇ ସମଗ୍ର ବୋଲଗଡ ଓ ନୟାଗଡ ଅଞ୍ଚଳରୁ ହଜାର ହଜାର ସ୍ତ୍ରୀ ପୁରୁଷ ଆସି ଉକ୍ତ ଦୁଇ ଖଦୀ କେନ୍ଦ୍ରର ତାଲା ଭାଙ୍ଗି ସ୍ୱର୍ଗତ ହୋତାଙ୍କ ନେତୃତ୍ୱରେ ଖଦୀ କେନ୍ଦ୍ର ଖୋଲିଲେ । ଏହାପରେ ସେ ଶ୍ରୀଯୁକ୍ତ ଆନନ୍ଦ ରଥଙ୍କ ବାରଣ୍ଡାରେ ବସି ଅପରାହ୍ନ ୪ ଘଣ୍ଟା ସମୟରେ ତାଙ୍କ ସହ ଗପ କରୁଥାନ୍ତି । ଏହି ସମୟରେ ହଠାତ୍ ପୋଲିସ ତାଙ୍କୁ ଆରେଷ୍ଟ କରି ନେଇଗଲା ।

*******

ଏହି ଗିରଫର ପ୍ରତିବାଦରେ ନୟାଗଡରୁ ଆସିଥିବା କଟାଳୀ ମାନଙ୍କ ମଧ୍ୟରୁ ଆଜୀବନ ଖଦୀ କର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ବୋଲଗଡରେ ପ୍ରତିଷ୍ଠିତ ଉତ୍କଳମଣି ଖଦୀଗ୍ରାମ୍ୟଦୋୟ ସଂଘର ପ୍ରତିଷ୍ଠାତା ସଂପାଦକ ଶ୍ରୀ ମହାଦେବ ପ୍ରଧାନଙ୍କର ପିଉସୀ ନୟାଗଡର ପଣ୍ଡୁସର ଗ୍ରାମର ପୂନା ଦେଈ ବୋଲଗଡ ପୋଲିସକୁ ନିର୍ଭୀକ ଭାବରେ ଧମକ ଦେଇଥିବା କଥା ଲେଖକ ଖଦୀ କର୍ମୀ ଶ୍ରୀ ରାଧାଚରଣ ରାଉତରାୟଙ୍କ ଠାରୁ ଶୁଣିଥିଲେ ।

ଓଡିଶା ସ୍ୱାଧୀନତା ସଂଗ୍ରାମୀ ସଂଘ ତରଫରୁ ବାନର ସେନା ସଂକଳନ କମିଟି ଗଠନ କରାଯାଇ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର କଥିତ ସେମାନଙ୍କର ସଂକ୍ଷିପ୍ତ ଜୀବନୀ ଏବଂ କାର୍ଯ୍ୟାବଳୀ ଏଥିରେ ସଂକଳନ କରାଯାଇଅଛି । ଓଡିଶାର ବିଶିଷ୍ଟ ସ୍ୱାଧୀନତା

ସଂଗ୍ରାମୀ ୬ ପୁରୁଷୋତ୍ତମ ସିଂହ (କଟକ) 'ସ୍ୱାଧୀନତା ସଂଗ୍ରାମରେ ବାନର ସେନା' ନାମରେ ୩ଟି ସଙ୍କଳନ ପ୍ରକାଶ କରିଥିଲେ । ବୋଲଗଡ ଅଞ୍ଚଳର ଯେଉଁ ସ୍ୱାଧୀନତା ସଂଗ୍ରାମୀ ମାନଙ୍କର ଜୀବନୀ ସ୍ଥାନିତ ହୋଇଅଛି ତାହା ସେଥିରୁ ସଂଗୃହୀତ ହୋଇ ନିମ୍ନରେ ଦିଆଗଲା ।



## ସ୍ଥାନୀୟ ସ୍ୱାଧୀନତା ସଂଗ୍ରାମୀ

### ଶ୍ରୀ ଗୋଲାମ ମୁସ୍ତାଫା ଖାଁ

ପିତା ଉସମାନ ଖାଁ ପୁରୀ ଜିଲ୍ଲା ଥାନା-ବୋଲଗଡର ମାଣିକ ଗୋଡାର ଦଳାଇସାହି ଗ୍ରାମରେ ୧୯୦୨ ମସିହାରେ ଜନ୍ମ ।

୧୯୩୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହେଲା । ସତ୍ୟାଗ୍ରହୀ ସଂଗ୍ରହ କରିବା ପାଇଁ ପଣ୍ଡିତ କୃପାସିନ୍ଧୁ ହୋତା ,ପ୍ରଚାରକ ଅନନ୍ତ ମିଶ୍ର , ଅନ୍ତର୍ଯ୍ୟାମୀ ପଣ୍ଡା ଓ ଜଗନ୍ନାଥ ମହାନ୍ତି ପ୍ରମୁଖଙ୍କୁ ଘରେ ଲୁଚାଇ ରଖି କାର୍ଯ୍ୟ ଚଳାନ୍ତି । ଭାରତ ଛାଡ ଆନ୍ଦୋଳନରେ ତା ୧୭.୦୧.୪୩ ଠାରୁ ତା ୯.୧୧.୪୩ ପର୍ଯ୍ୟନ୍ତ ବ୍ରହ୍ମପୁର ସର୍କଲ ଜେଲରେ ବନ୍ଦୀ ହୋଇ ରହିଥିଲେ ।

### ଶ୍ରୀଯୁକ୍ତ ଜୟକୃଷ୍ଣ ମିଶ୍ର

ପିତା -ସ୍ୱର୍ଗୀୟ ଲିଙ୍ଗରାଜ ମିଶ୍ର, ପୁରୀଜିଲ୍ଲା ବୋଲଗଡ ଥାନା-ଟାଙ୍ଗିସାହି ପୋଷ୍ଟ ଅନ୍ତର୍ଗତ ଦିବ୍ୟସିଂହପୁର ଶାସନରେ ୧୯୧୩ ମସିହାରେ ଜନ୍ମଲାଭ କରିଥିଲେ ।

ବୋଲଗଡ ସ୍କୁଲ ପଠନାବସ୍ଥାରୁ ଅଜ୍ଞାତ ଭାବେ ଲବଣ ସତ୍ୟାଗ୍ରହରେ ଯାଇ ପୁରୀ ମାର୍କେଟ ଠାରେ ଆରେଷ୍ଟ ହୋଇ ମାଜିଷ୍ଟ୍ରେଟ ପି.କେ. ଦାସଙ୍କ ବିଚାରରେ ୧୯୩୦ ମସିହାରେ ୨ ମାସ ସଶ୍ରମ କାରାଦଣ୍ଡ ସଂଗ୍ରାମୀ ଶ୍ରୀ ଗତିକୃଷ୍ଣ ସ୍ୱାଇଁ ପ୍ରମୁଖଙ୍କ ସହ ପୁରୀ ରେ ଜେଲଦଣ୍ଡ ଭୋଗ ଅଛି । ଏହି କେସରେ ୫୦ ଟଙ୍କା ଜୋରିମାନା ସେକାଳରେ ସହି ଅଛି , ପୁରୀ ଜେଲରୁ ଫେରି ଆସି ଖୋର୍ଦ୍ଧା ରୋଡ ମଦ ଦୋକାନ ପିକେଟିଂରେ ଧରାହୋଇ ଖୋର୍ଦ୍ଧା ଏସ୍ :ଡି : ଓଙ୍କ କୋର୍ଟରେ ବେତ୍ରାଘାତ ଦଣ୍ଡ ପାଇ ଖଳାସ ହୋଇଥିଲି । ପୁନର୍ବାର ଅଫିମ ଗଞ୍ଜା ଦୋକାନ ପିକେଟିଂ କରି ୧୯୩୦ ମସିହାରେ ୩ ଥର ଧରାହୋଇ ୨୫ ଦିନ ଜେଲଦଣ୍ଡ ଭୋଗିଅଛି । ଏହିପରି ୧୯୩୨ରେ ୨ ମାସ ଜେଲଦଣ୍ଡାଦେଶରେ ବଦଳି ହୋଇ ପାଟନା କ୍ୟାମ୍ପଜେଲରେ କଟାଇଛି ।

କ୍ୟାମ୍ପଜେଲରୁ ଫେରି କିଛିଦିନ ପରେ ବିଜୟ ବାହିନୀ ବାନର ସଂଗ୍ରାମୀ ଦଳରେ ଯୋଗଦେଇ ପୁରୀ ସିଂହଦ୍ୱାର ସଭାରେ ଧରାହୋଇ ୧୪ ଦିନ ହାଜତରେ ରହିବା ପରେ ମାଜିଷ୍ଟ୍ରେଟ କୋର୍ଟରେ ବେତ ପ୍ରହାର ଦଣ୍ଡ ପାଇ ଖଲାସ ହୋଇ ଆସିଲି । ପୁରୀ କଲେକ୍ଟର ଅଫିସ ଉପରୁ ବ୍ରିଟିଶ ପତାକା ପୋଡିବାକୁ ଶ୍ରୀ ବିଶ୍ୱନାଥ ମିଶ୍ର ଓଗେର ଆମ୍ଭେ ୩ ଜଣ ସଂଗ୍ରାମୀ ଚଢ଼ିବାରେ ଧରାହୋଇ ପୁରୀ ମାଜିଷ୍ଟ୍ରେଟ ବିଚାରରେ ୧୧ ଦିନ ହାଜତପରେ ବେତ୍ରା ଘାତ ଦଣ୍ଡରେ ମୂର୍ଚ୍ଛା ହୋଇ ଡାକ୍ତର ଚିକିତ୍ସାପରେ ଖଲାସ ହେଲି । ଏହି କେସରେ ୧୫ଟଙ୍କା ବସ୍ତ୍ର ପୋଡିବାରେ ପୁରୀ ଏସ୍ ଡି ଓ ବିଚାରରେ ମୋ ନାମ ପରିବର୍ତ୍ତନ କରି ନାମରେ ୨ ମାସ ଦଣ୍ଡାଦେଶରେ ପାଟନା କ୍ୟାମ୍ପ ଜେଲରେ ୧୯୩୩ ରେ ଜେଲଦଣ୍ଡ ଭୋଗ କରିଅଛି ।

ଶ୍ରୀ ପର୍ଶୁରାମ ପଦାତିକ ରାୟ

ଜନ୍ମ- ପୁରୀଜିଲ୍ଲା ଖୋରଧା ସବ୍‌ଡିଭିଜନ ଅନ୍ତର୍ଗତ ବୋଲଗଡ ଥାନାରେ ମାଣିକା ଗୋଡା ଗ୍ରାମରେ ୧୯୧୨ ମସିହା ମାର୍ଚ୍ଚ ୧୫ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପିତା -ମଦନ ସାମନ୍ତରାୟ । ୧୯୩୧ ମସିହାରେ କଂଗ୍ରେସ ଅଧିବେଶନ ପୁରୀ ରେ ବସିବାର ବନ୍ଦ ହେଲା । ଏହି ସମୟରେ ପୁରୀ ଥାନା ହାଜତକୁ ଗଲି । କିଛି ଦିନ ପରେ ଛାଡ ପାଇଲି । ମୋତେ ପୁରୀ ଓ ପାଟଣା ଜେଲରେ ୨ ମାସ କଟାଇବାକୁ ପଡିଥିଲା । ୧୯୩୦ ରୁ ୩୨ ମସିହା ମଧରେ ମୋତେ ଚାରିଥର ଜେଲଦଣ୍ଡ ଭୋଗିବାକୁ ପଡିଛି ।

ମଧୁସୂଦନ ମିଶ୍ର

ପିତା- ସ୍ୱର୍ଗତ ରଘୁନାଥ ମିଶ୍ର ପୁରୀ ଜିଲ୍ଲା ବୋଲଗଡ ଥାନା ଟାଙ୍ଗିସାହି ପୋଷ୍ଟ ଅନ୍ତର୍ଗତ ଦିବ୍ୟସିଂହପୁର ଶାସନରେ ୧୮୯୦ ମସିହାରେ ଜନ୍ମଗ୍ରହଣ କରିଥିଲେ ।

୧୯୩୦ ମସିହାରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ପୁରୀଠାରେ ୨ ମାସ ୧୫ ଦିନ କାରାବରଣ କରି ପୁରୀ ଜିଲାରେ ଥିଲେ । ସଂଗ୍ରାମୀ ସଂଗ୍ରହ ଓ ପ୍ରଚାର କାର୍ଯ୍ୟରେ ଗିରଫ ହୋଇ ୧୫ ଦିନ ହାଜତ ପରେ ମାଜିଷ୍ଟ୍ରେଟ କୋର୍ଟର ବିଚାରରେ ଖାଡାଦଣ୍ଡର ଖଲାସ ହୋଇଥିଲେ ।

ଏହି ସଂଗ୍ରାମୀ ୰ ମଧୁସୂଦନ ମିଶ୍ର ଓଡିଶା ପେନ୍ ସନ୍ ୧୫ ଟଙ୍କା ପ୍ରଥମେ ପାଇ ତାହା ବୃଦ୍ଧି ହୋଇ ୨୫ ଟଙ୍କା ମାତ୍ର ପାଉଥିବା ସମୟରେ ସଂଗ୍ରାମୀଙ୍କର ୧୯୭୨ ମସିହାରେ ଦେହତ୍ୟାଗ ଘଟିଥିଲା ।

<u>୰ଶ୍ରୀ ରାମକୃଷ୍ଣ ମିଶ୍ର</u>

ପିତା ୰ ଲିଙ୍ଗରାଜ ମିଶ୍ର, ପୁରୀ ଜିଲ୍ଲା ବୋଲଗଡ ଥାନା ଟାଙ୍ଗିସାହି ପୋଷ୍ଟ ଅନ୍ତର୍ଗତ ଦିବ୍ୟସିଂହପୁର ଶାସନ ଗ୍ରାମରେ ୧୯୦୭ ମସିହାରେ ଜନ୍ମ ଗ୍ରହଣ କରିଥିଲେ ।

୧୯୩୦ ମସିହାରେ ପୁରୀଠାରେ ଲବଣ ସତ୍ୟାଗ୍ରହରେ ଯୋଗଦେଇ ଆରେଷ୍ଟ ହୋଇ ଜିଲ୍ଲା ମାଜିଷ୍ଟ୍ରେଟ ବିଚାରରେ ୨ ମାସ ୧୫ ଦିନ ପୁରୀରେ ଜେଲଦଣ୍ଡ ଭୋଗ କରିଅଛନ୍ତି । ୧୯୩୨ ରେ ଗ୍ରାମ ଗ୍ରାମ ବୁଲି କଂଗ୍ରେସ ପ୍ରଚାର ଓ ସଂଗ୍ରାମୀ ସଂଗ୍ରହ ଏକମାସ ପରେ ପୁରୀ ଚମ୍ପା ଆଶ୍ରମଠାରେ ଧରାହୋଇ ୧୫ ଦିନ ହାଜତ ପରେ ମାଜିଷ୍ଟେଟ କୋର୍ଟରୁ ଖଲାସ ହୋଇଥିଲେ ।

<u>ଶ୍ରୀ ସୁଦର୍ଶନ ମହାପାତ୍ର</u>

ପିତା- ଶ୍ରୀ ଗଙ୍ଗାଧର ମହାପାତ୍ର । ୧୯୧୧ ମସିହାରେ ବୋଲଗଡସ୍ଥ ମାଳିସାହି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ ।

୧୯୩୦ ମସିହାରେ କାଠଯୋଡି ସଭାରେ ପିନ୍ଧିଥିବା ବିଦେଶୀ ଲୁଗା ପୋଡି ଖଦଡ ଲୁଗା ପିନ୍ଧିବା ପାଇଁ ଶପଥ ନେଲି । ଗ୍ରାମକୁ ଆସି ଖଦଡ ଲୁଗା ପିନ୍ଧିଲି । ପଣ୍ଡିତ କୃପାସିନ୍ଧୁ ହୋତାଙ୍କ ସଙ୍ଗରେ ସାକ୍ଷୀଗୋପାଳ ଆଶ୍ରମକୁ ଗଲି । ଶୋଭା ଯାତ୍ରାରେ ଗଲାବେଳେ ଟାଉନ୍ ଥାନା ସମ୍ମୁଖରେ ପ୍ରଚାରକଙ୍କ ସହିତ ଗିରଫ ହେଲି । ପୁରୀ ମାଜିଷ୍ଟେଟ ପି.କେ.ଦାସଙ୍କ ବିଚାରରେ ୩ ମାସ କାରାଦଣ୍ଡ ଆଦେଶ ହେଲା ପୁରୀ ଜିଲ୍ଲା ଜେଲରେ ରହିଲି । ୧୯୩୨ ମସିହା ଜାନୁୟାରୀ ୨୬ ତାରିଖ ରେ ସ୍ୱାଧୀନତା ଦିବସ ଉପଲକ୍ଷେ ଶପଥ ପତ୍ର ପାଠ କରିବା ପାଇଁ କଂଗ୍ରେସରୁ ନିର୍ଦ୍ଦେଶ ଆସିଲା । ମୁଁ ମାଣିକାଗୋଡା ଗ୍ରାମର ସଭାରେ ଶପଥପତ୍ର ପଠନ କରି ଗିରଫ ହେଲି । ବଣାଇଗଡ ପୋଲିସ ଖୋର୍ଦ୍ଧା ପଠାଇଦେଲେ । ଏସ.ଡି.ଓ. ଶ୍ରୀଯୁକ୍ତ ରାଧାଚରଣ ଦାସ ବିଚାରରେ ୬ ମାସ ଜେଲଦଣ୍ଡ ଓ ପଚାଶ ଟଙ୍କା ଜୋରିମାନା ନ ଦେଲେ ୩ ସପ୍ତାହ ପାଇଁ ଜେଲଦଣ୍ଡ ଆଦେଶ ଦେଲେ । ଆମେ ପୁରୀ ଜେଲକୁ ଗଲୁ , ପୁରୀ ଜେଲରୁ ପାଟଣା କ୍ୟାମ୍ପ ଜେଲକୁ ପଠାଇ ଦିଆଗଲା । ସରକାର ୫୦ ଟଙ୍କା ଜୋରିମାନା ଆଦାୟ କରିନଥିବାରୁ ମୋତେ ୬ ମାସରୁ ଉର୍ଦ୍ଧ୍ୱ ଜେଲଦଣ୍ଡ ଭୋଗ କରିବକୁ ପଡିଥିଲା ।

୧୯୭୯ ମସିହାରେ "ଗ୍ରାମ୍ୟ ଉନ୍ନୟନ ପରିଷଦ" ନାମରେ ଗୋଟିଏ ଖଦୀ ଓ ଗ୍ରାମ୍ୟଦ୍ୟୋଗ ଅନୁଷ୍ଠାନ ଗଠିତ ହୋଇଛି । ମୁଁ ଏହି ଅନୁଷ୍ଠାନରେ ଚେୟାରମ୍ୟାନ ଅଛି ।

<u>ଦାମୋଦର ମିଶ୍ର</u>

ପୁରୀ ଜିଲ୍ଲା ବୋଲଗଡ ଥାନା ଟାଙ୍ଗୀସାହି ପୋଷ୍ଟ ଅନ୍ତର୍ଗତ ଦିବ୍ୟସିଂହପୁର ଶାସନ ଗ୍ରାମରେ ୧୮୮୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ ।

୧୯୨୧ ମସିହାରେ ଅସହଯୋଗ ସଂଗ୍ରାମରେ ଯୋଗ ଦେଇଥିଲେ । ଜିଲ୍ଲା ସରକାରଙ୍କ ନିଷେଧାଦେଶ ଓ ଦମନ ସତ୍ୱେ ଚରଖା ଓ ଖଦୀ ପ୍ରସାର ମାଧମରେ ପ୍ରଥମେ ଏ ଅଞ୍ଚଳରେ ଅସହଯୋଗ ସଂଗ୍ରାମ ଚାଲୁକରି ଥିଲେ ।

୰ ଦାମୋଦର ମିଶ୍ର ସରକାରଙ୍କ ନିଷେଧ ଦମନ ସତ୍ୱେ ଲାହୋର ଗୟା କଲିକତା ଆଦି ତତ୍କାଳୀନ ଜାତୀୟ କଂଗ୍ରେସରେ ଯୋଗ ଦେଇ କଂଗ୍ରେସ ପ୍ରସ୍ତାବ କ୍ରମେ ଅସ୍ପୃଶ୍ୟତା ନିବାରଣରେ ଅଗ୍ରଣୀ ହୋଇ ସରକାରଙ୍କ ପୋଲିସ ଏକାଧିବାର ସଂଗ୍ରାମୀଙ୍କ ଗୃହ ତଲାସ କରି କିଛି କଂଗ୍ରେସ କାଗଜାତ ପାଇବାରେ ଅର୍ଥଦଣ୍ଡ ଭୋଗି ଥିଲେ ।

<u>ସଂଗ୍ରାମୀ ଶ୍ରୀ ୰ ଭଗବାନ ସାମନ୍ତ ସିଂହାର</u>

ପିତା - ବଂଶୀଧର ସାମନ୍ତ ସିଂହାର , ଗ୍ରା-ଚମ୍ପାଇଲୋ , ଥାନା - ବେଗୁନିଆ, ଜିଲ୍ଲା -ପୁରୀ ଜନ୍ମ -୧୫/୧୨/୧୯୧୨ ମସିହାରେ ।

୧୯୩୪ ମସିହାରେ ସୁଦୂର ବ୍ରହ୍ମଦେଶକୁ ଜୀବିକା ନିର୍ବାହ ପାଇଁ ଯାଇଥିଲେ । ତତ୍କାଳୀନ ଆଜାଦ୍ ହିନ୍ଦ ବାହିନୀର ଆହ୍ୱାନ କ୍ରମେ ୧୯୪୩ ମସିହାରେ ସେ ଉକ୍ତ ବାହିନୀରେ ସ୍ୱେଚ୍ଛାକୃତ ଭାବରେ ଯୋଗଦାନ କିର ଗୋସାଲା ସାମରିକ ଶିବିରରେ ୧୦ ମାସ ପାଇଁ ସାମରିକ ଶିକ୍ଷା ଲାଭକରିଥିଲେ । ଦୁର୍ଭାଗ୍ୟ କ୍ରମେ ସେ ଆମେରିକା ସେନା ବାହିନୀଦ୍ୱରା ବନ୍ଦୀ ହୋଇ କାରାବରଣ କରିଥିଲେ । ଜେଲର ବହୁ ଯନ୍ତ୍ରଣା ଓ ବେତ୍ରାଘାତ ସତ୍ତ୍ୱେ ସେ ଭାଙ୍ଗିପଡି ନଥିଲେ । ୧୯୪୬ ମସିହାରେ ଜେଲରୁ ଖଲାସ ହୋଇ ବହୁ ବାଧା ବିଘ୍ନ ଲଙ୍ଘନ କରି ପାଦରେ ସୁଦୂର ପଥ ଅତିକ୍ରମ କରି ସ୍ୱଦେଶକୁ ଫେରିଆସିଥିଲେ । ୨୫.୦୧୨.୧୯୮୧ ମସିହାରେ ମୃତ୍ୟୁବରଣ କରିଥିଲେ ।

<u>ସଂଗ୍ରାମୀ ଶ୍ରୀ ଅର୍ଜୁନ ଫତେସିଂହ</u>

ପିତା -ଶ୍ରୀ ଡମ୍ବରୁଧର ସାମନ୍ତ , ମାତା -ଶ୍ରୀମତୀ କେଶରୀ ଦେଈ , ଗ୍ରା- ଚମ୍ପାଇଲ, ପୋ- ପିଟୁକୁଳି , ଥା- ବେଗୁନିଆ, ଜିଲ୍ଲା-ପୁରୀ, ଜନ୍ମ -୧୯୧୫ ମସିହା ମକରମାସ ୧୫ ତାରିଖ ।

ଆଚାର୍ଯ୍ୟ ହରିହର ଦାସଙ୍କ ଠାରୁ ପ୍ରେରଣାପାଇ ଛାତ୍ର ଜୀବନରୁ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇଥିଲି । ବିଦେଶୀ ବସ୍ତ୍ର ବର୍ଜନ ନିମନ୍ତେ ଆନ୍ଦୋଳନ

କାଳରେ ପୁରୀ ଠାରେ ଏକ ଲୁଗାଦୋକାନ ଆଗରେ ପିକେଟିଂ କରୁଥିବା ସମୟରେ ୧୯୪୦ ମସିହାରେ ଆରେଷ୍ଟ ହୋଇ ଜେଲ ଯାଇଥିଲି । ୧୯୩୨ ମସିହାରେ ସ୍ୱାଧୀନତା ଦିବସ ପାଳନ କରିବା ଅବସରରେ ଜାନୁୟାରୀ ମାସ ୨୬ ତାରିଖରେ ଆରେଷ୍ଟ ହୋଇଥିଲି । ରାୟବାହାଦୁର ଆର.ସି. ଦାସ (ଏସ୍ .ଡି.ଓ) ଖୋର୍ଦ୍ଧା, ମୋ ବିରୁଦ୍ଧରେ ଆଗତ ଅଭିଯୋଗ ଗୁଡିକୁ ବିଚାର କରି ସଶ୍ରମ କାରାଦଣ୍ଡ ଓ ଜୋରିମାନା ଉଭୟ ଦଣ୍ଡରେ ଦଣ୍ଡିତ କଲେ । ପୁରୀ ଓ ବିହାରର ପାଟଣା ଜେଲରେ ସଶ୍ରମ କାରାଦଣ୍ଡ ଭୋଗକଲି । ମାତ୍ର ମୋର ପିତା ଜୋରିମନା ଟଙ୍କା ପୈଠ ନଦେବାରୁ ଇଂରେଜ ସରକାର ଆମ୍ଭର ଘର କୋରଖ କରାଇ ବଳଦ ଓ କବାଟ ଆଦି ଅସ୍ଥାବର ସଂପତ୍ତି ନିଲାମ କରାଇଲେ ।

<u>ସଂଗ୍ରାମୀ ଶ୍ରୀ ବିଶ୍ୱନାଥ ସାମନ୍ତ</u>

ପିତା - ଡମ୍ବରୁଧର ସାମନ୍ତ , ମାତା - ଅହଲ୍ୟା ଦେବୀ , ଗ୍ରା- ଚମ୍ପାଭଳ , ପୋ- ପିତୁକୁଳି , ଥା- ବେଗୁନିଆଁ , ଜିଲ୍ଲା -ପୁରୀ ଜନ୍ମ-୧୯୧୧ ମସିହା ଫେବୃୟାରୀ ମାସ ୧୦ ତାରିଖ ଦିନ ।

ସ୍ୱାଧିନତା ଦିବସ ପାଳନ କରିବା ଅବସରରେ ଆରେଷ୍ଟ ହେଲେ । ବିଚାରପତି ତାଙ୍କୁ ସଶ୍ରମ କାରାଦଣ୍ଡ ଓ ଜୋରିମାନା ଉଭୟ ଦଣ୍ଡରେ ଦଣ୍ଡିତ କଲେ । ଏହି ଜେଲକାଳ ପୁରୀ ଓ ବିହାର ବାଙ୍କୀ ପୁର , ପାଟନା କ୍ୟାମ୍ପ ଜେଲରେ କଟାଇବାକୁ ପଡିଥିଲା । ଜୋରିମାନା ଅନାଦେୟ ସତ୍ତ୍ୱେ ସରକାର ବହୁ ସ୍ଥାବର ଅସ୍ଥାବର ସମ୍ପତ୍ତିର ପୋଡୁଅ ଓ ଘରଦ୍ୱାର ନିଲାମ କାରାଇଥିଲେ । ତିରୋଧାନ ୨୪.୧୧.୧୯୭୯ ମସିହା ।

ବିଶ୍ୱନାଥ ସାମନ୍ତଙ୍କ ବିଷୟରେ ୧୯୫୬ ମସିହାରେ ପ୍ରକାଶିତ ଭାରତୀୟ ଜାତୀୟ କଂଗ୍ରେସ ପ୍ରତିନିଧି ପଞ୍ଜିକା (Indian National Congress Delegate Directory) ର ପୃଷ୍ଠା ୨୩୦ ରୁ ସଂଗୃହୀତ ତଥ୍ୟ ଏଠାରେ ଦିଆଗଲା । ସଂଗ୍ରାହକ - ସଂଗ୍ରାମ କେଶରୀ ସ୍ୱାଇଁ । ("ଶ୍ରଦ୍ଧାଞ୍ଜଳି" ସ୍ୱାଧୀନତା ସଗ୍ରାମୀ ୰ ବିଶ୍ୱନାଥ ସାମନ୍ତଙ୍କ ୨୬ ତମ ଶ୍ରାଦ୍ଧ ବାର୍ଷିକ ତା ୨୪-୧୧-୨୦୦୪ ସ୍ମରଣିକା ରୁ ସଂଗୃହୀତ)

Biswanath Samant

Born in 1911, Member P.C.C. was the first Satyagrahi of Khurda Sub-division who participated in Salt-Satyagrah in Balasore in 1930. For observing Independence Day on 26

January 1931, was arrested along with his brother and imprisoned. His movable property also was attached and sold in public auction. Since then working earnestly for Congress. His father Shri Dambarudhar Samant was a leading congress figure of the district.

Vill.- Champailo, P.O.- Pichukuli
Sub-Division.- Khurda, Dist.- Puri

************

୧୯୩୮ ରୁ ୧୯୪୨ ପର୍ଯ୍ୟନ୍ତ ବୋଲଗଡ ବେଗୁନିଆ ଅଞ୍ଚଳରେ ଚାଲିଥିବା ସ୍ୱାଧୀନତା ଆନ୍ଦୋଳନ ସହ ଖଣ୍ଡପଡା ଗଡଜାତ ପ୍ରଜାମେଳି ଆନ୍ଦୋଳନ ବିଷୟରେ ଏକ ଗୁପ୍ତ ଚିଠି ଖୋରଧା ସବକଲେକ୍ଟରଙ୍କର ରେକର୍ଡ ରୁମରୁ ମିଳିଅଛି । ଏହି ଚିଠିରେ ସେତେବେଳେ ଖଣ୍ଡପଡାର ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀଙ୍କର କାର୍ଯ୍ୟକଳାପ ସହ ବୋଲଗଡ ବେଗୁନିଆ ଖୋରଧା ଅଞ୍ଚଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀଙ୍କର କାର୍ଯ୍ୟାବଳୀ ଏବଂ ଏଥିରେ ଭାଗନେଇଥିବା ଯୁବକ ମାନଙ୍କର ଏକ ଲମ୍ବା ତାଲିକା ପୋଲିସ କର୍ତ୍ତୃପକ୍ଷଙ୍କ ଦ୍ୱାରା ସଂଗୃହୀତ ହୋଇ ତତକାଳୀନ ପୁରୀ ଜିଲ୍ଲା ଏସ.ପି. ଙ୍କୁ ଦିଆଯାଇଥିଲା । ତାହା ନିମ୍ନରେ ଦିଆଗଲା ।

**CONFIDENTIAL**

No.- 1107/20.12.1974

**Submitted to S.P. Puri**

As per your verbal instruction, I beg to submit the report as follows after due confidential enquiry.

On enquiry, it transpired that, National Freedom movement was in progress during the years between 1938 and 1942 under this P.S. area ombinding with Begunia and Khurda P.S. area and Khandapara Ex state area. It originated from Khandapara are and gradually extended up to Khurda under the leadership of Sri Raghunath Singh Samanta and late Madhusudan Patnaik of Khandapara who formed "Praja Mel" agitation against the then ruler of Khandapara put out of fear of

arrest, they extended, their activities to this area and were concealing themselves at Manikagoda area. Since 21-07-1939 to 22-03-1940 approximately 8 months and 2 days. They enter Bolgarh P.S. area to go against the Britishers. In the meantime 'Quit India' movement was started throughout the country. So the local agitators Sri Golam Mustak Khan of Manigagoda, Raghunath Pahadasingh of Gobardhanpur, Biswanath Samante of Champailo, Bankanidhi Parida of Dabardhua, Satrughna Mansingh of Siula, Chakradhar Mohapatra of Bolgarh, Patitapaban Hota of Khanguria, Bankanidhi Subudhi of Sanapadar and others found in the agitation under the leadership of Sri Prananath Pattanaik, Golulmohan Rai Chudamany of Khurda, Gangadhar Paikaray of Sanapadar and others.

They started training camps at Manikagoda, Champailo and at some different places. They collected youths from Bolgarh, Begunia and Khurda area to undergo such training of Freedom Movement. These training camps were being supervised by Dr. H. K. Mahatab and Sri Bhagabati Charan Panigrahi. About 500 to 1000 volunteers joined agitation. Some of them were getting training in the training centers.

Sri Raghunath Singh Smant and Sri Madhusudan Patnaik were arrested and convicted for several time by the ruler of Khandapara and on their release, they were again starting agitations from time to time.

Leaders Sri Prananath Patnaik, Gokul Mohan Rai Chudamani, Chakradhar Mohapatra, Patitapaban Hota and many others were arrested by Britishers. At times, they also remained underground and their followers were working outside for the Freedom. Some of the workers out of those who were in the underground training for freedom struggle on the leadership of

the above leaders were declared as proclaimed offenders by the Britishers. The Britishers and the Ex-ruler of Khandapara state issued NBW/R for the arrest of the agitators. Name of a few prominent followers could be collected as follows –

Since many of them have been expired and engaged else where.

| Sl. No | Name | Address / Village |
|---|---|---|
| 1. | Sri Agadhu Pradhan | Manikagoda |
| 2. | Sri Sanshari Mallik | -do- |
| 3. | Sri Mianaketan Dalei | Srichandanpur |
| 4. | Sri Kanduri Sethi | Firifira |
| 5. | Sri Dandadhari Patra | Mandalsingh |
| 6. | Sri madan Mohapatra | Dighiri |
| 7. | Sri Laxman Samantaray | Kusupalla |
| 8. | Sri Gadadhar Mohapatra | Bolgarh |
| 9. | Sri Kali Prasan Rath | -do- |
| 10. | Sri Nabakishore Ray | -do- |
| 11. | Sri Nurusingh Lenka | Sampur |
| 12. | Sri Manguli Lenka | Dihakhauruni |
| 13. | Sri Gobinda Lenka | -do- |
| 14. | Sri Jaladhar Lenka | -do- |
| 15. | Sri Durga Charan Sanapati | Sanakumari |
| 16. | Sri Udayanath Nayak | Badakumari |
| 17. | Sri Radha Charan Routaray | Khanguria |
| 18. | Sri Gokula Martha | Olasingh |
| 19. | Sri Patabasa Subudhi | Haripurpatna |
| 20. | Madhusudan Samantaray | -do- |
| 21. | Budhi Patnaik | Patabandha |
| 22. | Nabakishore Mandhata | Khalikota |

| | | |
|---|---|---|
| 23. | Priyanath Dash | Sagarguan |
| 24. | Ramachandra Dalei | Godiali |
| 25. | Dhobei Champati | Harikeshar |
| 26. | Bhima Gumansingh | Sahajpur |
| 27. | Raghab Samantara | Jaripada |
| 28. | Jaladhar Sahoo | Siula |
| 29. | Satrughana Mangaraj | Takatala |
| 30. | Pabani Pradhan | -do- |
| 31. | Bhramar Behera | -do- |
| 32. | Laxman Sundara | -do- |
| 33. | Udyanath Mohapatra | -do- |
| 34. | Digambar Routaray | Bankapalli |
| 35. | Chakradhar Tada | Badanuapalli |
| 36. | Ramachandra Pradhan | Kaduaberini |
| 37. | Fakir Pabanisingh | Badanuapalli |
| 38. | Amin Gumansingh | Asarala |
| 39. | Padmacharan Behera | -do- |
| 40. | Trilochan Baliarsingh | Gigiria |
| 41. | Mohan Baral | Champeilo |
| 42. | Gagikrushan Dakhinakabat | -do- |
| 43. | Meru Paikara | Begunia |
| 44. | Udyanath Pradhan | -do- |
| 45. | Krushna Mohan Baliarsingh | -do- |
| 46. | Dhoba Baral | -do- |
| 47. | Madan mohan Martha | Dingar |
| 48. | Golakha Baliarsingh | Dhanagharnuagaon |
| 49. | Jagannath Behera | Deuli |
| 50. | Bikrama Baral | Atri |
| 51. | Brajaraj Mohapatra | Bhuasunipatna |
| 52. | Chntamani Subudhi | Tandala |

| | | |
|---|---|---|
| 53. | Harekrushna Mahala | Rasola |
| 54. | Purusottam Patnaik | Khurda |
| 55. | Golakha bihari Nayak | Sarua |
| 56. | Dutibaban Das | Narangarh |
| 57. | Bhubaniswar Mangaraj | Dihakhola |
| 58. | Nilamani Dei | Siula |
| 59. | Makunda Rout | Dihakhola |
| 60. | Panchu Naik | Tikatala |
| 61. | Murali Nishank | Dihakhola |
| 62. | Bhikari Nishanka | -do- |
| 63. | Purnachandra Paikara | -do- |
| 64. | Urbasi Samantasinghar | Gaudiapada |
| 65. | Yudhistir Champati | Ankoi |
| 66. | Lala Kandi | Hadapada |
| 67. | Ramachandra Mansingh | Narangarh |
| 68. | Kalicharan Raysingh | -do- |
| 69. | Satrughna Mansingh | Siula |
| 70. | Basudev Patnaik | Lehanga |
| 71. | Fakira Mangaraj | Begunia |
| 72. | Debaraj Dash | -do- |
| 73. | Rangabati Dei | Godiali |
| 74. | Harekrushna Patnaik | Suanla |
| 75. | Charat Ch. Sahoo | Golapatna |
| 76. | Bhramarbar Mohapatra | Bajapur |
| 77. | Surendra Mohapatra | -do- |
| 78. | Udyanath Sahoo | -do- |
| 79. | Kalandi Baral | Badanayapalli |
| 80. | Charan Dash | Godipada |
| 81. | Ramanath Baliarsingh | Barapada |
| 82. | Purna chandra Sundara | Bankoi |

| | | |
|---|---|---|
| 83. | Ghansyama Das | Akadalia |
| 84. | Lochan Pradhan | Tikatala |
| 85. | Bauribandhu Palatasingh | Gudum |
| 86. | Chakradhar Samal | Akadalia |
| 87. | Udyanath Sahoo | Tulsipur |
| 88. | Bhagabat Deo | Sampur |
| 89. | Bhikari Mangaraj | Arakhapalli |
| 90. | Kunja Kar | Golapatana |
| 91. | Sarath sahoo | -do- |
| 92. | Bainsidhara Sahoo | -do- |
| 93. | Dasarathi Sahoo | -do- |
| 94. | Kashinath Behera | -do- |
| 95. | Sudama Kar | -do- |
| 96. | Madhusadan Parida | Begunia |
| 97. | Hari Parida | -do- |
| 98. | Bhramara Nayak | Govindpur |
| 99. | Uttar Kumar Martha | Indipur |
| 100. | Lochan Pradhan | Kaipadar |
| 101. | Baidhara Patsani | Indipur |
| 102. | Gouranga Rout | Kandaragadia |
| 103. | Nakali Sahoo | -do- |
| 104. | Kuvera Samantaray | -do- |
| 105. | Gadadhar Martha | -do- |
| 106. | Paramananda Marth | -do- |
| 107. | Kaviraj Chhotaray | Nuapada |
| 108. | Balunki Rout | -do- |

However, the present activities of those agitators under this P.S. are under close with. Most of them are now leading village life, since they have gone aged and inactive in political

grounds.

Yours faithfully,

Sd/-
Purasotam Pattanaik
O. I.C. Bolgarh P.S.

ଏହି ତାଲିକା ପ୍ରାପ୍ତ ହେଲା ପରେ ଏହା ବିଷୟରେ ଅନୁସନ୍ଧାନରୁ ଜଣାଯାଇଛି ଯେ ସ୍ୱାଧୀନତା ସଂଗ୍ରାମର ଶେଷ ପର୍ଯ୍ୟାୟରେ ଯେଉଁମାନେ ସଂଗ୍ରାମୀ ମାନଙ୍କୁ ବିଭିନ୍ନ ପ୍ରକାର ସାହାଯ୍ୟ କରୁଥିଲେ ଏବଂ ସେମାନଙ୍କର ଗୁପ୍ତ ବାର୍ତ୍ତା ନେଇ ଅନ୍ୟସ୍ଥାନକୁ ଯାଉଥିଲେ ସେମାନଙ୍କୁ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ଭାବରେ ସ୍ୱୀକୃତି ଦେଇ ଭତ୍ତାର ବ୍ୟବସ୍ଥା ନିମନ୍ତେ ସରକାରଙ୍କ ପାଖରେ ଶ୍ରୀ ଶତ୍ରୁଘ୍ନ ମାନସିଂହ (ଗିରିଗିରିଆ) ଏବଂ ଶ୍ରୀ ହରିବନ୍ଧୁ ପରିଡ଼ା (ବେଗୁନିଆ) ଙ୍କ ନେତୃତ୍ୱରେ ଏକ ସଂଗଠନ ଗଠନ କରାଯାଇଥିଲା । ମାୟାଧର ଦାସ ଏହି ସଂଗଠନର ରାଜ୍ୟ ସଭାପତି ଥିଲେ । ଏମାନଙ୍କର ଲଗାତାର ଆନ୍ଦୋଳନ ଫଳରେ ୨୦୦୦ ମସିହାରେ ଓଡ଼ିଶାରେ ବିଜେପି ବିଜେଡି ମେଣ୍ଟ ସରକାର ଏହି ଦାବିକୁ ଗ୍ରହଣ କରି ରାଜ୍ୟର ଏପ୍ରକାରର ୮୦ ଜଣ ଅଣବନ୍ଦୀଙ୍କୁ ପେନସନ ଦେବାର ବ୍ୟବସ୍ଥା କରିଥିଲେ । ଉପରୋକ୍ତ ତାଲିକା ଭୁକ୍ତ ବ୍ୟକ୍ତି ମାନଙ୍କ ମଧ୍ୟରୁ ୪୦ ଜଣ ଇତିମଧ୍ୟରେ ପେନସନ ପାଇଥିବା କଥା ଜଣାଯାଇଛି । ନିକଟରେ ଜଗତସିଂହପୁର ଅଞ୍ଚଳର ରାଜ୍ୟ ଅଣବନ୍ଦୀ ସ୍ୱାଧୀନତା ସଂଗ୍ରାମୀ ସଂଘର ସଭାପତି ମାୟାଧର ଦାସଙ୍କର ପରଲୋକ ହୋଇଯାଇଅଛି । ବର୍ତ୍ତମାନ ସ୍ୱାଧୀନତା ସଂଗ୍ରାମୀ ଭତ୍ତା ପାଉଥିବା ଦୁଇ ଜଣ ସଂଗ୍ରାମୀ ଜୀବିତ ଅଛନ୍ତି । ଶ୍ରୀ ବାବାଜୀ ଦାସ, ସଂପୁର ଏବଂ ଖଣ୍ଡପଡା ଅଞ୍ଚଳର ସଂଗ୍ରାମୀ ନୀଳମଣି ମିଶ୍ର ବର୍ତ୍ତମାନ ଖଇଗୁରିଆ ନିବାସୀ ଅଟନ୍ତି ।

୨ୟ ବିଶ୍ୱଯୁଦ୍ଧ ବେଳେ ନେତାଜୀ ସୁଭାଷ ଚନ୍ଦ୍ର ବ୍ରିଟିଶ ଆଖିରେ ଧୂଳି ଦେଇ ଭାରତରୁ ଖସି ଯାଇ ହିଟଲରଙ୍କ ସହ ସାକ୍ଷାତ ହୋଇ ଦକ୍ଷିଣପୂର୍ବ ଏସିଆର ସମସ୍ତ ପ୍ରବାସୀ ଭାରତୀୟଙ୍କୁ ଏକାଠି କଲେ । Indian National Army (I.N.A) ଗଠନ କରି ସଶସ୍ତ୍ର ସଂଗ୍ରାମ ଆରମ୍ଭ କରିଥିଲେ । ସେତେବେଳେ ଓଡ଼ିଶାର ବହୁ ଶ୍ରମିକ ଶ୍ରେଣୀର ଲୋକ ବର୍ମାରେ କାର୍ଯ୍ୟରତ ଥିଲେ । ସେମାନେ ସୁଭାଷ ବୋଷଙ୍କ ଆହ୍ୱାନରେ ଉଦବୁଦ୍ଧ ହୋଇ ଆଇ.ଏନ.ଏ. ରେ ଯୋଗ ଦେଲେ । ଦେଶ ସ୍ୱାଧୀନ ହେବା ପରେ

ଆଇ.ଏନ.ଏ. ସଂଘ ଗଢ଼ିଆରେ ବିଶେଷ କରି ବୋଲଗଡ, ବେଗୁନିଆଁ, ରଣପୁର, ଖୋର୍ଦ୍ଧା ଏବଂ ଗଞ୍ଜାମର ବର୍ମା ଫେରନ୍ତା ମାନଙ୍କୁ ସଂଗଠିତ କରି ସେମାନଙ୍କ ମଧ୍ୟରୁ ଯେଉଁମାନେ ଆଇ.ଏନ.ଏ. ରେ ଯୋଗଦେଇଥିଲେ ସେମାନଙ୍କୁ ସ୍ୱାଧୀନତା ସଂଗ୍ରାମୀ ମାନ୍ୟତା ଦେଇ ଗଙ୍ଗାଧର ପାଇକରାୟ ସଂଗ୍ରାମୀ ଭତ୍ତା କରାଇବାରେ ସକ୍ଷମ ହୋଇଥିଲେ । ଏହି କ୍ରମରେ ଚମ୍ପାଇଲୋ ଗ୍ରାମର ବହୁ ସଂଗ୍ରାମୀ ଭତ୍ତା ପାଇଥିଲେ । ୰ ଗଙ୍ଗାଧର ପାଇକରାୟ ଏସମସ୍ତ ଆନ୍ଦୋଳନର କର୍ଣ୍ଣଧାର ଥିଲେ । ନେତାଜୀ ସୁଭାଷ ବୋଷ କିଭଳି ଭାବରେ ଇଂରେଜୀ ଶକ୍ତି ବିରୁଦ୍ଧରେ ଉଦବୋଧନ ଦେଇ ଆଜାଦ ହିନ୍ଦ ସୈନିକ ମାନଙ୍କୁ ଅନୁପ୍ରାଣିତ କରୁଥିଲେ ସେତେବେଳର ତାଙ୍କର ଏକ ଗୀତ ଲେଖକ ଜଣେ ଆଜାଦ ହିନ୍ଦ ସୈନିକଙ୍କ ଠାରୁ ସଂଗ୍ରହ କରିଥିଲେ । ତାହା ନିମ୍ନରେ ପ୍ରଦାନ କରାଗଲା ।

ଦୂର ହଟୋ ଏ ଦୁନିଆ ବାଲେ
　　ହିନ୍ଦୁସ୍ଥାନ ହମାରେ ହେ
କାହା ହମାରା ମନ୍ଦିର ମସଜିଦ
　　ଶିଖୋକା ଗୁରୁଦ୍ୱାରା ହେ
ଉସ ଧରତି ପର କଦମ ବଢାନା
　　ଅତ୍ୟାଚାର ତୁମାରା ହେ

ଏଠାରେ ପିତୁକୁଳି ଅଞ୍ଚଳର I.N.A. ସଂଗ୍ରାମୀ ଭତ୍ତା ପାଉଥିବା ହିତାଧିକାରୀଙ୍କ ନାମ ଦିଆଗଲା । -

୧. ପତିତପାବନ ବଳିୟାରସିଂହ
୨. ଭଗବାନ ସାମନ୍ତ ସିଂହାର
୩. ଶଙ୍କର ସାମନ୍ତରା
୪. ହରିବଂଧୁ ଚମ୍ପତି
୫. ବେଲ ବରାଡ
୬. ଭୋବନୀ ଦଳସିଂହାର
୭. ମଗୁଲି ମହାନ୍ତି
୮. ସୁରେନ୍ଦ୍ର ସୁନ୍ଦରାୟ
୯. ଜଗନ୍ନାଥ ପର୍ଣ୍ଣିମ କବାଟ
୧୦. ବ୍ରହ୍ମଚାରୀ ଉଉରରାୟ
୧୧. ଅଚ୍ୟୁତ ସାମନ୍ତରା
୧୨. ଚୈତନ୍ୟ ଗୁମାନସିଂହ
୧୩. ଦୈତାରୀ ଚମ୍ପତିରାୟ
୧୪. ଅର୍ଜୁନ ଶ୍ରୀଚନ୍ଦନ
୧୫. ଲୋକନାଥ ରଣସିଂହ
୧୬. ଅପର୍ତ୍ତୀ ମାର୍ଥା
୧୭. କୁଶୁନୀ ସାମନ୍ତରା
୧୮. ଧୋବି ବରାଡ

(ଏହି ତାଲିକା ଚମ୍ପାଇଲୋ ଗ୍ରାମର କୈଳାସ ଚମ୍ପତିଙ୍କ ଠାରୁ ପ୍ରାପ୍ତ)

ସ୍ୱାଧୀନତା ଆନ୍ଦୋଳନର ଶେଷ ପର୍ଯ୍ୟାୟରେ ଓଡିଶାରେ ପାରଳା ମହାରାଜଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳରେ ପଣ୍ଡିତ ଗୋଦାବରୀଶ ମିଶ୍ର କଂଗ୍ରେସ ଛାଡି ଯୋଗଦେଇଥିବାରୁ ସେତେବେଳେ ସେ କଂଗ୍ରେସ କର୍ମୀଙ୍କ ବିରୋଧର ସମ୍ମୁଖୀନ ହୋଇଥିଲେ । ସେ ଶିକ୍ଷାମନ୍ତ୍ରୀ ଥାଇ ଓଡିଶାର ପ୍ରଥମ ବିଶ୍ୱବିଦ୍ୟାଳୟ (ଉତ୍କଳ ବିଶ୍ୱବିଦ୍ୟାଳୟ)ର ପ୍ରତିଷ୍ଠା କରିଥିଲେ ଏବଂ ଓଡିଶାର ହାଇକୋର୍ଟ ପ୍ରତିଷ୍ଠା କରିଥିଲେ । ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାଗ୍ମୀ ପ୍ରବର ଦୟାନିଧି ପଟ୍ଟନାୟକ (ଗ୍ରାମ ବାଙ୍କୋଇ) ପିତୁକୁଳି ଅଞ୍ଚଳରେ ଥିବା ବିରାଟ ଟାଙ୍ଗିରେ ପାର୍ଥସାରଥି ବିଶ୍ୱବିଦ୍ୟାଳୟ ନାମରେ ଏକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ ଏକ ବ୍ଲୁପ୍ରିଣ୍ଟ ପ୍ରସ୍ତୁତ କରିଥିଲେ । ଏସମ୍ପର୍କରେ ସଂଗୃହୀତ ତଥ୍ୟ ଅନୁଯାୟୀ ୰ ପଟ୍ଟନାୟକ ଜଣେ ପ୍ରଚଣ୍ଡ ପ୍ରତିଭାବାନ ବ୍ୟକ୍ତିତ୍ୱ ଥିଲେ । ସେ କଲିକତାରେ ଅଷ୍ଟମ ଶ୍ରେଣୀରେ ପାଠ ପଢିଲା ବେଳେ ଇଂରେଜୀ ଭାଷାରେ ସୁନ୍ଦର ଭାବେ ବକ୍ତୃତା ଦେଇ ଉଚ୍ଚ ପ୍ରଶଂସିତ ହୋଇଥିଲେ । ଉକ୍ତ ବ୍ଲୁପ୍ରିଣ୍ଟ ୰ ପଟ୍ଟନାୟକଙ୍କ ଠାରୁ ପଣ୍ଡିତ ଗୋଦାବରୀଶ ମିଶ୍ର ନେଇ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ । ତାଙ୍କର ବଡଭାଇ ୰ ଯୁଗଳ କିଶୋର ଜଣେ ସଚ୍ଚା ଗାନ୍ଧୀବାଦୀ ଖଦୀକର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ଥିଲେ । 'ଗାନ୍ଧୀ ଦର୍ଶନ' ନାମରେ ନବାକ୍ଷରୀ ବୃତ୍ତିରେ ମହତ୍ମା ଗାନ୍ଧୀଙ୍କ ଜୀବନୀ ଉପରେ ଏକ କବିତା ସଙ୍କଳନ ରଚନା କରିଥିଲେ । ଉକ୍ତ ସଙ୍କଳନ ସେତେବେଳେ ଡଃ. ମହତାବଙ୍କ ଦ୍ୱାରା ପ୍ରଜାତନ୍ତ୍ର ପ୍ରେସ୍ କଟକରେ ମୁଦ୍ରଣ କରାଯାଇଥିଲା । ସେମାନଙ୍କର ଜନ୍ମସ୍ଥାନ ବାଙ୍କୋଇ ଗ୍ରାମ । ପରେ ୰ ଯୁଗଳ ପଟ୍ଟନାୟକ ସଂପୁର ନହରପଦାରେ ଗୃହ ନିର୍ମାଣ କରି ରହିଥିଲେ । ୰ ଦୟାନିଧି ପଟ୍ଟନାୟକଙ୍କର ପୁତ୍ର ଅଳୁ ବାବା ଏଅଞ୍ଚଳର ବିଖ୍ୟାତ 'ମୁଣ୍ଡିଆ ପଡା' ରଘୁନାଥ ଆଶ୍ରମର ସାଧୁବାବା ଅଟନ୍ତି ।

ଏହିପରି ଭାବରେ ସ୍ୱାଧୀନତା ଆନ୍ଦୋଳନରେ ବୋଲଗଡ ସଂପର୍କିତ ଅଦ୍ୟାବଧି ସଂଗୃହୀତ ତଥ୍ୟ ଏକାଠି କରି ଏଥିରେ ଦିଆଗଲା । ଏଠାରେ ଗୋଟିଏ କଥା କହି ରଖୁଛି ଯେ, ଏଠାକାର ସ୍ୱାଧୀନତା ସଂଗ୍ରାମୀ ମାନେ ସେତେବେଳର କୌଣସି କଥାକୁ ଡାଇରୀରେ ଲିପିବଦ୍ଧ କରି ରଖିପାରି ନାହାନ୍ତି । କେବଳ ୰ ପର୍ଶୁରାମ ପଦାତିକରାୟଙ୍କ ଏକ ପୁରୁଣା ଡାଇରୀରେ ଯାହା ଲେଖିଥିଲେ ତାହା ଏଥିରେ ସ୍ଥାନୀତ ହୋଇଅଛି । ଏହାଛଡା ସେମାନେ ଅଧିକ ଶିକ୍ଷାଦାନରୁ ବଂଚିତ ଥିବା ସଂଗେ ଅଧିକାଂଶ ଆର୍ଥିକ ସ୍ୱଚ୍ଛଳ ପରିବାରର ନଥିବାରୁ ପରବର୍ତ୍ତୀ କାଳରେ ରାଜନୀତି କ୍ଷେତ୍ରରେ ନିଜକୁ ପ୍ରତିଷ୍ଠିତ କରିପାରିନଥିଲେ । ଏହାଛଡା ଗୋଷ୍ଠୀ ବିବାଦ ଅନ୍ୟ ଏକ ପ୍ରଧାନ କାରଣ । ଏଣୁ ଏଠାରୁ ମନୋନୀତ ପ୍ରଥମ ବିଧାୟକ ସାକ୍ଷୀଗୋପାଳ ଅଂଚଳର ୰ ସତ୍ୟବାଦୀ ନନ୍ଦ ୧୯୪୬ ମସିହାରେ ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ତଥା ଓଡିଶାର ସର୍ବମାନ୍ୟ

କଂଗ୍ରେସ ନେତା ଡଃ. ହରେକୃଷ୍ଣ ମହତାବଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ଏପରି ଭାବରେ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ଦେଶ ସ୍ୱାଧୀନ ଲାଭ କଲା ଏବଂ ସେତେବେଳେ ୰ ପତିତପାବନ ହୋତାଙ୍କ ଅଧ୍ୟକ୍ଷତାରେ ମହାସମାରୋହରେ ବୋଲଗଡ ଠାରେ ସମସ୍ତଙ୍କ ସହଯୋଗରେ ସ୍ୱାଧୀନତା ଦିବସ ପାଳନ ହୋଇଥିଲା ।

ସେତେବେଳେ ବୋଲଗଡ ବାମନ ହାଇସ୍କୁଲର ପ୍ରଥମ ବ୍ୟାଚର ଛାତ୍ର ମାନେ ପ୍ରଥମ ସ୍ୱାଧୀନତା ଦିବସ ପାଳନ ଅବସରରେ ନିମ୍ନ ଲିଖିତ ଗୀତଟି ବୋଲିଥିବାର ୰ ଭଗବାନ ପ୍ରଧାନ (ବୋଲଗଡ) ଏବଂ ଅରଖପଲ୍ଲି ନିବାସୀ ପୂର୍ବତନ ଶିକ୍ଷକ ହରେକୃଷ୍ଣ ମହାପାତ୍ର (ହରି ପଣ୍ଡିତ)ଙ୍କ ସହ ଆଲୋଚନା ବେଳେ ଲେଖକ ଜାଣିବାକୁ ପାଇଥିଲା । ତାହା ହେଉଛି -

ଗାନ୍ଧୀ ବୋଲ ଏବେ ମାନରେ
ସତ୍ୟ ଅହିଂସାର ସାଧନା ବଳରେ
ଭାରତ ହେଲା ସ୍ୱାଧୀନରେ . . .

ସେତେବେଳର ସ୍ୱାଧୀନତା ସଂଗ୍ରାମ ଏବଂ ମହତ୍ମାଗାନ୍ଧୀଙ୍କ ବୋଲଗଡରେ ଅବସ୍ଥାନ ସମ୍ପର୍କରେ ଲେଖକ ଅରଖପଲ୍ଲୀ ଗ୍ରାମର ବୟବୃଦ୍ଧ ଶିକ୍ଷକ ହରେକୃଷ୍ଣ ମହାପାତ୍ର ଏବଂ ହରିପୁରଶାସନର ପୁରୁଖା କଂଗ୍ରେସ କର୍ମୀ ତଥା ଖଙ୍ଗୁରିଆ ଗ୍ରାମପଞ୍ଚାୟତର ପୂର୍ବତନ ସରପଞ୍ଚ କୃଷ୍ଣଚନ୍ଦ୍ର ତ୍ରିପାଠୀ କହନ୍ତି ମହତ୍ମାଗାନ୍ଧୀ ବୋଲଗଡ ଆସିଥିଲା ବେଳେ ହରେକୃଷ୍ଣ ମହାପାତ୍ର ଦ୍ୱିତୀୟ ଶ୍ରେଣୀରେ ପାଠ ପଢୁଥିଲେ । ଗାନ୍ଧୀଙ୍କୁ ଦେଖାକରିବା ପାଇଁ ଖଦୀ କିମ୍ବା ତନ୍ତ ଲୁଗା ପିନ୍ଧିବା ଏକ ନିୟମ ଥିଲା । ତେଣୁ ସେ ତନ୍ତଲୁଗା ପିନ୍ଧି ଗାନ୍ଧିଜୀଙ୍କୁ ଦେଖାକରିବାକୁ ବୋଲଗଡ ଆସିଥିଲେ । ଗାନ୍ଧିଜୀ ସେତେବେଳେ ଡାକବଙ୍ଗଳାରେ ସୂତା କାଟିବା ସଙ୍ଗେ ସଙ୍ଗେ ଚିଠିପତ୍ରର ଉତ୍ତର ଦେଉଥିବା କଥା ତାଙ୍କର ମନେଅଛି । କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କୁ ସେତେବେଳେ ୧୦ ବର୍ଷ ହୋଇଥିଲା । ସେ ତାଙ୍କର ପିତାଙ୍କ ସହ ଗାନ୍ଧିଜୀଙ୍କୁ ଦେଖିବାକୁ ଆସିଥିଲେ । ସେ ସମୟରେ ପତିତପାବନ ହୋତା, ଚକ୍ରଧର ମହାପାତ୍ର, ବଳଭଦ୍ର ସାହୁ, ଦାମୋଦର ସାହୁ, ବୁଲା ଚୌଧୁରୀ, ରାମଚନ୍ଦ୍ର ସାହୁ ଡାକ ବଙ୍ଗଳାରେ ଥିବାର ସେ କହନ୍ତି ।

ଶ୍ରୀ ମୁରଲୀଧର ପ୍ରଧାନଙ୍କ ଦ୍ୱାରା ଲିଖିତ "ଇତିହାସର ଝଲକ" ପୁସ୍ତକର 'ଭାରତର ସ୍ୱାଧୀନତା ସଂଗ୍ରାମକୁ ଖୋରଧାର ମହତ୍ୱପୂର୍ଣ୍ଣ ଅବଦାନ' ଅଧ୍ୟାୟରେ <u>ବୋଲଗଡ ଅଂଚଳର ଭୂମିକା</u> ବିଷୟରେ ଲିଖିତ ବିଷୟବସ୍ତୁକୁ ଏଠାରେ ଦିଆଗଲା ।

ଇତିହାସର ଝଲକ (ପୃଷ୍ଠା .- ୩୮-୪୧)

୧୯୨୭ ମସିହାରେ ମହାତ୍ମାଗାନ୍ଧୀ ବୋଲଗଡକୁ ଆଗମନ କଲେ । ୧୯୨୦ ମସିହାରେ କଂଗ୍ରେସର ନାଗପୁର ଅଧିବେଶନ ପରେ ପରେ ପ୍ରତ୍ୟେକ ପ୍ରଦେଶରେ ଗୋଟିଏ ଲେଖାଏଁ କଂଗ୍ରେସ କମିଟି ଗଢାଗଲା । ସଂଗ୍ରାମୀମାନେ ଇଂରେଜ ସରକାର ସଙ୍ଗେ ଅସହଯୋଗ କରିବେ । ବିଧାନ ପରିଷଦରେ ଯୋଗ ଦେବେ ନାହିଁ । ଛାତ୍ରମାନେ ବିଦ୍ୟାଳୟ, ମହାବିଦ୍ୟାଳୟ ତ୍ୟାଗ କରିବେ । ବିଦେଶୀ ବସ୍ତ୍ର ଓ ଦ୍ରବ୍ୟ ବ୍ୟବହାର କରିବେ ନାହିଁ । ସ୍ୱଦେଶୀ ବସ୍ତ୍ର ବ୍ୟବହାର କରିବେ । ଓକିଲମାନେ ବିଚାରାଳୟ ତ୍ୟାଗ କରିବେ । ଦେଶର ବହୁ ଅଞ୍ଚଳରେ ଏହା କାର୍ଯ୍ୟକାରୀ ହେଲା । ଓଡିଶାରେ ଗୋପବନ୍ଧୁ ଦାଶ କଂଗ୍ରେସ ଅନୁଷ୍ଠାନର ସଭାପତି ହେଲେ । ଗୋପବନ୍ଧୁ ଚୈାଧୁରୀ ଡେପୁଟି ମାଜିଷ୍ଟ୍ରେଟ ଚାକିରୀ, ସୁରେନ୍ଦ୍ର ନାଥ ପଟ୍ଟନାୟକ ପୋଲିସ ସବଇନିସ୍‌ପେକ୍ଟର ଚାକିରୀ ଛାଡି କଂଗ୍ରେସ ଆନ୍ଦୋଳନରେ ଯୋଗଦେଲେ । ଅନ୍ୟ କେତେକ ବି ଚାକିରୀ ଛାଡିଲେ । ହରେକୃଷ୍ଣ ମହାତାବ, ନିତ୍ୟାନନ୍ଦ କାନୁନ୍‌ଗୋ, ରାଜକୃଷ୍ଣ ବୋଷ ପ୍ରଭୃତି ରେଭେନ୍ସା କଲେଜରୁ ପାଠପଢା ଛାଡି କଂଗ୍ରେସରେ ଯୋଗ ଦେଲେ । ଗୋପବନ୍ଧୁଙ୍କ ଦ୍ୱାରା ପ୍ରତିଷ୍ଠିତ 'ସମାଜ' ପତ୍ରିକାମାନ ପ୍ରକାଶିତ ହେଲା । କଂଗ୍ରେସ କର୍ମୀମାନେ ପଲ୍ଲୀ ଅଞ୍ଚଳକୁ ଯାଇ ସୂତାକଟା, ଲୁଗାବୁଣା କେନ୍ଦ୍ର ସ୍ଥାପନ କଲେ । ଏହି ସମୟରେ ବୋଲଗଡ, ବୃଢା ଅଞ୍ଚଳରେ ସୂତାକଟା କେନ୍ଦ୍ରମାନ ପ୍ରତିଷ୍ଠା ହୋଇଥିଲା । ବୋଲଗଡ ବେଗୁନିଆବାସୀ ପୂର୍ଣ୍ଣପ୍ରାଣରେ ଦେଶ ସେବାରେ ଲାଗିଗଲେ ।

୧୯୨୭ ମସିହାରେ ମହାତ୍ମାଗାନ୍ଧୀ ଖଦୀପ୍ରଚାର, ସୂତାକଟା କେନ୍ଦ୍ର ଚରଖା କେନ୍ଦ୍ର ପରିଦର୍ଶନ କରିବାକୁ ବୋଲଗଡ ଆଗମନ କରିଥିଲେ । ସେଠାରେ ହିନ୍ଦୁ ମୁସଲ୍‌ମାନ ଏକତ୍ର ଅବସ୍ଥାପନ ହେତୁ ଗାନ୍ଧିଜୀ ସନ୍ତୋଷ ପ୍ରକାଶ କରିଥିଲେ । ତାଙ୍କ ଭାଷଣ ଏତେ ହୃଦୟସ୍ପର୍ଶୀ ଓ ଉତ୍ତେଜନାମୂଳକ ଥିଲା ଯେ ହଜାର ହଜାର ନରନାରୀ କଂଗ୍ରେସ ନୀତିରେ ଦୀକ୍ଷିତ ହେଲେ । ସଂଗ୍ରାମୀ ଗଣ ଅରଟରେ, ତାକୁଡି ସାହାଯ୍ୟରେ ସୂତା କାଟିଲେ । ଖଦୀବସ୍ତ୍ର ପରିଧାନ କଲେ । ମୁଣ୍ଡରେ ଖଦଡ ଟୋପି ପିନ୍ଧିଲେ, କାନ୍ଧରେ ଖଦଡ ବ୍ୟାଗ ଓହଳାଇଲେ । ସଭାସମିତିରେ କର୍ମୀମାନେ ବାରିହୋଇପଡିଲେ । ସ୍ୱାଧୀନତା ସଂଗ୍ରାମର ସଚ୍ଚା ସୈନିକରୂପେ ଉଭା ହେଲେ । ଇଂରେଜ ସରକାରର ସମସ୍ତ ଦୋଷଦୁର୍ବଳତା ପଦାରେ ପକାଇଦେଲେ, ଜନସାଧାରଣଙ୍କୁ ସଭାସମିତି ଜରିଆରେ ସଚେତନ କରାଇଲେ । ଗଞ୍ଜେଇ, ଅଫିମ, ମଦ ଦୋକାନ ଆଗରେ ପିକେଟିଂ ଚାଲିଲା । ବିଦେଶୀ ବସ୍ତ୍ର ବର୍ଜନ କରାଗଲା ଓ ସହରର ଛକ ଜାଗାମାନଙ୍କରେ ବିଦେଶୀ ବସ୍ତ୍ର ପୋଡାଗଲା । ବ୍ରିଟିଶ ସରକାର କର ଆଦାୟରେ ବହୁ ଅସୁବିଧା ଭୋଗ କଲା । ସଂଗ୍ରାମୀଙ୍କ ଉପରେ ମାଡ ଗାଳି ବର୍ଷଣ ହେଲା । ଅନେକେ ଜେଲ

ଗଲେ, ଜୋରିମାନା ଦେଲେ, ଗୁଳି ଚୋଟରେ ପ୍ରାଣତ୍ୟାଗ କଲେ । ମହାତ୍ମାଗାନ୍ଧୀ ବୋଲଗଡକୁ ଦୁଇଥର ଆସିଥିଲେ । ସେଠାରୁ ଚାଲିକରି ବୁଢା ଗ୍ରାମରେ ସ୍ଥାପିତ ସୂତାକଟା କେନ୍ଦ୍ରମାନ ପରିଦର୍ଶନ କଲେ । କହିଲେ, "କୁଟିଖାଅ, କାଟିପିନ୍ଧ, ନିର୍ଭୀକ ହୁଅ, ମନରେ ଦମ୍ଭ ସାହସ ଆଣ, ଏ ଦେଶ ତମର, ତୁମେମାନେ ଦେଶ ସେବାରେ ମନପ୍ରାଣ ଢାଳିଦିଅ । ଅନ୍ୟାୟ ଅନୀତିର ପ୍ରତିବାଦ କର ।" ଗାନ୍ଧିଙ୍କ ଆଗମନ ଲୋକମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣ ସୃଷ୍ଟିକଲା । ପୁଣି କହିଲେ, "ସ୍ୱାଧୀନତା ସୂତାଖିଅରେ ଝୁଲୁଛି, ଆମକୁ ତାକୁ ଧରିବାକୁ ହେବ ।"

ବୋଲଗଡର ଚକ୍ରଧର ମହାପାତ୍ର ୧୯୨୭ ମସିହାରେ ସଂଗ୍ରାମୀ ଜୀବନ ଆରମ୍ଭ କରିଥିଲେ । ବଳଭଦ୍ର ସାହୁ ଜଣେ ସ୍ୱାଧୀନତା ସଂଗ୍ରାମୀ । ବୋଲଗଡ ସୂତାକଟା କେନ୍ଦ୍ରରେ ସେ ପରିଚାଳନା ଦାୟିତ୍ୱରେ ଥିଲେ । ତାଙ୍କ ଉପରେ ପୋଲିସର କୋପଦୃଷ୍ଟି ପଡିଲା । ପଣ୍ଡିତ କୃପାସିନ୍ଧୁ ହୋତା ଓ ଅନ୍ୟାନ୍ୟ ପ୍ରାଦେଶିକ କଂଗ୍ରେସ କର୍ମୀମାନଙ୍କୁ ବାସ ଦେବା ଅପରାଧରେ ଗଣାଯାଉଥିଲା । ତେଣୁ ଚକ୍ରଧର ଓ ବଳଭଦ୍ର ପୋଲିସ ଦ୍ୱାରା ଧୃତ ହୋଇ ଦଣ୍ଡନୀୟ ହେଉଥିଲେ । ତଥାପି ସ୍ୱାଧୀନତା ସଂଗ୍ରାମୀ ସ୍ୱାଧୀନତା ସଙ୍ଗୀତ ବୋଲି ବୋଲି ଲୋକମାନଙ୍କୁ ଉତ୍ସାହିତ କରୁଥିଲେ ।

ସ୍ୱାଧୀନତା ସଂଗ୍ରାମରେ ବୋଲଗଡ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ଦାମୋଦର ସାହୁ, ଅନନ୍ତ ଚୌଧୁରୀ, ଘନ ପାଇଟାସିଂହ ସଂଗ୍ରାମୀମାନଙ୍କୁ ନାନା ଉପାୟରେ ସାହାଯ୍ୟ କରୁଥିଲେ । କିନ୍ତୁ ଚରଖା କେନ୍ଦ୍ରରେ କାର୍ଯ୍ୟରତ ଥିବା ବାଉଧର ରାଉତରାୟ, ଜନାର୍ଦ୍ଦନ ପଟ୍ଟନାୟକ ପ୍ରଭୃତି ଅନେକ କର୍ମୀ ପୋଲିସ ଦ୍ୱାରା ନିର୍ଯ୍ୟାତିତ ହେଉଥିଲେ ।

ବୋଲଗଡ ସହରର ବାସୁଦେବ ସୁବୁଦ୍ଧି, ଗଣେଶ୍ୱର ପରିଡା ୧୯୩୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନରେ ଯୋଗ ଦେଇ ୪ ମାସ ଓ ଦୀନବନ୍ଧୁ ପ୍ରଧାନ, ବାନାମ୍ବର ମହାପାତ୍ର ୬ ମାସ ଲେଖାଏଁ ଜେଲ ବରଣ କରିଥିଲେ । ସେ ଅଞ୍ଚଳର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ବାବୁ ପରଶୁରାମ ପଦାତିକରାୟ କହନ୍ତି- "ବାଙ୍କୋଇଗଡର ଦୟାନିଧି ପଟ୍ଟନାୟକ ଓ ତାଙ୍କ ବଡଭାଇ ଯୁଗଳ କିଶୋର ପଟ୍ଟନାୟକ ଖୋର୍ଦ୍ଧା ହାଇସ୍କୁଲରେ ବିଦ୍ୟା ଅଧ୍ୟୟନ କରୁଥିବା ସମୟରେ ଉତ୍କଳମଣି ଗୋପବନ୍ଧୁ ଦାଶଙ୍କର ଖୋରଧା କୋର୍ଟରେ ବିଚାର ଚାଲିଥିବା ବେଳେ ଦୁଇଭାଇ ହାଇସ୍କୁଲରୁ ଖସିଆସି ସେଠାରେ ପହଞ୍ଚିଥିଲେ । ତେଣୁ ସେ ଦୁଇଭାଇଙ୍କୁ ୬ ମାସ ଲେଖାଏଁ ଜେଲଦଣ୍ଡ ମିଳିଥିଲା । ସେହିଦିନଠାରୁ ସେ ଦୁଇଭାଇ କଂଗ୍ରେସ ଦଳରେ ଯୋଗଦେଲେ ଓ ସ୍ୱାଧୀନତା ସଂଗ୍ରାମରେ ଭାଗନେଲେ ଏପରିକି ୧୯୩୦-୩୨ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନ କରି ବହୁବାର କାରାବରଣ କଲେ । ବ୍ରିଟିଶ

ସରକାର ଏମାନଙ୍କର ଭୂସମ୍ପତ୍ତି , ଘରବାଡି ଓଗେର ନିଲାମ କରିଦେଇ ଏ ପରିବାରକୁ ତଳିତଳାନ୍ତ କରିଦେଲେ ।” ଏହିପରି ବହୁ ଦୃଷ୍ଟାନ୍ତ ଗାଁ ଗହଳରେ ଘଟିଥିଲା ।

ବୃଡା ଗାଁର ଲଛମନ ପରିଡା ଡାବରଧୂଆର ବାଙ୍କନିଧି ପରିଡା ଜଣେ ଜଣେ ଟାଣୁଆ କଂଗ୍ରେସ କର୍ମୀ ଥିଲେ । ଏମାନେ ପରେ କୃଷକ ସଭାରେ ଯୋଗ ଦେଇଥିଲେ ।

ଅରଖପଲ୍ଲୀର ଶେଖ ମୁସାଏବ, ଶେଖ ନାସିରୁଦ୍ଦିନ, ଅଜିଜ୍ ଖାନ୍ କଂଗ୍ରେସ ଦଳରେ ଯୋଗଦେଇ ଗୁପ୍ତ ଭାବରେ ପଲ୍ଲୀ ଅଞ୍ଚଳରେ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥିଲେ । ଗୋବର୍ଦ୍ଧନପୁରର ରଘୁନାଥ ପାହାଡସିଂହ, ମହେନ୍ଦ୍ର ଛୁଆଳସିଂହ, ରତ୍ନାକର ଛୋଟରାୟ ମଧ କଂଗ୍ରେସ ଆନ୍ଦୋଳନରେ ଯୋଗ ଦେଇଥିଲେ । ପ୍ରଚାରପତ୍ର ବାଣ୍ଟୁଥିଲେ ।

ଖଣ୍ଟୁରିଆ ଗ୍ରାମର ପତିତପାବନ ହୋତା ନିମ୍ନପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ଦେଶ ପ୍ରେମରେ ଉଦ୍‌ବୁଦ୍ଧ ହୋଇ ୧୯୩୦ ମସିହାରେ ଲୁଣମରା ଆନ୍ଦୋଳନରେ ଝାସ ଦେଲେ। ଜେଲ ବରଣ କଲେ । ଜେଲରୁ ଫେରି କଂଗ୍ରେସର ଜଣେ ସଚ୍ଚା କର୍ମୀରୂପେ ଜୀବନ ବିତେଇଲେ । ପୁନଃ ୧୯୪୨ ମସିହା ଭାରତଛାଡ ଆନ୍ଦୋଳନ ତାଙ୍କୁ ଅଥୟ କଲା । ସତ୍ୟାଗ୍ରହ କରି ବୋଲଗଡରେ ଗିରଫ ହୋଇ ୨ ବର୍ଷରୁ ଅଧିକକାଳ ବ୍ରହ୍ମପୁର ଜେଲରେ ରହିଥିଲେ । ଖଣ୍ଟୁରିଆ ଗ୍ରାମର ରାଧାକୃଷ୍ଣ ସାମନ୍ତରାୟ ବାଲେଶ୍ୱର ଯାଇ ଇଞ୍ଚୁଡି ଲୁଣମରା ଆନ୍ଦୋଳନରେ ଯୋଗ ଦେଇ କାରାବରଣ କଲେ ।

ବୋଲଗଡ ଥାନାର ମାଣିକାଗୋଡା ଗ୍ରାମ ସ୍ୱାଧୀନତା ସଂଗ୍ରାମରେ ମୁଖ୍ୟ ଭୂମିକା ମଧ ଗ୍ରହଣ କରିଥିଲା । ସେହି ଗ୍ରାମର ସର୍ବଶ୍ରୀ ପରଶୁରାମ ପଦାତିକ ରାୟ, ରଘୁନାଥ ସାହୁ, ରଫିଉଦ୍ଦିନ ଖାନ୍ , ଗୋଲାମ ମୁସ୍ତଫା ଖାନ୍ , ମାଧବ ସାହୁ, ଦେବରାଜ ସାମନ୍ତରାୟ, ବାନାମ୍ବର ରାଉତରାୟ, ଅଧିକାରୀ ମହାନ୍ତି, ଅକ୍ରୁର ସାହୁ, ମାଧବ ସାହୁ, ଦେବରାଜ ସାମନ୍ତରାୟ, ଅବଦୁଲ ଲତିଫ ମହମ୍ମଦ, ହରେକୃଷ୍ଣ ମହାରଣା, ପଙ୍କଜ ସ୍ୱାଇଁ ପ୍ରଭୃତି ବହୁ ଯୁବକ ସ୍ୱାଧୀନତା ସଂଗ୍ରାମରେ ମାତି ଯାଇଥିଲେ । କିନ୍ତୁ ଏମାନଙ୍କ ମଧ୍ୟରୁ ବାବୁ ପରଶୁରାମ ପଦାତିକ ରାୟ ଓ ଅଧିକାରୀ ମହାନ୍ତିଙ୍କ ସଂଗ୍ରାମୀ ଜୀବନ ବିଶେଷ ଉଲ୍ଲେଖଯୋଗ୍ୟ । ଏମାନଙ୍କ ଜୀବନ ଘଟଣା ବହୁଳ ଥିଲା ।

ପରଶୁରାମ ପଦାତିକ ରାୟ ଓ ଅଧିକାରୀ ମହାନ୍ତି ବହୁବାର ବନ୍ଦୀ ଜୀବନ କଟେଇଥିଲେ । ପରଶୁରାମ ବେଶୀ ପାଠ ପଢି ନଥିଲେ ବି ଗାନ୍ଧିଜୀଙ୍କ ଆଗମନ ସମୟରେ ଅହିଂସାମନ୍ତ୍ରରେ ଦୀକ୍ଷିତ ହୋଇଥିଲେ । ୧୯୩୦ ମସିହାରେ ବୋଲଗଡ,

ଖୋରଧା ଓ ଜଟଣୀ ସହରରେ ଗଞ୍ଜେଇ, ଅପିମ, ମଦ ଦୋକାନରେ ଓ ବିଦେଶୀବସ୍ତ୍ର ଦୋକାନରେ ପିକେଟିଂ କରି ପୋଲିସ ଦ୍ୱାରା ଧୃତ ହୋଇ ନାନା ଆର୍ଥିକ ଓ ବିଦେଶୀବସ୍ତ୍ର ପୋଡିରେ ପ୍ରମୁଖ ଅଂଶ ଗ୍ରହଣ କରିଥିଲେ । ସାଧାରଣ ଲୋକେ ଓ ସରକାରୀ କର୍ମଚାରୀମାନେ ସେମାନଙ୍କୁ ବାସ ଦେବା ପାଇଁ ଭୟ କରୁଥିଲେ । ତେଣୁ କୁଦିଆରୀରେ ବରଗଛ ମୂଳେ, ଖୋରଧାରେ ପଲଟଣ ପଡିଆରେ, ବୋଲଗଡରେ ବୃକ୍ଷ ମୂଳେ ଜୀବନ କାଟୁଥିଲେ । ବ୍ରିଟିଶ ପୋଲିସ ଭୟରେ ଜଟଣୀ ଦକ୍ଷିଣ ରେଳପଥ ବରପଦା ନିକଟରେ ରେଳପୋଲ ତଳେ ବନ୍ଧୁମାନଙ୍କ ସହ ମାସ ମାସ ଧରି ସାପ, ବେଙ୍ଗ, କଙ୍କଡା ବିଛାମାନଙ୍କ ଗହଣରେ କାଳ କାଟୁଥିଲେ ।

ତାଙ୍କ ସଙ୍ଗରେ ଥିଲେ ଖୋର୍ଦ୍ଧା କଲେଜର ପ୍ରାଣ ପ୍ରତିଷ୍ଠାତା ବାବୁ ପ୍ରାଣନାଥ ପଟ୍ଟନାୟକ, କାକଟପୁର ଅଞ୍ଚଳର ସର୍ଦ୍ଦାର ଗଡିକୃଷ୍ଣ ସ୍ୱାଇଁ, ବାଣପୁରର ଯମେଶ୍ୱର ମହାନ୍ତି, ପୁରୀର ଆର୍ତ୍ତତ୍ରାଣ ମହାପାତ୍ର, ମାଣିକାଗୋଡାର ଅକ୍ରୁର ସାହୁ ପ୍ରଭୃତି । ଅନେକ ସତ୍ୟାଗ୍ରହୀଙ୍କୁ କେଉଁଦିନ ଖାଇବାକୁ ମିଳେ ତ କେଉଁଦିନ ମିଳେ ନାହିଁ । ଭୋକ ଉପାସରେ, ଜରୁଆ ଦେହରେ ଖୋର୍ଦ୍ଧା ଜେଲରେ, କେତେବେଳେ ପୁରୀ ଜେଲରେ ବନ୍ଦୀ ଜୀବନ ଯାପନ କରୁଥିଲେ ପୁଣି ପାଟଣା କ୍ୟାମ୍ପ ଜେଲରେ ମଧ୍ୟ ।

**********

<u>ଇତିହାସର ଝଲକ</u> (ପୃଷ୍ଠା .- ୪୩-୪୪)

ଏହିପରି ବହୁ ବିପ୍ଳବୀ କବି ମୂକ ଜନତାଙ୍କ ପ୍ରାଣରେ ଦେଶ ପ୍ରାଣତା ସୃଷ୍ଟିକରି ସ୍ୱାଧୀନତା ସଂଗ୍ରାମକୁ ଆଗେଇ ନେଇଥିଲେ । ବ୍ରିଟିଶ ଶୃଙ୍ଖଳ ଛିନ୍ନ କରିବାପାଇଁ ସମଗ୍ର ଦେଶରେ ଜନସାଧାରଣ ମାତି ଉଠୁଥିବାବେଳେ ବୀରଭୂମି ରକ୍ତତୀର୍ଥ ଖୋରଧା ନିଶ୍ଚିତରେ ଶୋଇ ଯାଇ ନଥିଲା । ସେହି ସଂଗ୍ରାମୀମାନଙ୍କ ମଧ୍ୟରୁ ମାଣିକାଗୋଡାର ଜଣେ ହେଲେ ବାବୁ ଅଧିକାରୀ ମହାନ୍ତି, ପିତା-କହ୍ନେଇ ମହାନ୍ତି, ମାତା-ସେରନ୍ତୀ ଦେଈ । ଦାରିଦ୍ର୍ୟର ସୀମାରେଖା ତଳେ ଜୀବନ ବିତେଉ ଥିଲେ । ୫ ମାଇଲ ବାଟ ଚାଲିଚାଲି ବୋଲଗଡରେ ମାଇନର ପାସ କଲେ । ତତ୍ପରେ କଟକ ଡଗରପଡାରେ ହରେକୃଷ୍ଣ ମହତାବଙ୍କ ତତ୍ତ୍ୱାବଧାନରେ କୁଟୀରଶିଳ୍ପ ସମ୍ବନ୍ଧେ ସମ୍ୟକ୍ ଜ୍ଞାନ ହାସଲ କଲେ । ମାତ୍ର ସେଥିରେ ସନ୍ତୋଷ ପ୍ରକାଶ ନକରି ଖୋର୍ଦ୍ଧା ଗାନ୍ଧୀ ସେବାଶ୍ରମରେ ଖଦଡ ଲୁଗା ବୁଣାରେ ଶୀର୍ଷସ୍ଥାନ ଅଧିକାର କଲେ । ସେଠାରୁ ଆସି ଉତ୍କଳ ଗୌରବଙ୍କ କଟକ ନଗରସ୍ଥ ଉତ୍କଳ ଟ୍ୟାନେରୀରେ ଶିକ୍ଷକତା କଲେ । କିଛି ଦିନପରେ ଚାକିରି ତ୍ୟାଗ କରି ଖଣ୍ଡପଡାରେ ପ୍ରଜା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ବହୁ ନିର୍ଯ୍ୟାତିତ ହେଲେ । ୧୯୪୨ ମସିହା ଭାରତଛାଡ ଆନ୍ଦୋଳନ ପୂର୍ବରୁ କେନ୍ଦ୍ରାପଡାରେ ଲୋକମାନଙ୍କୁ ସରକାରଙ୍କ ଯୁଦ୍ଧ ବିରୁଦ୍ଧରେ ମତାଇଲେ । ଶେଷରେ ବନ୍ଦୀହେଲେ ।

ଜେଲରେ ଅବସ୍ଥାନ ସମୟରେ ରାମକୃଷ୍ଣ ପତିଙ୍କ ପୁଞ୍ଜିବାଦ ପୁସ୍ତକ ଲେଖାରେ ବିଶେଷ ସାହାଯ୍ୟ କରିଥିଲେ । ଏକ ବର୍ଷ ଦୁଇ ମାସ ଜେଲ ଜୀବନ ଯାପନ କରି ଖୋର୍ଦ୍ଧାରେ ବାସ କଲେ । ନାଚିବା, ଗାଇବା, ଭାଷଣ ଦେବାରେ ସେ ଖୁବ୍ ପାରଙ୍ଗମ ଥିଲେ । ତେଣୁ ରାଜ୍ୟ ଭିତରେ ଓ ରାଜ୍ୟ ବାହାରେ ବଡ ବଡ ସଭାମାନଙ୍କରେ ଦେଶପ୍ରେମ କବିତା ସୁଠାମ ଭାବରେ ଉଚ୍ଚାରଣ କରି ବ୍ରିଟିଶ ସରକାର ବିରୁଦ୍ଧରେ ଲୋକମାନଙ୍କୁ ମତେଇ ତତେଇ ଦେଉଥିଲେ । ତାଙ୍କ ପରି ସଂଗ୍ରାମୀ କ୍ୱଚିତ୍ ଦେଖାଯାଆନ୍ତି । କିନ୍ତୁ ୧୯୪୫ ଅକ୍ଟୋବର ମାସରେ ଅସମୟରେ ତାଙ୍କ ମୃତ୍ୟୁ ହୋଇଗଲା । ଅଧିକାରୀ ମହାନ୍ତିଙ୍କ ବଡ ଭାଇ ବିଶ୍ୱମ୍ଭର ମହାନ୍ତି ଓ ଅନ୍ୟ ଏକଭାଇ ବିଶ୍ୱନାଥ ମହାନ୍ତି କଂଗ୍ରେସ ଆନ୍ଦୋଳନରେ ଯୋଗଦେଇ ଅଶେଷ ଦୁଃଖ କଷ୍ଟ ଭୋଗ କରିଥିଲେ । ପରଶୁରାମ ପଦାତିକରାୟ କହନ୍ତି- "ମାଣିକାଗୋଡା ଗ୍ରାମର ଏହି ଦରିଦ୍ର ପରିବାର ଏକ ଲଢୁଆ ବଂଶ । ତାଙ୍କ ପାଇଁ ମାଣିକାଗୋଡା ଧନ୍ୟ ।"

**************

ଇତିହାସର ଝଲକ (ପୃଷ୍ଠା .- ୪୭)

ସାନପଦର ଗ୍ରାମର ବାବୁ ଗଙ୍ଗାଧର ପାଇକରାୟ ଜଣେ ପ୍ରଚଣ୍ଡ ସ୍ୱାଧୀନତା ସଂଗ୍ରାମୀ ଥାଇ ବହୁବାର କାରାବରଣ କରିଥିଲେ । ସେହି ସାନପଦରର ଫକୀର ମହାନ୍ତି ଜଣେ ଏକନିଷ୍ଠ ସ୍ୱାଧୀନତା ସଂଗ୍ରାମୀ ଥିଲେ । ସେ ବହୁବାର କାରାଦଣ୍ଡ ଭୋଗ କରିଛନ୍ତି । ରଣପୁରର ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଗଙ୍ଗାଧର ମିଶ୍ର ପ୍ରଜା ଆନ୍ଦୋଳନରେ ଲିପ୍ତ ରହିବାରୁ ରଣପୁର ରାଜା ତାଙ୍କୁ ରାଜ୍ୟରୁ ବହିଷ୍କାର କରିଥିଲେ । ତେଣୁ ସେ ଖୋର୍ଦ୍ଧା ଅଞ୍ଚଳରେ ଅବସ୍ଥାନ କରି ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ପାଲଟି ଗଲେ ଏବଂ ପର୍ଶୁରାମ ପଦାତିକ ରାୟଙ୍କ ସଂଗେ ମିଶି ଜୋରସୋରରେ ଲଢେଇ କରିଥିଲେ ।

ଖୋର୍ଦ୍ଧାରେ ଅବସ୍ଥାନ କରୁଥିବା ଜଗତସିଂହପୁରର ଲୋକନାଥ ରାୟ ଓ ଚମ୍ପେଇଲୋର ବିଶ୍ୱନାଥ ସାମନ୍ତ ଜଣେ ଜଣେ ମୁଖ୍ୟ ସ୍ୱାଧୀନତା ସଂଗ୍ରାମୀ ଥିଲେ ।

**************

ପରିଶେଷରେ ୧୯୯୭ ମସିହାରେ ସ୍ୱାଧୀନତାର ସ୍ୱର୍ଣ୍ଣ ଜୟନ୍ତୀ ଅବସରରେ ସ୍ଥାନୀୟ ନନ୍ଦିଘୋଷ ଅନୁଷ୍ଠାନ ତରଫରୁ ଏହାର ସଭାପତି ଡଃ. ବୈଦ୍ୟନାଥ ମିଶ୍ରଙ୍କ ପୌରହିତ୍ୟରେ ସ୍ଥାନୀୟ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ଏହି ଉତ୍ସବରେ ଓଡିଶା ହାଇକୋର୍ଟର ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀ ଶୈଳେନ୍ଦ୍ର ନାଥ ଫୁକନ୍ ମୁଖ୍ୟ ଅତିଥି ଭାବରେ ଯୋଗଦେଇଥିଲେ । ନନ୍ଦିଘୋଷ ଭବନରେ ବୋଲଗଡ ଅଞ୍ଚଳର ସମସ୍ତ ସ୍ୱାଧୀନତା ସଂଗ୍ରାମୀ (ପରଲୋକଗତ ଏବଂ ଜୀବିତ)

ଙ୍କର ଏକ ସ୍ମୃତି ଫଳକ ଉନ୍ମୋଚିତ ହୋଇଥିଲା । ଏଥିରେ ସ୍ଥାନୀତ ହୋଇଥିବା ସ୍ୱାଧୀନତା ସଂଗ୍ରାମୀ ହେଲେ - ୰ ପତିତପାବନ ହୋତା, ୰ ରାଧାକୃଷ୍ଣ ସାମନ୍ତରାୟ, ୰ ଜନାର୍ଦ୍ଦନ ପଟ୍ଟନାୟକ, ୰ ବାଇଧର ରାଉତରାୟ (ଖଙ୍ଗୁରିଆ), ୰ ମୋହନ ସିଂହ, ୰ ଗଣେଶ୍ୱର ପରିଡ଼ା, ୰ ବାନାମ୍ବର ମହାପାତ୍ର, ୰ ମଦନ ମୋହନ ରାୟ, ୰ ଲିଙ୍ଗରାଜ ବେହେରା, ୰ ବଳଭଦ୍ର ସାହୁ, ୰ ଚକ୍ରଧର ମହାପାତ୍ର, ୰ ବୁଲା ପ୍ରଧାନ, ଦିନବନ୍ଧୁ ପ୍ରଧାନ (ବୋଲଗଡ), ୰ ଦାମୋଦର ମିଶ୍ର, ୰ ରାମକୃଷ୍ଣ ମିଶ୍ର, ୰ ମଧୁସୂଦନ ମିଶ୍ର, ୰ ଜୟକୃଷ୍ଣ ମିଶ୍ର (ଦିବ୍ୟସିଂହପୁର ଶାସନ), ୰ ରଘୁନାଥ ପାହାଡ଼ାସିଂହ, ୰ ମହେନ୍ଦ୍ର ଭୁଆଲସିଂହ (ଗୋବର୍ଦ୍ଧନପୁର), ୰ ଗୋଲାମ ମୁସ୍ତାଫା ଖାନ୍, ୰ ବାନାମ୍ବର ରାଉତରାୟ, ପରଶୁରାମ ପଦ୍ମାତିକ ରାୟ, ୰ ଅଧିକାରୀ ମହାନ୍ତି (ମାଣିକାଗୋଡ଼ା), ୰ ବାସୁଦେବ ସୁବୁଦ୍ଧି, ୰ ଯୁଗଳ କିଶୋର ପଟ୍ଟନାୟକ (ସଂପୁର), ୰ ବିଶ୍ୱନାଥ ସାମନ୍ତ, ଅର୍ଜ୍ଜୁନ ସତେସିଂହ (ଚମ୍ପେଇଲୋ), ୰ ଲକ୍ଷ୍ମଣ ପରିଡ଼ା (ବୃଡ଼ା), ୰ ବାଙ୍କନିଧି ପରିଡ଼ା (ଡାବରଧୁଆ ପାଟଣା), ୰ ଦୟାନିଧି ପଟ୍ଟନାୟକ (ବାଙ୍କୋଇ), ଗଙ୍ଗାଧର ପାଇକରାୟ, ୰ ବାଞ୍ଛାନିଧି ସୁବୁଦ୍ଧି, ୰ ଫକୀର ଚରଣ ମହାନ୍ତି (ସାନପଦର), ୰ ସୁଦର୍ଶନ ମହାପାତ୍ର, ନାରାୟଣ ସୁବୁଦ୍ଧି (ମାଳିସାହି) ।



## ବୋଲଗଡ ଅଞ୍ଚଳର ଦେବପୀଠ

**ଶକ୍ତି ପୀଠ -**

ପ୍ରାଚୀନ କାଳରୁ ଭାରତୀୟ ସଂସ୍କୃତିରେ ମାତୃପୂଜାର ପରମ୍ପରା ଅନୁସାରେ ପ୍ରତ୍ୟେକ ଗ୍ରାମରେ ଗ୍ରାମ ଦେବତୀ ରହିଛନ୍ତି । ବୋଲଗଡ ଅଞ୍ଚଳର ବିଭିନ୍ନ ଗ୍ରାମରେ ଥିବା ଗ୍ରାମ ଦେବତୀ ମାନଙ୍କ ମଧ୍ୟରେ ରାମଚଣ୍ଡୀଙ୍କର ନାମ ଅଧିକ ଥିବାର ଜଣାଯାଏ । ଏହାଛଡ଼ା ମଙ୍ଗଳା, ବାଉତୀ, ସିଦ୍ଧେଶ୍ୱରୀ, ଶିଖର ବାସିନୀ, ପଙ୍କାଳଶୁଣୀ, କାଳିକା, ତାରିଣୀ ପ୍ରଭୃତି ଠାକୁରାଣୀ ମାନେ ଏଠାରେ ପୂଜିତ ହୁଅନ୍ତି । ମୁଖ୍ୟ ଶକ୍ତି ପୀଠ ମାନଙ୍କ ମଧ୍ୟରେ ବୋଲଗଡ, ବାଙ୍କୋଇ, ବୃଡ଼ା, ଖଙ୍ଗୁରିଆ, ହଳଦୀପଦା, ଯୋଡ଼ାପଡ଼ା ଏବଂ କଳାମାଟିଆ ଗ୍ରାମର ରାମଚଣ୍ଡୀ ପୀଠ ; ଆରିକମା ଗ୍ରାମର କୋଶଳାଶୁଣୀ ପୀଠ ; ହାଟବସ୍ତ ଗ୍ରାମର ଯୋଗମାୟା ପୀଠ ; ବେଣାଗାଡିଆ ଗ୍ରାମର ମଙ୍ଗଳା ପୀଠ ; ବାଙ୍କୋଇ ଗ୍ରାମର ତାରିଣୀ ପୀଠ, କଡବର ଦୁଆରଶୁଣୀ,

ସାନପଦରର କଙ୍କାଳୀ ଏବଂ ଦୁର୍ଗା ଦେବୀ ପୀଠ, ଟାଙ୍ଗି ସାହି ଗ୍ରାମର ଶିଖର ବାସିନୀ, ମାଣିକାଗୋଡା ଗ୍ରାମର ମାଣିକଭୂୟାଁ, ଭଗବତୀ, ମହିଷାଶୁଣୀ, ଯୋଗମାୟା, କୁଶୁପଲ୍ଲୀ ଏବଂ ବେଲପଦର ଗ୍ରାମର ହୁମୁଣି, ଘୋରଡିଆ ଗ୍ରାମର ଡାକଡେବୀ, ସଂପୁର ଗ୍ରାମର ବୀରମାଳ ଦେବୀ ପୀଠ ଏବଂ ସାଗର ଗାଁର ସାଗର ଦେବୀ ଠାକୁରାଣୀ ପୀଠ ପ୍ରସିଦ୍ଧି ଲାଭ କରିଅଛି ।

ଶୈବ ପୀଠ -

ଆମ ସଂସ୍କୃତିରେ ତ୍ୟାଗ ର ପ୍ରତୀକ ଭଗବାନ ଶିବ ଅଟନ୍ତି । ଏଣୁ ଦେଶର ପଲ୍ଲୀ ଠାରୁ ଦିଲ୍ଲୀ ପର୍ଯ୍ୟନ୍ତ ସବୁ ସ୍ଥାନରେ ଶିବ ମନ୍ଦିର ରହିଛି । ବୋଲଗଡ ଅଞ୍ଚଳର ପ୍ରତ୍ୟେକ ମୁଖ୍ୟ ଗ୍ରାମରେ ଶିବ ମନ୍ଦିର ରହିଛି ଯାହାର ସଂଖ୍ୟା ଶତାଧିକ ହେବ । ଏହି ଶିବପୀଠ ମାନଙ୍କ ମଧ୍ୟରେ ବାଙ୍କୋଇ ଗଡର ତାରେଶ୍ୱର ଦେବ ପଶ୍ଚିମ ବୋଲଗଡର ମାଳିସାହ ସୋମନାଥ ଦେବ ଏବଂ ବୋଲଗଡ ବାରପଲ୍ଲୀର ଖଣ୍ଟୁରିଆ ଅମୃତେଶ୍ୱର ଦେବ, ପିତୁକୁଳୀ ବାରପଲ୍ଲୀର ନୀଳକଣ୍ଠେଶ୍ୱର ଦେବ, ମାଣିବନ୍ଧ ପଞ୍ଚପଲ୍ଲୀର ମାଣିକେଶ୍ୱର ମହାଦେବ, ଗୋପଳପୁର ଏବଂ କଡବ ଗ୍ରାମପଞ୍ଚାୟତ ଅଞ୍ଚଳର ତାଳତୁମ୍ବ ପଣ୍ଡିମେଶ୍ୱର ମହାଦେବ ଏବଂ ଖଣନ୍ତି ଗ୍ରାମର ସ୍ୱପ୍ନେଶ୍ୱର ଦେବ, ସାଗରଗାଁ ନୀଳକଣ୍ଠେଶ୍ୱର ଦେବ, ପାଟବନ୍ଧ ଗ୍ରାମର ପଣ୍ଡିମେଶ୍ୱରଦେବ, ପାନନଗର ଗ୍ରାମର ନୀଳକଣ୍ଠେଶ୍ୱର ଦେବ, ମର୍ଦ୍ଦାବାଡି ଗ୍ରାମର ଲୋକେଶ୍ୱର, କଳାମାଟିଆ ଗଡର ଶିବ ମନ୍ଦିର ସହ ରୋଳସିଂହ ଡାବରଧୂଆ ଗ୍ରାମରେ ଶିବପୀଠ ମୁଖ୍ୟ ଶିବ ପୀଠ ଭାବରେ ଜନମାନସରେ ରହିଅଛି । ଏ ଅଞ୍ଚଳର ସମସ୍ତ ଦୋଳ ପର୍ବ ଏଇ ସବୁ ଶିବଙ୍କ ଅଧିନାୟକତ୍ୱରେ ଅନୁଷ୍ଠିତ ହୁଏ । ପାଟବନ୍ଧ ପଣ୍ଡିମେଶ୍ୱର ମହାଦେବ ଏବଂ ମର୍ଦ୍ଦାବାଡି ଲୋକେଶ୍ୱର ମହାଦେବଙ୍କର ପ୍ରସିଦ୍ଧି ଏତେ ଯେ, ଏ ଅଞ୍ଚଳରେ ଚୋରୀ ଜିନିଷ ଉଦ୍ଧାର କରିବାକୁ ସ୍ଥାନୀୟ ଲୋକେ ସେଠାକୁ ନିୟମ କରିବାକୁ ଯାଇଥାନ୍ତି । ମାତ୍ର, ଏହି ଠାକୁରଙ୍କ ନାମ ଧରି ସେଠାକୁ ଯିବା ପୂର୍ବରୁ ଚୋରି ଯାଇଥିବା ଜିନିଷ ମିଳିଯାଇଥାଏ ।

ଜଗନ୍ନାଥ ମନ୍ଦିର ଏବଂ ବିଷ୍ଣୁ ମନ୍ଦିର -

ପାଞ୍ଚଗଡ ସମେତ ସାନପଦର ଗଡରେ ଜଗନ୍ନାଥ ମନ୍ଦିର ମାନ ରହିଅଛି । ବୋଲଗଡ ଏବଂ ସାନପଦର ଜଗନ୍ନାଥଙ୍କ ନାମ ତୃତୀୟା ଦେବ ଥିଲା ବେଳେ ଖଣ୍ଟୁରିଆରେ ଦଧିବାମନ ଦେବ, ସାଗର ଗାଁରେ ପତିତପାବନ ଦେବ ଏବଂ ମାଣିକାଗୋଡା, ସଂପୁର, ପୁଥାଣିଆ, କଳାମାଟିଆ, ବାଙ୍କୋଇ ଗ୍ରାମରେ ଏହି ଠାକୁର

ଜଗନ୍ନାଥ ଭାବରେ ପୂଜା ପାଇଥାଆନ୍ତି । ଏହାଛଡା ଗ୍ରାମବାସୀଙ୍କ ସହଯୋଗରେ ଏବଂ ଏ ଅଞ୍ଚଳର ବହୁ ଧନୀ ଜମିଦାରଙ୍କ ନିଜସ୍ୱ ବିଷ୍ଣୁ ମନ୍ଦିର ରହିଅଛି । ଏହାର ପୂର୍ଣ୍ଣାଙ୍ଗ ବିବରଣୀ ଅନ୍ୟତ୍ର ଦିଆଯାଇଅଛି । ବୋଲଗଡ ଅଞ୍ଚଳରେ ଥିବା ମନ୍ଦିର ମାନଙ୍କର କାରୁକାର୍ଯ୍ୟ ବିଷୟରେ କେତେକ ଫଟୋଗ୍ରାଫି ବିଶିଷ୍ଟ ଇଂରେଜୀ ଗବେଷକ Kalus Fischer Heildberg ତାଙ୍କ ଲିଖିତ " ଓଡିଶା ଆର୍ଟ " ପୁସ୍ତକରେ ଦେଇଛନ୍ତି । ଦେଇଥିବା ତଥ୍ୟ ଖୋରଧାର ଯୁବ ଅଧାପକ ଗୋପାଳକୃଷ୍ଣ ଦାସଙ୍କ ଠାରୁ ପ୍ରକାଶ । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ । ଏହାଛଡା Orissa Historical Journal April -1954 ପୁସ୍ତକରେ ବୋଲଗଡ ଅଞ୍ଚଳର ବିଭିନ୍ନ ମନ୍ଦିର ବିଷୟରେ ବହୁ ତଥ୍ୟ ରହିଥିବା କଥା ଶ୍ରୀ ଦାସଙ୍କ ଠାରୁ ପ୍ରକାଶ ।



## ଧର୍ମ ଧାରା

ବୋଲଗଡ ଅଞ୍ଚଳରେ ହିନ୍ଦୁ ମାନଙ୍କ ଛଡା ମୁସଲମାନ ସମ୍ପ୍ରଦାୟ ବାସ କରନ୍ତି । ଏହି ମୁସଲମାନ ସମ୍ପ୍ରଦାୟ ବିଷୟରେ ଏକ ସ୍ୱତନ୍ତ୍ର ଅଧାୟରେ ବିଶଦ ବିବରଣୀ ଦିଆଯାଇଛି । ଇଦ୍ ପର୍ବରେ ଏ ଅଞ୍ଚଳରେ ହିନ୍ଦୁ ମୁସଲମାନଇଙ୍କର ଏକାଠି ପରସ୍ପର ସହ ସ୍ନେହ ଶ୍ରଦ୍ଧାର ସହିତ ମିଳନ ସ୍ଥାନୀୟ ସଂସ୍କୃତିକୁ ମହାନ କରିଅଛି ।

ବୋଲଗଡ ଅଞ୍ଚଳର ହିନ୍ଦୁମାନେ ଶାକ୍ତ ଶୈବ ବୈଷ୍ଣବ ପରମ୍ପରାରେ ବିଶ୍ୱାସୀ । ଜୈନ ବୌଦ୍ଧ ଧର୍ମର ପ୍ରଚଳନ ପରେ ଏ ଅଞ୍ଚଳରେ ଥିବା ରଙ୍ଗଣୀ ଜାତିର ଲୋକମାନେ ବୌଦ୍ଧ ଧର୍ମର ପରମ୍ପରାରେ ବିଶ୍ୱାସୀ ହୋଇ ସେମାନଙ୍କର ନୀତି ନୀୟମ ପାଳନ କରୁଥିଲେ ମଧ ମୂଳତଃ ହିନ୍ଦୁ ପରମ୍ପରାରେ ସମସ୍ତ କାର୍ଯ୍ୟ ସମ୍ପାଦନା କରନ୍ତି । କିଛିବର୍ଷ ପୂର୍ବରୁ ଠାକୁର ନିଗମାନନ୍ଦ, ଠାକୁର ଅନୁକୂଳ ଚନ୍ଦ୍ର, ସ୍ୱାମୀ ଶିବାନନ୍ଦ, ଶ୍ରୀମା ଅରବିନ୍ଦ, ଠାକୁର ରାମକୃଷ୍ଣ ପରମହଂସ, ସ୍ୱାମୀ ବିବେକାନନ୍ଦ, ଭଗବାନ ସତ୍ୟସାଇ ବାବା, ଅଭିରାମ ପରମହଂସ, ଯୁଗ ନିର୍ମାଣ ଯୋଜନାର ଗାୟତ୍ରୀ ସଂସ୍ଥା ଏବଂ ପ୍ରଜାକୁମାରୀ ଈଶ୍ୱରୀୟ ବିଶ୍ୱ ବିଦ୍ୟାଳୟ ର ଚିନ୍ତାଧାରାରେ ବୋଲଗଡ ଅଞ୍ଚଳର ବହୁ ଲୋକ ଆକୃଷ୍ଟ ହୋଇ ବିଭିନ୍ନ ଗ୍ରାମରେ ଏହାର ଶାଖା କେନ୍ଦ୍ର ମାନ ନିର୍ମାଣ କରି ସେଥିରେ ସଂପୃକ୍ତ ଭକ୍ତମାନେ ଉପାସନା କରିଥାଆନ୍ତି । ବୋଲଗଡ ଠାରେ ଠାକୁର ନିଗମାନନ୍ଦଙ୍କର ଆଶ୍ରମ ଡାକ୍ତର ଅରକ୍ଷିତ ଯତିଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଅଛି ।

ଢାବରଧୁଆ ପାଟଣା ଠାରେ ଶ୍ରୀ ପର୍ଶୁରାମ ରଥଙ୍କ ଦ୍ୱାରା ଗାୟତ୍ରୀ ପୀଠ, ଟିକାତାଳ ଠାରେ ସ୍ୱାମୀ ଭଗବତା ନନ୍ଦ ପୁରୀଙ୍କ ଦ୍ୱାରା ରାମକୃଷ୍ଣ ଆଶ୍ରମ, ଘୋରଡିଆ ଠାରେ ପ୍ରଫୁଲ୍ଲ କୁମାର ବିଧାରଙ୍କ ଦ୍ୱାରା ଠାକୁର ଅନୁକୂଳ ଚନ୍ଦ୍ରଙ୍କ ଆଶ୍ରମ, ବୋଲଗଡ ଠାରେ ଶ୍ରୀ ହରିବନ୍ଧୁ ସାହୁଙ୍କ ଦ୍ୱାରା ଭଗବାନ ସତ୍ୟସାଇ ବାବାଙ୍କ ଭଜନ କେନ୍ଦ୍ର ଏବଂ ମାଣିକାଗୋଡା ଠାରେ ଶ୍ରୀ ଚନ୍ଦ୍ରଶେଖର ସାହୁଙ୍କ ଦ୍ୱାରା ସ୍ୱାମୀ ଶିବାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ଦିବ୍ୟ ଜୀବନ ସଂଘ ସ୍ଥାପିତ ହୋଇଅଛି । ଏହାଛଡା ମୁଗମଣ୍ଡା ଗ୍ରାମର ଘନଶ୍ୟାମ କଳ୍ପତରୁ ଆଶ୍ରମ ଠାକୁର ଅଭିରାମ ପରମହଂସଙ୍କ ଆଦର୍ଶରେ ପ୍ରତିଷ୍ଠିତ । ଶ୍ରୀମଦ ରାଜକିଶୋର ବାବା ଏହାର ମୁଖ୍ୟ ଅଟନ୍ତି । ଏତଦ ବ୍ୟତୀତ ବୋରିକ ଠାରେ ଶ୍ରୀଗୁରୁ ଆଶ୍ରମ ପ୍ରତିଷ୍ଠିତ ହୋଇଅଛି । ଟିକାତାଳ ରାମକୃଷ୍ଣ ଆଶ୍ରମ ଏ ଅଞ୍ଚଳରେ ଶିକ୍ଷା ଏବଂ ସେବା କାର୍ଯ୍ୟ ସହ ବହୁ ସ୍ଥାନରେ ଶିବ ତତ୍ତ୍ୱ ଉପରେ ଆଲୋଚନା ଚକ୍ର ଆରମ୍ଭ କରିବା ସହ ମୁଗମଣ୍ଡା ସ୍ଥିତ ଘନଶ୍ୟାମ କଳ୍ପତରୁ ଆଶ୍ରମକୁ ଓଡିଶା ଏବଂ ଓଡିଶା ବାହାରୁ ବହୁ ଭକ୍ତ ବର୍ଷସାରା ଆସିଥାଆନ୍ତି । ସାନକୁମାରୀ ଠାରେ ସିଦ୍ଧ ଗୁରୁ ନିମାଇଁ ବାବାଙ୍କ ଶିଷ୍ୟଙ୍କ ଦ୍ୱାରା ପ୍ରତିଷ୍ଠିତ ଭାଗଗଡ ଟୁଙ୍ଗି, ମଣ୍ଡଳସିଂହ ଗ୍ରାମରେ ପଣ୍ଡିତ ପଞ୍ଚୁବାବାଙ୍କ ଦ୍ୱାରା ପ୍ରତିଷ୍ଠିତ ସନ୍ତୋଷୀ ମା ପୀଠ ଏବଂ ବୋଲଗଡ ଠାରେ ଅଲେଖ ମହିମା ଧର୍ମର ଶିଷ୍ୟମାନଙ୍କ ଦ୍ୱାରା ଏକ ଅଲେଖ ଟୁଙ୍ଗୀ ପ୍ରତିଷ୍ଠାର ଯୋଜନା ହୋଇଅଛି ।



## ପର୍ଯ୍ୟଟନ ସ୍ଥଳୀ

ଏହି ଅଞ୍ଚଳର ପର୍ଯ୍ୟଟନ ସ୍ଥଳୀ ମାନ୍ୟତା ଲାଭ କରିଥିବା ସ୍ଥାନ ମାନଙ୍କ ବିବରଣୀ ନିମ୍ନରେ ଦିଆଗଲା ।

ମୁଣ୍ଡିଆ ପଡା ଆଶ୍ରମ -

ସଂପୁର ଗ୍ରାମର ଉତ୍ତର ଦିଗରେ ନାଗାପଲ୍ଲୀ ପାହାଡ ଉପରେ ମୁଣ୍ଡିଆପଡା ରଘୁନାଥ ଆଶ୍ରମ ବୋଲଗଡ ଅଞ୍ଚଳର ମୁଖ୍ୟ ପର୍ଯ୍ୟଟନ କେନ୍ଦ୍ର । ଏଠାରେ ବନବିହାରି କୋଦଣ୍ଡଧାରୀ ରଘୁନାଥ ଜୀଉ ଆଶ୍ରମ ରହିଅଛି । ପ୍ରଥମେ କେବଳ ଭଗବାନ ରାମଚନ୍ଦ୍ରଙ୍କ ମୂର୍ତ୍ତୀ ଏଠାରେ ପୂଜା ପାଉଥିଲେ । ପରେ ପୂର୍ବତନ ପୁରୀ ଜିଲ୍ଲାପାଳ ଂ ଉଦ୍ୟନାଥ ପଟ୍ଟନାୟକଙ୍କର ପୁତ୍ର ସାଧୁ ଉଦାସୀ ବାବା ତାଙ୍କର ଶିଷ୍ୟା ଖଣ୍ଡପଡା



ରାଜାମାତାଙ୍କ ଦ୍ୱାରା ସୀତା ଏବଂ ଲକ୍ଷ୍ମଣଙ୍କ କାଷ୍ଠ ମୂର୍ତ୍ତି ବୋଲଗଡ ମଠରେ ନିର୍ମାଣ କରାଇଥିଲେ । ଜନଶ୍ରୁତି କହେ ଙ୍ଗପୁର ହରିରାଜପୁର ସାହିର ୰ ଜଗନ୍ନାଥ ଶେଣ ତାଙ୍କର ଦୁଇ କାନ୍ଧରେ ଏହି ଦୁଇ ମୂର୍ତ୍ତୀଙ୍କୁ ବହନ କରି ଆଜକୁ ପ୍ରାୟ ୬୦ ବର୍ଷ ପୂର୍ବେ ଘନ ଜଙ୍ଗଲ ମଧ୍ୟରେ ଅତ୍ୟୁଚ୍ଚ ପାହାଡ ଉପରେ ଥିବା ଏହି ଆଶ୍ରମକୁ କୌଣସି ଜାଗାରେ ବିଶ୍ରାମ ନନେଇ ଯାଇଥିଲେ । ତାଙ୍କୁ ସେତେବେଳର ମହନ୍ତ ହନୁମାନ ଉପାଧି ଦେଇଥିଲେ । ମାତ୍ର ପରେ ପରେ ତାଙ୍କର ଦେହାନ୍ତ ହୋଇଯାଇଥିଲା । ଏ ଆଶ୍ରମର ବର୍ତ୍ତମାନ ମୁଖ୍ୟ ଅଲୁ ବାବା ଜଣେ ସର୍ବମାନ୍ୟ ଲୋକପ୍ରିୟ ବାବା ଭାବରେ ପରିଚିତ । କାର୍ତ୍ତିକ ମାସରେ ଏଠାରେ ପ୍ରବଳ ଜନଗହଳି ହୁଏ । ବର୍ତ୍ତମାନ ଏଠାକୁ ଯିବା ପାଇଁ କେତେକ ଭକ୍ତଙ୍କ ଦ୍ୱାରା ରାସ୍ତା ତିଆରି ହୋଇଥିଲେ ମଧ୍ୟ ଗମନାଗମନ ଅସୁବିଧା ଯୋଗୁଁ ଏହାର ରାଜ୍ୟର ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନ ପାଉନାହିଁ । ଏହା ବିକାଶ ପାଇଁ ରାଜନୈତିକ ଇଚ୍ଛାଶକ୍ତି ର ଆବଶ୍ୟକ । ଏହି ପୀଠର ବିକାଶ ତଥା ପର୍ଯ୍ୟଟନ ମାନଚିତ୍ରରେ ସ୍ଥାନିତ କରିବା ପାଇଁ ସ୍ଥାନୀୟ ସରପଞ୍ଚ ପ୍ରବାସିନୀ ସୁବୁଦ୍ଧି, ସମିତି ସଭ୍ୟ ସୁବାସ ଚନ୍ଦ୍ର ସ୍ୱାଇଁ ଏବଂ ଯୁବ ନେତା ବିଜୟ ମହାନ୍ତିଙ୍କ କ୍ରମାଗତ ଉଦ୍ୟମ ସହ ବର୍ତ୍ତମାନ ସ୍ଥାନୀୟ ବିଧାୟକ ତଥା ବିରୋଧି ଦଳ ନେତା ଏବଂ ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ଆନ୍ତରିକ ଉଦ୍ୟମ ବିଶେଷ ପ୍ରଂଶସନୀୟ ।

ଝିକିମିକି - ୨୦୦ ବର୍ଷ ପୂର୍ବରୁ ଜନୈକ ଉତ୍ତର ଭାରତର ସାଧୁ ବାଘାମ୍ବରୀ ବାବାଙ୍କ ଦ୍ୱାରା ପ୍ରତିଷ୍ଠିତ ଝିକିମିକି ପାହାଡ ଉପରେ ଶ୍ରୀରାମ ଆଶ୍ରମ ଏ ଅଞ୍ଚଳର ଅନ୍ୟତମ ପର୍ଯ୍ୟଟନ କେନ୍ଦ୍ର । ମଣ୍ଡଳସିଂହ ଗ୍ରାମବାସୀ ଏହାର ପରିଚାଳନା କରିଥାନ୍ତି । ଏ ଆଶ୍ରମ ଉଚ୍ଚ ପାହାଡ ଉପରେ ଥିଲେ ମଧ୍ୟ ସେଥିରେ ଥିବା ୧୨ ଏକର ସମତଳ ଭୂମି ଚାଷୋପଯୋଗୀ ଅଟେ ଏବଂ ତାହା ଠାକୁରଙ୍କ ନାମରେ ସରକାରୀ ଭାବରେ ରେକର୍ଡଭୁକ୍ତ । ଏଠାରେ ଏକ ବିରାଟ ପୋଖରୀ ସହ ସୁନ୍ଦର ଝରଣା ରହିଅଛି । କାର୍ତ୍ତିକ ମାସରେ ଏଠାରେ ସ୍ଥାନୀୟ ଲୋକଙ୍କର ଜନସମାବେଶ ହୁଏ ।

ବାଙ୍କୋଇ ତାରେଶ୍ୱର ଦେବ ପୀଠ - ଏହି ପୀଠର ପ୍ରକାଣ୍ଡ କାରୁକାର୍ଯ୍ୟ ଖଚିତ ପ୍ରସ୍ତର ନିର୍ମିତ ବୃଷଭ (ବାସୁଆ ବଳଦ) ଓଡିଶାରେ ଅନ୍ୟତ୍ର ଦେଖାଯାଏ ନାହିଁ । ଏହା ଦକ୍ଷିଣ ଭାରତର ଶୈବପୀଠ ମାନଙ୍କରେ ଥିବା ବିରାଟ ନନ୍ଦିମୂର୍ତ୍ତିଙ୍କ ସହ ସମାନ । ବର୍ତ୍ତମାନ ରାଜ୍ୟ ସରକାରଙ୍କର ପ୍ରତ୍ନତତ୍ତ୍ୱ ବିଭାଗ ଏହାର ରକ୍ଷଣା ବେକ୍ଷଣ ଦାୟିତ୍ୱ ନେଇଛନ୍ତି । ତାରେଶ୍ୱର ଦେବଙ୍କ ଏବଂ ତାରିଣୀ ଦେବୀଙ୍କର ମହିମାରୁ ପ୍ରତିଦିନ ଏଠାରେ ବହୁ ଭକ୍ତ ଗୁହାରିଆ ପଡିଥାନ୍ତି ଏବଂ ଏହା ଦ୍ୱାରା ସେମାନଙ୍କର ମାନସିକ ପୂର୍ଣ୍ଣ

ହୋଇଥିବା କଥା ସେମାନେ କହନ୍ତି । ବର୍ଷର ସବୁ ସଂକ୍ରାନ୍ତି ତିଥିରେ ବହୁ ଭକ୍ତ ସମାଗମ ହୁଅନ୍ତି ।

କୋଶଳାଶୁଣୀ ପୀଠ -

ଆରିକମା ନିକଟସ୍ଥ ଜଙ୍ଗଲରେ ଏହି ପୀଠ ଅତୀବ ରମଣୀୟ । କୋଶଳାଶୁଣୀ ଠାକୁରାଣୀ ଏହି ପୀଠର ଆରାଧ୍ୟ ଦେବୀ । ଏଠାକାର ସବୁଜ ଶାଳ ଜଙ୍ଗଲ ଏହାର ଶ୍ରୀବୃଦ୍ଧିର ମୁଖ୍ୟ ସହାୟକ ହୋଇଅଛି । ନିକଟରେ ରାଜ୍ୟସଭା ସଦସ୍ୟ ଶ୍ରୀ ଦିଲିପ ରାୟଙ୍କ ଅନୁଦାନରେ ଏହି ପୀଠକୁ ସର୍ବାଙ୍ଗ ସୁନ୍ଦର କରାଯାଇଅଛି । ପୂର୍ବତନ ମନ୍ତ୍ରୀ ପ୍ରଶାନ୍ତ ନନ୍ଦ ଏଠାର ବିଧାୟକ ଥିଲା ବେଳେ ଏହି ପୀଠର ଉନ୍ନତି ପାଇଁ ଏକ ଉଚ୍ଚ ମାନର ରାସ୍ତା ନିର୍ମାଣ କରିବାକୁ ଅର୍ଥ ମଞ୍ଜୁର କରିଥିଲେ ମଧ୍ୟ ଗ୍ରାମ୍ୟ ରାଜନୀତି ଦଳାଦଳି କୁ ନେଇ ଏହା ବନ୍ଦ ହୋଇଯାଇଛି । ଏହାର ଉନ୍ନତି ସହ ଏଠାରେ ଗୋଟିଏ ମୃଗ ବିହାର ହୋଇପାରିଲେ ଏହା ଓଡିଶାର ପର୍ଯ୍ୟଟନ ମାନଚିତ୍ରରେ ଏକ ବିଶେଷ ସ୍ଥାନ ଅଧିକାର କରିବ । ଖୋର୍ଦ୍ଧା, ଖଣ୍ଡପଡା ରାସ୍ତାର କଳାପଥରରୁ ଏବଂ ଖୋର୍ଦ୍ଧା ନୟାଗଡ ରାସ୍ତାର ରାଜସୁନାଖଳା ଠାରୁ ଏହି ପୀଠକୁ ପକ୍କା ରାସ୍ତା ଅଛି । ରଜପର୍ବ ଓ ଦୁର୍ଗାପୂଜା ଏହି ପୀଠର ମୁଖ୍ୟ ଆକର୍ଷଣ ।

ଭୂଇଁଆ ଠାକୁରାଣୀ ପୀଠ -

ବୋଲଗଡ ଗ୍ରାମର ଦକ୍ଷିଣ ଦିଗରେ ଢୁବୁରି ପାହାଡ ତଳେ ବନଦୁର୍ଗା ଭୂଇଁଆ ଠାକୁରାଣୀଙ୍କର ଏକ ମନୋରମ ପୀଠ ଅଛି । ଏହି ପୀଠରେ ବହୁ ଭକ୍ତ ସେମାନଙ୍କର ମାନସିକ ପୂରଣ ପାଇଁ ବର୍ଷ ସାରା ଭୋଗ ବସାଇଥାନ୍ତି । ଏହାଛଡା ଏହି ପୀଠରେ ବର୍ଷ ସାରା ଏ ଅଞ୍ଚଳର ଲୋକ ମାନେ ପିକନିକ୍ କରନ୍ତି ଏବଂ ୧୯୯୦ ମସିହାରୁ ଠାକୁରାଣୀଙ୍କର ଧନୁଯାତ୍ରା ମହାସମାରୋହରେ ଦୁଇ ଦିନ ଧରି ପାଳିତ ହେଉଅଛି ।

ଯୋଡାପଡା ରାମମନ୍ଦିର -

ଯୋଡାପଡା ଗ୍ରାମବାସୀ ଏବଂ ରାମନାରାୟଣ ବାବାଙ୍କ ସହଯୋଗରେ ପ୍ରତିଷ୍ଠିତ ଏହି ରାମ ମନ୍ଦିର ବୋଲଗଡ ଅଞ୍ଚଳରେ ଅନ୍ୟତମ ପର୍ଯ୍ୟଟନ ସ୍ଥଳୀରେ ପରିଣତ ହୋଇଅଛି । ଯୋଡାପଡା ଗ୍ରାମର ଦକ୍ଷିଣ ଦିଗରେ ଥିବା ପାହାଡ ତଳେ ଏହା ଅବସ୍ଥିତ । ସ୍ଥାନୀୟ ବନରାଜି ଏବଂ ଏକ ବିରାଟ ଜଳାଶୟ ଜନମନ ହରଣ କରିଥାଏ । ଏଠାରେ ଗ୍ରାମବାସୀଙ୍କ ସହଯୋଗରେ ଏକ ଧର୍ମଶାଳା ଏବଂ ବିବାହ ମଣ୍ଡପ ପ୍ରତିଷ୍ଠା ହୋଇଅଛି । ବହୁ ଲୋକଙ୍କର ସମାଗମ ବର୍ଷ ସାରା ଏଠାରେ ହୋଇଥାଏ ।

ଜକଲା ମହାବୀର ଆଶ୍ରମ (ହରିପୁର) -

ଯୋଡାପଡା ରାମ ମନ୍ଦିରର ଅଦୂରରେ ହରିପୁର ଗ୍ରାମର ଉତ୍ତରରେ ଥିବା ଜକଲା ପାହାଡ ଉପରେ ନିକଟରେ ଜକଲା ମହାବୀର ଆଶ୍ରମ ରାମନାରାୟଣ ବାବାଙ୍କର ପ୍ରଚେଷ୍ଟାରେ ଖଇଗିଆ, ଗବଡିହପାଟଣା, ହରିପୁର ପ୍ରଭୃତି ଗ୍ରାମବାସୀଙ୍କ ସହଯୋଗରେ ପ୍ରତିଷ୍ଠା ହୋଇଅଛି । ଏହି ଆଶ୍ରମରେ ପ୍ରର୍ଯ୍ୟାପ୍ତ ବୃକ୍ଷରୋପଣ କାର୍ଯ୍ୟକ୍ରମ ଦ୍ୱାରା ଏହା ଅଧିକ ସୁନ୍ଦର ଭାବରେ ଗଢିଉଠିଛି । ପ୍ରତି ମାସ ସଂକ୍ରାନ୍ତିରେ ଏହି ଆଶ୍ରମରେ ବିରାଟ ପଂକ୍ତି ଭୋଜନର ଆୟୋଜନ କରାଯାଏ । ଭୁବନେଶ୍ୱରର ବିଶିଷ୍ଟ ଭକ୍ତ ଅଭିମନ୍ୟୁ ପାତ୍ରଙ୍କର ଏହି ଆଶ୍ରମର ଶ୍ରୀ ବୃଦ୍ଧି ପାଇଁ ଆନ୍ତରିକ ଉଦ୍ୟମ ଜନସାଧାରଣଙ୍କ ଦ୍ୱାରା ପ୍ରଶଂସନୀୟ ।

ଗେଡି ମୁଣ୍ଡିଆ (ବୃଡା) -

ଖୋର୍ଦ୍ଧାରୁ ନୟାଗଡ ଦେଇଯାଇଥିବା ଜାତୀୟ ରାଜପଥ ପାର୍ଶ୍ୱରେ ବୃଡା ଗ୍ରାମରେ ଗେଡି ମୁଣ୍ଡିଆ ଅବସ୍ଥିତ । ଡାବରଧୂଆର ଦାନଶୀଳ ବ୍ୟକ୍ତି ୰ ରାମଚନ୍ଦ୍ର ମହାପାତ୍ର ଏଠାରେ କିଛି ବର୍ଷ ପୂର୍ବେ ଏକ ମନ୍ଦିର ପ୍ରତିଷ୍ଠା କରିଥିଲେ । ଏହି ମନ୍ଦିରରେ ଜଗନ୍ନାଥ ଏବଂ ରାଧାକୃଷ୍ଣ ପୂଜା ପାଆନ୍ତି । ବର୍ତ୍ତମାନ ବୃଡା, ଡାବରଧୂଆପାଟଣା, ରୋଳସିଂହ, କପାସିଆ, ନୟାପାଟଣା, ବେଲପଦର ଗ୍ରାମବାସୀଙ୍କ ସହଯୋଗରେ ଏହାର ଉନ୍ନୟନ କାମ କରାଯାଉଛି ।

ବିନ୍ଧ୍ୟଗିରୀ ସାନପଦର -

ସାନପଦର ଦେଉଳି ରାସ୍ତାର ଅଦୂରରେ ପଶ୍ଚିମ ଦିଗକୁ ବିନ୍ଧ୍ୟଗିରୀ ଆଶ୍ରମ ଅବସ୍ଥିତ । ବହୁପୂର୍ବେ ପ୍ରଥମେ ଏହିଠାରେ ସାନପଦର ଗଡ ଥିଲା । ଏଠାରୁ ଗଡ ସ୍ଥାନାନ୍ତରିତ ହେଲା ପରେ ବର୍ତ୍ତମାନ ଏହି ଆଶ୍ରମରେ ବିନ୍ଧ୍ୟଶ୍ୱରୀ ଠାକୁରାଣୀ ପୂଜା ପାଇବା ସହ ଏହାର ମନୋରମ ଦୃଶ୍ୟ ଦେଖିବା ପାଇଁ ବର୍ଷ ସାରା ବହୁ ଲୋକଙ୍କ ସମାଗମ ହୋଇଥାଏ ।



# ସାହିତ୍ୟ

ଦିନଥିଲା ଓଡିଶା ବୋଇଲେ ଖୋରଧାକୁ ବୁଝାଉଥିଲା । ଖୋରଧାର କଥିତ ଭାଷା ଓଡିଶାର ଲିଖିତ ଭାଷା ସହ ସମାନ । ବର୍ତ୍ତମାନ ସୁଦ୍ଧା ନିକଟସ୍ଥ ନୟାଗଡ ରଣପୁର ଏବଂ ଖଣ୍ଡପଡା ଆଦି ପୂର୍ବତନ ଗଡଜାତର ଲୋକମାନେ ଆମଅଞ୍ଚଳରେ ବନ୍ଧୁବାନ୍ଧବ ସ୍ଥାପନ କଲେ ସେଠାର ପୁରୁଣା କାଳିଆ ଲୋକମାନେ ଓଡିଶାରେ ବନ୍ଧୁ ହୋଇଥିବା କଥା କୁହନ୍ତି । ଖୋର୍ଦ୍ଧା ମୁଲକ ବୁଝାଉଥିଲା ପୂର୍ବରେ ଶିଶୁ ପାଳ ଗଡଠାରୁ ପଶ୍ଚିମରେ ବୋଲଗଡ ଥାନାର ଶେଷ ଗ୍ରାମ ଦିଘିରି, ଉତ୍ତରରେ ଦାରୁଠେଙ୍ଗ ଠାରୁ ଦକ୍ଷିଣ ଚିଲିକା ତୀର ବଡକୁଳ ନିକଟ ଛତ୍ରଗଡ ଘାଟି । ଓଡିଶାର ପ୍ରାଚୀନ ଗଜପତି ମାନଙ୍କର ପୃଷ୍ଟପୋଷକତା ସହ ସମସ୍ତ ଗଡଜାତ୍ ରାଜା ଧନୀ ଜମିଦାରଙ୍କ ପୃଷ୍ଟପୋଷକତାରେ ବହୁପୂର୍ବରୁ ପ୍ରଚଳିତ ଓଡିଆ ଭାଷା ଏବଂ ସାହିତ୍ୟ ବଞ୍ଚିରହି ପାରିଥିଲା । ମଧ୍ୟଯୁଗ (ରୀତିଯୁଗ)ରେ କୃଷ୍ଣକଥା ଉପରେ ଅସୁମାରୀ କାବ୍ୟ କବିତା ରଚନା କରାଯାଉଥିଲା । ବିଶେଷ କରି ଚୈତନ୍ୟଙ୍କ ଆଗମନ ପରେ ଓଡିଶାର କୋଣେ ଅନୁକୋଣେ ବହୁ କବି କୃଷ୍ଣ କଥା ଉପରେ ସେମାନଙ୍କର କାବ୍ୟ କବିତା ରଚନା କରିଥିଲେ । ଏଥିରୁ ବୋଲଗଡ ଅଞ୍ଚଳ ବା ପାଞ୍ଚଗଡ ବାଦ ପଡି ନଥିଲା ।

ଏହି ଖୋର୍ଦ୍ଧା ମାଟିର ସାହିତ୍ୟ ଅତି ଉନ୍ନତ । ରୀତି ଯୁଗ ପୂର୍ବରୁ ପାଞ୍ଚଗଡର କୌଣସି କବି ଲୋକଲୋଚନକୁ ଆସିଥିବାର ଜଣାଯାଏ ନାହିଁ । ବର୍ତ୍ତମାନ ଅନୁସନ୍ଧାନରୁ ଜଣାଯାଇଛି ଯେ, ବୋଲଗଡ ଅଞ୍ଚଳର ସମସ୍ତ ମୁଖ୍ୟ ବ୍ରାହ୍ମଣ ଶାସନ ଏବଂ ବ୍ରାହ୍ମଣ ପରିବାର, ଉଚ୍ଚକୁଳୀନ କରଣ ଏବଂ ଖଣ୍ଡାୟତ ପରିବାରରୁ ବହୁ ତାଳପତ୍ର ପୋଥି ଦେଖିବାକୁ ମିଳିଅଛି । ଏଥିରୁ ଅନୁମାନ ହୁଏ ପୂର୍ବକାଳରେ ଆଧୁନିକ ଶିକ୍ଷାର ପ୍ରଚଳନ ପୂର୍ବରୁ ଉପରୋକ୍ତ ଶ୍ରେଣୀର ଲୋକମାନେ କୃଷି କାର୍ଯ୍ୟ ଛଡା ମାଟି ବଂଶ ଅବଧାନଙ୍କ ଠାରୁ ଶିକ୍ଷା ଲାଭ ପରେ ଲେଖନୀ ତାଳପତ୍ର ସାହାଯ୍ୟରେ ପ୍ରାଚୀନ ପୂରାଣ ତଥା କେତେକ ସମର ଶାସ୍ତ୍ର, ବାସ୍ତୁ ଶାସ୍ତ୍ର, ଗୋଟିକିସ୍ୱା ଶାସ୍ତ୍ର ସହ ବିଭିନ୍ନ ଓଷା ପର୍ବ ପର୍ବାଣୀ ବିଷୟରେ କାବ୍ୟ କବିତା ମାନ ରଚନା କରିଥିଲେ । ଏହଛଡା ପାଞ୍ଚଗଡର ବିଭିନ୍ନ ମଠ ମନ୍ଦିର ଏବଂ ଅଧିକାଂଶ ଗ୍ରାମର ଭାଗବତ ଟୁଙ୍ଗିରେ ଏହି ସବୁ ପୋଥି ଓଡିଶାର ଅନ୍ୟ ଅଞ୍ଚଳ ପରି ପୂଜା ପାଉଥିଲା । ପରବର୍ତ୍ତୀ କାଳରେ ଏଥିରୁ ଯେତିକି ମାତ୍ର ଆଧୁନିକ ଶୈଳୀରେ ମୁଦ୍ରଣ ହୋଇ ପ୍ରକାଶ ପାଇଅଛି, ତାହା ଲୋକଲୋଚନକୁ ଆସିଗଲା । ଏହଛଡା ଅନ୍ୟ ସମସ୍ତ ପୋଥି କାଳକ୍ରମେ ଆଲୋଚନା ଓ ରକ୍ଷଣାବେକ୍ଷଣ ଅଭାବରୁ ନଷ୍ଟ ହୋଇଗଲା । ପ୍ରାୟ ୫୦ ବର୍ଷ ପୂର୍ବେ ଓଡିଶାର ଅନ୍ୟତମ ବରପୁତ୍ର

ଜ୍ଞାନପୀଠ ପୁରସ୍କାର ବିଜେତା ବିଶ୍ୱବିଖ୍ୟାତ ସାହିତ୍ୟିକ ୰ ଗୋପୀନାଥ ମହାନ୍ତି ବାରମ୍ବାର ବୋଲଗଡ ଅଞ୍ଚଳକୁ ଆସି ବହୁ ପୋଥି ସଂଗ୍ରହ କରିନେଇଥିଲେ । ସଂଗୃହିତ ତଥ୍ୟରୁ ଜଣାଯାଏ ବାଙ୍କୋଇ ଗଡରୁ ତାଙ୍କ ପ୍ରଚେଷ୍ଟାରେ ଅନଙ୍ଗ ନରେନ୍ଦ୍ରକୃତ 'ଶ୍ରୀ ରାମଲୀଳା' ତାଳପତ୍ର ପୋଥି ନିଆଯାଇ ଭୁବନେଶ୍ୱରର ରତ୍ନାକର ଗର୍ଗବଟୁଙ୍କ ଜରିଆରେ ଆଧୁନିକ ମୁଦ୍ରଣ ଯନ୍ତ୍ରରେ ଛପାଯାଇଥିଲା । ତାହା ପରେ ଏହାର ବହୁଳ ପ୍ରଚାର ଓ ପ୍ରସାର ହୋଇ ସର୍ବଜନାଦୃତ ଲାଭ କରିଥିଲା । ଏହାଛଡା ବାଙ୍କୋଇ ଗଡର ଅନ୍ୟତମ କବି ସାରଙ୍ଗ କବିରଙ୍କ ଦ୍ୱାରା ଲିଖିତ 'କଳିଯୁଗ ପୁରାଣ' ସ୍ୱର୍ଗତ ଗୋପୀନାଥ ମହାନ୍ତି ଏଠାରୁ ନେଇଥିଲେ । ବିଗତ ୭୦ ଦଶକରେ ତାଙ୍କର ସୁପୁତ୍ର ଅଧ୍ୟାପକ ଅମୃତନାଥ ମହାନ୍ତି ଏହି ପୋଥି ଉପରେ ଏକ ପ୍ରବନ୍ଧ ଓଡିଶାର ଲବ୍ଧ ପ୍ରତିଷ୍ଠିତ ପତ୍ରିକା 'ସହକାର'ରେ ପ୍ରକାଶ କରିଥିଲେ । ୰ ଗୋପୀନାଥ ମହାନ୍ତି ବୋଲଗଡର ୰ ଗଦାଧର ପଟ୍ଟନାୟକଙ୍କ ଘରୁ ତାଙ୍କର ପିତାମହ ୰ ଘନଶ୍ୟାମ ପଟ୍ଟନାୟକଙ୍କ ଦ୍ୱାରା ଲିଖିତ 'ଗରୁଡ ପୁରାଣ' ଏବଂ 'କରଣ ପ୍ରବନ୍ଧ'ର ପୋଥି ସଂଗ୍ରହ କରିଥିଲେ । ମାଣିକାଗୋଡା ହାଇସ୍କୁଲରେ ୰ ଗୋପୀନାଥ ମହାନ୍ତି ସ୍ଥାନୀୟ ପ୍ରଧାନ ଶିକ୍ଷକ ସଂସ୍କୃତିପ୍ରେମୀ ଏବଂ ଦକ୍ଷ ସଂଗଠକ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କ ସହାୟତାରେ ସ୍ଥାନୀୟ ପ୍ରାଚୀନ ପୋଥି ଉପରେ ଏକ କର୍ମଶାଳା ଆୟୋଜନ କରିଥିଲେ । ପିଚୁକୁଳି ଗ୍ରାମର ମୁଖ୍ୟ ସଂଭ୍ରାନ୍ତ ପରିବାରର ୰ କାହ୍ନୁଚରଣ ପଟ୍ଟନାୟକ, ସାନପଦର ଗ୍ରାମର ବଙ୍କି ପଟ୍ଟନାୟକ ଏବଂ ସେହି ଗ୍ରାମର ମଠରୁ ବହୁ ତାଳପତ୍ର ପୋଥି ସଂଗ୍ରହ କରିଥିବାର ଜଣାଯାଏ । ସଂସ୍କୃତ ସମର ସାହିତ୍ୟ ସମର ସାର ଛାୟାରେ କୋକଲ ଗଡର ପାଇକ ବୀର ୰ କହ୍ନେଇ ଚମ୍ପତିଙ୍କ ଦ୍ୱାରା ଲିଖିତ 'ପାଇକ ଖେଦା' ତାଳପତ୍ର ପୋଥି ସର୍ବପ୍ରଥମେ ପୁରୀ ଶ୍ରୀମନ୍ଦିରର ଗବେଷକ ୰ ପଣ୍ଡିତ ସଦାଶିବ ରଥ ଶର୍ମା ବୋଲଗଡରୁ ସଂଗ୍ରହ କରିଥିଲେ । ଏଥିରୁ ଅନୁମାନ କରାଯାଏ ଓଡିଆ ସାହିତ୍ୟ ଇତିହାସରେ ବୋଲଗଡ ଅଞ୍ଚଳ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଗ୍ରହଣ କରିଥିଲା ।

ପାଞ୍ଚଗଡର ସମସ୍ତ ପ୍ରାଚୀନ କବିଙ୍କର ତଥ୍ୟ ସଂଗ୍ରହକରି ନନ୍ଦିଘୋଷ ସାରସ୍ୱତ ଅନୁଷ୍ଠାନରେ ସାହିତ୍ୟ ଉତ୍ସବରେ ଲେଖକ ସର୍ବସାଧାରଣ ତଥା ସାହିତ୍ୟ ପ୍ରେମୀମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପରେ ବୋଲଗଡ ପରମାନନ୍ଦ ଶିକ୍ଷା ମହାବିଦ୍ୟାଳୟ (B.Ed.College) ଦ୍ୱାରା ପ୍ରକାଶିତ ୧୯୮୦ ମସିହାର ମୁଖପତ୍ର ଶିକ୍ଷା ପ୍ରଦୀପରେ ସର୍ବ ପ୍ରଥମେ 'ଓଡିଆ ସାହିତ୍ୟକୁ ବୋଲଗଡର ଅବଦାନ' ଶିରୋନାମରେ ଏକ କ୍ଷୁଦ୍ର ପ୍ରବନ୍ଧ ପ୍ରକାଶ କରିଥିଲା । ଏହା ଉପରେ ଗବେଷଣା କରି ଗର୍ଭଣୀପଡା ଗ୍ରାମର ସୀତୁ ପ୍ରକାଶ ରଥ ବାଙ୍କୀ ମହାବିଦ୍ୟାଳୟର ଓଡିଆ ବିଭାଗ ମୁଖ୍ୟ ଅଧ୍ୟାପକ ଡଃ ନିଶାକର ପାଠୀଙ୍କ ଅଧିନରେ Ph.D. କରୁଥିବାର ସେ ଲେଖକଙ୍କ ଆଗରେ ପ୍ରକାଶ

କରିଥିଲେ । ଓଡିଆ ସାହିତ୍ୟର ରୀତି ଯୁଗରେ ଅନେକ ଭକ୍ତ କବିଙ୍କର ଆବିର୍ଭାବ ହୋଇଥିଲା । ସେମାନେ କୃଷ୍ଣ ପ୍ରେମୀ ଥିଲେ । ଶ୍ରୀକୃଷ୍ଣଙ୍କୁ ଅବଲମ୍ବନ କରି ଭକ୍ତ କବି ମାନେ ସେତେବେଳର ରାଜାମାନଙ୍କ ସହାୟତରେ ଅନେକ କାବ୍ୟ କବିତା ରଚନା କରିଥିଲେ । ବୋଲଗଡ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିବା କବିମାନଙ୍କ ମଧ୍ୟରେ କେବଳ ମାତ୍ର ସାନପଦର ଗ୍ରାମରେ ଓଡିଶାର ୩ ଜଣ ମହାନ କୃଷ୍ଣ ପ୍ରେମୀ କବି ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଅମର ଲେଖନୀ ଆଜି ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରିପାରିଛି । 'ମଥୁରା ମଙ୍ଗଳ'ର କବି ୰ଭକ୍ତଚରଣ, 'ଗୋପୀ ଭାଷା'ର କବି ଦନେଇ ଦାଶ ଏବଂ 'ବସନ୍ତ ରାସ'ର କବି ୰ପିଣ୍ଡିକି ଶ୍ରୀଚନ୍ଦନ ମୁଖ୍ୟ ଅଟନ୍ତି । ଭକ୍ତଚରଣଙ୍କ ପୂର୍ବ ନାମ ବୈରାଗୀ ଚରଣ ପଟ୍ଟନାୟକ ଥିଲା । 'ମଥୁରା ମଙ୍ଗଳ'ର ସାବଲୀଳ ରଚନା "ଦାଣ୍ଡରେ ଶୁଭିଲା ରାମ କୃଷ୍ଣ ବେନି ଭାଇ ଅକ୍ରୁର ଆସିଛି ତାଙ୍କୁ ଧରି ନେବାପାଇଁ ରାଜା ପରଜା ସହିତେ ସଜ ହୋଇ ଥାଅ କାଲି ଚଳିବା ପ୍ରଭାତେ" ଯେ କୌଣସି ଓଡିଆର ହୃଦୟ ତନ୍ତ୍ରୀକୁ ବିମୁଗ୍ଧ କରିଥାଏ । ପୂର୍ବେ ଆଧୁନିକ ଶିକ୍ଷାର ପ୍ରଚଳନ ପୂର୍ବରୁ ଗାଁ ଅବଧାନମାନେ ପିଲାଙ୍କୁ 'ମଥୁରା ମଙ୍ଗଳ', 'କୋଇଲି' ଏବଂ 'ଗୋପୀଭାଷା' ପଢାଉ ଥିଲେ । ସେତେବେଳେ ପାଠ୍ୟକ୍ରମର ପ୍ରଚଳନ ବିଧାନ ଅନୁସାରେ ନଥିଲେ ମଧ ବସ୍ତୁତଃ ଏହା ପାଠ୍ୟକ୍ରମ ହୋଇଯାଇଥିଲା । ଏହି କବିଙ୍କ ସହ ପାଞ୍ଚଗଡରେ ଜନ୍ମ ନେଇଥିବା ଅନ୍ୟ କେତେଜଣ କବିଙ୍କ ବିଷୟରେ 'ଖୁରୁଧା ଇତିହାସ'ର ଲେଖକ ଐତିହାସିକ ୰ କେଦାରନାଥ ମହାପାତ୍ର ବର୍ଣ୍ଣନା କରିଛନ୍ତି ଏହାଛଡା 'ଯଶଦେହେ ଆୟୁଷ୍ମାନ'ର ଲେଖକ ଡଃ ପ୍ରଫୁଲ୍ଲ କୁମାର ପଟ୍ଟନାୟକ କବି ଭକ୍ତଚରଣଙ୍କର ସମ୍ପୂର୍ଣ୍ଣ ଜୀବନୀ ସେଥିରେ ବର୍ଣ୍ଣନା କରିଛନ୍ତି । ଖୋରଧାର ବିଶିଷ୍ଟ ଐତିହାସିକ ସାହିତ୍ୟିକ ତଥା ଶିକ୍ଷାବିତ୍ ମୁରଲୀଧର ପ୍ରଧାନ ତାଙ୍କ ଲିଖିତ 'ଇତିହାସର ଝଲକ' ପୁସ୍ତକରେ ବସନ୍ତ ରାସର ଅମର କବି ପିଣ୍ଡିକି ଶ୍ରୀଚନ୍ଦନଙ୍କର ତଥ୍ୟ ଭିତ୍ତିକ ଜୀବନୀ ଆଲୋଚନା କରିଛନ୍ତି । ଏହି କବି ମାନଙ୍କ ସହ ପାଞ୍ଚଗଡ ଅଞ୍ଚଳରେ ଜନ୍ମ ନେଇଥିବା ଅନ୍ୟ ସମସ୍ତ କବିଙ୍କ ସମ୍ପର୍କରେ ଏଯାବତ ସଂଗୃହୀତ ତଥ୍ୟ ବିଷଦ ଭାବରେ ଏଥିରେ ଦିଆଗଲା । କାରଣ ଏଅଞ୍ଚଳର କବିମାନେ ଓଡିଶାର ଅନ୍ୟ ଅଞ୍ଚଳର କବିମାନଙ୍କ ପରି ବର୍ତ୍ତମାନ ସୁଦ୍ଧା ପ୍ରତିଷ୍ଠା ଲାଭ କରିପାରିନାହାନ୍ତି ।

ପ୍ରଥମେ ଖୁରୁଧା ଇତିହାସରେ ବର୍ଣ୍ଣିତ ପାଞ୍ଚଗଡ କବିମାନଙ୍କ ବିଷୟରେ ତଥ୍ୟ ନିମ୍ନମତେ ଦିଆଗଲା ।

**କବି ନିତ୍ୟାନନ୍ଦ- (ଦିବ୍ୟସିଂହପୁର ଶାସନ)**

ତାଙ୍କ ଦ୍ୱାରା ରଚିତ ଦୁଇଟି ଗ୍ରନ୍ଥ ଯଥା- 'ଶିବଲୀଳାମୃତ ମହାକାବ୍ୟମ୍' ଓ

'ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟମ୍' ଆବିଷ୍କୃତ ହୋଇଅଛି ଏବଂ ଉଭୟ ଗ୍ରନ୍ଥର ପୋଥି ପ୍ରାଦେଶିକ ମିଉଜିୟମ ପୋଥିଭଣ୍ଡାରରେ ସଂରକ୍ଷିତ । ସେ କୌଣ୍ଡନ୍ୟ ଗୋତ୍ରରେ ଜନ୍ମଲାଭ କରିଥିଲେ । ତାଙ୍କ ବାସସ୍ଥାନ ବା ପିତା-ମାତାଙ୍କ ସମ୍ବନ୍ଧରେ ଗ୍ରନ୍ଥଦ୍ୱୟରୁ କୌଣସି ତଥ୍ୟ ମିଳେ ନାହିଁ । ସେ 'ନବଦୁର୍ଗମହୀମହେନ୍ଦ୍ର' ବା ନୟାଗଡର ସୂର୍ଯ୍ୟବଂଶୀ ରାଜ୍ୟ ଗଦାଧର ମାନଧାତାଙ୍କ ଆଶ୍ରୟରେ ରହି 'ଶିବଲୀଳାମୃତ ମହାକାବ୍ୟମ୍' ରଚନା କରିଥିଲେ । ଗଦାଧର ସିଂହ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ରାଜତ୍ୱ କରୁଥିଲେ ଏବଂ ଗଜପତି ମୁକୁନ୍ଦ ଦେବଙ୍କ ସମସାମୟିକ ଥିଲେ । ଏହି କାବ୍ୟଟି 'ଗୀତଗୋବିନ୍ଦ ମହାକାବ୍ୟମ୍' ର ଅନୁକରଣରେ ଲିଖିତ । ଏଥିରେ ଏକାମ୍ରକାନନ ବା ଭୁବନେଶ୍ୱର କ୍ଷେତ୍ରର ମାହାତ୍ମ୍ୟ ସୁନ୍ଦର ଓ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ହୋଇଅଛି । ଏଥିରେ ନୟାଗଡ ରାଜବଂଶର ଚାରିପୁରୁଷ ଓ ନୟାଗଡ ରାଜ୍ୟସ୍ଥ ଲଦୁକେଶ ମହାଦେବଙ୍କ ବିବରଣୀ ମିଳେ ।

ସେ ଭର୍ଗୋବଂଶୋଦ୍ଭବ ବା ସୂର୍ଯ୍ୟବଂଶୀୟ ବନମାଳୀ ନାମକ ରାଜାଙ୍କ ଆଶ୍ରୟରେ ରହି 'ଶ୍ରୀକୃଷ୍ଣଲୀଳାମୃତ ମହାକାବ୍ୟମ୍' ପ୍ରଣୟନ କରିଥିଲେ । ଏହା 'ଗୀତଗୋବିନ୍ଦ ମହାକାବ୍ୟମ' ର ଏକ ଅନୁକୃତି ହୋଇଥିଲେ ମଧ୍ୟ ପୂର୍ବୋକ୍ତ ରଘୁତ୍ତମ ତୀର୍ଥ-ବିରଚିତ 'ମୁକୁନ୍ଦବିଳାସ ମହାକାବ୍ୟମ୍' ଦ୍ୱାରା ପ୍ରଭାବିତ ହୋଇଥିଲା । ତାଙ୍କର ଦ୍ୱିତୀୟ ପୃଷ୍ଠପୋଷକ ରାଜା ବନମାଳୀ (୧୮) ଖଣ୍ଡପଡା ରାଜ୍ୟର ଅଧିପତି ପୂର୍ବୋକ୍ତ ନାରାୟଣ ମଙ୍ଗରାଜଙ୍କ ନାତି ଥିଲେ । 'ଜଗନ୍ନାଥ ଶତକମ' ତାଙ୍କର ଅନ୍ୟତମ ଅନବଦ୍ୟ କୃତି ।

ଏହି ମହାନ କବିଙ୍କ ବିଷୟରେ ଲେଖକ ଓଡିଶାର ପ୍ରଖ୍ୟାତ ଗବେଷକ ଏବଂ ଉତ୍କଳ ବିଶ୍ୱ ବିଦ୍ୟାଳୟର ସଂସ୍କୃତ ବିଭାଗର ମୁଖ୍ୟ ଅଧ୍ୟାପକ ✓ ପ୍ରହ୍ଲାଦ ପ୍ରଧାନ, କଲିକତା ବିଶ୍ୱବିଦ୍ୟାଳୟର ଓଡିଆ ବିଭାଗର ପୂର୍ବତନ ମୁଖ୍ୟ ଅଧ୍ୟାପକ ନୟାଗଡ ନିବାସୀ ✓ ପଣ୍ଡିତ ବିନାୟକ ମିଶ୍ର ଏବଂ କବି ନିତ୍ୟାନନ୍ଦଙ୍କ ଉପରେ ଗବେଷଣା ମୂଳକ ପ୍ରବନ୍ଧ ଲେଖିଥିବା ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକର ଓଡିଆ ବିଭାଗର ମୁଖ୍ୟ ଅଧ୍ୟାପିକା ଡଃ. ଅର୍ଚ୍ଚନା ନାୟକଙ୍କ ସହ ଆଲୋଚନା କରିବାର ସୁଯୋଗ ପାଇଥିଲା । ସମସ୍ତେ କବି ନିତ୍ୟାନନ୍ଦ ବୋଲଗଡ ଥାନା ଦିବ୍ୟସିଂହପୁର ଶାସନର ଅଧିବାସୀ ବୋଲି ପ୍ରକାଶ କରିଥିଲେ ଏବଂ ସେ ସ୍ଥାନୀୟ ମୁଖ୍ୟ ଆରାଧ୍ୟ ଦେବତା ସୋମନାଥ ଦେବ ଏବଂ ଶରଣକୁଳର ଲଦୁକେଶ ମହାଦେବଙ୍କର ଶରଣାପନ୍ନ ହୋଇ ଉପରୋକ୍ତ ଗ୍ରନ୍ଥ ରଚନା କରିଥିବାର କଥା ସେମାନେ କହିଥିଲେ । ତାଙ୍କର ବଂଶଧର ମାନେ ଅଦ୍ୟାପି ଦିବ୍ୟସିଂହପୁର ଶାସନରେ ବାସକରୁଛନ୍ତି ।

ଜନାର୍ଦ୍ଦନ ଦାସ ବା ଦନାଇ ଦାସ- (ସାନପଦର)

ଜନାର୍ଦ୍ଦନ ଦାସ ବା ଦନାଇ ଦାସଙ୍କ 'ଗୋପୀଭାଷା' ର ଲଳିତ କୋମଳ କାନ୍ତ ପଦାବଳୀ ଇଂରେଜୀ ଶିକ୍ଷାର ପ୍ରସାର ପୂର୍ବରୁ ଚାଟମାନଙ୍କର କଣ୍ଠଭୂଷଣ ଥିଲା । କିନ୍ତୁ ଏହି ସର୍ବଜନାଦୃତ କବିଙ୍କ ସମୟ ସ୍ଥିରୀକୃତ ହୋଇନାହିଁ । କବି ମଧ ସ୍ୱଗ୍ରନ୍ଥର କୌଣସି ସ୍ଥାନରେ ନିଜର ବଂଶପରିଚୟ, ବାସସ୍ଥାନ ବା ରଚନାକାଳ ସମ୍ବନ୍ଧରେ ଉଲ୍ଲେଖ କରିନାହାନ୍ତି । ତେଣୁ ପରୋକ୍ଷ ପ୍ରମାଣ ବଳରେ ତାଙ୍କର ସମୟ ନିର୍ଦ୍ଧାରିତ କରାଯାଇପାରେ ।

ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମ ସ୍ୱରଚିତ 'ନିମଚିନ୍ତାମଣି' ଗ୍ରନ୍ଥରେ ଭକ୍ତ ହରି ଦାସଙ୍କ ସମ୍ବନ୍ଧରେ ଲେଖିଛନ୍ତି । 'ହରିଦାସଙ୍କୁ ଯେ ବାଦସା ଚଳିଲା, ହରି ନ ବୋଲ କଲମା ଭଣରେ' ଗ୍ରନ୍ଥରେ ସୂଚିତ ବାଦଶାଙ୍କୁ ନିଃସନ୍ଦେହରେ ହିନ୍ଦୁଧର୍ମର ଧ୍ୱଂସସାଧନବ୍ରତୀ ବାଦଶାହ ଔରଙ୍ଗଜେବଙ୍କ ସହିତ ଚିହ୍ନିତ କରାଯାଇପାରେ । ତାଙ୍କ ରାଜତ୍ୱକାଳରେ ବାରମ୍ବାର ଜଗନ୍ନାଥ ମନ୍ଦିର ଆକ୍ରମଣ ବିଷୟ ଯଥାସ୍ଥାନରେ ଆଲୋଚିତ ହୋଇଅଛି । ସୁବାଦାର ଖାନ୍-ଇ-ଦୁରାନ୍‌ଙ୍କ ସମୟରୁ (୧୬୬୦-୧୬୭୬) ସୁବାଦାର ଏକରାମ ଖାଁଙ୍କ ଶାସନକାଳ ଶେଷ (୧୬୯୮) ପର୍ଯ୍ୟନ୍ତ ପ୍ରାୟ ୩୭ ବର୍ଷ ମଧରେ ଓଡିଶାର ପ୍ରସିଦ୍ଧ ହିନ୍ଦୁ ପୀଠ ସମୂହର ଧ୍ୱଂସସାଧନ ଦ୍ୱାରା ହିନ୍ଦୁଧର୍ମର ବିଲୋପ ପାଇଁ ବାରମ୍ବାର ଉଦ୍ୟମ କରାଯାଇଥିଲା । ତେଣୁ ଭକ୍ତକବି ହରିଦାସଙ୍କ ପ୍ରତି ମୋଗଲ ସୁବାଦାରଙ୍କର ଅତ୍ୟାଚାର ଏହି ସମୟ ମଧରେ ଘଟିଥିବ । ଭକ୍ତ ହରିଦାସକୃତ 'ମୟୂରଚନ୍ଦ୍ରିକା' ପୁସ୍ତକର 'ପଞ୍ଚମ ଚନ୍ଦ୍ରିକା' କୁ ଜନାର୍ଦ୍ଦନ ଦାସଙ୍କ 'ଗୋପୀଭାଷା' ବୃତ୍ତରେ ଗାଇବା ପାଇଁ ନିର୍ଦ୍ଦେଶ ଥିବାରୁ 'ଗୋପୀଭାଷା' ସପ୍ତଦଶ ଶତାବ୍ଦୀର ପ୍ରଥମ ଭାଗରେ ରଚିତ ହୋଇଥିବା ଅନୁମାନ କରାଯାଇପାରେ । ବେଗୁନିଆ ଥାନା ଅନ୍ତର୍ଗତ ସାନପଦର ଗ୍ରାମ ତାଙ୍କର ଜନ୍ମଭୂମି ଥିବା ଜନଶ୍ରୁତିରୁ ଜଣାଯାଏ ।

ସ୍ଥାନୀୟ ଗବେଷଣାରୁ ଜଣାଯାଏ ସାନପଦର ନିବାସୀ ଦନେଇ ଦାସ ପାଟରା ଜାତିର ଲୋକ ଥିଲେ । ବର୍ତ୍ତମାନ ବହୁ ପାଟରା ଜାତିର ଲୋକେ ଏହି ଗ୍ରାମରେ ବାସ କରନ୍ତି । ଦନେଇ ଦାସଙ୍କର ବଂଶଧର ମାନେ ଏବେ ସେଠାରେ ରହୁଛନ୍ତି । ଗୋପୀଭାଷାରେ ତାଙ୍କର ସାବଳୀଳ ଲେଖା-

କୃଷ୍ଣକଥା ଭାଳି ଗୋପୀ ସକଳ
ଗୁଣସୁମାରୀ ହୁଅନ୍ତି ବିକଳ

କାହୁଁ ଦାରୁଣ ଅକ୍ରୁର ଅଇଲା
ଗୋପେ ଗୋବିନ୍ଦ ନାମ ଦେଇଗଲା

ଏହି ଗୋପୀଭାଷା ବହୁଳ ଭାବରେ ପୂର୍ବକାଳରେ ଗ୍ରାମ ଚାଟଶାଳୀରେ ଅବଧାନମାନେ ପିଲାମାନଙ୍କୁ ଘୋଷି ମୁଖସ୍ଥ କରିବା ପାଇଁ କହୁଥିଲେ । ଅନେକ ପୁରୁଣା ଲୋକଙ୍କ ମୁଖରୁ ଅଦ୍ୟାବଧି ଗୋପୀଭାଷା ଶୁଣିବାକୁ ମିଳେ ।

ବର୍ତ୍ତମାନ ଏ ଇତିହାସ ରଚନା ସମୟରେ ଲେଖକର ଅନୁରୋଧରେ ଶ୍ରୀ ବିନୋଦ ବିହାରୀ ରାମ ସାନପଦର ଗ୍ରାମକୁ ଯାଇ ଦନେଇ ଦାସଙ୍କ ବିଷୟରେ ତଥ୍ୟ ସଂଗ୍ରହ କରିବାରେ ସେ ଗ୍ରାମର ଜଣେ ପ୍ରମୁଖ ବ୍ୟକ୍ତି ଶ୍ରୀ ଆନନ୍ଦ ମହାପାତ୍ର କହନ୍ତି, 'ଗୋପୀ ଭାଷା' ବ୍ୟତିତ କବି ଦନେଇ ଦାସ 'ଦନେଇ ପ୍ରହେଳିକା' ନାମକ ଏକ କବିତା ପୁସ୍ତକ ରଚନା କରିଥିଲେ । ତାଙ୍କ ଠାରୁ ସଂଗୃହୀତ ଦନେଇ ପ୍ରହେଳିକାର କେତେକ ଗୀତ ଏଠାରେ ଉଦ୍ଧାର କରାଗଲା ।

## ପ୍ରହେଳିକା -୧

କଅଁଳ ନଡିଆ ଖାଇବା ସୁଖ
କଅଁଳ ଶୁଆ ବାନ୍ଧଇ ମୁଖ
କଅଁଳ ବାଛୁରୀ ଦୁଧ ପରଖ
କଅଁଳ ଶିଶୁ ଲୋଡଇ କାଖ
କଅଁଳ କାଠ ନୁହଁଇ ଅଖ
ଦନେଇ କହି କଅଁଳ କୁହାକୁ ବିଶ୍ୱାସ ନାହିଁ ।
ବୁଢା ଶ୍ୱଶୁର କଣା ଦେଢଶୁର
ଗାଁ ମଙ୍ଗାସୁର ଗାଁ ଖୁଦୁଡା
ଘର କ୍ୱାଇଁ ଏ ଚାରିକି ସାନ ମଣିବ ନାହିଁ

## ପ୍ରହେଳିକା -୨

ଓଡ ବୁଦ୍ଧି ଗୋଡରେ
ତେଲି ବୁଦ୍ଧି ଜଡାରେ
ପାଟରା ବୁଦ୍ଧି ନଡାରେ
ମହାନ୍ତି ବୁଦ୍ଧି ଖଡାରେ
ବ୍ରାହ୍ମଣ ବୁଦ୍ଧି ପିଢାରେ
ଧୋବା ବୁଦ୍ଧି ସୋଢାରେ

ଶଅର ବୁଦ୍ଧି ଧୋଡାରେ
କେଉଟ ବୁଦ୍ଧି ଧଡାରେ
ବାରିକ ବୁଦ୍ଧି ପେଡାରେ
ଗଉଡ ବୁଦ୍ଧି ବଢାରେ
ପଠାଣ ବୁଦ୍ଧି ହଡାରେ
ଦନେଇ କହଇ ତାଙ୍କୁ ଚିଡାରେ

ପ୍ରହେଳିକା -୩

ଗୀତ ନାଶ ଯାଏ ବାଟରେ
ପାଣି ନାଶ ଯାଏ ଫାଟରେ
ନାରୀ ନାଶ ଯାଏ ହାଟରେ
କଥା ନାଶ ଯାଏ ମୋଟରେ
ବାଳ ନାଶ ଯାଏ ଜଟରେ
ଧର୍ମ ନାଶ ଯାଏ ହଟରେ
ବନ୍ଧୁ ନାଶ ଯାଏ କୂଟରେ
ଦନା ନାଶ ଯାଏ ତୁଟରେ

କବି ମାଗୁଣି ପଟ୍ଟନାୟକ- (କୋଟପଲ୍ଲା, ବେଗୁନିଆ)

ସେ ପଞ୍ଚାରସିଂହ ଦୁର୍ଗର କୋଟପଲା ଗ୍ରାମରେ ଶ୍ରୀ ରଘୁନାଥ ପଟ୍ଟନାୟକଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । କୋଟପଲା ହଳଦିଆ ଗଡ ନିକଟରେ ଅବସ୍ଥିତ । ସେ 'ରାମଚନ୍ଦ୍ର-ବିହାର' ନାମକ ଏକ ବିଶାଳ ଗ୍ରନ୍ଥ ବୀରକେଶରୀ ଦେବଙ୍କ ୪୫ ଅଙ୍କରେ ସମାପ୍ତ କରିଥିଲେ । ଯଥା-

"ଶ୍ରୀ ବୀରକେଶରୀ ଦେବ ଶ୍ରୀଦେବ ନୃପତି, ପଞ୍ଚଚାଳିଶ ଅଙ୍କ କନ୍ୟ ସରନ୍ତି ଯେ ।"

ତାଙ୍କ ୪୫ ଅଙ୍କ ୮-୯-୧୭୭୨ରୁ ୨୯-୮-୧୭୭୩ ପର୍ଯ୍ୟନ୍ତ ଚଳିଥିବାରୁ ଉକ୍ତ ଅଙ୍କର କନ୍ୟ ଶେଷକୁ ଅର୍ଥାତ୍ ୧୭୭୨ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସରେ ଉକ୍ତ ଗ୍ରନ୍ଥ ସମାପ୍ତ ହୋଇଥିଲା ।

ଏହି ମହାନ କବି ପାଞ୍ଚଗଡ ସଂଲଗ୍ନ ବର୍ତ୍ତମାନର ଉତ୍ତର ବେଗୁନିଆ ଅଞ୍ଚଳର କୋଟପଲ୍ଲା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପରବର୍ତ୍ତୀ ବଂଶଧରମାନେ ଏବେ ଓଡିଶାର ବିଭିନ୍ନ କ୍ଷେତ୍ରରେ ଉଚ୍ଚ ପଦବୀରେ ଅଧିଷ୍ଠିତ ଅଟନ୍ତି । ସେମାନଙ୍କ ମଧ୍ୟରେ ରାଜ୍ୟର ପୂର୍ବତନ ସ୍ୱାସ୍ଥ୍ୟ ବିଭାଗ ନିର୍ଦ୍ଦେଶକ ଡାକ୍ତର ଗୋପାଳ ଚନ୍ଦ୍ର

ପଟ୍ଟନାୟକ, ଦକ୍ଷ ପ୍ରଶାସକ ବିବେକାନନ୍ଦ ପଟ୍ଟନାୟକ (ଆଇ.ଏ.ଏସ), ଏବଂ ବର୍ତ୍ତମାନର ରାଜ୍ୟ ପୋଲିସ ଡି.ଜି. ଅମରାନନ୍ଦ ପଟ୍ଟନାୟକ (ଆଇ.ପି.ଏସ.) ସୁବିଖ୍ୟାତ ଗଣିତଜ୍ଞ ପ୍ରଫେସର ସ୍ୱାଧୀନ କୁମାର ପଟ୍ଟନାୟକ ପ୍ରମୁଖ ଅଟନ୍ତି ।

ପିଣ୍ଡିକି ଶ୍ରୀଚନ୍ଦନ- (ସାନପଦର)

ପିଣ୍ଡିକି ଶ୍ରୀଚନ୍ଦନ ପୁରୀ ଜିଲ୍ଲାର ବୋଲଗଡ ଅଞ୍ଚଳରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ଗ୍ରାମର ଅଦୂରରେ 'ମଥୁରାମଙ୍ଗଳ' ପ୍ରଣେତା ଭକ୍ତଚରଣ ଦାସଙ୍କ ଜନ୍ମସ୍ଥାନ ଅଦ୍ୟାପି ବିଦ୍ୟମାନ । ସେ 'ବସନ୍ତରାସ'ର ପ୍ରଣେତାରୂପେ ସମଗ୍ର ଉତ୍କଳରେ ଖ୍ୟାତ । ତାଙ୍କ ପୂର୍ବରୁ ଓଡିଆ ଭାଷାରେ ରାସ-ଗ୍ରନ୍ଥ ପ୍ରଣୀତ ହୋଇଥିଲା । ଓଡିଆରେ ପ୍ରଥମ ରାସପ୍ରଣେତା ହେଉଛନ୍ତି ଭକ୍ତକବି ଭାଗବତକାର ଜଗନ୍ନାଥ ଦାସ । ତାଙ୍କ ପରେ ଶିଶୁ ବନମାଳୀ ଦାସ ଏକ ବିରାଟ ରାସ-ଗ୍ରନ୍ଥ ପ୍ରଣୟନ କରିଥିଲେ । ତାହା ତିନି ଖଣ୍ଡରେ ବିଭକ୍ତ । ଏ ଦୁଇଟି ଗ୍ରନ୍ଥରେ କେବଳ ଶ୍ରୀରାଧା-କୃଷ୍ଣଙ୍କ ରାସଲୀଳାର ବିସ୍ତୃତ ବର୍ଣ୍ଣନା ଦେଖାଯାଏ । କିନ୍ତୁ ଶ୍ରୀଚନ୍ଦନ ତାଙ୍କ ରାସଲୀଳାକୁ ଅଭିନୀତ ହେବା ଉଦ୍ଦେଶ୍ୟରେ ପ୍ରଣୟନ କରିଥିଲେ । ସେ 'ଗୀତଗୋବିନ୍ଦ' ର ଅନୁକରଣରେ ଉକ୍ତ ଗ୍ରନ୍ଥ ରଚନା କରିଥିଲେ; କିନ୍ତୁ ଏହା ବଙ୍ଗଳାମିଶା ଓଡିଆ ଭାଷାରେ ଲିଖିତ । କାରଣ ଶ୍ରୀଚୈତନ୍ୟଙ୍କ ମତର ପ୍ରଚାରକମାନଙ୍କ ମଧ୍ୟରେ ଅଧିକାଂଶ ବଙ୍ଗାଳୀ ଥିବାରୁ ଏହା ବଙ୍ଗଳାରେ ଲିଖିତ ନଦୀୟା କୀର୍ତ୍ତନ ଦ୍ୱାରା ଧର୍ମପ୍ରଚାର ହେଉଥିବାରୁ ଓଡିଆ ଭାଷା ଅଲକ୍ଷିତ ଭାବରେ ବଙ୍ଗଳାଭାଷା ଦ୍ୱାରା ପ୍ରଭାବିତ ହେଉଥିଲା । ଗଜପତି ବୀରକେଶରୀ ଦେବଙ୍କ ସମୟରେ ଶ୍ରୀଚୈତନ୍ୟ-ମତ-ପ୍ରଚାରକ ଗୋସ୍ୱାମୀମାନଙ୍କ ପ୍ରଭାବ ବିଭିନ୍ନ ରାଜଦରବାରରେ ବିଶେଷ ପ୍ରାଧାନ୍ୟ ଲାଭ କରିଥିଲା । ଆଜିକାଲି ଶ୍ରୀରାମକୃଷ୍ଣ ମିଶନର ଅଧିକାଂଶ ପ୍ରଚାରକ ବଙ୍ଗାଳୀ ଥିବାରୁ ଅଲକ୍ଷିତ ଭାବରେ ବଙ୍ଗଳା ସାହିତ୍ୟର ଗୌରବ ଓ ପ୍ରଭାବ ଚାରିଆଡେ ବିସ୍ତାର ଲାଭ କରୁଅଛି । ତେଣୁ ଓଡିଶାର ଏକ ସୁଦୂର ଅଜ୍ଞାତ ପଲ୍ଲୀର କବି ଶ୍ରୀଚନ୍ଦନ ଶ୍ରୀଚୈତନ୍ୟ-ମତାବଲମ୍ବୀମାନଙ୍କ ସନ୍ତୋଷବିଧାନ ନିମିତ୍ତ ବଙ୍ଗଳାମିଶା ଓଡିଆ ଭାଷାରେ 'ରାସ' ରଚନା କରିଥିଲେ । କବି ଶ୍ରୀଚନ୍ଦନ ରାଧାକୃଷ୍ଣଙ୍କ ପରମ ଭକ୍ତ ଗଜପତି ଦିବ୍ୟସିଂହ ଦେବଙ୍କ (୧୭୯୩-୧୭୯୮) ନାମରେ ଗୋଟିଏ ଗୀତର ଭଣିତା କରିଥିବାରୁ ସେ ବୀରକେଶରୀଙ୍କ ରାଜତ୍ୱର ଶେଷ ଓ ଦିବ୍ୟସିଂହଙ୍କ ରାଜତ୍ୱ ଆରମ୍ଭରେ ଉକ୍ତ ଗ୍ରନ୍ଥ ରଚନା କରିଥିବାର ସ୍ଥିର କରାଯାଇପାରେ ।

ଏହି ମହାନ ଅମର କବିଙ୍କର ଜନ୍ମ ସ୍ଥାନ ସାନପଦର ଗ୍ରାମ ଅଟେ । ସେ 'ବସନ୍ତ ରାସ' ବଙ୍ଗଳା ମିଶା ଓଡିଆ ଭାଷା ରଚନା କରିଥିଲେ । ପରମ୍ପରା କ୍ରମେ ଚୈତନ୍ୟ ମହାପ୍ରଭୁଙ୍କ ଓଡିଶା ଆଗମନ ପରେ ପିଣ୍ଡିକି ଶ୍ରୀଚନ୍ଦନଙ୍କ ପରି ବହୁ ରୀତି କବି ଏହି ପନ୍ଥା ଅନୁସରଣ କରିଥିଲେ । ଏ ଅଞ୍ଚଳର ଜନଶ୍ରୁତିରୁ ଜଣାଯାଏ ସେତେବେଳେ ଆରିକିମାର ପ୍ରଖ୍ୟାତ ତାନ୍ତ୍ରିକ ଏବଂ କୃଷ୍ଣ ଭକ୍ତ ୰ ହରେକୃଷ୍ଣ ରାୟଗୁରୁ ତାଙ୍କ ଜୀବଦଶାରେ ତୀର୍ଥାଟନରେ ସୁଦୂର ବୃନ୍ଦାବନ ଯାଇଥିଲେ । ସେଠାରେ ରାଧାକୃଷ୍ଣଙ୍କ ରାସଲୀଳା ଉତ୍ସବ ଦେଖି ନିଜ ଦୁଆରେ ତାହା କରିବା ପାଇଁ ଏକୋଇଶ ଦିନ କାଳ ଗୁହାରିଆ ପଡିଥିଲେ । ଶେଷରେ ତାଙ୍କୁ ସ୍ୱପ୍ନାଦେଶ ମିଳିଥିଲା । ତାଙ୍କ ଗ୍ରାମ ଅଦୂରରେ ଥିବା ସାନପଦର ଗ୍ରାମରେ ଭକ୍ତ ପିଣ୍ଡିକିଙ୍କ ଦ୍ୱାରା ପବିତ୍ର ରାସ ପୋଥି ସମ୍ପୂର୍ଣ୍ଣ ହୋଇଅଛି । ତାଙ୍କଠାରୁ ଏହା ଆଣି ଆରିକିମାରେ ରାସ ଉତ୍ସବ କରିବାପାଇଁ ହରେକୃଷ୍ଣ ରାୟଗୁରୁ ନିର୍ଦ୍ଦେଶ ପାଇଥିଲେ । ସେ ଫେରିବା ପରେ ପିଣ୍ଡିକି ଶ୍ରୀଚନ୍ଦନଙ୍କୁ ଏଥିପାଇଁ ଭେଟିଥିଲେ । ଶ୍ରୀଚନ୍ଦନ ମଧ ଏହି ପୋଥି ଦେବା ପାଇଁ ସ୍ୱପ୍ନାଦେଶ ପାଇଥିବା କଥା ରାୟଗୁରୁଙ୍କ ଆଗରେ ପ୍ରକାଶ କରିଥିଲେ । ତାହାପରେ ଆରିକିମାରେ ରାୟଗୁରୁଙ୍କ ଦୁଆରେ ପ୍ରସ୍ତୁତ ରାସ ସ୍ଥଳୀରେ ବସନ୍ତ ରାସ ଉତ୍ସବ ବହୁ ବର୍ଷ ପର୍ଯ୍ୟନ୍ତ ଅନୁଷ୍ଠିତ ହୋଇଥିଲା । ଏହାଛଡା ଏହି ରାସ ରଣପୁରର ତତକାଳୀନ ରାଜାଙ୍କ ପୃଷ୍ଠପୋଷକତାରେ ରଣପୁର ଗଡରେ ହେବା ସଂଗେ ସଂଗେ ବହୁବର୍ଷ ପୂର୍ବରୁ ଅଦ୍ୟାବଧି ପ୍ରତ୍ୟେକ ବର୍ଷ ରାଜସୁନାଖଳା ଗ୍ରାମରେ ବସନ୍ତ ରାସ ଅନୁଷ୍ଠିତ ହେଉଅଛି । ସ୍ଥାନୀୟ ପୂର୍ବତନ ବିଧାୟକ ଶ୍ରୀଯୁକ୍ତ ସୁରେନ୍ଦ୍ର ମିଶ୍ରଙ୍କ ଠାରୁ ସଂଗୃହୀତ ତଥ୍ୟ ଅନୁସାରେ ସର୍ବପ୍ରଥମେ ଏହି ବସନ୍ତ ରାସ ସାକ୍ଷୀଗୋପାଳରେ ଅନୁଷ୍ଠିତ ହୋଇଥିଲା । ଏ ବିଷୟରେ ଅଧିକ ଅନୁସନ୍ଧାନ ଆବଶ୍ୟକ ।

ପିଣ୍ଡିକି ଶ୍ରୀଚନ୍ଦନଙ୍କ ଜୀବନୀ ବିଷୟରେ 'ଲାଲ ମାଟିର ସୌରଭ' ପୁସ୍ତକର ଲେଖକ ଶ୍ରୀ ମୁରଲୀଧର ପ୍ରଧାନ ଆଲୋକପାତ କରିଛନ୍ତି ।

ଭକ୍ତଚରଣ ଦାସ- (ସାନପଦର)

ଶ୍ରୀରାଧାକୃଷ୍ଣଲୀଳା ବିଷୟକ ଏକ ଉଚ୍ଚକୋଟୀର ଗ୍ରନ୍ଥ 'ମଥୁରା ମଙ୍ଗଳ'ର ପ୍ରଣେତା ଭକ୍ତଚରଣ ଦାସ ଅଷ୍ଟାଦଶ ଶତାବ୍ଦୀର ଜଣେ ଶ୍ରେଷ୍ଠ କବି । କବିଙ୍କ ଜନ୍ମସ୍ଥାନ ହେଉଛି ବୋଲଗଡ ନିକଟବର୍ତ୍ତୀ ସାନପଦର ଗ୍ରାମ । ସନ୍ନ୍ୟାସ-ଧର୍ମ ଗ୍ରହଣ କରିବା ପୂର୍ବରୁ ତାଙ୍କର ନାମ ଥିଲା ବୈରାଗୀଚରଣ ପଟ୍ଟନାୟକ । ରଣପୁର ଅନ୍ତର୍ଗତ ସୁନାଖଳା ଗ୍ରାମରେ ଏକ ମଠ ସ୍ଥାପନ କରି ସେଠାରେ ସେ ଜୀବନର ଅଧିକାଂଶ ସମୟ ଅତିବାହିତ କରିଥିଲେ । ଜନ୍ମସ୍ଥାନ ସାନପଦର ଗ୍ରାମରେ ମଧ ଭକ୍ତଚରଣଙ୍କ ଦୁଇଟି

ମଠ ଅଛି । ଦିବ୍ୟସିଂହ ଦେବଙ୍କ ଭଗିନୀ ମହାରାଣୀ ମୁକ୍ତା ଦେଈ ନିଜ ଗୁରୁ ଭକ୍ତଚରଣଙ୍କୁ ତନ୍ମଧ୍ୟରୁ ଗୋଟିଏ ମଠରେ ବୃତ୍ତିବାଡି ଖଞ୍ଜି ଦାନ କରିଥିଲେ ; କିନ୍ତୁ ଭକ୍ତଚରଣ ସେଠାକୁ ନ ଯାଇ ନିଜର ଜନୈକ ଶିଷ୍ୟଙ୍କୁ ସେଠାକୁ ପଠାଇଥିଲେ । ଦେହତ୍ୟାଗର ଆଠ ଦିନ ପୂର୍ବରୁ ସେ ସ୍ୱୀୟ ଅନ୍ତରଙ୍ଗ ବନ୍ଧୁ ଦାମୋଦର ଆଚାର୍ଯ୍ୟଙ୍କ ସହ ପୁରୀଧାମକୁ ଯାତ୍ରା କରିଥିଲେ ଏବଂ ସେଠାର ବାସେଳୀ ସାହିରେ ଅବସ୍ଥିତ 'ମଧୁମଙ୍ଗଳ' ରଚୟିତା ଦୁଃଖୀଶ୍ୟାମ ଦାସଙ୍କ ମଠରେ ଅବସ୍ଥାନ କରି କାର୍ତ୍ତିକ ଶୁକ୍ଳ ଏକାଦଶୀରେ ହରି ନାମ ସଂକୀର୍ତ୍ତନ କରୁ କରୁ ଇହଧାମ ତ୍ୟାଗ କରିଥିଲେ । ତାଙ୍କର ଜନ୍ମ ଓ ମୃତ୍ୟୁ ର ଖ୍ରୀଷ୍ଟାବ୍ଦ ସ୍ଥିର ରୂପେ ଜଣାଯାଏ ନାହିଁ; କିନ୍ତୁ ସେ ବୀରକେଶରୀ ଦେବଙ୍କ ରାଜତ୍ୱର ଦ୍ୱିତୀୟାର୍ଦ୍ଧରେ 'ମଥୁରାମଙ୍ଗଳ' ପ୍ରଣୟନ କରିଥିବା ସିଦ୍ଧାନ୍ତ ଗ୍ରହଣୀୟ। (୪୫)

ବଙ୍ଗଳା ସାହିତ୍ୟରେ 'ମଙ୍ଗଳ' କାବ୍ୟଗୁଡିକର ବିଶେଷ ପ୍ରସିଦ୍ଧି ଓ ଲୋକପ୍ରିୟତା ଥିଲା । 'ଚୈତନ୍ୟମଙ୍ଗଳ' ଓ 'ଅଦ୍ୱୈତମଙ୍ଗଳ' ଯଥାକ୍ରମେ ଶ୍ରୀଚୈତନ୍ୟ ଓ ଅଦ୍ୱୈତଙ୍କ ଜୀବନଚରିତ ଅବଲମ୍ବନରେ ଲିଖିତ । ଏତଦ୍‌ବ୍ୟତୀତ 'ମନସାମଙ୍ଗଳ' ନାମକ ପ୍ରାୟ ୭୦ଟି ଗ୍ରନ୍ଥ ଏବଂ ଚଉଦ ଜଣ କବିଙ୍କ ଦ୍ୱାରା ରଚିତ 'ଚଣ୍ଡୀମଙ୍ଗଳ' ଗ୍ରନ୍ଥ ଦେଖାଯାଏ । ରାୟ ଗୁଣାକାର ଭାରତ ଚନ୍ଦ୍ର ରାୟଙ୍କ 'ଅନ୍ନଦାମଙ୍ଗଳ' ପ୍ରାଚୀନ ବଙ୍ଗଳାର ଏକ ଉତ୍କୃଷ୍ଟ ଗ୍ରନ୍ଥରୂପେ ବିବେଚିତ ହୁଏ । (୪୬) କବି ଭକ୍ତଚରଣ 'ମଙ୍ଗଳ' ନାମକରଣ ପ୍ରାଚୀନ ବଙ୍ଗଳା ସାହିତ୍ୟରୁ ଗ୍ରହଣ କରିଥିଲେ ମଧ ଦୀନକୃଷ୍ଣଙ୍କ 'ରସକଲ୍ଲୋଳ' ଅନୁକରଣରେ ଏହା ରଚନା କରିଥିଲେ । ଇଂରେଜୀ ଶିକ୍ଷାର ପ୍ରସାର ପୂର୍ବରୁ ଓଡିଶାର ପ୍ରତି ଚାଟଶାଳୀରେ ଭାଗବତ, ଗୋପୀଭାଷା ସହିତ ମଥୁରାମଙ୍ଗଳର ଅଂଶବିଶେଷ ପଠିତ ହେଉଥିଲା । ମଥୁରାମଙ୍ଗଳ ବ୍ୟତୀତ କବି 'ଗୋପମଙ୍ଗଳ' ନାମକ ଗୋଟିଏ ଗ୍ରନ୍ଥ ଲେଖିଥିବାର ଶୁଣାଯାଏ । ତାଙ୍କ କୃତ ଅତ୍ୟନ୍ତ ଲୋକପ୍ରିୟ 'କଳାକଳେବର ଚଉତିଶା' ଓ 'ମନବୋଧ ଚଉତିଶା' ଦ୍ୱୟ ପ୍ରାଚୀନ ଓଡିଆ ସାହିତ୍ୟ ଭଣ୍ଡାରରେ ଦୁଇଟି ରତ୍ନ ।

ସନ୍ନ୍ୟାସ ଦୀକ୍ଷା ନେଲା ପରେ ତାଙ୍କର ପୂର୍ବନାମ ବୈରାଗୀ ଚରଣ ପରିବର୍ତ୍ତେ ଭକ୍ତଚରଣ ହୋଇଥିଲା । ବର୍ତ୍ତମାନ ସୁଦ୍ଧା ଭକ୍ତଚରଣଙ୍କ ବିଷୟରେ ଗବେଷଣା କରିଥିବା ସମସ୍ତ ଗବେଷକଙ୍କର ମତରୁ ଗୋଟିଏ କଥା ଦେଖିବାକୁ ମିଳେ ଭକ୍ତଚରଣ ଅନ୍ୟ କବିଙ୍କ ପରି ତାଙ୍କର ପିତାମାତାଙ୍କ ନାମ କୌଣସି ଗ୍ରନ୍ଥରେ ଦେଇନାହାନ୍ତି । ସେ ମୃତ୍ୟୁର ୭ ଦିନ ପୂର୍ବରୁ ବୋଲଗଡ ମଠରୁ ହରିକୀର୍ତ୍ତନ କରି ପୁରୀ ଅଭିମୁଖେ ଯାତ୍ରାକରି ସେଠାରେ ଏକ ମଠରେ ହରିକୀର୍ତ୍ତନ କରୁଥିବା ଅବସ୍ଥାରେ ସ୍ୱର୍ଗାରୋହଣ କରିଥିବା ଡଃ. ପ୍ରଫୁଲ୍ଲ ପଟ୍ଟନାୟକ ଭକ୍ତଚରଣଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି । ଏହାଛଡା

ପାଞ୍ଚଗଡରେ ସେତେବେଳେ ଶାସନ କରୁଥିବା ସମ୍ବଲପୁର ରାଣୀ ମୁକ୍ତାଦେଈଙ୍କର କର୍ଣ୍ଣମନ୍ତ୍ରଗୁରୁ ଥିଲେ ଏବଂ ସାନପଦରରେ ଥିବା ଭକ୍ତଚରଣ ମଠକୁ ବହୁ ଭୂସମ୍ପତ୍ତି ରାଣୀ ମୁକ୍ତାଦେଈ ଦାନ କରିଥିଲେ । କବିଙ୍କର ମୂଳ ଜନ୍ମସ୍ଥାନ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ । ଭକ୍ତଚରଣଙ୍କ ସ୍ମୃତିରେ ସାନପଦର ଠାରେ ରାଜ୍ୟ ସଂସ୍କୃତି ବିଭାଗ ତରଫରୁ ଭକ୍ତଚରଣ ସ୍ମୃତି ସଂସଦ ନାମରେ ଏକ ଭବନ ନିର୍ମାଣ କରାଯାଇଅଛି । ଏବଂ ଭକ୍ତଚରଣଙ୍କର ଜୀବନର ବହୁ ସମୟ ରାଜସୁନାଖଳା ଗ୍ରାମରେ ଅତିବାହିତ ହୋଇଥିବାରୁ ତାଙ୍କର ପବିତ୍ର ସ୍ମୃତିକୁ ଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ମାସ ଶେଷ ଭାଗରେ ସ୍ଥାନୀୟ ଭକ୍ତଚରଣ କ୍ଲବ ତରଫରୁ ୫ ଦିନ ବ୍ୟାପି କବିଙ୍କର ସ୍ମୃତି ସଭା କରାଯାଉଅଛି ।

ଭକ୍ତଚରଣଙ୍କର ପୂର୍ଣ୍ଣାଙ୍ଗ ଜୀବନୀ ସମ୍ବଳିତ ତଥ୍ୟ ଭିତ୍ତିକ ବିଷୟ ବସ୍ତୁ ଉପରେ ଡଃ. ପ୍ରଫୁଲ୍ଲ କୁମାର ପଟ୍ଟନାୟକ ତାଙ୍କ ଲିଖିତ ବହି 'ଯଶୋଦେହେ ଆୟୁଷ୍ମାନ'ରେ ଲିପିବଦ୍ଧ କରିଛନ୍ତି । ଡଃ. ପଟ୍ଟନାୟକ କବିଙ୍କ ଶେଷ ଜୀବନ ବିଷୟରେ ଉକ୍ତ ବହିରେ ଦେଇଥିବା ତଥ୍ୟ ନିମ୍ନରେ ଦିଆଗଲା ।

<u>ଶେଷ ଜୀବନ</u> - ଭକ୍ତଚରଣ ୮୫ ବର୍ଷ ଜୀବିତ ଥିବାର ଜଣାଯାଏ । ମୃତ୍ୟୁର ୮ ଦିନ ପୂର୍ବରୁ ସେ ବୋଲଗଡରେ ଥିଲେ । ସେଠାରୁ ସଂକୀର୍ତ୍ତନ କରି ପୁରୀ ଶ୍ରୀକ୍ଷେତ୍ରକୁ ଗଲେ ଓ ସେଠାରେ ଥିବା ଦୁଃଖିଶ୍ୟାମ ମଠରେ ରହିଲେ । ୧୮୧୩ ମସିହା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ କୀର୍ତ୍ତନ କରୁଥିବା ଅବସ୍ଥାରେ ତାଙ୍କର ମହାପ୍ରୟାଣ ଘଟିଲା । ୧୮୧୪ ମସିହାରେ ସେ ଦେହତ୍ୟାଗ କରିଥିଲେ ବୋଲି ଆଲୋଚକ ଫକୀର ଦାସ ମତ ଦିଅନ୍ତି ।

ଭକ୍ତଚରଣ ବହୁ କାବ୍ୟ କବିତା ରଚନା କରିନାହାନ୍ତି । ସେ ଥିଲେ ମୁଖ୍ୟତଃ ଜଣେ ଭକ୍ତ । ଶ୍ରୀକୃଷ୍ଣଙ୍କ ମାହାତ୍ମ୍ୟକୁ କାବ୍ୟର ଛତ୍ରେ ଛତ୍ରେ ପ୍ରକାଶ କରିଛନ୍ତି । ସେ ପୁଣି ଭକ୍ତି ମାଧମରେ ଜ୍ଞାନମିଶ୍ରା ପ୍ରେମଭକ୍ତିକୁ ପ୍ରାଧାନ୍ୟ ଦେଇଛନ୍ତି । 'ମଥୁରା ମଙ୍ଗଳ' କାବ୍ୟରେ ସେ ପ୍ରେମ ଭାବକୁ ମାନବିକ ଦୃଷ୍ଟିରେ ଯେପରି ଦେଖିଛନ୍ତି ତାହା ତାଙ୍କୁ ଯେ ପ୍ରେମିକ କବିର ଗୌରବ ଆଣିଦେଇଛି ଏଥିରେ ଦ୍ୱିମତର ଆବଶ୍ୟକତା ନାହିଁ ।

ଭକ୍ତଚରଣଙ୍କ ବିଷୟରେ ରାଜ୍ୟ ସଂସ୍କୃତି ବିଭାଗର ଜଣେ ବରିଷ୍ଠ ଅଧିକାରୀ ତଥା ବିଶିଷ୍ଟ ଗବେଷକ ୰ ଡଃ. ଅର୍ଜୁନ ଯୋଷୀ ତାଙ୍କ ଲିଖିତ "ଓଡିଶାର ଐତିହ୍ୟ ଓ ସଂସ୍କୃତି" ପୁସ୍ତକର ୨୯ ପୃଷ୍ଠାରେ ଦେଇଥିବା ମତ ନିମ୍ନରେ ଦିଆଗଲା ।

- "ଭକ୍ତଚରଣ ଦାସ (୧୭୮୦-୧୮୮୫) - ମଥୁରା ମଙ୍ଗଳ, ମନବୋଧ, ଚଉତିଶାର ଲେଖକ ଭାବରେ ଉତ୍କଳର ଗ୍ରାମେ ଗ୍ରାମେ ସୁପରିଚିତ । ମଥୁରା ମଙ୍ଗଳର

ଛନ୍ଦ, ଧ୍ୱନି ଏବଂ ଆଧ୍ୟାତ୍ମିକ ଭାବ ଗ୍ରନ୍ଥଟିକୁ ଜନପ୍ରିୟ କରିପାରିଅଛି । କବିଙ୍କର ଜନ୍ମପୀଠରେ ସାଂସ୍କୃତିକ ବ୍ୟାପାର ବିଭାଗ ତରଫରୁ ଗୋଟିଏ ସ୍ମାରକୀ ଭବନ ନିର୍ମାଣ କରାଯାଇଅଛି । ଏହି ଗ୍ରାମରେ ଭକ୍ତଚରଣଙ୍କ ମଠ ଏବଂ ଆରାଧ୍ୟ ଦେବତା ରାଧାକୃଷ୍ଣ ବର୍ତ୍ତମାନ ପୂଜିତ ହେଉଛନ୍ତି ।"

କିଛିବର୍ଷ ହେଲା ଲେଖକର ଅନ୍ତରଙ୍ଗ ସହପାଠୀ ଟେଲିକମ ଇଞ୍ଜିନିୟର ରାସବିହାରୀ ବେହେରାଙ୍କ ସଭାପତିତ୍ୱରେ ଭକ୍ତଚରଣ ସ୍ମାରକୀ କମିଟି ସାନପଦର ଗ୍ରାମରେ ଗଠନ କରାଯାଇ ପ୍ରତିବର୍ଷ କାର୍ତ୍ତିକ ମାସ ଶୁକ୍ଳପକ୍ଷ ଏକାଦଶୀ ଏବଂ ଦ୍ୱାଦଶୀ ତିଥିରେ ଭକ୍ତଚରଣ ସ୍ମାରକୀ ଉତ୍ସବ ପାଳିତ ହେଉଅଛି । ଏହି କମିଟିର କାର୍ଯ୍ୟକାରୀ ସଭାପତି ଗୌରାଙ୍ଗ ଚରଣ ଛୋଟରାୟ, ପ୍ରଧାନ ଶିକ୍ଷକ, ଭକ୍ତଚରଣ ବିଦ୍ୟାପୀଠ, ସାନପଦର ଏବଂ ତ୍ରିଲୋଚନ ମହାନ୍ତି, ସଂପାଦକ ଭାବରେ କାର୍ଯ୍ୟନିର୍ବାହ କରୁଛନ୍ତି । ଡାକ୍ତର କାଳୀପ୍ରସାଦ ମଙ୍ଗରାଜ ଏହାର ଉପଦେଷ୍ଟା ଏବଂ ସମସ୍ତ ଗ୍ରାମବାସୀଙ୍କ ସହଯୋଗରେ ଏହି କାର୍ଯ୍ୟ ସୁଚାରୁ ରୂପେ ସମ୍ପାଦିତ ହେଉଅଛି । ୰ ଗଙ୍ଗାଧର ପାଇକରାୟ ବିଧାୟକ ଥିଲା ବେଳେ ତାଙ୍କ ଉଦ୍ୟମରେ ସାନପଦର ଗ୍ରାମର ପ୍ରବେଶ ଦ୍ୱାରରେ ରାଜ୍ୟ ସାଂସ୍କୃତିକ ବିଭାଗ ତରଫରୁ ଏକ ସ୍ମୃତି ଭବନ କବିଙ୍କ ନାମରେ ସ୍ଥାପିତ ହୋଇଅଛି ।

ବର୍ତ୍ତମାନ ଭକ୍ତଚରଣଙ୍କର ଲେଖା ସମ୍ପର୍କରେ ତାଙ୍କ ଗ୍ରାମରୁ ସଂଗୃହୀତ ତଥ୍ୟ ଅନୁସାରେ ମଥୁରା ମଙ୍ଗଳ, ଗୋପ ମଙ୍ଗଳ, ମନବୋଧ ଚଉତିଶା, କଳା କଳେବର ଚଉତିଶା, ମନଶିକ୍ଷା ଏବଂ ବୈଦ୍ୟଶାସ୍ତ୍ର ପ୍ରମୁଖ ପ୍ରସିଦ୍ଧ । ୰ ଗଙ୍ଗାଧର ପାଇକରାୟଙ୍କ ସୁପୁତ୍ର ରାଜ୍ୟର ବରିଷ୍ଠ ଆଇ.ଏ.ଏସ. ଅଫିସର ଶ୍ରୀକାନ୍ତ ପାଇକରାୟ ଏବଂ ତାଙ୍କର ଭାଇ ବିଶିଷ୍ଟ କମ୍ୟୁନିଷ୍ଟ ନେତା ବସନ୍ତ ପାଇକରାୟଙ୍କ ପ୍ରଚେଷ୍ଟାରେ ସାନପଦର ଠାରେ ୨୦୦୫ ମସିହା ଅଗଷ୍ଟ ମାସ ଶେଷ ଭାଗରେ ଅମର କବି ଭକ୍ତଚରଣ ଦନେଇ ଦାସ ପିଣ୍ଡିକି ଶ୍ରୀଚନ୍ଦନଙ୍କର ପ୍ରତିମୂର୍ତ୍ତି ସହ ୰ ଗଙ୍ଗାଧର ପାଇକରାୟଙ୍କର ପ୍ରତିମୂର୍ତ୍ତି ଉନ୍ମୋଚିତ ହୋଇଅଛି ।

କରୁଣାକର ପଟ୍ଟନାୟକ- (କପାସିଆ)

ସେ ବଡମ୍ବା ଗଡର ବେବର୍ତ୍ତା ଭାଗୀରଥି ପଟ୍ଟନାୟକଙ୍କ ନାତି ଓ ଗଦାଧର ପଟ୍ଟନାୟକଙ୍କ ପୁତ୍ର ଥିଲେ । 'ଲୀଳାବତୀ ବିସ୍ତରଃ' ନାମକ ଗଣିତ ଟୀକାରୁ ଜଣାଯାଏ ଯେ, ପୂର୍ବୋକ୍ତ ଭାଗୀରଥି ପଟ୍ଟନାୟକଙ୍କ ଔରସରେ ଗୌତମୀଙ୍କ ଗର୍ଭରୁ ଚନ୍ଦ୍ରଶେଖର ପଟ୍ଟନାୟକ ଜନ୍ମଗ୍ରହଣ କରିଥିଲେ; ଅତଏବ ସେ ଆଲୋଚ୍ୟ କରୁଣାକରଙ୍କ ଜ୍ୟେଷ୍ଠ ପିତୃବ୍ୟ ଥିଲେ । ଚନ୍ଦ୍ରଶେଖର ୪୮୪୫ କଳିଯୁଗାବ୍ଦ ବା ୧୭୪୪ ଖ୍ରୀଷ୍ଟାବ୍ଦରେ

ଲୀଳାବତୀ ଟୀକା ସମାପ୍ତ କରିଥିଲେ । କରୁଣାକର ନିଜର ନିମ୍ନୋକ୍ତ ପରିଚୟ ପ୍ରଦାନ କରିଛନ୍ତି ।




(୪୭) ଶ୍ରୀ ସୁଧାକର ପଟ୍ଟନାୟକଙ୍କ ଦ୍ୱାରା ସଂପାଦିତ ଓ ବହୁ ତଥ୍ୟ-ସମ୍ବଳିତ 'ରାଜା ସୋମନାଥ ସିଂହ ଜଗଦେବ' ପୁସ୍ତକ ଦ୍ରଷ୍ଟବ୍ୟ ।

(୪୮) ଏହାର ଖଣ୍ଡିଏ ପୋଥି ପ୍ରାଦେଶିକ ମିଉଜିୟମରେ ସଂରକ୍ଷିତ ।

" ବୃହଦାମ୍ର ଦୁର୍ଗ ବ୍ୟବହର୍ତ୍ତା ଭାଗୀରଥି ସୁପଟ୍ଟନାୟକ
କରୁଣା-କୁଳ-କୁମୁଦ୍ସୁଧାକର ସକଳ ଗୁଣ ଗ୍ଳାୟକ ।୧୯
ତାହାଙ୍କ କନିଷ୍ଠ ସୁତ ଗଦାଧର ପଟ୍ଟନାୟକ ବିଖ୍ୟାତ
କରୁଣାକର ନାମଧେୟ ମୋହର ଏହାଙ୍କ କନିଷ୍ଠ ସୁତ । ୨୦
ଶ୍ରୀମୁକୁନ୍ଦଦେବ ମହାରାଜାଙ୍କର ଦଶ ଅଙ୍କ ବୃଷ ମାସେ
ତାଙ୍କ ରାଜ୍ୟ ବୋଲଗଡ ତଳ କପାସିଆ ଗ୍ରାମେ ରହି ତୋଷେ ।୨୧
ଶ୍ରୀ ଗୁରୁଚରଣସେବାରୁ ପ୍ରକାଶ କଲି କୃଷ୍ଣରସାମୃତ
ସାଧୁ ଜନେ ଦୋଷ ନ ଧର ମୋଠାରେ ହୋଇ ଅତି ତୋଷଚିତ୍ତ ।୨୨"

ଚନ୍ଦ୍ରଶେଖର ୧୭୪୪ରେ ଗଣିତ ଟୀକା ସମାପ୍ତ କରିଥିବାରୁ ତାଙ୍କ ପୁତୁରା କରୁଣାକର ଏହି ସମୟର ପରବର୍ତ୍ତୀ ହେବା ସୁନିଶ୍ଚିତ । ତେଣୁ ଗ୍ରନ୍ଥ ବର୍ଣ୍ଣିତ ମୁକୁନ୍ଦ ଦେବ ବ୍ରିଟିଶମାନଙ୍କ ସଙ୍ଗେ ଯୁଦ୍ଧ କରିଥିବା ଦ୍ୱିତୀୟ ମୁକୁନ୍ଦଦେବଙ୍କ ସହିତ ଚିହ୍ନିତ ହୋଇପାରନ୍ତି । ତାଙ୍କର ଦଶ ଅଙ୍କ ୧୮୦୬ ଖ୍ରୀଷ୍ଟାବ୍ଦରେ ପଡିଥିଲା । କାବ୍ୟଟି ସେ ଯୁଗର ଅନ୍ୟାନ୍ୟ ବହୁ କାବ୍ୟ ପରି ଶ୍ରୀରାଧାକୃଷ୍ଣଲୀଳା ଅବଲମ୍ବନରେ ଲିଖିତ । ଏହା ଅଦ୍ୟାବଧି ଅପ୍ରକାଶିତ । (୪୯) ଓଡିଶା ସାହିତ୍ୟ ଏକାଡେମୀ ସଂପାଦକ ଦୁଃଖିଶ୍ୟାମ ପଟ୍ଟନାୟକଙ୍କ ଦ୍ୱାରା ପ୍ରକାଶିତ ।

ଏହି ମହାନ କବି ବଡମ୍ବା ରାଜ୍ୟରୁ ଆସି ବୋଲଗଡ ନିକଟସ୍ଥ କପାସିଆ ଗ୍ରାମରେ ବସବାସ କରିଥିଲେ । ତାଙ୍କ ଦ୍ୱାରା ରଚିତ 'କୃଷ୍ଣ ରସାମୃତ' କାବ୍ୟ ଉପରେ ଗବେଷଣା କରି ଓଡିଶା ସାହିତ୍ୟ ଏକାଡେମୀର ପୂର୍ବତନ ସଂପାଦକ ଦୁଃଖିଶ୍ୟାମ ପଟ୍ଟନାୟକ ଏକ ପୁସ୍ତକ ପ୍ରକାଶ କରିଛନ୍ତି । ସେ ପୁସ୍ତକ ଓଡିଶାର ବହୁ ପାଠାଗାରରେ ଗଚ୍ଛିତ ଅଛି । ଲେଖକ ବହୁବର୍ଷ ପୂର୍ବେ ନିକଟସ୍ଥ ଡାବରଧୂଆ ପାଟଣା ତରୁଣ କ୍ଲବ ପାଠାଗାରରୁ ଶ୍ରଦ୍ଧେୟ ସତ୍ୟବାଦୀ ଚୌଧୁରୀଙ୍କ ସହାୟତାରେ ଉକ୍ତ ପୁସ୍ତକ ପାଠ କରିବାର ସୁଯୋଗ ପାଇଥିଲା ।

ପାଞ୍ଚଗଡର କାବ୍ୟ, ସାହିତ୍ୟ ଏବଂ ସେମାନଙ୍କର ରଚୟିତାଙ୍କ ବିଷୟରେ ଇତିହାସ ଝଲକ ପୁସ୍ତକରେ ଐତିହାସିକ ମୁରଲୀଧର ପ୍ରଧାନ "ଖୋରଧାର ସାହିତ୍ୟକ ପ୍ରତିଭା" ଶିରୋନାମାରେ ଏକ ବିବରଣୀ ପ୍ରଦାନ କରିଛନ୍ତି ।

ଅନଙ୍ଗ ନରେନ୍ଦ୍ର- (ବାଙ୍କୋଇ)

କବି ଅନଙ୍ଗନରେନ୍ଦ୍ର ଓଡିଶାର ଗଣକବି ବା ଲୋକକବି ଭାବରେ ସ୍ୱୀକୃତ । ଶ୍ରୀରାମଲୀଳା କାବ୍ୟର ସେ ରଚୟିତା ଅଟନ୍ତି । ତାଙ୍କର ଏହି କାବ୍ୟ ସମଗ୍ର ଓଡିଶାର ଗାଁ ଗହଳିରେ ରାମନବମୀଠାରୁ ଶାସ୍ତ୍ରୀୟ ବିଧିବିଧାନ ଅନୁସାରେ ଗ୍ରାମାଞ୍ଚଳରେ ନିଷ୍ଠାର ସହିତ ଗ୍ରାମବାସୀମାନେ ଭାଗବତ ଘରେ ପାଠକରିବା ସଂଗେ ସଂଗେ ଅନେକ ଗ୍ରାମରେ ଏହାକୁ ନାଟ୍ୟରୂପ ଦିଆଯାଇଥାଏ । ରାମଲୀଳା ଗାନରେ ପଖଜ, ଗିନି ବଜାଇବା ସହ ପାଳିଆମାନେ ଗାୟକ ବୋଲୁଥିବା ଗୀତର ପାଳିଧରି ରାମଲୀଳା ପରିବେଷଣ କରନ୍ତି । ଯେଉଁଠାରେ ନାଟ୍ୟରୂପ ଦିଆଯାଏ, ରାମନବମୀ ତିଥିର ପୂର୍ବରୁ ସ୍ଥାନୀୟ ଗ୍ରାମବାସୀମାନେ ରାମଲୀଳାର ବିଭିନ୍ନ ଚରିତ୍ରରେ ଅଂଶଗ୍ରହଣ କାରୀମାନଙ୍କୁ ଆଖଡା ମାଧ୍ୟମରେ ନାଟ ଶିଖାଯାଇଥାଏ । କଠୋର ନିୟମ ପାଳନ କରି ଏଥିରେ ଅଂଶଗ୍ରହଣକାରୀ କଳାକାରମାନେ ରାମନବମୀ ଠାରୁ ରାମଲୀଳା ନାଟକ କରିଥାନ୍ତି । ପାଞ୍ଚଗଡ ଅଞ୍ଚଳର ଅନ୍ୟତମ ମୁଖ୍ୟଗଡ ବାଙ୍କୋଇ ଗଡରେ କବି ଅନଙ୍ଗ ନରେନ୍ଦ୍ର ସପ୍ତଦଶ ଶତାବ୍ଦୀର ଶେଷଭାଗରେ ଜନ୍ମ ଗ୍ରହଣ କରିଥିଲେ । ପରବର୍ତ୍ତୀ କାଳରେ ତାଙ୍କର ଏହି ମହାନ କାବ୍ୟ ଭୁବନେଶ୍ୱରର ରତ୍ନାକର ଗର୍ଗବଟୁଙ୍କ ଦ୍ୱାରା ମୁଦ୍ରଣ କରାଯାଇ ପ୍ରସାର କରାଯାଇଥିଲା । ଏହି କବିଙ୍କ ବିଷୟରେ ବୋଲଗଡ ଅଞ୍ଚଳରେ ଜଣେ ପୂର୍ବତନ ପ୍ରାଥମିକ ଶିକ୍ଷକ ପରିକ୍ଷିତ ଖଣ୍ଡେୟିତ ରାୟ ବହୁବର୍ଷ ଗବେଷଣା କରି ଏକ ପ୍ରବନ୍ଧ 'ନନ୍ଦିଘୋଷ' ସାଂସ୍କୃତିକ ଅନୁଷ୍ଠାନ ୪ର୍ଥ ବାର୍ଷିକ ଉତ୍ସବ ସାହିତ୍ୟ ସଭାରେ ପାଠକରିଥିଲେ । ତାହା ବାମନ ପ୍ରଦୀପ ପତ୍ରିକାରେ ଲେଖକ ପ୍ରକାଶିତ କରିଥିଲେ । ଏହାଛଡା ଅନଙ୍ଗନରେନ୍ଦ୍ରଙ୍କ ଜୀବନୀ ଉପରେ ଏକ ପ୍ରବନ୍ଧ

କବିଙ୍କର ଗୁରୁ କନ୍ତାଇଲୋ ମଠର ପୂର୍ବତନ ମହନ୍ତ (ରାମରନ୍ଦ ଦାସ) ଶିରୋନାମାରେ ଶ୍ରୀ କାଳିଚରଣ ଜୟସିଂ, ବାଙ୍କୋଇ କଲେଜରୁ ପ୍ରକାଶିତ କାଳୀକଲମ ପତ୍ରିକାରେ ପ୍ରକାଶିତ କରିଥିଲେ ।

କବି ନିଜେ ତାଙ୍କ ବିଷୟରେ ଲେଖିଥିବା ତଥ୍ୟ ସହ ଗୁରୁବନ୍ଦନା "ଶ୍ରୀ ରାମଲୀଳା" କାବ୍ୟରୁ ଏଠାରେ ଦିଆଗଲା ।

"ଅନଙ୍ଗ ନରେନ୍ଦ୍ର ମୋ ନାମ ଜାତି ଅଟଇ ଓଡ
ଓଡ ଦେଶ ପଞ୍ଚଦୁର୍ଗରେ ବାସ ବାଙ୍କୋଇ ଗଡ ।"

ଗୁରୁବନ୍ଦନା

"ସେ ମହାପୁରଷ ଅନ୍ତରେ ଦେବଦାସ ଗୋସାଇଁ
ପାଞ୍ଚଗୌଡ ରାଜା ମହନ୍ତ ସୀତା ଶୀରାମଧାୟୀ,
ଲଛମନବାଲା ପୂଜନେ କନ୍ତାଇଲୋରେ ମଠ
ସେହି ସ୍ୱାମୀଙ୍କର ଦାସ ମୁଁ ଅଟେ ଚେଲାରେ ଶ୍ରେଷ୍ଠ"

ଅଦ୍ୟାବଧି ଏହି ରାମଲୀଳା ପବିତ୍ର ରାମନବମୀ ଠାରୁ ପାଞ୍ଚଗଡର ବାଙ୍କୋଇ ଗଡ, ହାଟବସ୍ତ, ଆରିକମା, ସାନପଦର, କପାସିଆ, ନୟାପାଟଣା, ଅରଖପଲ୍ଲୀ, ଗୋପାଳୀପଦା, ଚମ୍ପାଇଲୋ ଏବଂ ବୋଲଗଡ ପ୍ରଭୃତି ଗ୍ରାମରେ ରାମଲୀଳା ନାଟ ଅନୁଷ୍ଠିତ ହେଉଅଛି । ଏହାଛଡା ଅନ୍ୟ ସମସ୍ତ ଗ୍ରାମରେ ଏହି ତିଥିରୁ କେବଳ ଗୁରୁବାର ଛଡା ଅନ୍ୟଦିନ ମାନଙ୍କରେ ଶେଷ ହେଲା ପର୍ଯ୍ୟନ୍ତ ପାଠ କରାଯାଇଥାଏ । ଆଜି ରାମାୟଣ ପୃଥିବୀର ଏକ ଶ୍ରେଷ୍ଠ ଜନାଦୃତ ଧର୍ମଶାସ୍ତ୍ର ରୂପେ ଜାତିସଂଘ ଦ୍ୱାରା ସ୍ୱୀକୃତି ଲାଭ କରିବାକୁ ଯାଉଛି । ଭାରତୀୟ ସଂସ୍କୃତିର ଏହି ମହାନ ପରମ୍ପରା ବିଶ୍ୱର ବିଭିନ୍ନ ଜାତି ଏବଂ ଧର୍ମାବଲମ୍ବୀମାନେ ନିଜର ପ୍ରାଚୀନ ସଂସ୍କୃତି ଭାବେ ଗ୍ରହଣ କରିନେଇଛନ୍ତି । ଏଥିପାଇଁ ଆମେ ଭାରତୀୟ ଭାବେ ଗର୍ବିତ ।

ସାରଙ୍ଗ କବିର- (ବାଙ୍କୋଇ)

୧୭୩୩ ରୁ ୧୭୩୬ ପର୍ଯ୍ୟନ୍ତ ଖୋର୍ଦ୍ଧା ଗଜପତି ୨ୟ ରାମଚନ୍ଦ୍ରଙ୍କ ରାଜତ୍ୱ ସମୟରେ କବି ସାରଙ୍ଗ କବିର ବାଙ୍କୋଇ ଗଡରେ ଜନ୍ମଗ୍ରହଣ କରିଥିଲେ । ସେ ଜାତିରେ ତନ୍ତୀ ଥିଲେ । ଜ୍ଞାନପୀଠ ବିଜେତା ମହାନ ସାହିତ୍ୟିକ ଗୋପୀନାଥ ମହାନ୍ତି ବାଙ୍କୋଇ ଗଡରୁ କବିଙ୍କ ଦ୍ୱାରା ଲିଖିତ କଳିଯୁଗ ପୁରାଣ ର ତାଳପତ୍ର ପୋଥି ନେଇ ଏ କବିଙ୍କୁ ଲୋକଲୋଚନକୁ ଆଣିବା ନିମନ୍ତେ ତାଙ୍କର ସୁପୁତ୍ର ସେତେବେଳେ କେନ୍ଦ୍ରାପଡା କଲେଜରେ ଅଧାପକ ଥିବା ଶ୍ରୀ ଅମୃତନାଥ ମହାନ୍ତିଙ୍କ ଦ୍ୱାରା ଏକ ଗବେଷଣା ମୂଳକ

ପ୍ରବନ୍ଧ ଓଡିଶାର ଉଚ୍ଚ ପ୍ରତିଷ୍ଠିତ ପତ୍ରିକା 'ସହକାର' ରେ ପ୍ରକାଶିତ କରିଥିଲେ । ସେହି ପ୍ରବନ୍ଧ ଗତ ୭୦ ଦଶକରେ ଲେଖକ ପାଠ କରିଥିଲା । ଏବଂ ନିକଟରେ ଭୁବନେଶ୍ୱର ଠାରେ ଅମୃତନାଥ ବାବୁଙ୍କ ସହ ଏ ବିଷୟରେ ଆଲୋଚନା କରିବାର ସୁଯୋଗ ମଧ ପାଇଥିଲା । ଏଥିରେ ଅମୃତ ବାବୁ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରିଥିଲେ । ସାରଙ୍ଗ କବିରଙ୍କ ଦ୍ୱାରା ଲିଖିତ 'କଳିଯୁଗ ପୁରାଣ'ର ବିଷୟବସ୍ତୁ ର ମୁଖ୍ୟ ଅଂଶ ୨ୟ ରାମଚନ୍ଦ୍ର ଦେବଙ୍କର ତକି ଖାଁ ସହ ଯୁଦ୍ଧ ବୃତ୍ତାନ୍ତ ଏବଂ ଗଜପତି ଏକଦା ପାଞ୍ଚଗଡର ଆରିକମା ଗ୍ରାମରେ ରାତ୍ରିଯାପନ କରିବା ବିଷୟ ଏଥିରେ ବର୍ଣ୍ଣନା ଅଛି । ଗଜପତି ରାମଚନ୍ଦ୍ର ସେତେବେଳେ ଆରିକମା ଗ୍ରାମର ଖଣ୍ଡାଧୂଆ ପୋଖରୀ ହୁଡାରେ ଥିବା ଓସ୍ତ ଗଛରେ ନିଜର ଘୋଡାକୁ ବାନ୍ଧି ସେଠାରେ ବିଶ୍ରାମ ନେଇ ସକାଳୁ ସେଇ ପୋଖରୀରେ ସ୍ନାନ ସାରି ଆରିକମାରେ ବିଜେ କରିଥିବା ଶଙ୍କରେଶ୍ୱର ମହାଦେବଙ୍କୁ ଦର୍ଶନ କରି ନରସିଂହପୁର ଅଭିମୁଖେ ଯାତ୍ରା କରିଥିଲେ । ବର୍ତ୍ତମାନ ଆରିକମାର ସେହି ପୋଖରୀର ନାମ ଖଣ୍ଡୁଆଳ ପୋଖରୀ । ସେହି ପୁରାତନ ଓସ୍ତ ଗଛ ପୋଖରୀ ହୁଡାରେ ରହିବା ସହ ନିକଟରେ ଶଙ୍କରପୁର ମୌଜାରେ ଶଙ୍କରେଶ୍ୱର ମହାଦେବ ବିରାଜମାନ କରିଛନ୍ତି । କବିଙ୍କ ବର୍ଣ୍ଣନା ସହ ଉକ୍ତ ତଥ୍ୟ ସମ୍ପୂର୍ଣ୍ଣ ମିଶିଯାଉଅଛି । ଏହାଛଡା କବିଙ୍କ ବର୍ଣ୍ଣନା ଅନୁସାରେ ଗଜପତିଙ୍କ ସହ ତାଙ୍କର ସେନାପତି ବକ୍ସି ବେଣୁଭ୍ରମରବର ରାୟ ବିଶ୍ୱାସଘାତକତା କରିଥିବାରୁ ତାଙ୍କୁ ବରୁଣେଇ ଦୁର୍ଗରେ ହତ୍ୟା କରିବା ସଂଗେ ସଂଗେ ତାଙ୍କ ସ୍ଥାନରେ ଜଣେ ବିଶ୍ୱସ୍ତ ମୁସଲମାନଙ୍କୁ ସେନାପତି ରୂପେ ନିଯୁକ୍ତ ଦେଇଥିବା କଥା ଜଣାଯାଏ । ଏ କବିଙ୍କ ବିଷୟରେ ଅଧିକ ଅନୁସନ୍ଧାନ ଆବଶ୍ୟକ ।

### ବଣ୍ୟ ଦୁଷର - (ବୋଲଗଡ)

ଏହି ମହାନ କବି ଓଡିଶାରେ ବହୁଳ ଭାବରେ ପ୍ରଚଳିତ ଖୁଦୁରୁକୁଣୀ ଓଷାର ଲେଖକ ଅଟନ୍ତି । ବୋଲଗଡ ଗ୍ରାମ ସାମିଲି ତୃତୀୟାପଡା ମଉଜାରେ ବିଖ୍ୟାତ ଚଉଧୁରୀ ବଂଶରେ ୨୦୦ ବର୍ଷ ପୂର୍ବେ ସେ ଜନ୍ମ ଗ୍ରହଣ କରିଥିଲେ । ସେ ବୈଶ୍ୟ ବଣିଆ ଜାତିରେ ଜନ୍ମ ହୋଇଥିବାରୁ ବୈଷ୍ଣବ ଧର୍ମ ଗ୍ରହଣ କରି ସାଧୁ ହେବା ପରେ ତାଙ୍କ ନାମରେ ଦୁଷର ପୂର୍ବରୁ ବଣ୍ୟ ଶବ୍ଦ ବ୍ୟବହାର କରିଅଛନ୍ତି । ତାଙ୍କର ଭାଇ ହରିବଣ୍ୟ 'ନଳଚରିତ' ନାମରେ ଏକ କାବ୍ୟ ରଚନା କରି ଥିଲେ । ଓଡିଶାରେ ଖୁଦୁରୁକୁଣୀ ଓଷା ବା ତଅପୋଇ କଥା ପ୍ରାଚୀନ ଉତ୍କଳୀୟ ନୌବାଣିଜ୍ୟ ପରମ୍ପରାର ସାମାଜିକ ଚିତ୍ର ଅଟେ । ସେତେବେଳେ ପ୍ରାଚୀନ ଉତ୍କଳ ଲୋକ କଥାରେ ଚାରି ସଂଗାତର ଉପାଖ୍ୟାନ ଅଛି । ଚାରି ସଂଗାତ ହେଲେ ରାଜା ପୁଅ, ମନ୍ତ୍ରୀପୁଅ, କଟୁଆଳ ପୁଅ ଏବଂ ସାଧବ ପୁଅ । ସେମାନେ ସମାଜର ନିୟନ୍ତ୍ରକ ଥିଲେ । ରାଜା, ମନ୍ତ୍ରୀ,

ବହୁଆଳଙ୍କର ବିଷୟରେ ଅସୁମାରୀ ଲୋକ କଥା ଥିଲେ ମଧ ତଅପୋଇ କଥା ସାଧବ ପୁଅ ଉପରେ ପର୍ଯ୍ୟବେସିତ । ଏହାର କବି ବଣ୍ୟ (ବଣିକ)ଜାତିର ଥିବାରୁ ଏହି ପରମ୍ପରାକୁ ଆଧାର କରି ସେ ଖୁଦୁରୁକୁଣୀ ଓଷା କଥା ଲେଖି ଥିବାର ଅନୁମିତ ହୁଏ । ସଂପୁର ଗ୍ରାମର କବି ୰ ତାରେଶ୍ୱର ଚୌଧୁରୀ ବ୍ରହ୍ମଗିରୀ ଅଞ୍ଚଳର ଚିଲିକା ତୀରରେ ଜୀବନର କେତେକ କାଳ କାଟିଥିଲେ । ଏହି ଲୋକ କଥା ଉପରେ ଆଧାରିତ ସାଧବ ଗ୍ରାମ, ମଙ୍ଗଳା ପୀଠ, ତଅପୋଇ ଛେଳି ଚରାଉଥିବାର ଜଙ୍ଗଲ ସେ ଅଞ୍ଚଳରେ ରହିଥିବାର କଥା ଏକଦା ଲେଖକଙ୍କୁ କହିଥିଲେ । ବର୍ତ୍ତମାନ ସମଗ୍ର ଉପକୂଳ ଜିଲ୍ଲାରେ ଖୁଦୁରୁକୁଣୀ ଓଷା ଭାଦ୍ରବ ମାସର ପ୍ରତ୍ୟେକ ରବିବାରେ କୁମାରୀ ଝିଅମାନଙ୍କର ମୁଖ୍ୟ ଓଷା । କଟକ ଚାଉଳିଆଗଂଜ ଅଞ୍ଚଳରେ ଏହା ଏକ ଗଣ ପର୍ବରେ ପରିଣତ ହୋଇଅଛି । ଏହି ବିଷୟ ବସ୍ତୁ ଉପରେ ଚଳଚିତ୍ର ନିର୍ମାଣ ହୋଇଅଛି । ବିଶିଷ୍ଟ କଣ୍ଠ ଶିଳ୍ପୀ ନମିତା ଅଗ୍ରୱାଲ ଏବଂ ଗୀତା ଦେବୀଙ୍କ କଣ୍ଠରେ ଏହି ଗୀତର ପ୍ରଚାର ସାରା ବିଶ୍ୱର ଓଡିଆ ସମାଜକୁ ମୁଗ୍ଧ କରିଅଛି । ୬ଟି ଛାନ୍ଦରେ କବି ଏହି କଥାବସ୍ତୁ ଉପରେ ଗୀତ ରଚନା କରିଥିଲେ ମଧ ପରବର୍ତ୍ତୀ କାଳରେ ଏହାର ମୌଳିକ ତଥ୍ୟକୁ ନେଇ ଓଡିଶାର ଅନ୍ୟ କବିମାନେ ଏ ବିଷୟରେ ଗୀତ ରଚନା କରିଛନ୍ତି । ଆଜି ଏହି ଅମର କବି ଲୋକଲୋଚନରୁ ଦୂରରେ । କବିଙ୍କର ଲିଖିତ ପୋଥି ଏବଂ ଛପାବହି ବର୍ତ୍ତମାନ ତାଙ୍କର ବଂଶଧର ଚୌଧୁରୀ ପରିବାରରେ ରହିଅଛି । ଖୁଦୁରୁକୁଣୀ ଦିନ ଏହି ଗୀତ ପାଠ କରାଯାଏ । କବିଙ୍କର ବଂଶଧର ମାନଙ୍କ ମଧରେ ଗ୍ରାମର ତତକାଳୀନ ମୁଖ୍ୟ ୰ ହଟ ସାମନ୍ତରାୟ, ନଟବର ଚୌଧୁରୀ ଏବଂ ସେମାନଙ୍କର ଉତ୍ତର ପୁରୁଷ ଏ ଅଞ୍ଚଳର ପ୍ରବୀଣ ଶିକ୍ଷକ ୰ ବିଦ୍ୟାଧର ଚୌଧୁରୀ, ବିଶିଷ୍ଟ କବି ତଥା ଓକିଲ ଏବଂ ଐତିହାସିକ ୰ ମାଧବ ଚୌଧୁରୀ ଓଡିଶାର ପୂର୍ବତନ ମୁଖ୍ୟ ବନ ସଂରକ୍ଷକ ୰ ଦୟାନିଧି ଚୌଧୁରୀ ଏବଂ ବୋଲଗଡ ଇତିହାସର ପ୍ରଥମ ଲେଖକ ତଥା ଏହି ଇତିହାସର ମୁଖ୍ୟ ପ୍ରେରଣାଦାତା ପ୍ରବୀଣ ଶିକ୍ଷକ ବାଗ୍ମୀ ୰ ସାଧୁଚରଣ ଚୌଧୁରୀ ଅଟନ୍ତି । ୨୦୦୫ ମସିହାରେ ନନ୍ଦିଘୋଷର ସାରସ୍ୱତ ସମାରୋହ ଉତ୍ସବ ମକରମିଳନ ଅବସରରେ ଏହି ଖୁଦୁରୁକୁଣି ବହିର ପୁନଃ ମୁଦ୍ରଣ ହୋଇ ବିତରଣ କରାଯାଇଥିଲା ।

ତାଙ୍କ ଦ୍ୱାରା ଲିଖିତ ଖୁଦରକୁଣୀ ଓଷା ଗୀତରୁ କେତେକ ପ୍ରଥମ ଛାନ୍ଦର ପଙ୍କ୍ତି ସହ ଶେଷ ଛାନ୍ଦର କେତେକ ପଙ୍କ୍ତି ଏଠାରେ ଉଦ୍ଧାର କରାଗଲା ।

<u>ପ୍ରଥମ ଛାନ୍ଦ</u>-

ଜୟ ଜୟ ନନ୍ଦସୁତ ଦୁଃଖର ଶଂଖାଳୀ
ଜୟ ଜୟ ଦେବକୀ ନନ୍ଦନ ବନମାଳୀ ।୧।

ନବଘନ ରୂପ ପ୍ରଭୁ ଶ୍ୟାମଳ ସୁନ୍ଦର
ବାମକରେ ଫୁଲ ପରି ଟେକିଲ ମନ୍ଦର ।୨।
ଦେବକୀ ଗର୍ଭରୁ ଜାତ ହୋଇ ମଥୁରାରେ
ଗୋପରେ ବଢ଼ିଲେ ଆସି ନନ୍ଦର ମନ୍ଦିରେ ।୩।
ଷୋଳ ସହସ୍ର ଗୋପୀ ସଙ୍ଗେ ଆନନ୍ଦେ ବିହରି
ଅଷ୍ଟ ବର୍ଷୁ କାଳ ନାଶ କଲେ ଗିରିଧାରି ।୪।
କଂସର ଶ୍ୱଶୁର ଜରାସନ୍ଧ ଶୁଣି ଏହା
ଅଷ୍ଟ ବର୍ହ କାଳ ପ୍ରତି ହୋଇଲା ନିର୍ଦ୍ଦୟା ।୫।
ଥିବା ଯୋଗୁ ଭବିଷ୍ୟତ କାରଣ ତାହାର
ଏଥିପାଇଁ ତାହାକୁ ନକଲେ ସଂହାର ।୬।

ଏହି ପ୍ରଥମ ଛାନ୍ଦରେ କବିଙ୍କ ବର୍ଣ୍ଣନା ଅନୁସାରେ ଅଷ୍ଟ ପାଟ ବଂଶୀଙ୍କ ସହ ଶ୍ରୀକୃଷ୍ଣ ଦ୍ୱାରିକାରେ ବାସ କଲା ବେଳେ ଭାଦ୍ରବ ମାସ ରବିବାର ପଡ଼ିବାରୁ ସେ ସେଦିନ ଖୁଦୁରୁକୁଣୀ ଓଷା ପାଳନ କରିବାକୁ ରୁକୁଣୀ ଶ୍ରୀକୃଷ୍ଣଙ୍କ ଅନୁମତି ଭିକ୍ଷା କରିଥିଲେ ଓ କୃଷ୍ଣ ଏଥିପାଇଁ ଅନୁମତି ପ୍ରଦାନ କରିବା ପରେ ଏହି ଓଷା ଅଷ୍ଟ ପାଟ ବଂଶୀଙ୍କ ସହ ଦ୍ୱାରିକାର ଯୁବତୀମାନେ ପାଳନ କଲେ । ଏହି ପ୍ରଥମ ଛାନ୍ଦର ଶେଷ ୨୫ ପଦରେ ବୈଶ୍ୟ ଦୁଷ୍କରଙ୍କର ବର୍ଣ୍ଣନା ଏଠାରେ ଦିଆଗଲା ।

ସାତପୁଅ ସାତବୋହୂ ସମ୍ପତ୍ତି ଅଚଳା
ଭାରିଜା ନାମଟି ତାର ଅଟେ ଶକୁନ୍ତଳା
ସମସ୍ତଙ୍କ ଠାରୁ ସାନ ଝିଅଟି ଅଟଇ
ଶରଧାରେ ନାମ ତାର ଦେଲେ ତଅପୋଇ ।୨୬।
ବାପ ମାଆଙ୍କର ହୋଇଥାଏ ଗଣ୍ଠିଧନ
ଖଟ ପଲ୍ୟଙ୍କୁ ଓହ୍ଲାଏ ନାହେଁ ରାତ୍ର ଦିନ ।୨୭।
ସେହିପରି ରାତ୍ର ଦିନ ଆନନ୍ଦେ ବଞ୍ଚନ୍ତି
ଦୁସ୍କର ବିଚାରେ ଏହା ଆଦ୍ୟ ଛାନ୍ଦ ଚିନ୍ତି ।୨୮।

ଏହାପରେ କବିଙ୍କର ଶେଷ ଛାନ୍ଦର ଶେଷ ଅଂଶ ନିମ୍ନରେ ଦିଆଯାଇଅଛି ।

<u>ଶେଷ ଛାନ୍ଦ</u> -

ଆଚମ୍ବିତ ହୋଇ ସକଳେ ଯେ ଝା ଘରକୁ ଗଲେ
ସାତଭାଇ ଘରେ ବସିଣ ବଡ ସନ୍ତାପ କଲେ ।୫୪।

ଭାରିଜା ମାନେ କେଣେ ଗଲେ କିଛି ଜଣା ନ ଗଲା
ତଥପୋଇ ତାଙ୍କ ପରାୟେ ସ୍ୱର୍ଗପୁରେ ରହିଲା ।୫୫।
ଭଦ୍ରଲୋକମାନେ ଆଣିବା ନିଜ ଘର
ଏହା କହି ସେ ସ୍ଥାନକୁ ପଠାଇଲେ ଚାର ।୫୬।
ଭଦ୍ରଲୋକମାନେ ଯାଇଣ ଯେ ଯାହା ବାପ ଘରେ
ଆନନ୍ଦେ ଅଛନ୍ତି ନାକୋଇମାନେ ତ ଆସିବାରେ ।୫୭।
ପୁଣି ସେ ସବାରି ପଠାଇ ଆଣିଲେ ଛ ନାରୀ
ଗୃହରେ ଚଳିଲେ ହରସେ ପୂର୍ବକଥା ପାସୋରି ।୫୮।
ବିଚାରି କହଇ ଦୁସ୍ତର ଶେଷ ଛ ଛାନ୍ଦରେ
ସବୁ ଝିଅ ମାନେ ପ୍ରଶଂସା କରୁଥିବ ମନରେ ।୫୯।

**ପଣ୍ଡିତ ନରହରି- (ଦିବ୍ୟସିଂହପୁର ଶାସନ)**

ସମରଗ୍ରନ୍ଥ 'ନରପତି ଜୟଚର୍ଯ୍ୟା'ର ଗ୍ରନ୍ଥାକାର ପଣ୍ଡିତ ନରହରି ସ୍ଥାନୀୟ ଦିବ୍ୟସିଂହପୁର ଶାସନର ଅଧିବାସୀ । ଆ ଗଙ୍ଗା ଗୋଦାବରୀ କେତେବେଳେ କୃଷ୍ଣା କାବେରୀ କେତେବେଳେ ସୁଦୂର ମଥୁରା ପର୍ଯ୍ୟନ୍ତ ଭାରତର ବିରାଟ ଭୂଖଣ୍ଡର ଅଧିକାରୀ ପ୍ରାଚୀନ କଳିଙ୍ଗର ସାମରିକ ଜାତି ସମର କଳାରେ କେତେଯେ ଉର୍ଦ୍ଧ୍ୱରେ ଥିଲେ ତାହା ଏହି ପୁସ୍ତକରେ ପୂର୍ବରୁ ବର୍ଣ୍ଣିତ ମହାଭାରତ ଯୁଦ୍ଧ ଅଧ୍ୟାୟରେ ପାଠକ ମାନେ ଜାଣିଛନ୍ତି । ଏଣୁ ଏକ ସମର ନିପୁଣ ଜାତିର ସମର କଳା ଉପରେ ଓଡିଶାର କୋଣେ ଅନୁକୋଣେ ଯୁଗ ଯୁଗ ଧରି ବହୁ ସମର ସାହିତ୍ୟ ରଚିତ ହୋଇଥିଲା । ତାହା ମଧ୍ୟରୁ ନରପତି ଜୟଚର୍ଯ୍ୟା ଅନ୍ୟତମ । ଏହି ଗ୍ରନ୍ଥ ଏକ ଚିତ୍ରପୋଥି ଅଟେ । ଏଥିରେ ବିଭିନ୍ନ ତନ୍ତ୍ର, ଜ୍ୟୋତିଷ ଶାସ୍ତ୍ରର ଗୁଢତତ୍ତ୍ୱ ଯାହା ସାହାଯ୍ୟରେ ବିଭିନ୍ନ ଉପାୟରେ ଶତ୍ରୁକୁ ନଷ୍ଟ କରାଯାଏ ତାହା ବର୍ଣ୍ଣିତ ହୋଇଛି । ଏହାଛଡା ବିଭିନ୍ନ ପ୍ରାଚୀନ ସ୍ୱରୋଦୟର ବର୍ଣ୍ଣନା ଅଛି । ଗାଣିତିକ ସୂତ୍ରରେ ଶତ୍ରୁ ପକ୍ଷର ବିଭିନ୍ନ ଦିଗ ଅନୁସନ୍ଧାନ ପ୍ରଭୃତି କେତେକ ତଥ୍ୟ ଏହି ଚିତ୍ର ପୋଥିରେ ରହିଅଛି । ଏହି ପୋଥି ୰ ସାଧୁଚରଣ ଚୌଧୁରୀଙ୍କ ପାଖରେ ରହିଥିବାର ଲେଖକ ତାଙ୍କଠାରୁ ଶୁଣିଥିଲେ ।

**କହ୍ନେଇ ଚମ୍ପିରିରାୟ - (ଗଡ ରେଙ୍ଗଳ ଏବଂ କୋକଳଗଡ)**

ଏହି ଅମର ଲେଖକଙ୍କ ଏକ ଅନ୍ୟନ୍ୟ କୃତି ହେଉଛି 'ପାଇକ ଖେଦା' । ସେ ଗଜପତି ପୁରୁଷୋତ୍ତମ ଦେବଙ୍କ ସମୟରେ ବ୍ରହ୍ମଗିରି ଅଞ୍ଚଳର ଗଡକୋକଳରେ ଜନ୍ମ ଗ୍ରହଣ କରିଥିଲେ । ପରେ ରେଙ୍ଗଳ ଗଡର ଅଧିନାୟକ ଭାବରେ ଅଧିଷ୍ଠିତ

ହୋଇଥିଲେ । ସେତେବେଳେ ଯବନ ଆକ୍ରମଣରୁ ଶ୍ରୀମନ୍ଦିରକୁ ରକ୍ଷା କରିବାରେ ତାଙ୍କ ପରିବାର ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଭକ୍ତ ସାଲବେଗ ସେଇ ସମୟରେ କବି । କଳାପାହାଡ ଆକ୍ରମଣ ବେଳେ ଓଡିଶାର ଅରାଜକତା ବିଷୟରେ କବିଙ୍କର ବ୍ୟଥିତ ହୃଦୟ ଏବଂ କେତେକ ବିଶ୍ୱାସଘାତକ ଓଡିଆଙ୍କର ହୀନ କାର୍ଯ୍ୟକଳାପ ତାଙ୍କୁ ବ୍ୟଥିତ କରିଥିଲା । ଯାହା ପାଇକ ଖେଦାରେ ବର୍ଣ୍ଣିତ ହୋଇଅଛି ।

ଏ ବିଷୟରେ ଐତିହାସିକ ଶ୍ରୀ ଫକୀର ହରିଚନ୍ଦନ ତାଙ୍କ ଲିଖିତ "ଖୋର୍ଦ୍ଧା ଇତିହାସ ଅନ୍ତରାଳେ" ପୁସ୍ତକର ୧୨୬ ପୃଷ୍ଠାରେ ଦେଇଥିବା ତଥ୍ୟ ନିମ୍ନରେ ଦିଆଗଲା ।

ବିଷୟ - କୋକଳ ଗଡ ଇତିହାସ

ଭୋଇ ବଂଶର ୨ୟ ରାଜା ପୁରୁଷୋତମ ଦେବଙ୍କ ରାଜତ୍ୱ କାଳରେ ୧୬୧୧ ଖ୍ରୀଷ୍ଟାବ୍ଦ ଜୁଲାଇ ୬ ତାରିଖରେ ରାଜା କଲ୍ୟାଣ ମଲ୍ଲ ୨ୟ ବାର ଜଗନ୍ନାଥ ମନ୍ଦିର ଆକ୍ରମଣ କଲେ । ବହୁ ଧନରତ୍ନ ଲୁଟିନେଲା । କିନ୍ତୁ ମନ୍ଦିର ସେବକ ମାନେ ଆଗରୁ ସତର୍କ ହୋଇ ବିଗ୍ରହ ମାନଙ୍କୁ ସ୍ଥାନାନ୍ତର କରିନେଇ ଚିଲିକାର ମହିଷାନାଶୀରେ ଲୁଚାଇ ରଖିଲେ ଏବଂ ପରେ ନେଇ ବାଣପୁରରେ ରଖିଲେ । କଲ୍ୟାଣ ମଲ୍ଲର ସେହି ଆକ୍ରମଣକୁ ପ୍ରତିହତ କରିବା ପାଇଁ ଗଡ କୋକଲର ପାଇକ ବୀର ଶ୍ରୀପତି ଚମ୍ପତିରାୟ ଏବଂ ତାଙ୍କର ପୁଅ ଗୋପାଳ ଚମ୍ପତିରାୟ କଲ୍ୟାଣ ମଲ୍ଲ ସେନାଙ୍କ ସହ ଲଢି ଅସୀମ ବୀରତ୍ୱ ପ୍ରଦର୍ଶନ କରିଥିଲେ । ଓଡିଆ ପାଇକମାନେ ଶେଷରେ ବିଜୟ ଲାଭ କରି କଲ୍ୟାଣ ମଲ୍ଲଙ୍କୁ ତଡି ତଡି କଟକ ପାର କରିଦେଇଥିଲେ । ଯୁଦ୍ଧରେ ଶ୍ରୀପତି ଚମ୍ପତିରାୟ ବିଜୟ କରିଥିଲେ ହେଁ ତାଙ୍କ ପୁଅ ଗୋପଳ ଚମ୍ପତି ନିହତ ହୋଇଥିଲେ ।

ଏହି ଯୁଦ୍ଧପରେ ଶ୍ରୀପତି ଚମ୍ପତିରାୟଙ୍କର ଅନ୍ୟତମ ପୁତ୍ର କହ୍ନେଇ ଚମ୍ପତିରାୟ ଅତ୍ୟନ୍ତ ବ୍ୟଥିତ ହୋଇପଡିଥିଲେ । ଓଡିଆ ପାଇକ ମାନଙ୍କର ଯୁଦ୍ଧ ବିଦ୍ୟା ସମ୍ପର୍କରେ ତାଙ୍କ ଲିଖିତ ପାଇକ ଖେଦାର ସେ ଲେଖିଛନ୍ତି -

ନଆସିଲା ନୃପଣୀଙ୍କ କନକ ସୁନ୍ଦରୀ<br>
ଅଣ ଲେଉଟା ହୋଇଲା ଶେଷନାଗ କରି (ହାତୀ)<br>
ଏମାନ ହୃଦୟ ମୋର ଗହନେ ଫେଡିଲା<br>
ପୁଣ କଟା ଖବରାରେ ଚୂନ ଯେ ଲିପିଲା<br>
ନ ଆସିଲେ ଗୋପାଳ ଚମ୍ପତି ଜ୍ୟେଷ୍ଠ ମୋର<br>
ପତର ନିଆଁରେ ପଡେ ଯେହ୍ନେ ଘୃତ ଧାର (ପାଇକ ଖେଦା- ୧୬୯)

ଏହି ପାଇକ ଖେଦା ପୋଥି ସର୍ବପ୍ରଥମେ ପୁରୀ ଶ୍ରୀମନ୍ଦିରର ଗବେଷକ ପଣ୍ଡିତ ସଦାଶିବ ରଥ ଶର୍ମା ବିଗତ ୫୦ ଦଶକରେ ବୋଲଗଡରୁ ସଂଗ୍ରହ କରିଥିଲେ । ଏହି ପୋଥି ସଂଗ୍ରହ ବିଷୟରେ ଗଙ୍ଗାଧର ବିଦ୍ୟାଧର (ବିଧାର) ଙ୍କର ସହାୟତା କରିଥିବା କଥା ପାଇକ ଖେଦାର ମୁଖବନ୍ଧରେ ୰ ରଥ ଲେଖିଛନ୍ତି । ଏ ସମ୍ପର୍କରେ ଲେଖକ ଅନୁସନ୍ଧାନ କରିବାରେ ଜଣାଯାଇଛି ବୋଲଗଡ ଥାନା ଘୋରଡିଆ (ଗ୍ରାମେଶ୍ୱର) ର ବିଶିଷ୍ଟ ଧନୀ ବ୍ୟକ୍ତି ଲେଖକଙ୍କ ଆତ୍ମୀୟ ୰ ଗଙ୍ଗାଧର ବିଧାର ମହାପାତ୍ରଙ୍କର ଜ୍ୟେଷ୍ଠା କନ୍ୟା ସାବିତ୍ରୀ ଦେବୀଙ୍କର ବଳଙ୍ଗା ନିବାସୀ ତତକାଳୀନ ପୁରୀ ଜିଲ୍ଲାର ଜମିଦାର ୰ ଜଗନ୍ନାଥ ଦାସଙ୍କର ପୁତ୍ର କୃପାସିନ୍ଧୁଙ୍କ ସହ ବିବାହ ସମ୍ପୂର୍ଣ୍ଣ ହୋଇଥିଲା । ୰ ରଥ ଶର୍ମା ଜଗନ୍ନାଥ ଦାସଙ୍କର କୁଳପୁରୋହିତ ଥିଲେ । ସେ ଏହି ବିବାହ କାର୍ଯ୍ୟ କରିବାକୁ ବୋଲଗଡ ଆସିବା ସମୟରେ ବୋଲଗଡ ମଠରେ ସ୍ଥାନୀୟ ମୁଖ୍ୟ ବ୍ୟକ୍ତିଙ୍କର ଏକ ବୈଠକ କରି ଏଅଞ୍ଚଳର ପ୍ରାଚୀନ ପୋଥି ଉପରେ ଆଲୋଚନା କରିବାପାଇଁ ପ୍ରସ୍ତାବ ଦେଇଥିଲେ । ବୋଲଗଡ ଗଡ ସାହିର ପୂର୍ବତନ ପାଇକ ଗୁରୁ ଉଦୟନାଥ ବଳବନ୍ତରାୟଙ୍କ ନିକଟରେ ଏହି ପାଇକ ଖେଦା ଥିବାର ଜଣାଯାଇଥିଲା । ସେତେବେଳର ବିଶିଷ୍ଟ ପାଇକ ଖେଳୁଆଡ ଗଙ୍ଗାଧର ବୈରିଗଞ୍ଜନ, ଦଳବେହେରା ସୁଧାକର ପର୍ଣ୍ଣମକବାଟ, ନଟବର ଚୈଧୁରୀ, ମହନ୍ତ ମହାରାଜା ରାମଗୋପାଳ ଦାସ ନିକଟସ୍ଥ ତୃଡା ଗ୍ରାମର ୰ କ୍ଷେତ୍ରମୋହନ ପଟ୍ଟନାୟକ ଏବଂ ୰ ଘନଶ୍ୟାମ ପଟ୍ଟାନାୟକଙ୍କ ସହାୟତାରେ ରଥ ଶର୍ମା ଉକ୍ତ ପାଇକ ଖେଦା ପୋଥି ନେଇ ପୁରୀ ଏମାର ମଠ ମହନ୍ତ ଗଦାଧର ରାମାନୁଜ ଦାସଙ୍କ ଦ୍ୱାରା ପ୍ରତିଷ୍ଠିତ ରଘୁନନ୍ଦନ ପାଠାଗାର ତରଫରୁ ମୁଦ୍ରଣ କରିଥିଲେ । ତାହାପରେ ଏହି ଲୁପ୍ତ ସମରଶାସ୍ତ୍ର ଲୋକଲୋଚନକୁ ଆସିଲା । ୬୦ ରୁ ୭୦ ଦଶକ ମଧରେ ଏହି ପାଇକ ଖେଦାକୁ କେନ୍ଦ୍ରକରି ଓଡିଶାର ସାହିତ୍ୟ ଜଗତରେ ଏକ ଝଡ ସୃଷ୍ଟି ହୋଇଥିଲା । ବିଶିଷ୍ଟ ଓଡିଆ ସାହିତ୍ୟିକ ଡଃ. କୁଞ୍ଜବିହାରୀ ଦାଶ ସେତେବେଳେ କଲିକତାରୁ ପ୍ରକାଶ ପାଉଥିବା 'ନବରବି ସାହିତ୍ୟ ପତ୍ରିକା'ରେ ପାଇକ ଖେଦା ଏକ ଚ୍ୟାଲେଞ୍ଜ ଶିରୋନାମାରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ତାହାର ଠିକ୍ ପରବର୍ତ୍ତି ନବରବି ସଂଖ୍ୟାରେ ଓଡିଶାର ସୁପ୍ରତିଷ୍ଠିତ ସାହିତ୍ୟିକ ଡଃ. ମାୟାଧର ମାନସିଂହ ପାଇକ ଖେଦା ଏକ ଜବାବ ଶିରୋନାମରେ ଡଃ. ଦାସଙ୍କର ପ୍ରଶ୍ନର କଡା ଜବାବ ଦେଇଥିଲେ । ଉଭୟ ପ୍ରବନ୍ଧ ସେତେବେଳେ ଏ ଲେଖକ ପାଠକରିଥିଲେ । ଏଥିରେ ବର୍ଣ୍ଣିତ ଉକ୍ତ ପୋଥି ସଂଗ୍ରହର ବିବରଣୀ ତାଙ୍କ ପ୍ରବନ୍ଧରେ ବିଶଦ ଭାବରେ ବର୍ଣ୍ଣନା କରିଥିଲେ । ଏହା ପରେ ଡଃ. ମାନସିଂହ ଏହି ସମର ସାହିତ୍ୟକୁ ବିଶ୍ୱ ଦରବାରରେ ପ୍ରଚାର ପାଇଁ ଓକ୍ଷକ୍ଷଙ୍କଝିହ୍ରକ୍ସବଝରୟ ଡରରଳକ୍ଷଚ ଙ୍କଲ ଓଭୟସବ ଭଳି ଏକ ସମ୍ଭ୍ରାନ୍ତ ବହୁଳ ପ୍ରସାରିତ ଇଂରାଜୀ ପତ୍ରିକାରେ ଇଂରାଜୀ ଭାଷାରେ ଏକ

ନିବନ୍ଧ ଲେଖିଥିଲେ । ତାହା ଭାରତର ପ୍ରଥମ ରାଷ୍ଟ୍ରପତି ଡଃ. ରାଜେନ୍ଦ୍ର ପ୍ରସାଦ ଏବଂ ସେନାଧ୍ୟକ୍ଷ ଜେନେରାଲ କାରିଆପାଙ୍କୁ ଡଃ. ହରେକୃଷ୍ଣ ମହତାବ ପ୍ରଦାନ କରିଥିଲେ । ସେମାନେ ଏହା ପାଠକରି ପାଇକ ଖେଦାର ଭୂୟସୀ ପ୍ରଂଶସା କରିଥିଲେ । ତାହା ପରେ ଓଡିଶାର ସାହିତ୍ୟ ଜଗତ ଉପରେ ପାଇକ ଖେଦାକୁ କେନ୍ଦ୍ରକରି ଝଡର ଅବସାନ ସବୁଦିନ ପାଇଁ ଥମି ଯାଇଥିଲା । ଏହି ପାଇକ ଖେଦା ବହି ବର୍ତ୍ତମାନ ଲେଖକଙ୍କ ପାଖରେ ରହିଅଛି ।

ଘନଶ୍ୟାମ ପଟ୍ଟନାୟକ - (ବୋଲଗଡ)

୰ଘନଶ୍ୟାମ ପଟ୍ଟନାୟକ ବୋଇଗର୍ଡର ବିଂଶ ଶତାବ୍ଦୀର ପ୍ରଥମ ପାଦରେ ସର୍ବମାନ୍ୟ ବ୍ୟକ୍ତିଥିଲେ । ସେ ଏକାଧାରରେ ସଂସ୍କୃତ ପଣ୍ଡିତ ଏବଂ ଆୟୁର୍ବେଦିକ ଥିଲେ । ତାଙ୍କର ଦାୟଦ ଶ୍ରୀ ଅକ୍ଷୟ ପଟ୍ଟନାୟକ ଏବଂ ନବ କିଶୋର ପଟ୍ଟନାୟକଙ୍କ ସହ ଆଲୋଚନାର ବକ୍ତବ୍ୟ ଅନୁସାରେ, ୰ଘନଶ୍ୟାମ ପଟ୍ଟନାୟକ ଜଣେ ଅନ୍ନପୂର୍ଣ୍ଣା ସାଧକ ସାଧୁଙ୍କୁ ଗୁରୁ ଭାବରେ ଗ୍ରହଣ କରିଥିଲେ । ସେ ଉକ୍ତ ସାଧୁଙ୍କର ଶିଷ୍ୟ ଥିଲେ । ତାଙ୍କଠାରୁ ସଂସ୍କୃତ ଶିକ୍ଷାକରି ସଂସ୍କୃତରେ ରଚିତ ଗରୁଡପୁରାଣକୁ ଓଡିଆ ଭାଷାରେ ଅନୁବାଦ କରିଥିଲେ । ଏହି ଗରୁଡ ପୁରାଣ ରେ ପରଲୋକତତ୍ତ୍ୱ, ପ୍ରେତ ମୁକ୍ତି ପାଇଁ ବିଧାନ ଏବଂ ଶୁଦ୍ଧିକ୍ରିୟା ତଥା ଅନ୍ୟାନ୍ୟ କର୍ମକାଣ୍ଡ ବିଶେଷ ଭାବରେ ବର୍ଣ୍ଣନା କରାଯାଇଛି । ଏହାଛଡା କରଣ ଜାତିର ଇତିହାସର ବହୁ ତଥ୍ୟ ବେଦ ଏବଂ ପୁରାଣରୁ ସଂଗ୍ରହ କରି 'କରଣ ପ୍ରବନ୍ଧ' ନାମରେ ଏକ ଗ୍ରନ୍ଥ ରଚନା କରିଛନ୍ତି । ଯମରାଜାର ପାଞ୍ଜିକାର ଚିତ୍ରଗୁପ୍ତ କରଣ ଜାତିର ସ୍ଥାପୟିତା ବୋଲି ୰ ଘନଶ୍ୟାମ ପଟ୍ଟନାୟକ ଏଥିରେ ବର୍ଣ୍ଣନା କରିଛନ୍ତି । ସେ ବୋଲଗଡ ଚଉକୀଦାର ପ୍ରେସିଡେଣ୍ଟ ଥିବାର ୰ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କର ଖୁର୍ଦ୍ଧା ଦର୍ପଣ ପୁସ୍ତକରେ ଉଲେଖ କରିବା ସଙ୍ଗେ ସଙ୍ଗେ ବୋଲଗଡର ସେ ବିଶିଷ୍ଟ ବ୍ୟକ୍ତି ଥିଲେ ବର୍ଣ୍ଣନା କରିଛନ୍ତି । ଏହାଛଡା ପୁରୀ ଜିଲ୍ଲାର ଜୁରୀ ସଭ୍ୟ ଭାବରେ ଇଂରେଜୀ ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ୧୯୩୦ ମସିହାରେ ବୋଲଗଡ ବନ୍ଧ ଏବଂ ଜେନାଗାଡିଆ ବିବାଦ ତାଙ୍କର ମଧ୍ୟସ୍ଥତାରେ ସମାଧାନ ହୋଇଥିବା କଥା ତତ୍କାଳୀନ ଖୋରଧା ଏସ.ଡି.ଓ. ରାଧା ଚରଣ ଦାସଙ୍କର କେତେକ ସ୍ଥାନୀୟ ମକଦ୍ଦମାର ନଥିପତ୍ରରୁ ମିଳିଅଛି । ସେ ଦଶଦୋଳଯାତ୍ରାର ପ୍ରତିଷ୍ଠାତା ସଭ୍ୟ ଥିଲେ । ତାଙ୍କ ପରିବାରର ବୋଲଗଡ ଅଞ୍ଚଳରେ ପ୍ରସିଦ୍ଧି ଅଛି । ତାଙ୍କର ପୁତ୍ର ୰ ବିଦ୍ୟାଧର ପଟ୍ଟନାୟକ ସର୍ବରାକାର ଥିଲେ ଏବଂ ଅନ୍ୟତମ ପୁତ୍ର ୰ ହୃଷିକେଶ ପଟ୍ଟନାୟକ ବୋଲଗଡ ବାମନ ହାଇସ୍କୁଲର ପ୍ରଥମ ଅବୈତନିକ ପ୍ରଧାନ ଶିକ୍ଷକ ଏବଂ ପରେ ବଲାଙ୍ଗିର ମହାରାଜ ୰ରାଜେନ୍ଦ୍ର ନାରାୟଣସିଂହ ଦେଓଙ୍କ ଆଇନ

ପରାମର୍ଶଦାତା ଭାବରେ ବଲାଙ୍ଗିର ଯାଇ କିଛି ଦିନ ସ୍ଥାନୀୟ ରାଜେନ୍ଦ୍ର ହାଇସ୍କୁଲର ସହକାରୀ ଶିକ୍ଷକ ଭାବରେ ଅବସ୍ଥାପିତ ହେଲା ପରେ ବିଚାର ବିଭାଗରେ ମୁନିସଫ ଭାବରେ କାର୍ଯ୍ୟକରି କାର୍ଯ୍ୟକାଳ ଶେଷରେ ବାମନ ହାଇସ୍କୁଲ, କାକଟପୁର ହାଇସ୍କୁଲ ଏବଂ ଡେଲାଙ୍ଗ ହାଇସ୍କୁଲର ପ୍ରଧାନ ଶିକ୍ଷକ ଭାବରେ କାର୍ଯ୍ୟକରି ଅବସର ନେଇଥିଲେ। ଏହି ବଂଶର ୰ ଡଃ. ଦାମୋଦର ପଟ୍ଟନାୟକ ପୋଲିସ ବିଭାଗର ଡାକ୍ତର ଥାଇ ବୋଲଗଡ ଅଞ୍ଚଳର ବହୁ ଯୁବକଙ୍କୁ ପୋଲିସି ଚାକିରୀ କରାଇବାରେ ସହାୟକ ହୋଇଥିଲେ । ୰ ଘନଶ୍ୟାମଙ୍କ ଅନ୍ୟତମ ପୁତ୍ର ୰ ହରେକୃଷ୍ଣ ପଟ୍ଟନାୟକ (ବେଙ୍ଗ) ଜଣେ ଆୟୁରବେଦବିତ୍ ଥିଲେ ।

୰ ସାଧୁଚରଣ ଚୌଧୁରୀଙ୍କ ଦ୍ୱାରା ରଚିତ ବୋଲଗଡ ଇତିହାସ (ପାଣ୍ଡୁଲିପି) ର ତଥ୍ୟ ଅନୁଯାୟୀ ୰ ଘନଶ୍ୟାମ ପଟ୍ଟନାୟକ ସେ ସମୟରେ ବଙ୍ଗଳାରେ ଗୋଟିଏ ପ୍ରଶ୍ନ ପ୍ରତିଯୋଗିତାରେ ଯୋଗ ଦେଇ ପ୍ରଥମ ହୋଇଥିବାରୁ 'ଶବ୍ଦ-କଳ୍ପ-ଦ୍ରୁମ' ଭଳି ଅନେକ ଉପାଦେୟ ଗ୍ରନ୍ଥ ପୁରାଣ, ଶାସ୍ତ୍ର, ଚିକିତ୍ସା ଗ୍ରନ୍ଥ ଆଦି ସେ ସମୟରେ ୩୦୦ ଟଙ୍କାରୁ ଉର୍ଦ୍ଧ୍ୱ ହେବ ପୁରସ୍କାର ଆକାରରେ ପାଇଥିଲେ । ଓଡିଶାରେ ସେହିପରି ବିହାରିଲାଲ ପଣ୍ଡିତଙ୍କ ପ୍ରଶ୍ନ ପ୍ରତିଯୋଗିତାରେ ପୁରସ୍କୃତ ହୋଇ ଶ୍ରୀମଦ ଭାଗବତ ଗୀତା, ପୁରୋହିତ ସର୍ବସ୍ୱ ଓ କବିରାଜିରେ ୩ ଖଣ୍ଡ ବହି ପୁରସ୍କାର ପାଇଥିଲେ । ସେତେବେଳେ ଏହାର ଆନୁମାନିକ ମୂଲ୍ୟ ୧୫୦ ଟଙ୍କା ହେବ । ତାଙ୍କ ଲିଖିତ ଗରୁଡ ପୁରାଣର କେତେକ ପଂକ୍ତି ଏଠାରେ ଉଦ୍ଧାର କରାଗଲା ।

## ଗରୁଡ ପୁରାଣ

<u>ଶୁଭମସ୍ତୁ -</u>

ଜୟ ଜୟ ଶ୍ରୀ ମଧୁସୂଦନ ପାଦପ
ଯେଉଁ ବୃକ୍ଷ ଆଶ୍ରୟରେ ହରଇ ତ୍ରିତାପ
ସେହି ବୃକ୍ଷ ଆଶ୍ରୟରେ ସୁରସିଦ୍ଧ ମାନେ
ଆନନ୍ଦରେ ଅଛନ୍ତି କରି ସୁରାପାନ
ସେ ପାଦପ ମହିମା ଅତି ଅଦଭୁତ
ସୁରସିଦ୍ଧମାନଙ୍କ କଥନେ ଅସମର୍ଥ
ମଧୁଦୈତ୍ୟ ନାଶି ଶ୍ରୀ ମଧୁସୂଦନ
ତାହାରି ମେଦେ କଲେ ସୃଷ୍ଟି ଉତପର୍ଣ୍ଣ
ସେ ପୁରୁଷ ସର୍ବଘଟରେ ପରକାଶ
ନିଖିଳ ନିରଞ୍ଜନ ଆଜ ଗାଦିବାସ

ତାଙ୍କଠାରୁ ସାକ୍ଷୀ ନ ପଦ ପରିଣତି
ଅସମ୍ଭବ ହୁଅନ୍ତା ଶ୍ରୀ ବ୍ୟାସଙ୍କ ଭକତି
ପ୍ରଥମ ସ୍ଥୂଳଶୂନ୍ୟ ଏହି ବୃକ୍ଷ ଥିଲେ
ଗତି ହୁଁ ଏତଦମୟ ସ୍ୱରୂପ ଧରିଲେ
ସେ ରୂପରୁ ହୋଇଲେ ବିଷ୍ଣୁଜାତ
ଦୁଇ ଭୁଜ ବଂଶୀଧର ପରବ୍ରହ୍ମ ନାଥ
ନିଜ ଇଚ୍ଛା ବଳରେ ହେଲେ ବେନି ମୂର୍ତ୍ତି
ଏକ ରୂପେ ରାଧା ଦ୍ୱିତୀୟେ ଗୋପୀପତି
ତୃତୀୟ ଅଧ୍ୟା ଅର୍ଥ ହୋଇଲେ ବ୍ୟାଖ୍ୟାନ
ଅନୁବାଦିକୁ ବାଦି ନୁହହେ ଶମନ
ପ୍ରଣିତ ଘନଶ୍ୟାମ ମଣୀବିଜେ ସୂତ୍ର
ଦେବାକୁ ତାହା ମଧେ ହେବାକୁ ଅଧିକାରୀ ମାତ୍ର
ସ୍ୱଦେଶ ଭାଷା ଏଠି ହୋଇଅଛି ଡୋର
ଶ୍ରୀ ବ୍ୟାସଙ୍କ ବଚନ ଅଟେ ମଣିବର ।

<u>ଶେଷରେ -</u>

ଶ୍ରୀ ରାଧାକୃଷ୍ଣ ପଦ୍ମପାଦେ ଦେଇଚିତ୍ତ
କଥିତ ଘନଶ୍ୟାମେ ଭାବେ ଉକ୍ଣ୍ଠିତ

ହରି ହରି ଶବ୍ଦ କରିବା ଭାତୃଗଣ
ପାପ ପିଶାଚ ପଳାଇବେ ତତକ୍ଷଣ
ମମ ଜ୍ୟେଷ୍ଠ ଭ୍ରାତର ଗୋବିନ୍ଦ ଶରଣ
ଶ୍ରୀ ଗରୁଡ ଗୋବିନ୍ଦ କରହେ ମୋତେ ତ୍ରାଣ
ସଦା ଜୟେ ସଂପୂର୍ଣ୍ଣ ଅଧ୍ୟା ସପ୍ତଦଶ
ମହୋତ୍ସବ ଆଚାର୍ଯ୍ୟ ଉପଦେଶ
ଇତିଶ୍ରୀ ଗରୁଡ ପୁରାଣେ ସାରୋଦ୍ଧାରେ ଫଳଶ୍ରୁତି ବର୍ଣ୍ଣିବେ ନାମ ସପ୍ତଦଶ ଅଧ୍ୟାୟ

ଂଘନଶ୍ୟାମ ପଟ୍ଟନାୟକଙ୍କ କୃତ 'ଗରୁଡ ପୁରାଣ' ଏବଂ 'କରଣ ପ୍ରବନ୍ଧ' ବର୍ତ୍ତମାନ ଲୁପ୍ତ ପ୍ରାୟ । ଏହାକୁ ପୁନଃ ସଂସ୍କରଣ କରିବାକୁ ତାଙ୍କର ବଂଶଧର ଶ୍ରୀ ଅକ୍ଷୟ ପଟ୍ଟନାୟକ ଏବଂ ନବକିଶୋର ପଟ୍ଟନାୟକ ପ୍ରୟାସ ଜାରି ରଖିଛନ୍ତି । ଗରୁଡ ପୁରାଣର ମୂଳ ପୋଥି ହରେକୃଷ୍ଣ ପଟ୍ଟନାୟକଙ୍କ ପାଖରେ ଥିଲା ବେଳେ କରଣ ପ୍ରବନ୍ଧ

ଖୋର୍ଦ୍ଧାର ୰ ଟୁକୁ ମହାନ୍ତି ନୟାଗଡ ଅନ୍ତର୍ଗତ ଦାସରଥି ସଂଗ୍ରହାଳୟକୁ ଦେଇଥିବା କଥା ତାଙ୍କ ପୁତ୍ର ଲେଖକଙ୍କ ଆଗରେ ନିକଟରେ ପ୍ରକାଶ କରିଥିଲେ ।

ସଦାନନ୍ଦ ସାହୁ- (ଡାବରଧୁଆ ପାଟଣା)

"ଗୌର ସନ୍ନ୍ୟାସ କୀର୍ତ୍ତନ" ର କବି ୰ ସଦାନନ୍ଦ ସାହୁ ବିଂଶ ଶତାବ୍ଦୀର ପ୍ରଥମ ପାଦରେ ବୋଲଗଡ ଥାନାର ଡାବରଧୁଆ ପାଟଣା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ଅସାଧାରଣ ଓଡିଶୀ ସଂକୀର୍ତ୍ତନ ଗାୟକ ଥିଲେ । ତାଙ୍କର ଭାଇ ୰ ଅରିକ୍ଷିତ ସାହୁ ସଂକୀର୍ତ୍ତନ ବାୟକ ଥିଲେ । ଲୀଳାମୟ ଚୈତନ୍ୟ ମହାପ୍ରଭୁଙ୍କର ସନ୍ନ୍ୟାସ ଗ୍ରହଣ ଉକ୍ତ ପୁସ୍ତକର ବିଷୟବସ୍ତୁ ଅଟେ । ବୋଲଗଡ ଗ୍ରାମ ସଂକୀର୍ତ୍ତନଗୁରୁ ୰ ହଟ ପରିଡା ତାଙ୍କର ମୁଖ୍ୟ ଶିଷ୍ୟ ଥିଲେ । ସ୍ଥାନୀୟ ପୁରାତନ ସଂକୀର୍ତ୍ତନ ପ୍ରେମୀଙ୍କ ଠାରୁ ଶୁଣାଯାଏ ସଦାନନ୍ଦ ସାହୁଙ୍କ ଗୀତ ଶୁଣିବା ପାଇଁ ସେତେବେଳେ ଦଶଦୋଳ ଯାତ୍ରାରେ ହେଉଥିବା ସଂକୀର୍ତ୍ତନ ମେଳାରେ ପ୍ରବଳ ଭୀଡ ହୁଏ । ଡାବରଧୁଆ ଗ୍ରାମର ୰ ରାମଚନ୍ଦ୍ର ମହାପାତ୍ର ଏବଂ ବୋଲଗଡ ଗ୍ରାମର ୰ ନଟବର ଚୈଧୁରୀ ସଦାନନ୍ଦଙ୍କର ମୁଖ୍ୟ ପୃଷ୍ଠପୋଷକ ଥିଲେ । କବିଙ୍କ ଜନ୍ମସ୍ଥାନ ନିକଟସ୍ଥ ଘୋରଡିଆ ଗ୍ରାମରେ ହୋଇଥିଲେ ମଧ ସେ ଜୀବନର ମଧାହ୍ନରେ ଡାବରଧୁଆ ଗ୍ରାମରେ ପୋଷ୍ୟ ପୁତ୍ର ଭାବରେ ଅବସ୍ଥାପିତ ହୋଇଥିଲେ ।

ଏହି "ଗୌର ସନ୍ନ୍ୟାସ କୀର୍ତ୍ତନ" ପୁସ୍ତିକା ୧୯୩୦ ଦଶକରେ କାସନ୍ଦା ଦଳବେହେରା ମଧୁସୂଦନ ସାମନ୍ତରାଙ୍କ ଦ୍ୱାରା ରଣପୁରର ନରେନ୍ଦ୍ର ପ୍ରେସରେ ମୁଦ୍ରିତ ହୋଇଥିବା ଉକ୍ତ ପୁସ୍ତିକାରୁ ଜଣାଯାଇଛି । ଏଥିରେ ପ୍ରାୟ ୪୫ ଟି ବଙ୍ଗଳା ମିଶ୍ରିତ ଓଡିଆ ଗୀତ ରହିଅଛି । ବର୍ତ୍ତମାନ ଉକ୍ତ ପୁସ୍ତିକା ବୋଲଗଡର କବି ତଥା ପୂର୍ବତନ ହିନ୍ଦୀ ଶିକ୍ଷକ ତ୍ରିନାଥ ମହାନ୍ତିଙ୍କ ପାଖରେ ରହିଅଛି । ସେ ୧୯୩୮ ମସିହାରେ ବୋଲଗଡ ଚନ୍ଦନ ଯାତ୍ରା ଦେଖି ଆସିବା ଅବସରରେ ଏହି ଯାତ୍ରାରୁ କିଣିଥିବା କଥା କହନ୍ତି । ଏବଂ ଏହି ବହିରେ ତାଙ୍କ ସ୍ୱାକ୍ଷର ସହ ୨୦-୫-୧୯୩୮ ମସିହା ଲେଖାଯାଇଅଛି । କବିଙ୍କ ଭଣିତିରେ ଦୁଇପଦ ଗୀତ ଏଠାରେ ଉଦ୍ଧାର କରାଗଲା ।-

ଜନନୀ ପୟର ଧରିଆଁ
ଭାଷେ ଗୌର କିଶୋର
ସନ୍ୟାସ ବେଶକୁ ଧରିବି
ହର୍ଷେ ବିଦାୟ କର

ନିଶ୍ଚୟ କରିବି ସନ୍ନ୍ୟାସ
ଭାଷେ ଗୌର କିଶୋର
ଶୁନୀ ଶଚିମାତା କାନ୍ଦଇ
ଦିନ ସଦାଇ ଗୀର

ଏହି ଗୌର ସନ୍ନ୍ୟାସ ପୁସ୍ତକର ପୁନଃ ମୁଦ୍ରଣ କରାଯାଇ ୨୦୦୫ ନନ୍ଦିଘୋଷର ମକର ମିଳନ ଉତ୍ସବରେ ବିତରଣ କରାଯାଇଥିଲା ।

ରାମଚନ୍ଦ୍ର ଦାସ - (ହାଟବସ୍ତ)

"ଶରତ ରାସ" ର ଅମର କବି ୰ ରାମଚନ୍ଦ୍ର ଦାସ ବୋଲଗଡ ଥାନା ହାଟବସ୍ତ ଗ୍ରାମରେ ପ୍ରାୟ ୧୫୦ ବର୍ଷ ତଳେ ଜନ୍ମ ଗ୍ରହଣ କରିଥିଲେ । ଚୈତନ୍ୟ ମହାପ୍ରଭୁ ଓଡିଶାରେ ହରିନାମର ପ୍ରଚାର ପାଇଁ ସଂକୀର୍ତ୍ତନ ପ୍ରବର୍ତ୍ତନ କରିବା ସମୟରେ ୰ ରାମଚନ୍ଦ୍ର ଦାସଙ୍କ ପୂର୍ବ ପୁରୁଷ ମାନେ ପରମ୍ପରା କ୍ରମେ ବାଙ୍କୋଇ ଗଡ ଅଧୀନରେ ଥିବା ୨୭ ମୌଜାର ସଂକୀର୍ତ୍ତନ ମଣ୍ଡଳୀର ତତ୍ତ୍ୱାବଧାରକ ଭାବେ ଦାୟୀତ୍ୱ ଗ୍ରହଣ କରିଥିଲେ । ସେହି ସମୟରୁ ସେମାନେ ଏ ଅଞ୍ଚଳର ଗୁରୁ ଗୋସେଇ ଭାବରେ ସମ୍ମାନିତ । ତାଙ୍କ ଅନୁମତିରେ ଏଠାରେ ସଂକୀର୍ତ୍ତନ ମେଳା ଅନୁଷ୍ଠିତ ହେବା ସଂଗେ ସଂଗେ ନୂତନ ସଂକୀର୍ତ୍ତନ ମଣ୍ଡଳୀ ଗଠନପାଇଁ ଏମାନଙ୍କ ଠାରୁ ଅନୁମତି ଗ୍ରହଣ କରାଯାଇଥାଏ । ଅଦ୍ୟାବଧି ସେହି ସମୟରୁ ଏହି ପ୍ରଥା ଏଠାରେ ପ୍ରଚଳିତ ହେଉଅଛି । ଅଳ୍ପ ବର୍ଷ ପୂର୍ବେ ଗୁରୁ ଗୋସାଇଁ ବାଞ୍ଛାନିଧି ଦାସଙ୍କର ସ୍ୱର୍ଗବାସ ପରେ ତାଙ୍କର ଦାୟାଦ ଭାବରେ ଯୁଗଳ ଦାସ ଏହି ଦାୟିତ୍ୱ ବହନ କରିଛନ୍ତି । ଶରତ ରାସ ବହୁ ବର୍ଷ ପୂର୍ବେ ହାଟବସ୍ତ ଗ୍ରାମରେ ଅନୁଷ୍ଠିତ ହେଉଥିଲା । କିଛି ବର୍ଷ ଏହା ବନ୍ଦ ହୋଇଯିବା ପରେ ଏହି ପୁରାତନ ପରମ୍ପରାକୁ ରକ୍ଷା କରିବା ପାଇଁ ଗ୍ରାମର ଯୁବକ ମାନଙ୍କ ଉଦ୍ୟମରେ ବର୍ତ୍ତମାନ କାର୍ତ୍ତିକ ମାସରେ ଉକ୍ତ ଶରତ ରାସ ଏଠାରେ ଅନୁଷ୍ଠିତ ହେଉଅଛି ।

ପଣ୍ଡିତ ରଘୁନାଥ ଷଡଙ୍ଗୀ- (ଖଙ୍ଗୁରିଆ)

ସଂସ୍କୃତ ଭାଷାରେ ଲିଖିତ "ସାହିତ୍ୟ ଦର୍ପଣ" ଗ୍ରନ୍ଥର ୰ ଷଡଙ୍ଗୀ ଓଡିଆ ଭାଷାରେ ଅନୁବାଦ କରିଥିଲେ । ଏହାଛଡା ଜଟିଳ ସଂସ୍କୃତ ବ୍ୟାକରଣ ଏବଂ ଓଡିଆ ଭାଷାରେ କେତେକ ଉପାଦେୟ ନୀତି ଶିକ୍ଷା ପୁସ୍ତକ ରଚନା କରିଥିଲେ । ସେ ଖଙ୍ଗୁରିଆ ଗ୍ରାମର ନିବାସୀ ଏବଂ ବହୁ ବର୍ଷଧରି ଖଙ୍ଗୁରିଆ ବିଜେ ଅମୃତେଶ୍ୱର ଦେବଙ୍କର

ମ୍ୟାନେଜିଂଗ ଟ୍ରଷ୍ଟି କାର୍ଯ୍ୟ ତୁଲାଇବା ସଂଗେ ସଂଗେ ଦଶଦୋଳ ଯାତ୍ରା କମିଟିର ବରିଷ୍ଠ ସଭ୍ୟ ଥିଲେ ଏବଂ ବୋଲଗଡରେ ସ୍ଥାପିତ ଶ୍ରୀମତୀ ସଂସ୍କୃତ ଟୋଲର ହେଡ ପଣ୍ଡିତ ଭାବରେ ୧୯୪୬ ମସିହାରୁ ୧୯୮୨ ଜୁନ ମାସ ପର୍ଯ୍ୟନ୍ତ ଶେଷ ଜୀବନ ଯାଏ କାର୍ଯ୍ୟ କରିଥିଲେ ।

ପଣ୍ଡିତ ଲିଙ୍ଗରାଜ ରଥ- (ବୋଲଗଡ)

ସେ ପ୍ରାଥମିକ ଶିକ୍ଷକ ତଥା ଚଣ୍ଡୀ ସାଧକ ଥିଲେ । 'ବକ୍ର କିଶୋର ବିଳାଶ', 'ମଣ୍ଡନଗିରି', 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' କାବ୍ୟର ଟିକା, 'ନାଗବନ୍ଧ' ଓ 'ରଥବନ୍ଧ'ର ଚିତ୍ର କାବ୍ୟ ରଚନା କରିଥିଲେ । ତାଙ୍କ ପୂର୍ବପୁରୁଷରୁ ଅଦ୍ୟାବଧି ବୋଲଗଡରେ ଅବସ୍ଥାପିତ ରାମଚଣ୍ଡୀ ଠାକୁରାଣୀଙ୍କର ସେମାନେ ପୂଜକ ଅଟନ୍ତି ଏବଂ ସେ ଏକ ସଂସ୍କୃତି ସମ୍ପର୍ଣ୍ଣ ପରିବାରର ବ୍ୟକ୍ତି । ତାଙ୍କର ଏଇସବୁ ସଂକଳନକୁ ପ୍ରକାଶ କରିବା ପାଇଁ କାଳୀ ପ୍ରସନ୍ନ ରଥ, ତାରା ପ୍ରସନ୍ନ ରଥ, ଉମା ପ୍ରସନ୍ନ ରଥ ଏବଂ ରମା ପ୍ରସନ୍ନ ରଥ ପୟାସ ଜାରି ରଖିଛନ୍ତି ।

ପତିତପାବନ ହୋତା - (ଖଙ୍ଗୁରିଆ)

ଖଙ୍ଗୁରିଆ ନିବାସୀ ୰ ହୋତା ଏକାଧାରାରେ ଜଣେ କୃତି ପ୍ରାଥମିକ ଶିକ୍ଷକ, ସ୍ୱାଧୀନତା ସଂଗ୍ରାମୀ ଏବଂ ଲେଖକ । ସେ ବ୍ରହ୍ମପୁର ଜେଲରେ ଥିବା ବେଳେ ହିନ୍ଦୀ "ତୁଳସୀ ରାମାୟଣ" କୁ ଓଡିଆ ଭାଷାରେ ଅନୁବାଦ କରିଥିଲେ । ତାହା ବର୍ତ୍ତମାନ ଅପ୍ରକାଶିତ ରହିଅଛି । ତାଙ୍କର ପୁତ୍ର ଶ୍ରୀ ଦୟାନିଧି ହୋତା ଏବଂ ଗୁଣନିଧି ହୋତା ଏହାର ମୁଦ୍ରଣ ପାଇଁ ପ୍ରୟାସ ଜାରି ରଖିଛନ୍ତି ।

ଯୁଗଳ କିଶୋର ପଟ୍ଟନାୟକ- (ସଂପୁର)

ବାଙ୍କୋଇ ଗଡର ଅଧିବାସୀ ୰ ଯୁଗଳ କିଶୋର ପଟ୍ଟନାୟକ ସ୍ୱାଧୀନତା ସଂଗ୍ରାମ ଏବଂ ଖଦୀ ଆନ୍ଦୋଳନ ରେ ଲିପ୍ତ ଥାଇ ମହାତ୍ମା ଗାନ୍ଧୀଙ୍କର ଜୀବନ ଚରିତ ଉପରେ ନବାକ୍ଷରୀ ବୃତ୍ତରେ "ଗାନ୍ଧୀ ଦର୍ଶନ" ନାମରେ ଏକ କବିତା ପୁସ୍ତକ ରଚନା କରିଥିଲେ । ଏହି ପୁସ୍ତକ ଡଃ. ହରେକୃଷ୍ଣ ମହତାବଙ୍କ ଦ୍ୱାରା ପ୍ରଜାତନ୍ତ୍ର ପ୍ରେସରେ ମୁଦ୍ରଣ କରାଯାଇଥିଲା । ସେ ଶେଷ ଜୀବନରେ ସଂପୁର ଗ୍ରାମର ନହର ପଦାରେ ବସବାସ କରି ନିଜକୁ ଜନସେବାରେ ନିୟୋଜିତ କରିଥିଲେ ।

ବାସୁଦେବ ବ୍ରହ୍ମା- (ପାଟପୁର)

ପଣ୍ଡିତ ବାସୁଦେବ ବ୍ରହ୍ମା ବୋଲଗଡ ଥାନା ଆରିକିମା ଅଞ୍ଚଳର କାଦୁଆପଡା ଗ୍ରାମରେ ପ୍ରାୟ ୧୦୦ ବର୍ଷ ପୂର୍ବେ ଜନ୍ମ ଗ୍ରହଣ କରିଥିଲେ । ସେ ଜଣେ ଅସାଧାରଣ ବାଗ୍ମି ଥିଲେ । ରାମାୟଣ, ମହାଭାରତ, ହରିବଂଶ, ନଳଚରିତ, ଅମରକୋଶ ପ୍ରଭୃତି ବହୁ ପୋଥି ରଚନା କରିଥିଲେ । ବର୍ତ୍ତମାନ ତାଙ୍କର ପୁତ୍ର ଶ୍ରୀକୁଞ୍ଜବିହାରୀ ହୋତା ୧୦୦ ରୁ ଉର୍ଦ୍ଧ୍ୱ ପୋଥି ସାଇତି ରଖିଛନ୍ତି । ବାଙ୍କୀର ବିଶିଷ୍ଟ ଗବେଷକ ତଥା ଶୁକ ଭୋଇ ସଂଗ୍ରାହଳୟର ମୁଖ୍ୟ ଗଣେଶ୍ୱର ସ୍ୱାଇଁ ଏହି ପୋଥି ଉପରେ ଗବେଷଣା ଜାରି ରଖିଛନ୍ତି ।

ନେତ୍ରମଣୀ ଦେବୀ- (ସାନପଦର)

ସାନପଦର ଗ୍ରାମରେ ଏହି ନାରୀ କବି ପ୍ରାୟ ୧୦୦ ବର୍ଷ ପୂର୍ବେ ଜନ୍ମ ଗ୍ରହଣ କରିଥିଲେ । ଚାଟଶାଳୀ ପାଠ ପରେ ତାଙ୍କର ଅସୀମ ପ୍ରତିଭା ଯୋଗୁଁ ବହୁ କାବ୍ୟ କବିତା ରଚନା କରିଥିଲେ । ସେ ବୋଲଗଡ ଅଞ୍ଚଳର ସର୍ବପ୍ରଥମ ନାରୀ କବି ଭାବରେ ସ୍ୱୀକୃତି ଲାଭ କରିଛନ୍ତି । ତାଙ୍କ ଉପରେ ଗବେଷଣାରୁ ଜଣାଯାଇଛି "ପ୍ରେମନିଧି ରସ" ତାଙ୍କ ଦ୍ୱାରା ରଚିତ ଏକ ମହାନ କାବ୍ୟ ।

ମାଧବ ଚନ୍ଦ୍ର ଚୈଧୁରୀ - (ବୋଲଗଡ)

୧୯୦୫ ମସିହାରେ ମାଧବ ଚନ୍ଦ୍ର ଚୈଧୁରୀ ବୋଲଗଡର ପ୍ରଖ୍ୟାତ ଚୈଧୁରୀ ବଂଶରେ ଜନ୍ମ ଗ୍ରହଣ କରିଥିଲେ । ସେ ଏକାଧାରାରେ ଜଣେ ପ୍ରବୀଣ ଶିକ୍ଷକ, ଐତିହାସିକ ଏବଂ ଅଧିଭୂକ୍ତା ଥିଲେ । ସେ ଓଡିଶାର ପ୍ରଖ୍ୟାତ କବି ୰ ଡଃ. ମାୟାଧର ମାନସିଂହଙ୍କର ଖୋର୍ଦ୍ଧା ହାଇସ୍କୁଲ ଏବଂ କଟକ ରେଭେନ୍ସା କଲେଜରେ ସହପାଠୀ ଥିଲେ । ଉଭୟ କବି ଭାବାପନ୍ନ ଥିବାରୁ ତାଙ୍କର ଅନ୍ତରଙ୍ଗତା ଶେଷରେ ଉଭୟ ଉଭୟଙ୍କର ସଙ୍ଗାତ ହୋଇପାରିଥିଲେ । ସେତେବେଳେ କବିଙ୍କର ବହୁ କବିତା ଉତ୍କଳ ସାହିତ୍ୟ, ମୁକୁର, ସହକାର, ନବଭାରତ ଏବଂ ରେଭେନ୍ସା କଲେଜର ତ୍ରୟମାସିକ ପତ୍ରିକାରେ ପ୍ରକାଶ ପାଇଥିଲା । ସେହି ସବୁ କବିତାକୁ ଏକାଠି କରି ୧୯୩୪ ମସିହାରେ "ଝଙ୍କାର" (କବିତା ଗୁଚ୍ଛ) ନାମରେ ସେ ଏକ ପୁସ୍ତକ ରଚନା କରି ପ୍ରକାଶ କରିଥିଲେ । ତାହାର ୨ୟ ସଂସ୍କରଣ ୧୯୮୬ ମସିହାରେ ହୋଇଥିଲା । ସେ 'ଅର୍ଘ୍ୟଦାନ', 'ପିଲାଙ୍କ ଭୀଷ୍ମ', 'ମା ପୁଅ', 'ଅପହୃତା', 'ଗୀତାସାର', 'ନବୀନ ଭାରତ ଇତିହାସ' ଏବଂ 'ଆଧୁନିକ ଭାରତ ଇତିହାସ'ର ଲେଖକ ଅଟନ୍ତି ।

ସେ କଟକ ଜିଲ୍ଲାର ସାଲେପୁର ଏବଂ ବୌଦ୍ଧ ହାଇସ୍କୁଲରେ ପ୍ରଧାନ ଶିକ୍ଷକତା କରି ବିଦାୟ ନେଲା ପରେ ଓଡ଼ିଶାର ପ୍ରଖ୍ୟାତ ଓକିଲ ତଥା ଜନନେତା ୰ ଜଗବନ୍ଧୁ ସିଂହଙ୍କ ଜୁନିୟର ଓକିଲ ଭାବରେ ପୁରୀଠାରୁ ଓକିଲାତି ଆରମ୍ଭ କରି ଶେଷ ଜୀବନ ପର୍ଯ୍ୟନ୍ତ ନୟାଗଡ଼ରେ ଓକିଲାତି କରିଥିଲେ । ଆଲୋଚନାରୁ ଜଣାଯାଏ ବିଗତ ୩୦ରୁ ୫୦ ଦଶକ ମଧ୍ୟରେ ଓଡ଼ିଶା ଶିକ୍ଷା ବିଭାଗ ଦ୍ୱାରା ହାଇସ୍କୁଲ ଶ୍ରେଣୀର ଇତିହାସ ପାଠ୍ୟ ପୁସ୍ତକ ରଚନା ପାଇଁ ପ୍ରଖ୍ୟାତ ଐତିହାସିକ ୰ କେଦାରନାଥ ମହାପାତ୍ର ଏବଂ ୰ ମାଧବ ଚୌଧୁରୀଙ୍କ ଉପରେ ଦାୟିତ୍ୱ ଦିଆଯାଇଥିଲା । ଉଭୟ ଲେଖକଙ୍କ ଇତିହାସ ବହି ଚୟନ କମିଟି ଦ୍ୱାରା ପରୀକ୍ଷା କରାଯାଇ ଶେଷରେ ମାଧବ ଚୈଧୁରୀଙ୍କ ଦ୍ୱାରା ଲିଖିତ "ନବୀନ ଭାରତ ଇତିହାସ" ପାଠ୍ୟ ପୁସ୍ତକ ପାଇଁ ଗୃହୀତ ହୋଇଥିଲା । ଏହି ପୁସ୍ତକର ରୟାଲିଟ ଲବ୍ଧ ଅର୍ଥରେ ୰ ଚୌଧୁରୀ ତାଙ୍କର ନୟାଗଡ଼ରେ ଥିବା ପକ୍କାକୋଠା ଗୃହ ନିର୍ମାଣ କରିଥିବା କଥା ଲେଖକ ଆଗରେ ସେ ତାଙ୍କ ଜୀବଦଶାରେ ପ୍ରକାଶ କରିଥିଲେ ।

ଡଃ. ମାୟାଧର ମାନସିଂହଙ୍କର କବିତା 'ତରୁଣ କବିର ଆଶା' ଯାହା ସେତେବେଳେ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶ ପାଇଥିଲା ସେଥିରେ କେତେକ ଅସାମାଜିକ କଥା ଥିବାରୁ ୰ ଚୈଧୁରୀ ତାର ପ୍ରତିବାଦରେ 'କବିର ଆଶା' ଶୀର୍ଷକ ଏକ କବିତା ଲେଖି ସେହି ପତ୍ରିକାରେ କିଛିଦିନ ପରେ ପ୍ରକାଶ କରିଥିଲେ ।

ପଣ୍ଡିତ କବିରାଜ ତାରେଶ୍ୱର ଚୌଧୁରୀ- (ସଂପୁର)

ସ୍ୱର୍ଗତ ଚୌଧୁରୀ ମହାଶୟ ତା ୦୩.୦୨.୧୯୧୭ ରେ ଖୋର୍ଦ୍ଧା ଜିଲ୍ଲାର ବୋଲଗଡ ଥାନା ଅନ୍ତର୍ଗତ ସଂପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ବୋଲଗଡରେ ସଂସ୍କୃତ ଟୋଲରେ ପଢିବା ସମୟରୁ ହିଁ ତାଙ୍କର ସଙ୍ଗୀତ, କବିତା ଲେଖା ଆରମ୍ଭ ହୋଇଥିଲା । ସ୍ଥାନୀୟ ଲୋକନୃତ୍ୟ ଦଣ୍ଡ ନୃତ୍ୟର ସେ ପ୍ରଭୁତ ଉନ୍ନତି ସାଧିତ କରିଥିଲେ । ହରିଜନ ଶିକ୍ଷା, ହରିଜନ ଉଦ୍ଧାର ପକେଟମାର ଇତ୍ୟାଦି ପୁସ୍ତକ ଲେଖି ସେ ତତ୍କାଳୀନ ସମାଜର କୁସଂସ୍କାରକୁ ଦୂର କରିବାର ପ୍ରୟାସ କରିଥିଲେ । ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଆହୂତ କଂଗ୍ରେସ ପ୍ରାଇମେରୀ କମିଟି ଗଢି ସେ ତାର ସଂପାଦକ କାର୍ଯ୍ୟ ତୁଲାଉଥିଲେ । ଏହାଦ୍ୱାରା ସେ ଦେଶ ସେବାରେ ମନ ନିଯୋଗ କରିଥିଲେ । ସେ ଏକାଧାରାରେ ଜଣେ କବି, ଗାଳ୍ପିକ, ଚିକିତ୍ସକ, ଜ୍ୟୋତିଷୀ ଓ ସମାଜ ସେବକ ଭାବେ କାର୍ଯ୍ୟ କରୁଥିଲେ । ପ୍ରାଚୀନ ଆୟୁର୍ବେଦର ଚେରମୂଳୀ ଚିକିତ୍ସାରେ ସେ ପାରଦର୍ଶୀ ଥିଲେ । ତତ୍କାଳୀନ ଓଡିଶା ଆୟୁର୍ବେଦ ପରିଷଦ ଦ୍ୱାରା ସେ ଉଚ୍ଚ ପ୍ରଶଂସିତ ହୋଇ ଆୟୁର୍ବେଦ ବିଶାରଦ ଉପାଧିପ୍ରାପ୍ତ ହୋଇଥିଲେ । ଏହାପରେ ସେ ସ୍ୱଦେଶୀ ଆରୋଗ୍ୟ ନିକେତନ ନାମକ ଏକ ସଂସ୍ଥା ଗଢି ଦୁଃଖୀ, ଗରୀବ ରୋଗୀମାନଙ୍କୁ

ମାଗଣାରେ ଚିକିତ୍ସା କରି ଯଥାସାଧ୍ୟ ଔଷଧ ବଣ୍ଟନ କରୁଥିଲେ । ଏଥି ନିମନ୍ତେ ତତ୍କାଳୀନ ରାଜ୍ୟ ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗର ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀମତୀ ରାଣୀ ବସନ୍ତ ମଞ୍ଜରୀ ଦେବୀ ସ୍ୱଦେଶୀ ଆରୋଗ୍ୟ ଯୋଗ୍ୟ ବିବେଚିତ ସ୍ୱାସ୍ଥ୍ୟ ଅନୁଷ୍ଠାନ ଭାବେ ବାର୍ଷିକ ଦୁଇଶହ ଟଙ୍କା ଲେଖାଏଁ ଅନୁଦାନ ପ୍ରଦାନ କରୁଥିଲେ । ସେ ମଧ୍ୟ ସ୍ୱାସ୍ଥ୍ୟ ସାହିତ୍ୟ ପରିଷଦ ନାମକ ଆୟୁର୍ବେଦ ଶିକ୍ଷାନୁଷ୍ଠାନର କାର୍ଯ୍ୟକାରୀ ପରୀକ୍ଷକ ନିଯୁକ୍ତ ହୋଇଥିଲେ । ଚିକିତ୍ସା ଶାସ୍ତ୍ରକୁ ସମୃଦ୍ଧ କରିବା ନିମନ୍ତେ ସେ 'ଆୟୁର୍ବେଦ ଦର୍ପଣ', 'ଆୟୁର୍ବେଦ ଶିକ୍ଷା', 'ଘର ବଇଦ', 'ଜନ୍ମ ନିରୋଧ', 'କାମ ବିଜ୍ଞାନ', 'ତୈଳାର୍ଣ୍ଣବ' ଇତ୍ୟାଦି ଚିକିତ୍ସା ଶାସ୍ତ୍ର ରଚନା କରିଥିଲେ । ଜ୍ୟୋତିଷ ବିଦ୍ୟା ପ୍ରତି ମଧ୍ୟ ତାଙ୍କର ଦାନ ଅତୁଳନୀୟ । 'ଜ୍ୟୋତିଷ ରତ୍ନାବଳୀ', 'ପ୍ରଶ୍ନସାର ସଂଗ୍ରହ', 'ଶୁଭାଶୁଭ ପ୍ରଶ୍ନ', 'ନନ୍ଦିକାଳ ରୁଦ୍ର ଗଣନା', 'ଲୀଳାବତୀ ସୂତ୍ର', 'ଭୃଗୁ ଜ୍ୟୋତିଷ', 'ଶରୀର ସର୍ବାଙ୍ଗ ଲକ୍ଷଣ' ଇତ୍ୟାଦି ପୁସ୍ତକ ରଚନା କରିଥିଲେ । ଓଡିଆ ସାହିତ୍ୟର ସେ ଜଣେ ବଳିଷ୍ଠ ଓଡିଶା ସାହିତ୍ୟର ସମୃଦ୍ଧି କରିବାକୁ ଯାଇ ସେ 'ଶ୍ରୀମଦ୍ ଭାଗବତ ଗୀତା', 'ଶୁକବିଳାସ', 'ବତ୍ରିଶ ସିଂହାସନ', 'ଅବୋଲକରା କାହାଣୀ', 'ପାଲା ଦ୍ରୌପଦୀମାଳୀ', 'ଅଭିସାର ନାମ ସଂକୀର୍ତ୍ତନ', 'ଦଣ୍ଡଜନ୍ମ', 'କଳିଯୁଗ' ଇତ୍ୟାଦି ୧୫୪ ଖଣ୍ଡ ପୁସ୍ତକ ରଚନା କରିଥିଲେ ଏବଂ ସେଗୁଡିକ ପ୍ରକାଶିତ ହୋଇ ଅଦ୍ୟାବଧି ବଜାରରେ ଉପଲବ୍ଧ । ତାଙ୍କର ସାହିତ୍ୟ ସାଧନା, ଜ୍ୟୋତିଷ ଓ ଚିକିତ୍ସାରେ ପାରଙ୍ଗମତା ନିମନ୍ତେ ସେ ଅନେକବାର ପୁରସ୍କୃତ ହୋଇଥିଲେ ।

ତନ୍ମଧ୍ୟରେ ବୋଲଗଡର ଅନ୍ୟତମ ସାଂସ୍କୃତିକ ଅନୁଷ୍ଠାନ ନନ୍ଦିଘୋଷର ସାମ୍ବତ୍ସରିକ ଉତ୍ସବରେ ଉପାୟନ ଓ ମାନପତ୍ର ପ୍ରାପ୍ତ ହୋଇଥିଲେ । ରାଜ୍ୟ ସରକାରଙ୍କର ସାଂସ୍କୃତିକ ବିଭାଗ ତାଙ୍କୁ ମାସିକ ସାହିତ୍ୟିକ ପେନ୍‌ସନ୍ ମଧ୍ୟ ପ୍ରଦାନ କରୁଥିଲେ । ସଂପୁରର ଜନସାଧାରଣ ତଥା ଦଣ୍ଡ କମିଟି ତରଫରୁ ୧୯୯୩ର ବିଷୁବ ଅବସରରେ ତାଙ୍କୁ ଉପାୟନ ଓ ମାନପତ୍ର ପ୍ରଦାନ କରାଯାଇ ସମ୍ମାନିତ କରାଯାଇଥିଲା । ସେହି ଉଜ୍ଜ୍ୱଳ ତାରକା ଗତ ତା୦୭.୧୧.୧୯୯୩ ରିଖରେ ଇହଧାମ ପରିତ୍ୟାଗ କରିଥିଲେ । ତାଙ୍କର ଏକ ପ୍ରତିମୂର୍ତ୍ତି ସଂପୁର ଗ୍ରାମର କେନ୍ଦ୍ରସ୍ଥଳରେ ସ୍ଥାପିତ ହୋଇଅଛି ।

ସାଧୁଚରଣ ଚୌଧୁରୀ- (ବୋଲଗଡ)

୰ ସାଧୁଚରଣ ଚୌଧୁରୀ ଏକାଧାରାରେ ଜଣେ ଐତିହାସିକ, ଜ୍ୟୋତିର୍ବିଦ, ଲେଖକ ଏବଂ ଧର୍ମଜ୍ଞାନ ବିଶାରଦ ତଥା ପ୍ରବୀଣ ଶିକ୍ଷକ ଥିଲେ । ସେ 'ଖୁଦୁରୁକୁଣୀ'ର ଅମର କବି ବୈଶ୍ୟ ଦୁସ୍ମରଙ୍କର ଦାୟାଦ ତଥା ଉନବିଂଶ ଶତାବ୍ଦିର ପ୍ରଥମ ପାଦର

ଗ୍ରାମ ମୁଖ୍ୟ ୰ ନଟବର ଚୈଧୁରୀଙ୍କର ଏକମାତ୍ର ପୁତ୍ର ଥିଲେ । ଜୀବନ ସାରା ପଠନକୁ ନିଜର ପ୍ରବୃତ୍ତି ରୂପେ ଗ୍ରହଣ କରିଥିଲେ । ଉକ୍ତ ବୋଲଗଡ ଇତିହାସର ସେ ମୂଳସ୍ତମ୍ଭ ସଦୃଶ । ଲେଖକ ଏହି ଇତିହାସର ଅଧିକାଂଶ ଭାଗ ତାଙ୍କ ଠାରୁ ଶୁଣି ତାକୁ ବିଭିନ୍ନ ବିଭାଗରେ ଓଡିଶାର ପତ୍ର ପତ୍ରିକାରେ ପ୍ରକାଶ କଲା ପରେ ଆଜି ଏହା ବିରାଟ ବୋଲଗଡ ଇତିହାସରେ ପରିଣତ ହୋଇଅଛି । ସେ ରାଜ୍ୟ ସରକାରଙ୍କର ପୁରସ୍କାର ପ୍ରାପ୍ତ ଶିକ୍ଷକ ଭାବରେ ସ୍ୱୀକୃତି ଲାଭ କରିବା ସହ ଗଣିତ ଏବଂ ମାନସାଙ୍କ ବିଷୟରେ କେତେକ ପୁସ୍ତକ ରଚନା କରିଥିଲେ । ତାଙ୍କ ଦ୍ୱାରା ଲିଖିତ ବୋଲଗଡ ଇତିହାସ (ପାଣ୍ଡୁଲିପି) ତାଙ୍କର ପୁତ୍ର ବସନ୍ତ ଚୌଧୁରୀଙ୍କ ପାଖରେ ରହିଅଛି । ସେ ସଂସ୍କୃତି ସମ୍ପନ୍ନ ବ୍ୟକ୍ତିତ୍ୱ ଭାବରେ ନନ୍ଦିଘୋଷ ସମ୍ମାନର ଅଧିକାରୀ ଥିଲେ ।

ରାମଚନ୍ଦ୍ର ମହାନ୍ତି- (ବୋଲଗଡ)

୰ ମହାନ୍ତିଙ୍କ ଜନ୍ମ ସ୍ଥାନ ଭୁବନେଶ୍ୱର ନିକଟସ୍ଥ ମେଣ୍ଢାଶାଳ ଗ୍ରାମରେ ଏବଂ ସେ ଓଡିଶାର ପୂର୍ବତନ ମନ୍ତ୍ରୀ ତଥା କଂଗ୍ରେସ ନେତା ୰ ବନମାଳୀ ପଟ୍ଟନାୟକଙ୍କର ଆତ୍ମୀୟ ଅଟନ୍ତି । ସେ ବୋଲଗଡରେ ୰ କ୍ଷେତ୍ରମୋହନ ବିଧାର (ସାମନ୍ତ) ଙ୍କର କନ୍ୟା ରମାଦେବୀଙ୍କୁ ବିବାହ କରି ଘରଜ୍ୱାଇଁ ଭାବରେ ଏଠାରେ ଜୀବନ ଅତିବାହିତ କରିଥିଲେ । ସେ ଜଣେ ନୀତିବାଦୀ ସଫଳ ଶିକ୍ଷକ, ଗୀତା ଉପାସକ ଏବଂ ରାମକୃଷ୍ଣଙ୍କର ପରମ ଭକ୍ତ ଥିଲେ । ତାଙ୍କର ବହୁ କବିତା ଓଡିଶାର ଲବ୍ଧ ପ୍ରତିଷ୍ଠିତ ପତ୍ର ପତ୍ରିକାରେ ପ୍ରକାଶ ପାଇଲା ପରେ ସେ ୰ ଗୋଦାବରୀଶ ମହାପାତ୍ର, ୰ ପଦ୍ମଚରଣ ପଟ୍ଟନାୟକ ଏବଂ ସ୍ୱର୍ଗତ ଗୋପୀନାଥ ମହାନ୍ତି ଙ୍କ ପରି ଓଡିଶାର ଲବ୍ଧ ପ୍ରତିଷ୍ଠିତ ସାହିତ୍ୟକ ମାନଙ୍କ ଠାରୁ ପ୍ରଂଶସା ପତ୍ର ପାଇଥିଲେ । ସେ ଜଣେ ଆଶୁ କବି ଥିଲେ । ୧୯୯୧ରେ ନନ୍ଦିଘୋଷ ସାଂସ୍କୃତିକ ଅନୁଷ୍ଠାନ ତରଫରୁ ଭୁବନେଶ୍ୱର ଠାରେ ରାଜ୍ୟସ୍ତରୀୟ ସାରସ୍ୱତ ଉତ୍ସବରେ ତାଙ୍କୁ ଆଶୁକବି ଭାବେ 'ବୋଲଗଡର ଯଦୁମଣୀ' ଉପାଧିରେ ଭୂଷିତ କରାଯାଇଥିଲା । ତାଙ୍କର କନ୍ୟା ଶ୍ରୀମତୀ କୃଷ୍ଣପ୍ରୀୟା ପଟ୍ଟନାୟକ ମଧ ଜଣେ ସୁଲେଖିକା ଏବଂ ଗୀତିନାଟ୍ୟ ରଚୟିତା ଅଟନ୍ତି । ତାଙ୍କ ଦ୍ୱାରା ଲିଖିତ 'ଭଗ୍ନଯାନୁ ଦୁର୍ଯ୍ୟୋଧନ' ଏବଂ 'ଗଣିକାର ମୁକ୍ତି' ଗୀତିନାଟ୍ୟ ପାଇଁ ସେ ଓଡିଶା ସଂଗୀତ ନାଟକ ଏକାଡେମୀ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ଗତବର୍ଷ ତା ୦୪.୦୩.୨୦୦୪ ସଂଧ୍ୟା ୬.୩୦ ସମୟରେ ଏହି ମହାନ କବିଙ୍କର ସ୍ୱର୍ଗାରୋହଣ ହୋଇଅଛି । 'କୁସୁମାଞ୍ଜଳୀ', 'ନାକେଇ ଝିଅ' ତାଙ୍କର ପ୍ରକାଶିତ ପୁସ୍ତକ । ଏହାଛଡା ସହସ୍ରାଧିକ ଶିଶୁ କବିତା, ବ୍ୟଙ୍ଗ କବିତା ଏବଂ ନୀତି ଶିକ୍ଷା ଉପରେ କବିତା ମାନ ତାଙ୍କ ଘରେ ଅଦ୍ୟାବଧି ପାଣ୍ଡୁଲିପି ଆକାରରେ ରହିଅଛି ।

ଭୁବନେଶ୍ୱର ଦାସ - (କପାସିଆ)

କପାସିଆ ଗ୍ରାମରେ ୰ ଭୁବନେଶ୍ୱର ଦାସ ବୋଲଗଡ ଅଞ୍ଚଳର ଗୁରୁ ଗୋସେଇଁ ଭାବରେ ମାନ୍ୟତା ଲାଭ କରିଥିବା ୰ ଜଗନ୍ନାଥ ଦାସଙ୍କର ପୁତ୍ର ଅଟନ୍ତି । ସେ ଆଜୀବନ ଶିକ୍ଷକ ଥିଲେ । ତାଙ୍କ ଦ୍ୱାରା ଲିଖିତ ତଥ୍ୟ 'ଦୀପିକା' ଏକ ଅମୂଲ୍ୟ ପୁସ୍ତକ । ଏହାର ମୁଖବନ୍ଧ ଓଡିଶାର ସ୍ୱନାମ ଧନ୍ୟ ଭଞ୍ଜ ସାହିତ୍ୟିକ ୰ ବିଛନ୍ଦ ଚରଣ ପଟ୍ଟନାୟକ ଲେଖିଥିଲେ । ଏହାଛଡା ୰ ଦାସ 'ସ୍ୱର୍ଣ୍ଣଚମ୍ପା', 'ଶ୍ରୀମତୀ ସୀତା', 'ଚାରୁପଦ ଚିନ୍ତାମଣୀ', 'କିରାତ ଅର୍ଜୁନ' ପ୍ରଭୃତି ବହି ରଚନା କରିଥିଲେ ।

ଦ୍ୱିଜ ଗୌରଚରଣ ଅଧିକାରୀ - (ଲେହଙ୍ଗ, ବେଗୁନିଆ)

ଅନଙ୍ଗ ନରେନ୍ଦ୍ରଙ୍କ 'ଶ୍ରୀ ରାମଲୀଳା' ପରି ଦ୍ୱିଜ ଗୌରଚରଣ ଅଧିକାରୀ 'ଶ୍ରୀକୃଷ୍ଣଲୀଳା' ରଚନା କରିଥିଲେ । ସେ ବେଗୁନିଆ ବ୍ଲକର ଲେହଙ୍ଗ (ବାଘମାରୀ ନିକଟସ୍ଥ) ଗ୍ରାମର ବାସିନ୍ଦା ଅଟନ୍ତି । ଉକ୍ତ କାବ୍ୟ ୩୬୫ ଟି ଛାନ୍ଦରେ ସୀମିତ । ଏହା ଶଶି ବେଓ୍ୱା ଶଶିକା ପ୍ରିଣ୍ଟିଙ୍ଗ ପ୍ରେସ, ମଙ୍ଗଳା ସାହି, କଟକ -୨ ଙ୍କ ଦ୍ୱାରା ବହୁବର୍ଷ ପୂର୍ବେ ମୁଦ୍ରିତ ହୋଇଥିଲା । ଏହି କାବ୍ୟରେ ଶ୍ରୀକୃଷ୍ଣଙ୍କ ଜନ୍ମ ଠାରୁ କଂସ ନିଧନ ଏବଂ ଉଗ୍ରେସେନଙ୍କର ଅଭିଷେକ ପର୍ଯ୍ୟନ୍ତ ବିଭିନ୍ନ ଛାନ୍ଦରେ ବର୍ଣ୍ଣିତ ହୋଇଅଛି । ଏହି କାବ୍ୟର ଶେଷ ଛାନ୍ଦରେ ୨୬୦ ପୃଷ୍ଠାରେ କବି ତାଙ୍କର ଆତ୍ମପରିଚୟ ପ୍ରଦାନ କରିଛନ୍ତି । ତାହା ନିମ୍ନରେ ପ୍ରଦତ୍ତ ହେଲା ।

<u>ଶ୍ରୀକୃଷ୍ଣଲୀଳା</u> (ପୃ -୨୬୦)

ଆହେ ସୁଜ୍ଞ ଜନମାନେ ନଧର ମୋ ଦୋଷ
ସର୍ବଦା ତୁମ୍ଭ ଚରଣ ରେଣୁକୁ ମୋ ଆଶ ।୧।
ଦ୍ୱିଜ କୁଳେ ଜନ୍ମ ହୋଇ କୃଷ୍ଣେ ଭକ୍ତି ନାହିଁ
ପଦ ବୋଧ ଜ୍ଞାନ ମାନ ଜାଣି ନ ପାରଇ ।୨।
ଶ୍ରୀଗୁରୁ ଗୋସାଇଁ ସଦାନନ୍ଦ ବ୍ରହ୍ମଚାରୀ
ସଦାଶାନ୍ତ ପରାୟଣ ଅତ୍ୟନ୍ତ ଆଚାରୀ ।୩।
ରାଧାକୃଷ୍ଣ ପ୍ରେମର ସେ ସର୍ବଦା ଆନନ୍ଦ
ଏଣୁ କ୍ଷିତି ମଧ୍ୟେ ତାଙ୍କ ନାମ ସଦାନନ୍ଦ ।୪।
ସେ ପ୍ରଭୁଙ୍କ ପଦାରବିନ୍ଦକୁ କରିଲୟ
କୁମୁଦ ମିଶ୍ରଙ୍କର ମୁଁ ଅଟଇ ତନୟ ।୫।
ଲେହଙ୍ଗ ବୋଲିଣ ନିଜ ଗ୍ରାମ ନାମ ଜଣା

ଓଡରାଷ୍ଟ୍ର ମଣ୍ଡଳ ଖୋରଧା ପରଗଣା ।୬।
ଶ୍ରୀ ଦିବ୍ୟସିଂହ ନୃପତି ବିଜେ ନିଶଙ୍କରେ
ସାଲକୁ ସତୁରୀ ଭୋଗ ପଞ୍ଚମ ଅଙ୍କରେ ।୭।
ବିଶେଷ ଉତ୍ସବ ସ୍ନାନ ପୂର୍ଣ୍ଣିମାର ଦିନ
ସର୍ବ ମଙ୍ଗଳରେ ଗ୍ରନ୍ଥ ହେଲା ପରିପୂର୍ଣ୍ଣ ।୮।
ପଞ୍ଚ ଶଶ୍ର ନବଶତ ଏକାଦଶ ପଦ
ତିନି ଶତ ପଞ୍ଚଷଠି ସଂଖ୍ୟା ଛାନ୍ଦ ଭେଦ ।୯।
ଶ୍ରୀବକ୍ରେଶ୍ୱର ପଣ୍ଡିତ ଗୋସ୍ୱାମୀଙ୍କ ପଦ
ଧ୍ୟାନକରି ଗଉର ଚରଣ ଦ୍ୱିଜ ମୋଦ ।୧୦।

୰ ଭାଗବତ ପଟ୍ଟନାୟକ (ସାଗର ଗାଁ) -

କବିଙ୍କର ଅମର ଲେଖନୀରୁ ୩୪ଟି ଛାନ୍ଦକୁ ନେଇ କୃଷ୍ଣ ଜନ୍ମ ଠାରୁ କଂସ ବଦ୍ଧ ପର୍ଯ୍ୟନ୍ତ 'ରାଧିକେଶ ବିଳାସ' କାବ୍ୟ ବର୍ତ୍ତମାନ ଅପ୍ରକାଶିତ । ତାଙ୍କର ନାତି ସିନେ କଳାକାର କୃଷ୍ଣ ଚନ୍ଦ୍ର ପଟ୍ଟନାୟକ ଏହାକୁ ପ୍ରକାଶ କରିବାପାଇଁ ତତ୍‌ପର ଅଛନ୍ତି ।

## ଲୋକନୃତ୍ୟ କବିବୃନ୍ଦ

ପ୍ରାଚୀନ ଦଣ୍ଡନାଚ, ରାମଲୀଳା, ପାଲା, ଦାସକାଠିଆ, ଦୁଆରୀ, କୃଷ୍ଣଲୀଳା ପ୍ରଭୃତିକୁ ଲୋକନୃତ୍ୟ ବୁଝାଇଥାଏ । ଦଣ୍ଡନାଟ ଓଡିଶାରେ ପ୍ରାଚୀନ ଦ୍ରାବିଡ ସଂସ୍କୃତିର ପ୍ରତିଫଳନ ଅଟେ । ବିଶେଷ କରି ଦକ୍ଷିଣ ଓଡିଶାରେ ଏବଂ ଅବିଭକ୍ତ ପୁରୀ ଜିଲ୍ଲାର ନୟାଗଡ, ଖୋର୍ଦ୍ଧା ଏବଂ ଢେଙ୍କାନାଳ ଜିଲ୍ଲାରେ ଏହାର ବହୁଳ ପ୍ରସାର ହୋଇଅଛି । ସେହି କ୍ରମରେ ପ୍ରାଚୀନ କାଳରୁ ପାଞ୍ଚଗଡ ଅଞ୍ଚଳରେ ଦଣ୍ଡନାଚର ବହୁ କବି ଜନ୍ମଗ୍ରହଣ କରି ସେମାନଙ୍କର ଲିଖିତ ଗୀତ ଅଦ୍ୟାବଧି ବହୁ କାଳରୁ ସ୍ଥାନୀୟ ଦଣ୍ଡଯାତ୍ରା ମାନଙ୍କରେ ବୋଲାଯାଏ । ବୋଲଗଡ ଅଞ୍ଚଳରେ ବହୁ ଦଣ୍ଡକବି ଥିଲେ ମଧ୍ୟ ସେମାନଙ୍କ ମଧ୍ୟରେ ୰ ଘନଶ୍ୟାମ ପଟ୍ଟନାୟକ, ୰ ବିଦ୍ୟାଧର ଘଡେଇ, ୰ ହଟ ପରିଡା ବୋଲଗଡ ଗ୍ରାମର ଅଟନ୍ତି । ବୁଡା ଗ୍ରାମରେ ଦଣ୍ଡକବି ୰ ଅନନ୍ତ ଦାସଙ୍କର ଗୀତ ଅଦ୍ୟାବଧି ସ୍ଥାନୀୟ ଦଣ୍ଡଯାତ୍ରାରେ ବୋଲାଯାଏ । ଏହାଛଡା ସଂପୁର ଗ୍ରାମର ୰ ତାରେଶ୍ୱର ଚୌଧୁରୀ, ୰ ହରିହର ମହାନ୍ତି, ମାଣିକାଗୋଡା ଗ୍ରାମର ୰ ନରସିଂହ ମହାରଣା, ରାମଚନ୍ଦ୍ର ଦାସ, ବାଙ୍କୋଇ ଗ୍ରାମର ନରସିଂହ ସାମନ୍ତ ସିଂହାର, ସାନପଦର୍ ଗ୍ରାମର ୰ ଅନନ୍ତ ପାତାଳ ସିଂହ ଲୋକଲୋଚନକୁ ଆସିଛନ୍ତି ।

ଅଦ୍ୟାବଧି ସଂଗୃହିତ ପରଲୋକଗତ କବିମାନଙ୍କ ବିଷୟରେ ଉପରୋକ୍ତ ଅଧ୍ୟାୟରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ତଥାପି ବହୁ କବି ଏବଂ ସେମାନଙ୍କର କାବ୍ୟକୃତି ରହି ଥାଇପାରେ । ଏ ବିଷୟରେ ଅଧିକ ଅନୁସନ୍ଧାନ ଆବଶ୍ୟକ ।

## ବର୍ତ୍ତମାନର ବିଶିଷ୍ଟ ସାହିତ୍ୟକ ଏବଂ କବିବୃନ୍ଦ

ବୋଲଗଡ ଅଞ୍ଚଳର ବର୍ତ୍ତମାନ ଯେଉଁ ମହାନ ଲେଖକ ଏବଂ କବି ମାନେ ସେମାନଙ୍କର ଲେଖନୀ ଚାଳନା କରି ଓଡିଆ ସାହିତ୍ୟକୁ ସୁଦ୍ଧିମନ୍ତ କରିଛନ୍ତି ଏବଂ ରାଜ୍ୟ ସ୍ତରରେ ସେମାନଙ୍କର ସାହିତ୍ୟକ କୃତି ପାଇଁ ୨ ଜଣ ସର୍ବଶ୍ରେଷ୍ଠ ସାହିତ୍ୟକ ଏବଂ କବି ଭାବରେ ସ୍ୱୀକୃତି ଲାଭ କରିଛନ୍ତି । ସେମାନଙ୍କର ସଂକ୍ଷିପ୍ତ ବିବରଣୀ ନିମ୍ନରେ ପ୍ରଦାନ କରାଗଲା ।

### ଡଃ. ବୈଦ୍ୟନାଥ ମିଶ୍ର - (ଦିବ୍ୟସିଂହପୁର ଶାସନ)

ଦିବ୍ୟସିଂହପୁର ଶାସନ ନିବାସୀ ଡଃ. ମିଶ୍ର ରାଜ୍ୟର ଜଣେ ପ୍ରତିଷ୍ଠିତ ଶିକ୍ଷାବିତ, ଅର୍ଥନୀତିଜ୍ଞ ଏବଂ ଚିନ୍ତାନାୟକ ଭାବରେ ସର୍ବଜନାଦୃତ । ସେ ଜୀବନର ପ୍ରଥମ ପାଦରେ ଜଣେ ମେଧାବୀ ଛାତ୍ର ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ଡଃ. ହରେକୃଷ୍ଣ ମହତାବଙ୍କ ପ୍ରେରଣାରେ ଛାତ୍ର ଅବସ୍ଥାରେ ଜନସେବା, ଛାତ୍ର ସଂଗଠନ ଏବଂ ପରେ ସାମ୍ବାଦିକତାକୁ ଜୀବନର ବ୍ରତ ରୂପେ ଆଦରି ନେଇଥିଲେ । ପରିଶେଷରେ ଅଧ୍ୟାପନାରେ ନିଜର କର୍ମମୟ ଜୀବନ ବିତାଇବା ପରେ ଓଡିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଏବଂ ରାଜ୍ୟ ଯୋଜନା ବୋର୍ଡର ଉପାଧ୍ୟକ୍ଷ ଭାବରେ ଅବସ୍ଥାପିତ ହୋଇଥିଲେ । ସେ ଅବୈତନିକ ଭାବେ ନବକୃଷ୍ଣ ଚୌଧୁରୀ ଗବେଷଣା କେନ୍ଦ୍ରର ଅଧ୍ୟକ୍ଷ ରୂପେ କାର୍ଯ୍ୟକରିଥିଲେ । ତାଙ୍କର ଲେଖା ମଧ୍ୟରେ ପୁଞ୍ଜିବାଦ, ସାମ୍ୟବାଦ ଓ ଗାନ୍ଧୀ ବାଦ ; ଭାରତର ସମ୍ବିଧାନ ; ବିଦେଶ ଯାତ୍ରା ; ଅର୍ଥନୈତିକ ଯୋଜନା ; ସ୍ମୃତିତୀର୍ଥ ; ଶାସନ ଓ ସଂସ୍କାର ; ସମାଜବାଦ ଓ ଗଣତନ୍ତ୍ର ; ସମାଜ ଓ ସଭ୍ୟତା ; ସାମାଜିକ ମୂଲ୍ୟବୋଧ ; ଭାରତର ଅର୍ଥନୈତିକ ସଂସ୍କାର ; ରାଜନୀତିର ଦୁଃଖସୁଖ ; ରାମ ରାଜ୍ୟରେ ଅଶାନ୍ତି ; ଚନ୍ଦ୍ରାଲୋକରେ ଚହଳ ; ପାଶ୍ଚାତ୍ୟ ଅନୁଭୂତି ; ଆଧୁନିକ ସଭ୍ୟତାର ଯନ୍ତ୍ରଣା ; ଅନୁଚିନ୍ତା ; ସମାଜ, ଶାସନ ଓ ସଂସ୍କାର ପ୍ରଭୃତି ୧୭ ଖଣ୍ଡ ବହି ବର୍ତ୍ତମାନ ସୁଦ୍ଧା ପ୍ରକାଶିତ । ଏଥି ସହିତ ଜଣେ ବିଶିଷ୍ଟ ସ୍ତମ୍ଭକାର ରୂପେ ପ୍ରତ୍ୟହ ଅର୍ଥନୀତି, ସାମ୍ବିଧାନିକ ବିଧି ବ୍ୟବସ୍ଥା ରାଜନୈତିକ ଦିଗ ଏବଂ ଶାସନର ତ୍ରୁଟି ବିଚ୍ୟୁତି ଉପରେ ବହୁ ଉପାଦେୟ ପ୍ରବନ୍ଧ ସମ୍ବାଦ ପତ୍ରର ଅଙ୍କ ମଣ୍ଡନ କରୁଅଛୁ । ଏହା ରାଜ୍ୟର ରାଜନୀତି ଏବଂ ପ୍ରଶାସନର ମୋଡ ବଦଳାଇବାରେ ବିଶେଷ ସହାୟକ

ହୋଇଥାଏ । ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ୧୯୯୯ ମସିହା ପାଇଁ ମର୍ଯ୍ୟାଦାପୂର୍ଣ୍ଣ 'ଅତିବଡ଼ି ଜଗନ୍ନାଥ ସମ୍ମାନ'ରେ ଭୂଷିତ ହୋଇଥିଲେ । ବୋଲଗଡରେ ଶିକ୍ଷା ମହାବିଦ୍ୟାଳୟ (ବି. ଇଡ. ଟ୍ରେନିଙ୍ଗ କଲେଜ) ଏବଂ ପରମାନନ୍ଦ ମହାବିଦ୍ୟାଳୟ ସହ ରାଜ୍ୟର ଅଗ୍ରଗାମୀ ସଂସ୍କୃତିକ ଅନୁଷ୍ଠାନ ନନ୍ଦିଘୋଷର ସ୍ଥାପୟିତା ଅଟନ୍ତି ।

ପ୍ରାଧାପକ ଡଃ. ଭଗବାନ ଜୟସିଂହ - (ସଂପୁର)

ସଂପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଶ୍ରୀଯୁକ୍ତ ଜୟସିଂହ ଓଡିଶାର ବିଭିନ୍ନ ସରକାରୀ ମହାବିଦ୍ୟାଳୟର ଇଂରେଜୀ ଅଧାପକ ଏବଂ ପରେ ପ୍ରାଧାପକ ଭାବରେ କାର୍ଯ୍ୟକରି ବର୍ତ୍ତମାନ ରାଜ୍ୟ ଉଚ୍ଚ ଶିକ୍ଷା ବିଭାଗର ଉପ ନିର୍ଦ୍ଦେଶକ ଭାବରେ ଅବସ୍ଥାପିତ । ଇଂରେଜୀ ଭାଷାରେ ବିଶେଷ ଦକ୍ଷତା ଥାଇ ଓଡିଶାର ଜଣେ ଯୁବ କବି ଭାବରେ ନିଜର ଲେଖନୀ ଚାଳନା କରି ଆଧୁନିକ ଓଡିଆ କାବ୍ୟ ଜଗତରେ ଏକ ନୁତନ ଧାରା ସୃଷ୍ଟି କରିଛନ୍ତି । ସେ ବହୁ ଜାତୀୟ ଏବଂ ଆନ୍ତଜାତିକ କବି ସମ୍ମିଳନୀରେ ଯୋଗ ଦେଇ ନିଜର ପରାକାଷ୍ଠା ଦେଖାଇବା ସଂଗେ ସଂଗେ ଓଡିଶାର ଟେକ ରଖିବାରେ ସହାୟକ ହୋଇଛନ୍ତି । ତାଙ୍କ ଦ୍ୱାରା ଲିଖିତ ପୁସ୍ତକ ମାନଙ୍କ ମଧରେ - ନିର୍ବାସନରେ ପକ୍ଷୀ, ଓଲଟ ଦୃଶ୍ୟ, ଘୋଷଯାତ୍ରା, The search of the self and other poems, The Last Vally and other poems, Oriya Anubad Conban ପ୍ରମୁଖ ଅଟେ । ସେ ପ୍ରଜାତନ୍ତ୍ରର ବିଷୁବ ମିଳନ ସାହିତ୍ୟ ଉତ୍ସବରେ ମର୍ଯ୍ୟାଦାପୂର୍ଣ୍ଣ ୫ଙ୍କାର ପୁରସ୍କାର ସହ ଗୋକର୍ଣ୍ଣିକା ପୁରସ୍କାର ଓ ଜୀବନ ରଙ୍ଗ ସମ୍ମାନ ପ୍ରାପ୍ତ ହୋଇଛନ୍ତି । ବୋଲଗଡ ମହୋତ୍ସବରେ 'ବୋଲଗଡ ସମ୍ମାନ' ଉପାଧିରେ ଭୂଷିତ ।

ν ନରସିଂହ ପଟ୍ଟନାୟକ - (ସଂପୁର)

ସଂପୁର ଗ୍ରାମରେ ଜନ୍ମିତ ν ପଟ୍ଟନାୟକ ଜଣେ ବିଶେଷ ପ୍ରଜ୍ଞା ପୁରୁଷ ଭାବରେ ଥିଲେ ମଧ ବଣମଲ୍ଲୀ ବଣରେ ମଉଳିଲା ଭଳି ତାଙ୍କୁ କେହି ଜାଣି ପାରିଲେ ନାହିଁ । ତାଙ୍କର କେତେକ ଗଣିତ ବହି ଋଷ ଭାଷାରେ ଅନୁବାଦ ହୋଇ ସେହି ଦେଶର ବିଶ୍ୱବିଦ୍ୟାଳୟରେ ପ୍ରଚଳିତ ହେଉଅଛି । 'ସତ୍ୟ ମେବ ଜୟତେ' ଶବ୍ଦର ବ୍ୟାକରଣ ଗତ ତୃଟି ଥିବା ଦର୍ଶାଇ ସେ ଏକ ଚିଠି ପ୍ରଧାନମନ୍ତ୍ରୀ ପଣ୍ଡିତ ଜବହରଲାଲ ନେହେରୁଙ୍କୁ ଲେଖିଥିଲେ । ଉକ୍ତ ଚିଠିରେ ଦର୍ଶାଯାଇଥିବା ଯୁକ୍ତି ଭାରତର ବିଦ୍ୱାନ ସଂସ୍କୃତ ପଣ୍ଡିତ ମଣ୍ଡଳୀ ଦ୍ୱାରା ଠିକ୍ ଥିଲା ବୋଲି ଜଣାଯାଇଥିଲା । ତାହା ସ୍ୱତେ ମଧ ପ୍ରଚଳିତ ବ୍ୟବସ୍ଥାରେ ଉକ୍ତ ଶବ୍ଦ 'ସତ୍ୟ ମେବ ଜୟତେ' ଗ୍ରହଣ ହୋଇଯାଇଥିବାରୁ ପଣ୍ଡିତ ନେହେରୁ ଏହି ଭୁଲ ପାଇଁ ଦୁଃଖ ପ୍ରକାଶ କରି ତାଙ୍କୁ ଚିଠି ଲେଖିଥିବାର ତାଙ୍କ

ଜୀବଦଶାରେ ଲେଖକ ତାଙ୍କ ଠାରୁ ଶୁଣିବାକୁ ପାଇଥିଲେ ।

ଡାକ୍ତର ଗଦାଧର ଷଡଙ୍ଗୀ - (ଦିବ୍ୟସିଂହପୁର ଶାସନ)

ଡାକ୍ତର ଷଡଙ୍ଗୀ ଜଣେ ପ୍ରତିଷ୍ଠିତ ଏବଂ ସୁବିଖ୍ୟାତ ଶିଶୁ ଚିକିତ୍ସା ବିଶାରଦ ଭାବରେ ସ୍ୱୀକୃତ । ସେ ଦିବ୍ୟସିଂହପୁର ଶାସନ ନିବାସୀ ଅଟନ୍ତି । ନିଜର ମୌଳିକ ପେଶା ସହ ସେ ଜଣେ ସାହିତ୍ୟ ଅନୁରାଗୀ । ବର୍ତ୍ତମାନ ସୁଦ୍ଧା 'ମଧ୍ୟାହ୍ନରେ ଅନ୍ଧକାର', 'ଉତ୍ତରାୟଣ', 'ବିଶ୍ୱାସର ତାଳପତ୍ର' ପ୍ରଭୃତି ଆଉ ୪ ଖଣ୍ଡ ପୁସ୍ତକର ସେ ରଚୟିତା । ଏହି ପୁସ୍ତକ ଗୁଡିକ ବହୁଳ ଭାବରେ ପାଠକଙ୍କ ଦ୍ୱାରା ପ୍ରଶଂସିତ ହୋଇଅଛି ।

ନିରଞ୍ଜନ ମହାପାତ୍ର - (ବୋଲଗଡ)

ବୋଲଗଡ ମହାପାତ୍ର ବଂଶର ଯୁବ ଲେଖକ ତଥା ଶିକ୍ଷକ ଶ୍ରୀ ନିରଞ୍ଜନ ମହାପାତ୍ର ଜଣେ ନୀରବ ସାଧକ । ତାଙ୍କ ଦ୍ୱାରା ଲିଖିତ 'ବଉଳ' ଏକଦା ଓଡିଆ ସିନେମା ନିର୍ମାଣ ପାଇଁ ମର୍ଯ୍ୟାଦା ଲାଭ କରିଥିଲା । 'ମୁଖା' ତାଙ୍କର ସ୍ଥାନୀୟ ରାଜନୀତି ତଥା ନିଛକ ଜନଜୀବନ ଉପରେ ଲିଖିତ ଏକ ସୁଦୀର୍ଘ ଉପନ୍ୟାସ । ସାହିତ୍ୟ ସାଧନା ଛଡା ସେ ବହୁ ପୁରାତନ ସାମଗ୍ରୀର ସଂରକ୍ଷକ ଏବଂ ଜଣେ କୁଶଳୀ ବିଜ୍ଞାନୀ ଅଟନ୍ତି । ତାଙ୍କ ଦ୍ୱାରା ପ୍ରସ୍ତୁତ ବିଭିନ୍ନ ବିଜ୍ଞାନ ଭିତ୍ତିକ ମଡେଲ ରାଜ୍ୟସ୍ତରରେ ଏବଂ ଜାତୀୟ ସ୍ତରରେ ପ୍ରଶଂସିତ ହୋଇଅଛି ।

ଅଧ୍ୟାପକ ପ୍ରଫୁଲ୍ଲ କୁମାର ସୁବୁଦ୍ଧି - (ହରିପୁର ପାଟଣା)

ହରିପୁର ପାଟଣା ନିବାସୀ ଶ୍ରୀଯୁକ୍ତ ସୁବୁଦ୍ଧି ଜଣେ ଇଂରେଜୀ ଅଧ୍ୟାପକ ଥାଇ ଛାତ୍ରାବସ୍ଥାରୁ ନିଜକୁ ଓଡିଆ କାବ୍ୟ କବିତା ରଚନାରେ ନିୟୋଜିତ କରିଛନ୍ତି । ତାଙ୍କର କବିତା ଅତି ଉଚ୍ଚକୋଟୀର ଏବଂ ତାଙ୍କ ଦ୍ୱାରା ପ୍ରକାଶିତ 'ଆଶା ପୁଷ୍ପ' କବିତା ପୁସ୍ତକ ବହୁ ଜନ ପ୍ରଶଂସିତ ଅଟେ । ଏହାଛଡା ରୀତି ସାହିତ୍ୟ ଏବଂ ଭକ୍ତି ସାହିତ୍ୟ ଉପରେ ତାଙ୍କର ବିଶେଷ ଦକ୍ଷତା ଅଛି । କବିତା ସଂଯୋଜନା କରିବାରେ ସେ ସିଦ୍ଧହସ୍ତ ଅଟନ୍ତି ।

ତ୍ରିନାଥ ମହାନ୍ତି- (ବୋଲଗଡ)

କବି ତ୍ରିନାଥ ମହାନ୍ତି ମୂଳତଃ ନୟାଗଡ ଅଞ୍ଚଳର ବାସିନ୍ଦା ଥିଲେ ମଧ୍ୟ ବୋଲଗଡ ହାଇସ୍କୁଲରୁ ଅବସର ଗ୍ରହଣ କରି ଏଠାରେ ବସବାସ କରୁଛନ୍ତି । ସେ ନୟାଗଡ ବଜେନ୍ଦ୍ର ହାଇସ୍କୁଲରେ କାର୍ଯ୍ୟରତ ଥିଲା ବେଳେ ପୂର୍ବତନ ନୟାଗଡ ରାଜ୍ୟର

ଇତିହାସ ସଂଗ୍ରହ କରି ତାର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲେ । ଏହି ପାଣ୍ଡୁଲିପିକୁ ନୟାଗଡର କେତେକ ଉତ୍ସାହୀ ଶିକ୍ଷାବିତ ନେଇ ନୟାଗଡ ଇତିହାସ ମୁଦ୍ରଣ କରିଥିଲେ । ଏହାଛଡା ସେ ଜଣେ ସଫଳ କବି ଭାବରେ ବହୁ କବିତା ରଚନା କରିଛନ୍ତି । ସେଥିମଧ୍ୟରୁ ପ୍ରକାଶ ପାଇଥିବା 'ଚନ୍ଦନ ଯାତ୍ରା', 'ଝୁଲଣ ଯାତ୍ରା', 'ଗୁଣ୍ଡିଚା ବିଜେ', 'ଚନ୍ଦନ ବେଶ', 'ଚନ୍ଦ୍ରଭାଗା', 'ଶାଶୁ ଘର ହାଲଚାଲ', 'ନୂଆବୋଉଙ୍କ ଫେସନ', 'ଯାତ୍ରା ଦେଖା' ପ୍ରଭୃତି ମୁଦ୍ରିତ ହୋଇ ଜନାଦୃତ ହୋଇଅଛି । ତାଙ୍କର 'ଚନ୍ଦନ ବେଶ' ପୁସ୍ତିକାକୁ ନନ୍ଦିଘୋଷ ତରଫରୁ ପୁନର୍ବାର ମୁଦ୍ରଣ କରାଯାଇଅଛି ।

ବ୍ୟଙ୍ଗ କବି ସରୋଜ କୁମାର ମିଶ୍ର - (ଚିଟାକଟା) (ଦିବ୍ୟସିଂହପୁର ଶାସନ)

ଦିବ୍ୟସିଂହପୁର ଶାସନ ନିବାସୀ ଶିକ୍ଷକ ଶ୍ରୀ ସରୋଜ କୁମାର ମିଶ୍ର ଓଡିଶାର ଜଣେ ଲବ୍ଧ ପ୍ରତିଷ୍ଠିତ ବ୍ୟଙ୍ଗ ଏବଂ ହାସ୍ୟ କବି ଭାବରେ ପରିଚିତ । ବର୍ତ୍ତମାନ ରାଜ୍ୟ ଏବଂ ରାଜ୍ୟ ବାହାରେ ଓଡିଆ ସମାଜରେ ସମସ୍ତ ବ୍ୟଙ୍ଗ କବି ସମ୍ମିଳନୀରେ ତାଙ୍କର ଉପସ୍ଥିତି ସହ ସେଥିରେ ତାଙ୍କର ବ୍ୟଙ୍ଗ କବିତା ପାଠ ଶୈଳୀ ଶ୍ରୋତାଙ୍କୁ ବିମୁଗ୍ଧ କରିଥାଏ । ତାଙ୍କ ପ୍ରେରଣାରେ ବର୍ଷର ପ୍ରତ୍ୟେକ ସମୟରେ ରାଜ୍ୟ ସାରା ବ୍ୟଙ୍ଗ କବି ସମ୍ମିଳନୀ ହୋଇଥାଏ । ବର୍ତ୍ତମାନ ଦୂରଦର୍ଶନ, ଇଟିଭି ରେ ତାଙ୍କର ଚମତ୍କାରିତା ବିଶେଷ ପ୍ରଶଂସିତ ହୋଇଅଛି ।

ବେଣୁଧର ରାୟ- (ସଂପୁର)

ସଂପୁର ଗ୍ରାମରେ ଜନ୍ମଗ୍ରହଣ କରି ଶ୍ରୀ ବେଣୁଧର ରାୟ ଶିକ୍ଷକ ଭାବରେ ନିଜର ଜୀବନ ବିତାଇବା ଅବସରରେ ବହୁ କାବ୍ୟ କବିତା ରଚନା କରି ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ହୋଇଛନ୍ତି । ସେ ଜଣେ ଆଶୁକବି ତଥା ବହୁ କାବ୍ୟ କବିତାର ରଚୟିତା । ପରମ୍ପରାକ୍ରମେ ତାଙ୍କର ପିତା ୰ ମଧୁସୂଦନ ରାୟ ଜଣେ ବିଖ୍ୟାତ ରାମଲୀଳା ଗୁରୁ ତଥା ତାଙ୍କର ପିତାମହ ୰ ସନାତନ ରାୟ ଜଣେ ବିଶିଷ୍ଟ ସଂକୀର୍ତ୍ତନ ପ୍ରେମୀ ଥିଲେ । ତାଙ୍କର ପ୍ରକାଶିତ ପୁସ୍ତକ ହେଲା - ବାଣପୁର ଦର୍ପଣ, ଶିଶୁ ପ୍ରତିଭା ପୁସ୍ତକ ।

ସୁମନ୍ତ ହୋତରାୟ - (ପାଟବନ୍ଧ)

ବିପ୍ଲବୀ କବି ଭାବରେ ସେ ପାଞ୍ଚଗଡ ଅଞ୍ଚଳରେ ସୁପରିଚିତ । ତାଙ୍କ କବିତାରେ ଓଡିଶାର ଏ ଯୁଗର ସର୍ବଶ୍ରେଷ୍ଠ ବିପ୍ଳବୀ କବି ରବି ସିଂହଙ୍କର ଆଦର୍ଶ ପରିଲକ୍ଷିତ ହୁଏ । ସେ ଜଣେ ସୁସଂଗଠକ, ଶିକ୍ଷକ ନେତା ଏବଂ ରାଜ୍ୟପାଳ ପୁରସ୍କାର

ପ୍ରାପ୍ତ ଶିକ୍ଷକ ଭାବରେ ସୁବିଦିତ । ବାମପନ୍ଥୀ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ ଜ୍ୱାଳାମୟୀ କବିତା ତାଙ୍କ କଲମରୁ ଝରି ଆସିଥାଏ । ସେ ଜଣେ ଉଚ୍ଚକୋଟୀର ବକ୍ତା ଅଟନ୍ତି । ଓଡିଶା ନିମ୍ନ ମାଧମିକ ଶିକ୍ଷକ ସଂଘର ମାସିକ ମୁଖପତ୍ର 'ଶିକ୍ଷକ ଦର୍ପଣ' ର ସେ ସମ୍ପାଦକ ଥିଲେ ।

କବୟତ୍ରୀ ଦମୟନ୍ତି ପଟ୍ଟନାୟକ - (ବୋଲଗଡ)

ବର୍ତ୍ତମାନ ଅଞ୍ଚଳର ପ୍ରଥମ ନାରୀକବି ଭାବରେ ସୁପରିଚିତ । ତାଙ୍କର ବହୁ କବିତା ଅତିତରେ ମୀନା ବଜାର ଏବଂ ଝଙ୍କାର ପ୍ରଭୃତି ପତ୍ରିକାରେ ପ୍ରକାଶ ପାଉଥିଲା । ସେ ବୋଲଗଡର ବିଶିଷ୍ଟ ବାଗ୍ମୀ ୰ ଘନଶ୍ୟାମ ପଟ୍ଟନାୟକଙ୍କର ନାତୁଣୀ ଅଟନ୍ତି । 'ଉର୍ମିଳା', 'ଗୋପା' ପ୍ରଭୃତି ତାଙ୍କର ଗୀତିକାବ୍ୟ ଅପ୍ରକାଶିତ ।

କବୟତ୍ରୀ ସେବତୀ ପରିଡା - (ବୋଲଗଡ)

ଉଚ୍ଚ ବିଦ୍ୟାଳୟରେ ଶିକ୍ଷୟତ୍ରୀ ଭାବରେ କାର୍ଯ୍ୟକରିବା ସହ ସେ କବିତା ଲେଖିବାରେ ସିଦ୍ଧହସ୍ତା ଅଟନ୍ତି । ତାଙ୍କର ବହୁ କବିତା ସଙ୍କଳନ ରାଜ୍ୟସାରା ଉଚ୍ଚପ୍ରଂଶସିତ । ସେ ରାଜ୍ୟର ବହୁ.ଉଚ୍ଚ ପ୍ରତିଷ୍ଠିତ ସାହିତ୍ୟ ଅନୁଷ୍ଠାନ ତରଫରୁ ବହୁ ସମ୍ମାନର ଅଧିକାରିଣୀ ଅଟନ୍ତି । ତାଙ୍କ ଦ୍ୱାରା ପ୍ରକାଶିତ କବିତା ପୁସ୍ତକ ଏବଂ କବିତା ସଙ୍କଳନ ମଧରେ "କିଛି ଝଲକ କିଛି ପୁଲକ" ସର୍ବଶ୍ରେଷ୍ଠ ଅଟେ । ସେ ସଂପୁର ନିବାସୀ ହୋଇଥିଲେ ମଧ ବର୍ତ୍ତମାନ ବୋଲଗଡରେ ବସବାସ କରୁଛନ୍ତି । ଏହି ପ୍ରେରଣା ପଛରେ ତାଙ୍କର ସ୍ୱାମୀ ମାଣିକାଗୋଡା ଲକ୍ଷ୍ମନ ପରିଡାଙ୍କର ପୂର୍ଣ୍ଣ ଅବଦାନ ରହିଛି । ଶ୍ରୀମତୀ ପରିଡା ଶିକ୍ଷା ଉପରେ ନିଜର ଗବେଷଣା ମୂଳକ ପ୍ରବନ୍ଧ ପାଇଁ ଶିକ୍ଷା ପ୍ରାଣ ଏବଂ ଶିକ୍ଷ ଗୌରବ ଉପାଧି ପାଇଛନ୍ତି । ସେ ଆମେରିକାନ ରାଇଟରର୍ସ ସୋସାଇଟର ସଭ୍ୟା ଭାବରେ ସ୍ୱୀକୃତି ଲାଭ କରିଛନ୍ତି । ତାଙ୍କର ଅନ୍ୟ ସଙ୍କଳନ ମଧରେ ମଧୁମୁର୍ଚ୍ଛନା କବିତା ସଙ୍କଳନ ଏବଂ ସ୍ଥିତପ୍ରଜ୍ଞା କବିତା ସଙ୍କଳନ ପାଠକ ମହଲରେ ବେଶି ଆଦର ପାଇଅଛି । ସେ 'କବି ସୌରଭ', 'ଶିକ୍ଷାମୟୁଖ', 'ସ୍ଥିତପ୍ରଜ୍ଞା' ଉପାଧିରେ ଭୂଷିତା । ନନ୍ଦିଘୋଷ ମକର ମିଳନ ଏବଂ ବୋଲଗଡ ମହୋତ୍ସବରେ ବୋଲଗଡ ବ୍ଲକ ଅଞ୍ଚଳର ଶ୍ରେଷ୍ଠ ନାରୀ କବି ଭାବରେ ସମ୍ମାନିତ ହୋଇଛନ୍ତି ।

ବ୍ରଜବନ୍ଧୁ ତ୍ରିପାଠୀ - (ବଡକୁମାରୀ)

ସାନକୁମାରୀ ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଶ୍ରୀ ତ୍ରିପାଠୀ ଜଣେ ସଫଳ ଶିକ୍ଷକ ଅଟନ୍ତି । ଶିକ୍ଷାଦାନ ସହ ବେଦ ବେଦାନ୍ତ, ଗୀତା, ଉପନିଷଦ, ପୁରାଣ

ସର୍ବୋପରି ଜଗନ୍ନାଥ ସଂସ୍କୃତି ଉପରେ ତାଙ୍କର ଅଗାଧ ଜ୍ଞାନ ଅଛି । ସେ ଉପରୋକ୍ତ ତଥ୍ୟ ଉପରେ ବହୁ କାବ୍ୟ କବିତା ରଚନା କରିଅଛନ୍ତି । ଏମାନଙ୍କ ମଧ୍ୟରେ 'ରତ୍ନହାର', 'ଗୀତାରତ୍ନ', 'ଜ୍ଞାନରତ୍ନ'ର ପ୍ରଥମ ଏବଂ ଦ୍ୱିତୀୟ ଖଣ୍ଡ ବିଶେଷ ଭାବରେ ଜନସମାଜରେ ଆଦୃତ ହୋଇଅଛି । ଜଗନ୍ନାଥ ସଂସ୍କୃତି ଉପରେ ଅଭିଭାଷଣ ଦେବା ପାଇଁ ନିକଟରେ ସେ ସୁଦୂର ଲଣ୍ଡନ ଯାଇ ଫେରିଆସିଛନ୍ତି ।

ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି - (ସଂପୁର)

ଚଳିତ ଶତାବ୍ଦୀର ପ୍ରଥମ ପାଦରେ ସାରା ବିଶ୍ୱର ଓଡିଆ ମହଲରେ ଚହଳ ପକାଇଥିବା ସର୍ବଜନ ପ୍ରଶଂସିତ ଲୋକଗୀତ 'ବଉଳ' କ୍ୟାସେଟର ଅମର କବି ଶ୍ରୀମାନ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି ସଂପୁର ଗ୍ରାମର ନିବାସୀ ଅଟନ୍ତି । ସେ ଜଣେ ଶିକ୍ଷକ ଏବଂ ଯୁବ କବି । ସାର୍ଥକ କ୍ୟାସେଟ କମ୍ପାନୀ ଦ୍ୱାରା ଏହାର ଅଡିଓ ଏବଂ ଭିଡିଓ କ୍ୟାସେଟ ଏପରି ଭାବରେ ପ୍ରଶଂସିତ ହୋଇଥିଲା ଯେ ସେହି କ୍ୟାସେଟରୁ କମ୍ପାନୀର ମାଲିକ ୨୫ ଲକ୍ଷ ଟଙ୍କା ଲାଭ କରିଥିବାର ଶୁଣାଯାଏ । ସାନପଦର ଗ୍ରାମର ନାରୀ ପ୍ରତିଭା କୁମାରୀ ସୁମିତ୍ରା ମହାପାତ୍ର ଏହି କବିଙ୍କର ବଉଳ ଗୀତ ଗାଇ ବିଶେଷ ସୁନାମ ଅର୍ଜନ କରିଛନ୍ତି । ଏତଦ୍ ବ୍ୟତିତ ଗୀତିନାଟ୍ୟ 'ଜୟଦ୍ରଥ ବଦ୍ଧ' ସହ ଅନେକ ଗୀତିନାଟ୍ୟ ସେ ରଚନା କରିଅଛନ୍ତି ।

ଅନାଦି ନାୟକ - (ଦେଉଳି)

ଦେଉଳି ଗ୍ରାମର କବି ଅନାଦି ନାୟକଙ୍କ ରଚିତ 'ସୁଧନ୍ୱା ଇନ୍ଦୁମତୀ' କାବ୍ୟ ପାଠକ ମହଲରେ ବିଶେଷ ଭାବରେ ପ୍ରଶସିତ ହୋଇଛି । ସେ ଜଣେ ପ୍ରତିଷ୍ଠିତ କବି । 'ଭକ୍ତ ଗୟା', 'ନାରୀ ନାରଦ' ତାଙ୍କର ପ୍ରକାଶିତ ଆଉ ଦୁଇଟି କାବ୍ୟ ।

ରଘୁନାଥ ସାହୁ - (ଅରଖପଲ୍ଲୀ)

ଶିକ୍ଷକତା ସହ କବି ପ୍ରତିଭା ଶ୍ରୀ ସାହୁଙ୍କର ସହଜାତ ପ୍ରବୃତ୍ତି । ଅରଖପଲ୍ଲୀ ନୂଆସାହି ତାଙ୍କର ବାସସ୍ଥାନ । 'ଝାପସା ମୁକୁର' ତାଙ୍କ ଦ୍ୱାରା ପ୍ରକାଶିତ ଏକ ଅନବଦ୍ୟ ଗ୍ରନ୍ଥ । ଏହାଛଡା ସେ ବହୁ ଭଜନ ଏବଂ ପିଲା ଦିନର ଅନୁଭୂତି ସମ୍ପର୍କରେ କବିତା ରଚନା କରିବାରେ ସିଦ୍ଧହସ୍ତ ହୋଇଛନ୍ତି । ଏହି କବିତା ଗୁଡିକ ବିଶେଷ ଲୋକପ୍ରିୟ ।

କାଳୀଚରଣ ଜୟସିଂହ - (ବାରବାଟୀ)

ବାଙ୍କୋଇ ଗଡ ନିକଟସ୍ଥ ବାରବାଟୀ ଗ୍ରାମର କାଳିଚରଣ ଜୟସିଂହ ପାଞ୍ଚଗଡର ଶିକ୍ଷା ଜଗତରେ ଏକ ଧ୍ରୁବ ତାରା ସଦୃଶ । ତାଙ୍କ ପ୍ରଚେଷ୍ଟାରେ ପାଞ୍ଚଗଡ

ଅନଙ୍ଗ ନରେନ୍ଦ୍ର ସିଟି ସ୍କୁଲ ଏବଂ କାଳୀଚରଣ ପାଖଗଡ ଅନଙ୍ଗ ନରେନ୍ଦ୍ର ମହାବିଦ୍ୟାଳୟ ପ୍ରତିଷ୍ଠା ଲାଭ କରିଅଛି । ଏହାଛଡା ସେ ବାଙ୍କୋଇ ହାଇସ୍କୁଲ ନିର୍ମାଣରେ ବିଶେଷ ଅଂଶଗ୍ରହଣକାରୀ ଥିଲେ । ଏତଦ୍‌ବ୍ୟତୀତ ଧାରାବାହିକ ଭାବରେ କବି ଅନଙ୍ଗ ନରେନ୍ଦ୍ର ପାଖଗଡର ଇତିହାସ ଉପରେ ଗବେଷଣା ସହ ସ୍ଥାନୀୟ ପାଇକ ପରମ୍ପରାର ଇତିହାସ ଉପରେ ଗବେଷଣା ଜାରି ରଖିଛନ୍ତି । ତାଙ୍କର ବହୁ ଲେଖା ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ପାଇ ପ୍ରଂଶସିତ ହୋଇଅଛି ।

ଭାଗୀରଥି ସାହୁ - (ଦେଉଳୀ)

ଶିକ୍ଷା ପ୍ରେମୀ ଭାଗୀରଥି ସାହୁ ସରକାରୀ ଚାକିରୀରେ ଥାଇ ମଧ ଜଣେ ସୁଲେଖକ ଅଟନ୍ତି । 'ଦେଉଳି ଗ୍ରାମର ଇତିହାସ' ତାଙ୍କ ଦ୍ୱାରା ଲିଖିତ । ଦେଉଳି ରଘୁନାଥ ମହାବିଦ୍ୟାଳୟ, ଟିକାତାଳ ମା ଶାରଦା ମହିଳା ମହାବିଦ୍ୟାଳୟ, ଦେଉଳି ସଂସ୍କୃତ ଟୋଲ ଏବଂ ମହାବିଦ୍ୟାଳୟ ପ୍ରତିଷ୍ଠାରେ ସେ ମୁଖ୍ୟ ଅଂଶ ଗ୍ରହଣ କରିଛନ୍ତି । ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଦେଉଳି ଗ୍ରାମର ଶ୍ରୀକୃଷ୍ଣଙ୍କ ମଠ ଏକ ସୁନ୍ଦର ପରିବେଶ ସୃଷ୍ଟି କରିଅଛି । ଏଠାରେ ପ୍ରତିବର୍ଷ ଦୋଳ ଉତ୍ସବ ପାଳନ କରାଯାଏ ।

ସୁନୀଲ ପୃଷ୍ଟି - (ମାଣିକାଗୋଡା)

ଶ୍ରୀ ପୃଷ୍ଟି ମାଣିକାଗୋଡା ଗ୍ରାମର ମୂଳ ଅଧିବାସୀ ହେଲେ ମଧ ତାଙ୍କର ପିତା ବିଶ୍ୱେଶ୍ୱର ପୃଷ୍ଟିଙ୍କର ସରକାରୀ ଚାକିରୀରେ ଯୋଗଦାନ ପରେ ସୁଦୂର ରାୟଗଡା ରେ ସେ ଜନ୍ମ ଗ୍ରହଣ କରିଥିଲେ । ସାମ୍ବାଦିକତା ସହ ବହୁ କାବ୍ୟ କବିତା ରଚନା କରିଅଛନ୍ତି । ଭାରତର ବହୁଳ ପ୍ରସାରିତ ଲୋକପ୍ରିୟ 'ଜହ୍ନମାମୁଁ' ପତ୍ରିକାରେ କାମ କରିବା ପରେ ଏହି ସଂସ୍ଥା ତରଫରୁ ବର୍ତ୍ତମାନ ଓଡିଶାରେ ପ୍ରକାଶ ପାଉଥିବା 'ସଚିତ୍ର ବିଜୟା' ପତ୍ରିକାର ସେ ମୁଖ୍ୟ ସଂପାଦକ ଭାବରେ କାର୍ଯ୍ୟରତ ।· ନିକଟ ଅତୀତରେ (୧୪.୦୪.୨୦୦୬) ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ଦ୍ୱାରା 'ବିଷୁବ ପୁରସ୍କାର' ପାଇଛନ୍ତି ।

ବ୍ରଜବନ୍ଧୁ ମହାପାତ୍ର - (କାଉଁରୀପାଟଣା)

ଶ୍ରୀ ମହାପାତ୍ର ପୂର୍ବରୁ ଜଣେ ଆଇନିଜ୍ଞ ଏବଂ ସମାଜ ସେବକ ଭାବରେ ବଡକୁମାରୀ ଗ୍ରାମପଞ୍ଚାୟତର ସରପଞ୍ଚ ଥିଲେ । ଶେଷ ଜୀବନରେ ଯୁଗ ନିର୍ମାଣ ଯୋଜନା ଗାୟତ୍ରୀ ପରିବାରର ସଭ୍ୟ ରହି ଜଣେ କୃତି ସାରସ୍ୱତ ସାଧକ ଭାବରେ ପରିଚିତ । 'ବୋଇତ' ତାଙ୍କର ଲୋକପ୍ରିୟ ଗୀତିକାବ୍ୟ ।

ବାଲୁଙ୍କି ବଳିୟାର ସିଂହ - (ମର୍ଦ୍ଦାବାଡି)

ଶ୍ରୀ ବଳିୟାର ସିଂହ ଜଣେ ପ୍ରାଥମିକ ଶିକ୍ଷକ ଭାବରେ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ବୋଲଗଡ ଅଞ୍ଚଳର ପ୍ରାଚୀନ ସମରକଳା, ଲୋକ ସଂସ୍କୃତି, ଜାନୀଯାତ୍ରା ଉପରେ ନିଜର ଗବେଷଣା ଜାରୀ ରଖିଛନ୍ତି । ତାଙ୍କର ଗବେଷଣା ମୂଳକ ଲେଖା ଅତୀବ ଉଚକୋଟୀର ଅଟେ । ତାଙ୍କର ସ୍ୱର୍ଗୀୟା ପତ୍ନୀ ସତ୍ୟଭାମା ବଳିୟାରସିଂହଙ୍କ ନାମରେ ଏକ ସ୍ମୃତି ସଂସଦ୍ କରି ସମାଜ ସେବା ଏବଂ ବିଭିନ୍ନ ପ୍ରତିଭା ମାନଙ୍କୁ ସମ୍ମାନ ଦେବା ଜାରୀ ରଖିଛନ୍ତି ।

ଏହାଛଡା ମାଣିକାଗୋଡା ଗ୍ରାମର କବି ପ୍ରଫୁଲ୍ଲ ମହାପାତ୍ର, ଲେଖକ ମହମ୍ମଦ ଆଜାଦ, ବିଦ୍ୟାଧର ପୃଷ୍ଟି, ଙ୍କ ସହ ଜହିରୁଦ୍ଦିନ ଖାଁ ଭଞ୍ଜ ସାହିତ୍ୟ ଶୈଳୀରେ ବହୁ କବିତା ରଚନା କରିଅଛନ୍ତି । ସାନପଦର ଗ୍ରାମର ଇଂରେଜୀ ଭାଷାରେ ବିଶିଷ୍ଟ ଯୁବ କବି ମନମୋହନ ନାୟକଙ୍କର ଇଂରେଜୀ କବିତା ଆମେରିକାରେ ପ୍ରଂଶସିତ ହୋଇଅଛି । ସଂପୁର ଗ୍ରାମର ନାରୀ କବି ପ୍ରମିଳା ମହଲା, ବୋଲଗଡର ଶ୍ରୀମତୀ ପ୍ରଭାତୀ ରଥ, ଶାନ୍ତିଲତା ସାହୁ, ଗୀତାଶ୍ରୀ ପିୟମ୍ବଦା ନାରୀ କବି ଭାବରେ ପ୍ରତିଷ୍ଠା ଲାଭ କରିଛନ୍ତି । ସାଗର ଗାଁର ବସନ୍ତମଞ୍ଜରୀ ପରମଗୁରୁ ଏବଂ କୃଷ୍ଣ ଚନ୍ଦ୍ର ପଟ୍ଟନାୟକ ପ୍ରଭୃତି ବହୁ ଲେଖକ ସେମାନଙ୍କର ଲେଖନୀ ଚାଳନା କରି ଓଡିଆ ସାହିତ୍ୟ ସେବାରେ ନିଜକୁ ସମର୍ପିତ କରିଛନ୍ତି ।

ଏମାନଙ୍କ ଛଡା ପାଞ୍ଚଗଡ ଅଞ୍ଚଳର ବହୁ ଯୁବ କବି ପ୍ରତ୍ୟେକ ବର୍ଷ ନନ୍ଦିଘୋଷ ଦ୍ୱାରା ଅନୁଷ୍ଠିତ ପବିତ୍ର ମକର ସଂକ୍ରାନ୍ତି ତିଥିର ମକର ମିଳନ ଉତ୍ସବରେ ଯୋଗଦେଇ କବିତା ପାଠ ଉତ୍ସବ ଅବସରରେ ସ୍ୱରଚିତ କବିତା ପାଠ କରିଥାଆନ୍ତି । ଏମାନଙ୍କ ଛଡା ପାଞ୍ଚଗଡରେ ଥିବା ଅନ୍ୟାନ୍ୟ କବି ତଥା ସାହିତ୍ୟିକଙ୍କ ଉପରେ ସମୟ କ୍ରମେ ଆଲୋଚନା କରାଯିବ ।



# କଳାକାର ଓ ସାମ୍ବାଦିକ

**କଳା, ସଂଗୀତ, ଚିତ୍ରକାର, ନାଟ୍ୟଶିଳ୍ପୀ ଏବଂ ଅନ୍ୟାନ୍ୟ ପ୍ରତିଭା -**

ବହୁ ପ୍ରାଚୀନ କାଳରୁ ବୋଲଗଡ ଅଞ୍ଚଳରେ କଳା ସଙ୍ଗୀତର ଆଦର ଥିଲେ ମଧ୍ୟ ବୋଲଗଡରେ ୰ ବାମନ ମହାପାତ୍ରଙ୍କ ଦ୍ୱାରା ଆରମ୍ଭ ହୋଇଥିବା ଚନ୍ଦନ ଯାତ୍ରାର ଗୋଟିପୁଅ ନାଚ ବହୁ ସଙ୍ଗୀତଜ୍ଞ ତଥା କଳାକାର ସୃଷ୍ଟି କରିଥିଲା । ବର୍ତ୍ତମାନ ଏବଂ ଦିବଂଗତ କଳାକାର ଏବଂ ସଙ୍ଗୀତଜ୍ଞଙ୍କ ବିଷୟରେ ଯୁବ କଣ୍ଠଶିଳ୍ପୀ ଶ୍ରୀ ପ୍ରଫୁଲ କରଙ୍କର "ବୋଲଗଡ ଅଞ୍ଚଳର ସ୍ମରଣୀୟ କଣ୍ଠଶିଳ୍ପୀ : ପୂର୍ବ ଓ ପଶ୍ଚାତ" (ଆଶା ୨୦୦୫, ବୋଲଗଡ ମହୋତ୍ସବ ସ୍ମରଣୀକା)ରୁ ଏଠାରେ ଉଲ୍ଲେଖ କରାଗଲା ।

ଏତଦ୍ ବ୍ୟତୀତ ସଙ୍ଗୀତ ପରମ୍ପରାର ଏକ ସ୍ୱତନ୍ତ୍ର ବିଭାଗ ହେଲା 'ଦରବାରୀ ସଙ୍ଗୀତ', ଯାହାକି ରାଜା ମହାରାଜାଙ୍କ ଦରବାରରେ ପ୍ରତ୍ୟହ ଅନୁଷ୍ଠିତ ହେଉଥିଲା । ଯେଉଁଥିରୁ କି ସୃଷ୍ଟି ହୁଅନ୍ତି କଣ୍ଠଶିଳ୍ପୀ (ଗାୟକ) ଯନ୍ତ୍ର ଶିଳ୍ପୀ (ବାଦକ) ଓ ନୃତ୍ୟଶିଳ୍ପୀ (ନର୍ତ୍ତକ) ମାନେ । ସମାଜରେ ଏମାନଙ୍କର ସମ୍ମାନ ସ୍ୱତନ୍ତ୍ର । ଏହି ବିଭାଗରେ ବୋଲଗଡ ଅଞ୍ଚଳର ସ୍ଥାନ ମଧ୍ୟ ସ୍ୱତନ୍ତ୍ର । ଏଥିପାଇଁ ଏକ ମୁଖ୍ୟ କାରଣ ହେଉଛି ବୋଲଗଡର ଭଉଁରୀ ବା ଚନ୍ଦନ ଯାତ୍ରା । ପଚାଶ ଦଶକରୁ ଷାଠିଏ ଦଶକ ମଧ୍ୟରେ ଓଡିଶାର ତତ୍‌କାଳୀନ ସଙ୍ଗୀତ ନାଚ ଓ ମଂଚ ନାଟକ କ୍ଷେତ୍ରରେ ନାଁ କରିଥିବା ଗୋଷ୍ଠୀ ମାନଙ୍କୁ ୰ ବାମନ ମହାପାତ୍ର ବୋଲଗଡକୁ ଡକାଇ ଆଣୁଥିଲେ । ତେଣୁ ତାହାର ପ୍ରଭାବ ଏ ଅଞ୍ଚଳର ସଙ୍ଗୀତ ଶିଳ୍ପୀମାନଙ୍କ ପକ୍ଷରେ ପରୋକ୍ଷରେ ଏକ ଭିତ୍ତିଭୂମି ସଦୃଶ ଥିଲା । ବୋଲଗଡ ଅଞ୍ଚଳର ପ୍ରତ୍ୟେକ ଗ୍ରାମରେ ସଙ୍ଗୀତ ପ୍ରଭାବ ବିଶେଷ ଭାବ୍‌ରେ ଅନୁଭୂତ ହେଲା । ଏ ଦିଗରେ ଯେଉଁମାନେ ଅଗ୍ରଣୀ ଥିଲେ ସେମାନେ ହେଲେ :-

| କ୍ର.ସ. | ଗ୍ରାମର ନାମ | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|---|
| ୧. | ଅସରଳା | ଅସରଳା | ୰ ପୂର୍ଣ୍ଣଚନ୍ଦ୍ର ପାଣ୍ଡେ | ଓଡିଶୀ କଣ୍ଠଶିଳ୍ପୀ |
| ୨. | ବାଉଁରୀପାଟଣା | ବଡକୁମାରୀ | ୰ ନବକିଶୋର ମହାପାତ୍ର | ବେହେଲା ବାଦକ |
| ୩. | ଖଲୁରିଆ | ଖଲୁରିଆ | ୰ ଭାଗିରଥି ପଣ୍ଡା | ଗାୟକ ତଥା ନାଟ୍ୟ ନିର୍ଦ୍ଦେଶକ |
| ୪. | ଖଲୁରିଆ | ଖଲୁରିଆ | ୰ ଦାଶରଥି ପଣ୍ଡା | ଗାୟକ ତଥା ନାଟ୍ୟ ନିର୍ଦ୍ଦେଶକ |
| ୫. | ଖଲୁରିଆ | ଖଗୁରିଆ | ୰ନବକିଶୋର ଜଗଦେବ | ପୃଷ୍ଠପୋଷକ |

| କ୍ର.ସ. | ଗ୍ରାମର ନାମ | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|---|
| ୬. | ଫଂପୁର | ଖଣ୍ଟୁରିଆ | ୰ହରିହର ସ୍ୱାଇଁ | ଗାୟକ ତଥା ନାଟ୍ୟ ନିର୍ଦ୍ଦେଶକ |
| ୭. | ଟାଙ୍ଗିସାହି | ଫାସିଓଦା | ୰ଜଗମୋହନ ମହାରଣା | ଶାସ୍ତ୍ରୀୟ କଣ୍ଠଶିଳ୍ପୀ |
| ୮. | ଦେଉଳି | ଗୋପାଳପୁର | ୰କରୁଣାକର | ତବଲା ବାଦକ |
| ୯. | ଦେଉଳି | ଗୋପାଳପୁର | ୰କୁଳମଣି ସାହୁ | ସଙ୍ଗୀତ ଶିଳ୍ପୀ |
| ୧୦. | କଙ୍କାଙ୍ଗ | କଙ୍କାଙ୍ଗ | ୰ଶେଷଦେବ ମହାପାତ୍ର | ତବଲା ବାଦକ |
| ୧୧. | ତୃତୀୟାପଡା | ବୋଲଗଡ | ୰ବାନାମ୍ବର ମହାପାତ୍ର | ତବଲା ବାଦକ |
| ୧୨. | ବୋଲଗଡ | ବୋଲଗଡ | ୰ହାଡୁ ଚୌଧୁରୀ | ଓଡିଶୀ କଣ୍ଠଶିଳ୍ପୀ |
| ୧୩. | ବୋଲଗଡ | ବୋଲଗଡ | ୰ପରଶୁରାମ ସିଂହ | ଖେୟାଲ ଗାୟକ |
| ୧୪. | ଘୋରଡିଆ | ଡାବରଧୁଆପାଟଣା | ୰ଗଙ୍ଗାଧର ସୁବୁଦ୍ଧି | ଗାୟକ ତଥା ନୃତ୍ୟ ନିର୍ଦ୍ଦେଶକ |
| ୧୫. | ଡାବରଧୁଆ | ଡାବରଧୁଆପାଟଣା | ୰ବାଙ୍କନିଧି ପରିଡା | ପୃଷ୍ଠପୋଷକ |
| ୧୬. | ଡାବରଧୁଆ | ଡାବରଧୁଆପାଟଣା | ୰ସୁଦର୍ଶନ ମହାପାତ୍ର | ପୃଷ୍ଠପୋଷକ |
| ୧୭. | କଡବ | କଡବ | ମୀର୍ ମୁକରମ୍ ଅଲ୍ଲୀ | ଶାସ୍ତ୍ରୀୟ କଣ୍ଠଶିଳ୍ପୀ |
| ୧୮. | ବୋଲଗଡ | ବୋଲଗଡ | କୃଷ୍ଣମୋହନ ପାଇଟାସିଂହ | ଶାସ୍ତ୍ରୀୟ କଣ୍ଠଶିଳ୍ପୀ ତଥା ନିର୍ଦ୍ଦେଶକ |
| ୧୯. | ମାଣିକାଗୋଡା | ଦଳେଇସାହି | ଚଇତନ ପ୍ରଧାନ | ପୃଷ୍ଠପୋଷକ |

ଉପରୋକ୍ତ ସ୍ମରଣୀୟ ବ୍ୟକ୍ତିତ୍ୱମାନଙ୍କ ବ୍ୟତିତ ଆଜି ଯେଉଁମାନେ ରାଜ୍ୟ ସ୍ତରରେ ବେତାର, ଦୂରଦର୍ଶନ, ଚଳଚ୍ଚିତ୍ର, ଅଡିଓ କ୍ୟାସେଟ୍ ଏବଂ ଭିଡିଓ ଆଲବମ୍ ସହିତ ରାଜ୍ୟ ତଥା ରାଜ୍ୟ ବାହାରେ ଅନୁଷ୍ଠିତ ବିଭିନ୍ନ ସାଂସ୍କୃତିକ ମଞ୍ଚରେ ସଙ୍ଗୀତ ପରିବେଷଣ କରି ବୋଲଗଡ ଅଞ୍ଚଳର ସୁନାମ ବୃଦ୍ଧି କରିପାରିଛନ୍ତି ; ସେମାନେ ନିଶ୍ଚିତ ଭାବେ ଉପରୋକ୍ତ ପ୍ରତିଭା ମାନଙ୍କର ଉପଯୁକ୍ତ ଦାୟାଦ । ସେମାନେ ହେଲେ :-

| କ୍ର.ସ. | ଗ୍ରାମର ନାମ | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|---|
| ୧. | ଖଣନ୍ତି | କଡବ | ଅରବିନ୍ଦ ମୁଦୁଲି | କଣ୍ଠଶିଳ୍ପୀ, ଗୀତିକାର ଓ ନିର୍ଦ୍ଦେଶକ |
| ୨. | ବୋଲଗଡ | ବୋଲଗଡ | ପ୍ରଫୁଲ୍ଲ କୁମାର କର | କଣ୍ଠଶିଳ୍ପୀ ଓ ସଙ୍ଗୀତ ନିର୍ଦ୍ଦେଶକ |

| କ୍ର.ସ. | ଗ୍ରାମର ନାମ | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|---|
| ୩. | ଙ୍ଗପୁର | ଖଣ୍ଡୁରିଆ | ସଦାଶିବ ମହାରଣା | କଣ୍ଠଶିଳ୍ପୀ ଓ ନୃତ୍ୟଶିଳ୍ପୀ |
| ୪. | ବୋଲଗଡ | ବୋଲଗଡ | ତୃପ୍ତିମୟୀ ସାହୁ | କଣ୍ଠଶିଳ୍ପୀ |
| ୫. | ସାନପଦର | ସାନପଦର | ସୁମିତ୍ରା ମହାପାତ୍ର | କଣ୍ଠଶିଳ୍ପୀ |
| ୬. | ଖଣନି | କଡବ | ସଙ୍ଗୀତା ମୁଦୁଲି | କଣ୍ଠଶିଳ୍ପୀ |
| ୭. | ବୋଲଗଡ | ବୋଲଗଡ | ଜନାର୍ଦ୍ଦନ ଚୌଧୁରୀ | କଣ୍ଠଶିଳ୍ପୀ |
| ୮. | ଙ୍ଗପୁର | ଖଣ୍ଡୁରିଆ | ରବିନାରାୟଣ ପରିଡ଼ା | ଯନ୍ତ୍ରଶିଳ୍ପୀ (ବେହେଲା) |
| ୯. | ସାଗରଗୁଆଁ | ସାଗରଗୁଆଁ | ଜୟକୃଷ୍ଣ ପଟ୍ଟନାୟକ (ଭରତ) | ଯନ୍ତ୍ରଶିଳ୍ପୀ (ତବଲା) |
| ୧୦. | ଙ୍ଗପୁର | ଖଣ୍ଡୁରିଆ | ରାଜକିଶୋର ସାହୁ | ସିନେ ପ୍ରଯୋଜକ |

ଏମାନଙ୍କ ବ୍ୟତୀତ ଯେଉଁମାନେ ଆମ ଅଞ୍ଚଳର ପ୍ରାୟ ଅନେକ ସଙ୍ଗୀତ କାର୍ଯ୍ୟକ୍ରମ ସହ ସାମିଲ ହେବା ସହିତ ରାଜ୍ୟର ବିଭିନ୍ନ ଜିଲ୍ଲାରେ ନିଜର ପ୍ରତିଭାକୁ ବିକଶିତ କରିପାରିଛନ୍ତି ସେମାନେ ହେଲେ :

| କ୍ର.ସ. | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|
| ୧. | ବୋଲଗଡ | ଏକାନ୍ତ ବିହାରୀ ଚୌଧୁରୀ | ଶାସ୍ତ୍ରୀୟ କଣ୍ଠଶିଳ୍ପୀ |
| | | ରବୀନ୍ଦ୍ର କୁମାର ନିଶଙ୍କ | ଯନ୍ତ୍ରଶିଳ୍ପୀ (ତବଲା) |
| | | ବୈକୁଣ୍ଠ ନାଥ ସାହୁ | ଯନ୍ତ୍ରଶିଳ୍ପୀ (ତବଲା) |
| | | ରଘୁନାଥ ସିଂହ | ଯନ୍ତ୍ରଶିଳ୍ପୀ (ତବଲା) |
| | | ସଦାଶିବ ମହାରଣା | ଯନ୍ତ୍ରଶିଳ୍ପୀ (ତବଲା) |
| | | ସଞ୍ଜିବ କୁମାର ସାହୁ (ନରୋତମ) | ଯନ୍ତ୍ରଶିଳ୍ପୀ(ତବଲା) |
| | | ଶ୍ୟାମ ସୁନ୍ଦର ସୁବୁଦ୍ଧି (ବ୍ରହ୍ମପୁରା) | କଣ୍ଠଶିଳ୍ପୀ (ପାଲା) |
| ୨. | ଡାବରଧୁଆପଟଣା | ଗୋପବନ୍ଧୁ ସୁବୁଦ୍ଧି (ଘୋରଡିଆ) | କଣ୍ଠଶିଳ୍ପୀ ତଥା ନାଟ୍ୟ ନିର୍ଦ୍ଦେଶକ |
| | | ରମେଶ ଚନ୍ଦ୍ର ବଡଜେନା (ରୋଳସିଂହ) | କଣ୍ଠଶିଳ୍ପୀ ତଥା ନାଟ୍ୟ ନିର୍ଦ୍ଦେଶକ |
| | | ନୀଳକଣ୍ଠ ବାରିକ (ନୟାପାଟଣା) | କଣ୍ଠଶିଳ୍ପୀ |
| | | ରାଜକିଶୋର ଭୂୟାଁ (ରୋଳସିଂହ) | ଯନ୍ତ୍ରଶିଳ୍ପୀ (ତବଲା) |

| କ୍ର.ସ. | ଗ୍ରା.ପ.ର ନାମ | ସଙ୍ଗୀତ ଶିଳ୍ପୀଙ୍କ ନାମ | ବିଭାଗ |
|---|---|---|---|
| ୩. | ବାଙ୍କୋଇ | ବସନ୍ତ ଭଉରକବାଟ | କଣ୍ଠଶିଳ୍ପୀ ତଥା ନାଟ୍ୟ ନିର୍ଦ୍ଦେଶକ |
| ୪. | ଦଣ୍ଡେଇସାହି | ଅବାସୀ ପାତ୍ର | କଣ୍ଠଶିଳ୍ପୀ ତଥା ନାଟ୍ୟ ନିର୍ଦ୍ଦେଶକ |
| ୫. | ଧଳାପଥର | ଧ୍ରୁବ ଚରଣ ମହାପାତ୍ର (ଠଣାପଲ୍ଲୀ) | କଣ୍ଠଶିଳ୍ପୀ ତଥା ନାଟ୍ୟ ନିର୍ଦ୍ଦେଶକ |
| ୬. | ସାଗରଗୁଆଁ | ବିକ୍ରମ ବେହେରା (ବେଣାଗାଡିଆ) | ଯନ୍ତ୍ରଶିଳ୍ପୀ (ତବଲା) |
| ୭. | ଖଣ୍ଡୁରିଆ | ମୁକ୍ତାର ମାଲ୍ଲିକ (ଇଛାପୁର) | କଣ୍ଠଶିଳ୍ପୀ |

ମାଣିକାଗୋଡା ଗ୍ରାମର ୰ ନାରାୟଣ ମହାପାତ୍ର ଜଣେ (ଶିକ୍ଷକ) ସ୍ୱନାମଧନ୍ୟ ଚିତ୍ରକାର ଥିଲେ । ବୋଲଗଡ ଗ୍ରାମର ଜନାର୍ଦ୍ଦନ ଚୈଧୁରୀ, ହିମାଂଶୁ ପରିଡା, କୈଳାସ ମହାନ୍ତି ଏବଂ ମନୋଜ ପଣ୍ଡା, ଶ୍ୟାମସୁନ୍ଦର ମହାରଣା, ସରୋଜ ମହାପାତ୍ର ଓ ଖଣ୍ଡୁରିଆ ଗ୍ରାମର ରାମଚନ୍ଦ୍ର ସାଥୁଆ ବିଶିଷ୍ଟ ଚିତ୍ର ଶିଳ୍ପୀ ଭାବରେ ପରିଚିତ । ଗୋଡିଆଳି ଗ୍ରାମର ସୁକାନ୍ତ ପଟ୍ଟନାୟକ ଓ ତାଙ୍କର ସାନଭାଇ ଜଣେ କୁଶଳୀ ଚିତ୍ର ଶିଳ୍ପୀ ତଥା ମୂର୍ତ୍ତିକାର ଭାବେ ଜଣାଶୁଣା ।

ପାଲା ଗାୟିକା ହିସାବରେ କଲ୍ୟାଣୀ ମହାପାତ୍ର (ଘୋରଡିଆ) ଏବଂ ନମିତା ମହାନ୍ତି (ସାନପଦର) ବିଶେଷ ନାମ କରଅଛନ୍ତି । କଲ୍ୟାଣୀର ପିତା ଶ୍ରୀ ସର୍ବେଶ୍ୱର ମହାପାତ୍ର ଜଣେ ପ୍ରଖ୍ୟାତ ପାଲା ଡାହାଣ ପାଳିଆ ଏବଂ ଚୂଡା ଗ୍ରାମର ବସନ୍ତ ଦାସ ଜଣେ ପ୍ରଖ୍ୟାତ ପାଲା ବାୟକ ଭାବେ ସୁପରିଚିତ ।

ସିନେ କଳାକାର -

ବୋଲଗଡ ଗ୍ରାମର ବିଶିଷ୍ଟ ନାଟ୍ୟଶିଳ୍ପୀ ଶ୍ରୀ ପାଣକୃଷ୍ଣ ବେହେରା ଏକାଧିକ ଓଡିଆ ଚଳଚ୍ଚିତ୍ରରେ ଅଭିନୟ କରିଛନ୍ତି । ଏବଂ ବର୍ତ୍ତମାନ ଯୁଗରେ ଚହଳ ସୃଷ୍ଟି କରିଥିବା ତୁଳସୀ ସିରିୟଲରେ ମଧ୍ୟ ସେ ଜଣେ ସଫଳ କଳାକାର । ଫଂପୁର ଗ୍ରାମର ଶ୍ରୀ ରାଜକିଶୋର ସାହୁ ଏକାଧାରାରେ ଜଣେ ସିନେମାନ କଳାକାର ଏବଂ ପ୍ରଡ୍ୟୁସର । ବର୍ତ୍ତମାନ ଆଇବମ ଯୁଗରେ ଗର୍ବଡିହ ପାଟଣାର ଲିପି ସାହୁ ସଫଳ ଅଭିନୟ କରି ବିଶେଷ ନାମ କରିଛନ୍ତି ।

ପ୍ରବଚନ -

ବର୍ତ୍ତମାନ ଓଡିଶାରେ ପ୍ରବଚନର ଏକ ମହାନ ଯୁଗ । ହରିକଥା, ରାମକଥା ଏବଂ ଭାଗବତ ପ୍ରବଚନ ପ୍ରତ୍ୟେକ ବର୍ଷ ବହୁ ସ୍ଥାନରେ ହେଉଅଛି । ଏକ୍ଷେତ୍ରରେ ଦିଘିରୀ ଗ୍ରାମର ଶ୍ରୀ ବନବିହାରୀ ପଟ୍ଟନାୟକ, ମାଣିକାଗୋଡା ଗ୍ରାମର ଅଧାପକ ଡଃ. ପ୍ରସନ୍ନ କୁମାର ତ୍ରିପାଠୀ, ବିପିନ ବିହାରୀ ସୁବୁଦ୍ଧି ଏବଂ ସୋମନାଥ ମହାପାତ୍ର, ସଂପୁର ଗ୍ରାମର ସଂସ୍କୃତ ପଣ୍ଡିତ ଶ୍ରୀ ଗୋପାଳ ଚନ୍ଦ୍ର ରାୟଗୁରୁ , ବୃଢା ଗ୍ରାମର ପରଶୁରାମ ପ୍ରଧାନ, କୁମ୍ଭାରୀ ଗ୍ରାମର ଶିକ୍ଷକ ଲକ୍ଷ୍ମୀଧର ଖଣ୍ଡେଇ, ମର୍ଦାବାଡି ଗ୍ରାମର ବାଲୁକି ବଳିୟାର ସିଂହ, ଗୋପାଳି ପଡା ଗ୍ରାମର ପ୍ରହଲ୍ଲାଦ ଶ୍ରୀଚନ୍ଦନ ଏ କ୍ଷେତ୍ରରେ ବିଶେଷ ସୁନାମ ଅର୍ଜନ କରିଛନ୍ତି । ଏହାଛଡା ମୁଣ୍ଡିଆ ପଡା ଆଶ୍ରମର ଅଳୁ ବାବା ଏବଂ ଜଖଲା ଆଶ୍ରମର ରାମନାରାୟଣ ବାବା ବିଶିଷ୍ଟ ପ୍ରବଚକ ଭାବରେ ସୁପରିଚିତ । ଠାକୁର ନିଗମାନନ୍ଦଙ୍କ ଆଶ୍ରିତ ବୋଲଗଡ ଗ୍ରାମର ଡଃ. ଅରକ୍ଷିତ ଯତି ଅଧୁନା ଫୁଲବାଣୀ ଠାରେ ଉପମୁଖ୍ୟ ଜିଲ୍ଲା ସ୍ୱାସ୍ଥ୍ୟ ଅଧିକାରୀ ଭାବରେ ଅବସ୍ଥାପିତ ହୋଇଛନ୍ତି । ସେ ଗୀତା ଭାଗବତ ରାମଚରିତ ମାନସ ଏବଂ ଅନ୍ୟ ସମସ୍ତ ଶାସ୍ତ୍ରୀୟ ପ୍ରବଚନ ଅତି ସୁନ୍ଦର ଏବଂ ସରସ ଭାବରେ ପ୍ରଦାନ କରୁଥିବାରୁ ପ୍ରତ୍ୟେକ ଦିନ ଫୁଲବାଣୀ ସ୍ଥିତ ବିଭିନ୍ନ ଧର୍ମୀୟ ସଂଗଠନ ତରଫରୁ ତାଙ୍କର ପ୍ରବଚନ କାର୍ଯ୍ୟକ୍ରମ ବର୍ତ୍ତମାନ ଚାଲିଅଛି ।

ସାମ୍ବାଦିକ -

ଅତୀତରେ ଖଣ୍ଡୁରିଆ ଗ୍ରାମର ୰ ପତିତପାବନ ହୋତା Associate Press of India ଏବଂ ଦୈନିକ 'ସମାଜ'ର ସଂବାଦଦାତା ଥିଲେ । ବୋଲଗଡର ୰ ଚକ୍ରଧର ମହାପାତ୍ର 'କଳିଙ୍ଗ'ର ସଂବାଦଦାତା, ୰ ମାଧବ ଚନ୍ଦ୍ର ଦାଶ ଏବଂ ୰ ବଳଭଦ୍ର ସାହୁ 'ପ୍ରଜାତନ୍ତ୍ର'ର ସଂବାଦଦାତା ଥିଲେ । ୪୦ ଏବଂ ୫୦ ଦଶକରେ ଡଃ. ବୈଦ୍ୟନାଥ ମିଶ୍ର 'ପ୍ରଜାତନ୍ତ୍ର' ଏବଂ 'Eastern Times'ର ସଂପାଦନା ବିଭାଗରେ କାର୍ଯ୍ୟକରି ବିଶେଷ ସୁନାମ ଅର୍ଜନ କରିଥିଲେ । ତାହାଛଡା ସେ ସାରା ଜୀବନ ଓଡିଶାର ଜଣେ ବିଶିଷ୍ଟ ସ୍ତମ୍ଭକାର (Columnist) ଭାବରେ ପ୍ରତିଷ୍ଠିତ । ଗତ ୬୦ ଦଶକରେ ଲେଖକ ରବୀନ୍ଦ୍ର କୁମାର ପରିଡା 'ହିନ୍ଦୁସ୍ତାନ ସମାଚାର' ଏବଂ 'ରାଷ୍ଟ୍ରଦୀପ'ର ସାମ୍ବାଦିକ ଭାବରେ ୫ ବର୍ଷ ଧରି କାର୍ଯ୍ୟ କରିଥିଲା । ଏ ଅଞ୍ଚଳର ସାମ୍ବାଦିକ ମାନଙ୍କ ମଧ୍ୟରେ ମାଣିକାଗୋଡା ଗ୍ରାମର ମୂଳ ଅଧିବାସୀ ଶ୍ରୀ ସୁନିଲ ପୃଷ୍ଟି ମାନ୍ଦ୍ରାଜରୁ ପ୍ରକାଶ ପାଉଥିବା ବହୁଳ ପ୍ରସାରିତ 'ଜହ୍ନମାମୁଁ'ର ଓଡିଆ ବିଭାଗ ସଂପାଦନରେ କାର୍ଯ୍ୟକରି ବର୍ତ୍ତମାନ ଓଡିଶାର ଲବ୍ଧ ପ୍ରତିଷ୍ଠିତ 'ସଚିତ୍ର ବିଜୟା' ପତ୍ରିକାର ମୁଖ୍ୟ ସଂପାଦକ ଅଟନ୍ତି । ଦିବ୍ୟସିଂହପୁର ଶାସନର ଜୟକୃଷ୍ଣ ହୋତା ବହୁଦିନ ଦୈନିକ 'ଧରିତ୍ରୀ' ଏବଂ

'ସମାଜ'ର ସାମ୍ବାଦିକତା କରି ଧରିତ୍ରୀ ଖବର କାଗଜର ସହ ସମ୍ପାଦକ ଦାୟିତ୍ୱ ବହନ କରିବା ପରେ ବର୍ତ୍ତମାନ ଧରିତ୍ରୀ ବ୍ୟୁରୋ ବ୍ରହ୍ମପୁର ଶାଖାର ମୁଖ୍ୟ ଭାବରେ କାର୍ଯ୍ୟରତ । ଏଅଞ୍ଚଳରେ 'ସମାଜ, ସମ୍ବାଦ, ପ୍ରଗତିବାଦୀ, ପ୍ରଜାତନ୍ତ୍ର, ସମୟ'ର ସାମ୍ବାଦିକ ଭାବରେ ଯଥାକ୍ରମେ ପାଣ୍ଡବ ସାହୁ (ଯୋଡାପଡା), ମହେନ୍ଦ୍ର ହୋତା (ଦିବ୍ୟସିଂହପୁର ଶାସନ), ଗଙ୍ଗାଧର ଦାସ (ଫିରିଫିରା), ରଘୁନାଥ ଷଡଙ୍ଗୀ (ବୋଲଗଡ), କାଶୀନାଥ ହୋତା (ଦିବ୍ୟସିଂହପୁର ଶାସନ) କାର୍ଯ୍ୟରତ । ବୋଲଗଡ ଗ୍ରାମର ଦିବାକର ମହାପାତ୍ର (ଇଣ୍ଡା ଭାଇନା) ପୂର୍ବରୁ 'ନିଆଁଖୁଣ୍ଟା' ଏବଂ 'ଦୁର୍ମୁଖ'ର ସାମ୍ବାଦିକ ଥିଲେ । ଏବଂ ସେ ଜଣେ ବିଶିଷ୍ଟ ହାସ୍ୟ କଳାକାର ଭାବରେ ପରିଚିତ ।

ଭାରତୀୟ ଜନତା ପାର୍ଟି ଓଡିଶା ଶାଖାର ମୁଖପତ୍ର 'ବିଜେପି ବାର୍ତ୍ତା' ର ପ୍ରଥମ ସଂପାଦକ ଭାବରେ ବୋଲଗଡ ଗ୍ରାମର ରଘୁନାଥ ସେଠୀ ଦୀର୍ଘ ୫ବର୍ଷରୁ ଉର୍ଦ୍ଧ କାଳ କାର୍ଯ୍ୟ କରିଛନ୍ତି ।

ଯୁବ ସାମ୍ବାଦିକ ଶ୍ରୀ ରଘୁନାଥ ଷଡଙ୍ଗୀ ଓଡିଶାର ସର୍ବ ପୁରାତନ ଉତ୍କଳ ସାମ୍ବାଦିକ ସଂଘର କୋଷାଧକ୍ଷ ତଥା ରାଜ୍ୟ ପଞ୍ଚାୟତ ସମିତି ଅଧକ୍ଷ ମଣ୍ଡଳୀର ମୁଖ୍ୟ ଆବାହକ ଭାବରେ ରହିଛନ୍ତି ।



## ମୁସଲମାନଙ୍କ ଅବସ୍ଥିତି

ପୂର୍ବ ପାଞ୍ଚଗଡ ବର୍ତ୍ତମାନ ବୋଲଗଡ ଥାନା ତଥା ବୋଲଗଡ ବ୍ଲକ ଅଞ୍ଚଳରେ ମାଣିକାଗୋଡା(ଦଳେଇସାହି) ଫାସିଓଦା (ଟାଙ୍ଗିସାହି) ଅରଖପଲ୍ଲୀ, ଇଛାପୁର, ବୁଡା, ହରିପୁର ପାଟଣା, କେନ୍ଦୁପଲ୍ଲୀ, କାଉଁରି ପାଟଣା, ଜାମୁସାହି, ଦକ୍ଷଣ ପାରିଖେତା, କଡବ ପ୍ରଭୃତି ଗ୍ରାମମାନଙ୍କରେ ମୁସଲମାନ ବସତି ରହିଅଛି । ମାଣିକାଗୋଡା ସଲଗ୍ନ ଦଳେଇସାହି ମୌଜାରେ ସଂଖ୍ୟାଧିକ ମୁସଲମାନ ବସବାସ କରନ୍ତି । ସେମାନଙ୍କ ଧର୍ମ ଉପାସନା ପାଇଁ ଉକ୍ତ ଗ୍ରାମମାନଙ୍କରେ ବହୁକାଳରୁ ଗୋଟିଏ ଲେଖାଁଏ ମସ୍‌ଜିଦ୍ ରହିଅଛି । କିଛି ବର୍ଷ ତଳେ ଦଳେଇସାହିରେ ଦେଓବନ୍ଧୀ, ବରେଲୀ ସମ୍ପ୍ରଦାୟକୁ କେନ୍ଦ୍ର କରି ସ୍ଥାନୀୟ ପ୍ରାଚୀନ ମାଣିକଭୂୟାଁ ପୀଠ ନିକଟରେ ଏକ ନୂତନ ମସଜିଦ୍ ନିର୍ମିତ ହୋଇଛି । ମୁସଇମାନଙ୍କର ଲମ୍ବା ଟୋପି ଏବଂ ଗୋଲ ଟୋପି ବ୍ୟବହାରର ଶ୍ରେଣୀ ବିଭାଗ ଏଥିରୁ ସୂଚୀତ ହୁଏ । ଏହା ଛଡା ପୁରାତନ ବରେଲୀ ଶ୍ରେଣୀଭୁକ୍ତ ମୁସଇମାନ ମାନେ ମଧ ଦଳେଇସାହିରେ ବାସ କରନ୍ତି । ପରଂପରା କ୍ରମେ ମାଣିକାଗୋଡା ଓ କଡବର ଦଳ ବେହେରା ମୁସଇମାନ ଅଟନ୍ତି । ପାଞ୍ଚଗଡରେ ପ୍ରଚଳିତ

ପ୍ରାଚୀନ ପରଂପରା ଅନୁସାରେ ଦଣ୍ଡଯାତ୍ରା ଓ ଦଶହରା ପର୍ବରେ ଏହି ମୁସଲମାନ ଦଳବେହେରାଙ୍କ ଦୁଆରେ ହିନ୍ଦୁ ଠାକୁରମାନଙ୍କୁ ଅଭ୍ୟର୍ଥନା କରାଯାଇଥାଏ । ହେରାୟତ୍ ଅଲ୍ଲୀ ବେଗ୍ ତାଙ୍କ ପୁଅ ସେର ଅଲ୍ଲୀ ବେଗ୍ ପ୍ରଭୃତି ମୁସଲମାନ ମୁଖ୍ୟମାନେ ପଶ୍ଚିମ ବୋଲଗଡର ତିନିଦୋଳ ଯାତ୍ରାର ପରିଚାଳନା କମିଟିର ମୁଖ୍ୟ ଭାବେ ରହିଥିଲେ । ମାଣିକାଗୋଡା ଗ୍ରାମର ଅବଦୁଲ ହମିଦ ଖାଁ ଓଡିଶାର ଜଣେ ପ୍ରତିଷ୍ଠିତ ଶିକ୍ଷକ ତଥା ଭୂଗୋଳ ଲେଖକ ଭାବରେ ଖ୍ୟାତି ଅର୍ଜନ କରିଥିଲେ । ସେ ବୋଲଗଡ ବ୍ଲକର ପ୍ରଥମ ବି.ଏ., ବି.ଇଡି. ହେବାର ସୌଭାଗ୍ୟ ଅର୍ଜନ କରିଥିଲେ । ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ କଟକ ରେଭେନସା କଲେଜଏଟ ସ୍କୁଲର ଭୂଗୋଳ ଶିକ୍ଷକ ଭାବରେ ରହି ଓଡିଶାର ବହୁ କୃତୀ ସନ୍ତାନ ମାନଙ୍କର ଶିକ୍ଷକ ପଦବାଚ୍ୟ ଥିଲେ । ସେମାନଙ୍କ ମଧ୍ୟରେ ୰ ବିଜୁ ପଟ୍ଟନାୟକ, ୰ ଚିନ୍ତାମଣି ପାଣିଗ୍ରାହୀଙ୍କ ଭଳି ରାଜନେତାଙ୍କ ସମେତ ୰ ଡଃ. ସଦାଶିବ ମିଶ୍ର, ରମାନାଥ ମହାନ୍ତି, ଡଃ. ଶ୍ରୀରାମ ଦାସଙ୍କ ଭଳି ଓଡିଶାର ବହୁ ବରପୁତ୍ର ଅନ୍ୟତମ । ଏହାଛଡା ମାଣିକାଗୋଡାର ସୟେଦ ଇସୁଫ ଖାଁ ଏବଂ ଅରଖପଲ୍ଲୀର ଶେଖ ନସୀବଉଦିନ୍ ଏ ଅଞ୍ଚଳର ବିଶିଷ୍ଟ ପ୍ରାଥମିକ ଶିକ୍ଷକ ଭାବରେ ସୁନାମ ଅର୍ଜନ କରିଥିଲେ ।

ଏହି ଅଞ୍ଚଳରେ ହିନ୍ଦୁ ମୁସଲମାନମାନଙ୍କ ଭିତରେ ଭାଇ ଚାରିଆ ଭାବ ବହୁ ପୁରାତନ । ଏହାର ନିଦର୍ଶନ ମାଣିକଗୋଡାର ଐତିହାସିକ ଦଶହରା ପର୍ବ । ଏହାର ବିଶଦ ବିବରଣୀ ଏହି ଅଧ୍ୟାୟରେ ବିଶଦ ଭାବରେ ଆଲୋଚନା ହୋଇଅଛି । ଖୋର୍ଦ୍ଧାର ପ୍ରାଚୀନ ସାମରିକ ପରମ୍ପରା ପାଇକ ଆଖଡାରେ ଏମାନେ ଅଭ୍ୟସ୍ତ । ମାଣିକାଗୋଡାର ପାଇକଗୁରୁ ତଥା ମଲ୍ଲଯୋଦ୍ଧା ପଞ୍ଚୁ ଖାଁ, ମୋହସିନ ଖାଁ ଏବଂ ଅରଖପଲ୍ଲୀର ମୋଗଲ ଖାଁ ବିଶିଷ୍ଟ ପାଇକ ଗୁରୁ ଥିଲେ । ଏହି ମୁସଲମାନ ମାନଙ୍କର ଖୋର୍ଦ୍ଧାରେ ପ୍ରଥମ ଅବସ୍ଥିତି ନେଇ ୰ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ଲିଖିତ "ଖୁରୁଧା ଦର୍ପଣ' ରେ ଦେଇଥିବା ତଥ୍ୟ ସହ ଓଡିଶାର ପ୍ରଖ୍ୟାତ କଥାକାର ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତିଙ୍କର ଜନପ୍ରିୟ ଐତିହାସିକ ଉପନ୍ୟାସ "ନୀଳଶୈଳ" ରୁ ଉଦ୍ଧୃତ ବିଷୟ ପାଠକ ମାନଙ୍କ ଅବଗତ ନିମନ୍ତେ ଏଠାରେ ସ୍ଥାପିତ ହେଲା । ଉକ୍ତ ପୁସ୍ତକ ରାଷ୍ଟ୍ରପତି ଓ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ ହେବା ସଙ୍ଗେ ସଙ୍ଗେ ସମସ୍ତ ଭାରତୀୟ ଭାଷା ସହିତ ବିଶ୍ୱର ଅନ୍ୟାନ୍ୟ ଭାଷାରେ ଅନୁବାଦ ହୋଇ ଅଗଣିତ ପାଠକ ସମାଜକୁ ବିମୁଗ୍ଧ କରିପାରିଅଛି ।

## ଖୁରୁଧା ଦର୍ପଣ

ଦାଣ୍ଡୀମାଳରେ ଯଦୁପୁର, ଖୁରଧାରେ କେରଙ୍ଗ, ଶରଧାପୁର, ମାଣିକାଗୋଡାରେ ନିଜଗଡ ମାଣିକାଗୋଡା, ପାଞ୍ଚଗଡରେ ଦଳେଇସାହି, କୁସୁପଲାରେ ନିଜଗଡ କୁସୁପଲା, ଗଡ କଡବ, ପାରିଖେତା ଓ ଜାମୁସାହି, ରାମେଶ୍ୱରରେ ସିକୋ ଓ କାଇପଦର, ତାପଙ୍ଗରେ ରଥୀପୁର, କୁହୁଡିରେ ଦିଗିତିପଡା ଏବଂ ବାଣପୁରରେ ସଲପଡିହ ପ୍ରଭୃତି ଗୋଟିଏ ଗୋଟିଏ ସ୍ୱତନ୍ତ୍ର ମୁସଲମାନ ବସ୍ତି ଏବଂ କେତେକ ଗ୍ରାମରେ ହିନ୍ଦୁ ବସ୍ତିମାନଙ୍କ ସହିତ ମିଳିତ ଭାବରେ ମଧ ମୁସଲମାନ ବସ୍ତିମାନ ରହିଅଛି । କେରଙ୍ଗ, ଶରଧାପୁର ଓ ମାଣିକାଗୋଡାରେ ମୁସଲମାନମାନେ ଆଧୁନିକ ଶିକ୍ଷା ସଭ୍ୟତାରେ, ଯଥେଷ୍ଟ ଉନ୍ନତି ଲାଭ କରିଛନ୍ତି । ଖୁରୁଧାରେ ମୁସଲମାନଙ୍କ ସଂଖ୍ୟା ଶତକଡା ୧.୬୬ ପ୍ରଥମେ । ଯେତେବେଳେ ମହାତ୍ମା ଗାନ୍ଧୀ ବୋଲଗଡ ଆସିଥିଲେ, ସେତେବେଳେ ସେ ହିନ୍ଦୁ ମୁସଲମାନଙ୍କ ବସବାସ ଏକ ସଂଇଗ୍ମରେ ଥିବାର ଦେଖି ସନ୍ତୋଷ ଲାଭ କରିଥିଲେ ।

## ନୀଳଶୈଳ (ପୃଷ୍ଠା ୯୮)

ମୋଗଲ ନାଏବ ନାଜିମମାନଙ୍କ କାଳରୁ ଖଣ୍ଡାୟତ ଚୌପାଢି ମାନଙ୍କୁ ଚନଛନ କରି ଓଡିଆ ପାଇକ ମାନଙ୍କ ଅଣ୍ଟାବଳ ଭାଙ୍ଗିଦେବା ଉଦ୍ଦେଶ୍ୟରେ ଏକ ଧାରରାବାହିକ ଉଦ୍ୟମ ଆରମ୍ଭ ହୋଇଥିଲା । ଏଥିପାଇଁ ଚୌପାଢି ଗ୍ରାମମାନଙ୍କୁ ବେଢି ମୁସଲମାନ ବସତିମାନ ଧିରେଧିରେ ଗଢି ଉଠିଥିଲା । ଲସ୍କର ବୃତ୍ତିକରି ଚଳୁଥିବା ପୂର୍ବ ଅମଳର ଆଫଗାନ୍ ପଠାଣ ମାନଙ୍କୁ ଜମିବାଡି ଦେଇ ସେମାନଙ୍କୁ ଶାନ୍ତି ପୂର୍ଣ୍ଣ ଜୀବନ ଯାତ୍ରାରେ ନିୟୋଜିତ ରଖିବା ମଧ ଏହାର ଅନ୍ୟ ଉଦ୍ଦେଶ୍ୟ ଥିଲା । ସେଥିପାଇଁ ଚୌପାଢିର ନିଷର ଭୂମିସବୁ ଜବରଦସ୍ତ ଛଡାଇଆଣି ଏହି ନୂଆ ମୁସଲମାନ ବାସିନ୍ଦାଙ୍କ ନାମରେ ସେ ସବୁ ବନ୍ଦୋବସ୍ତ କରି ଦିଆଯାଉଥିଲା । ଏହିପରି ଭାବରେ ଶରଧାପୁର, ମୁକୁନ୍ଦ ପ୍ରସାଦ, ଦିବ୍ୟସିଂହପୁର, ବୋଲଗଡ, କାଇପଦର ଓ ବଳରାମ ଗଡ ପ୍ରଭୃତି ପ୍ରସିଦ୍ଧ ଚୌପାଢିମାନଙ୍କୁ ଘେରି ମୁସଲମାନ ବସ୍ତିମାନ କ୍ରମେ ଗଢି ଉଠିଥିଲା ।

ସେତେବେଳେ ଖୋର୍ଦ୍ଧାର ଅନ୍ୟସ୍ଥାନ ପରି ବୋଲଗଡ ଏବଂ ଦିବ୍ୟସିଂହପୁର ଗ୍ରାମ ପଶ୍ଚିମ ଦିଗରେ ପ୍ରାୟ ୧୦୦୦ ଘର ବିଶିଷ୍ଟ ମୁସଲମାନ ବସ୍ତି ମାଣିକାଗୋଡା ଗ୍ରାମର ଦଳେଇ ସାହି ମୌଜାରେ ରହିଛି । ଏହାଛଡା ବୋଲଗଡ ଗ୍ରାମର ପୂର୍ବ ଦିଗରେ ଅବସ୍ଥିତ ଚୂଡା ଗ୍ରାମ ଏବଂ ଉତ୍ତର ଦିଗରେ ଅବସ୍ଥିତ ଥିରଖପଲ୍ଲୀ ଗ୍ରାମରେ ମଧ ବୋଇଗଡ ଗ୍ରାମକୁ ମୁହଁ କରି ଦୁଇଟି ମୁସଲମାନ ବସ୍ତି ଅଛି । । ଏହି ସବୁ ମୁସଲମାନ

ବସ୍ତି ସ୍ଥାପନ ପରେ ତତ୍କାଳୀନ ଗଜପତି ମହାରାଜ ଖୋର୍ଦ୍ଧାର ବିଭିନ୍ନ ଗଡରେ ପ୍ରମୁଖ ମୁସଲମାନମାନଙ୍କୁ ତାଙ୍କର ସେନାରେ ଅନ୍ତର୍ଭୁକ୍ତ କରିବା ସହ ବିଭିନ୍ନ ଗଡରେ ସେମାନଙ୍କୁ ଦଳବେହେରା ପଦରେ ନିଯୁକ୍ତି ପ୍ରଦାନ କରିଥିଲେ । ଖୋର୍ଦ୍ଧାର କେରଙ୍ଗ, କାଇପଦର, ଶରଧାପୁର, କଡବ ପ୍ରଭୃତି ଗଡରେ ମୁସଲମାନ ଦଳବେହେରାଙ୍କ ପରି ମାଣିକାଗୋଡାର ଦଳବେହେରା ମଧ ମୁସଲମାନ ।

ସମୟକ୍ରମେ ସ୍ଥାନୀୟ ସମସ୍ତ ମୁସଲମାନ ଓ ହିନ୍ଦୁମାନଙ୍କ ମଧ୍ୟରେ ଉତ୍ତମ ସଂପର୍କ ଯୋଗୁଁ ୧୯୨୭ ମସିହାରେ ଗାନ୍ଧିଜୀ ବୋଲଗଡ ଆସିବା ସମୟରେ ବୁଢା ଗ୍ରାମ ପରିଦର୍ଶନ କରି ଏହାର ସତ୍ୟତା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସେମାନଙ୍କ ଭ୍ରାତୃଭାବର ପ୍ରଶଂସା କରିଥିଲେ । ଓଡିଶା ୱାକ୍‌ବ ବୋର୍ଡର ପୂର୍ବତନ ସଭାପତି ତଥା ବରିଷ୍ଠ ଆଇନଜୀବୀ ଶ୍ରୀଯୁକ୍ତ ମଜିବୁର ରହମାନ (ଅରଖପଲ୍ଲୀ) କହନ୍ତି ପୂର୍ବକାଳରୁ ଉଭୟ ସଂପ୍ରଦାୟର ସଂପର୍କ ଅତି ଉତ୍ତମ ଥିଲା । ରାଉରକେଲା ଦଙ୍ଗା ପରେ ଏଥିରେ ସାମାନ୍ୟ ଭଟ୍ଟା ପଡିଥିଲେ ମଧ ବର୍ତ୍ତମାନ ତାହା ଆଦୌ ନାହିଁ । ସେହିପରି ବୁଢା ଗ୍ରାମରେ ମୁସଲମାନ ସଂପ୍ରଦାୟର କବର୍ ସ୍ଥାନକୁ କେନ୍ଦ୍ରକରି ବିଗତ ଚାରିଦଶନ୍ଧି ପୂର୍ବରୁ ହୋଇଥିବା ମାଲି ମୋକଦମା ସମୟ ସ୍ରୋତରେ ମିଳାଇଯାଇଛି । ବର୍ତ୍ତମାନ ମାଣିକାଗୋଡାର ୰ ସେର୍ ଅଲ୍ଲୀ ବେଗ୍, ଅରଖପଲ୍ଲୀ ର ସେକ୍ ମୁସାହେବ, କଡବର ଆକବର ତରଫଦାର ଓ ଗୋଲାମ ମୁସ୍ତାଫା ପୂର୍ବତନ ସରପଞ୍ଚ ଏବଂ ମାଣିକାଗୋଡା ଗ୍ରାମର ୰ ଫିଦା ହୁସେନ ବିଶିଷ୍ଟ ନ୍ୟାୟବାଦୀ ଭାବରେ ପରିଗଣିତ । ସେମାନେ ବହୁ ଗ୍ରାମ୍ୟ ଏବଂ ଆଞ୍ଚଳିକ ନ୍ୟାୟରେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି । ମୁସଲମାନ ସଂପ୍ରଦାୟ ମଧରେ ଜନ୍ମ ନିୟନ୍ତ୍ରଣ ପାଇଁ ଥିବା ପୁରାତନ ଅନ୍ଧ ବିଶ୍ୱାସର ପରିପ୍ରେକ୍ଷୀରେ ଅରଖପଲ୍ଲୀ ନିବାସୀ ଙ. ରହମତୁଲ୍ଲା ଖାଁଙ୍କର ନିକଟରେ ଲିଖିତ ପ୍ରବନ୍ଧ ବହୁଜନ ପ୍ରଶଂସିତ ହୋଇଅଛି । ଅରଖପଲ୍ଲୀ ନିବାସୀ ମୁଜିବୁର ରହମନ ରାଜ୍ୟର ଜଣେ ବିଶିଷ୍ଟ ଆଇନଜୀବୀ ଭାବରେ ଭୁବନେଶ୍ୱରରେ ପ୍ରତିଷ୍ଠା ଲାଭ କରିବା ସଂଗେ ସଂଗେ ୩ଥର ରାଜ୍ୟ ୱାକବ ବୋର୍ଡ (ମୁସଲମାନ ଧର୍ମର ରାଜ୍ୟ ସ୍ତରୀୟ ସର୍ବୋଚ୍ଚ ଆଇନ ସମ୍ମତ ସଂସ୍ଥା) ର ଅଧକ୍ଷ ଭାବରେ ଅଧିଷ୍ଠିତ ହୋଇଥିଲେ ଏବଂ ଭୁବନେଶ୍ୱର ବାର କାଉନସିଲର ସଭାପତି ମଧ ଥିଲେ । ତାଙ୍କର ବଡଭାଇ ୰ ହମିଦ୍ ଖାନ୍ ଜିଲ୍ଲା ମେଲେରିଆ ବିଭାଗୀୟ ଅଧିକାରୀ ଭାବରେ କାମକରି ସୁନାମ ଅର୍ଜ୍ଜନ କରିଥିଲେ ।

୧୯୯୯ ମସିହା ଅକ୍ଟୋବର ମାସ ମହାବାତ୍ୟାର ଠିକ୍ ଅବ୍ୟବହିତ ପୂର୍ବରୁ ଅରଖପଲ୍ଲୀ ଗ୍ରାମରେ ସମଗ୍ର ଓଡିଶାର ମୁସଲମାନ ଧର୍ମ ସମ୍ମିଳନୀର ବ୍ୟାପକ ପ୍ରସ୍ତୁତି କାର୍ଯ୍ୟ ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲେ ମଧ ମହାବାତ୍ୟା ଯୋଗୁଁ ଏହା ବନ୍ଦ ହୋଇଯାଇଥିଲା ।

(ସାମ୍ପ୍ରଦାୟିକ ସଂପ୍ରୀତିର ନିର୍ଦ୍ଦଶନ ମାଣିକାଗୋଡା ଦଶହରା ପର୍ବ)

ମାଣିକାଗୋଡା ଖୋର୍ଦ୍ଧା ଜିଲ୍ଲାର ବୋଲଗଡ ଥାନା ଅନ୍ତର୍ଗତ ଏକ ସୁବୃହତ୍ ଗ୍ରାମ । ପ୍ରାଚୀନ ଅଧିବାସୀ କନ୍ଧଙ୍କ ଦ୍ୱାରା ପୂଜିତ ମାଣିକ ଭୂୟାଁ ଏହି ଗ୍ରାମର ଉତ୍ତର ଦିଗରେ ବିରାଜମାନ କରିଛନ୍ତି । ପୂର୍ବରୁ ଏକ ଛୋଟ ଚାଳଛପର ଘରେ ଏହି ଠାକୁରାଣୀଙ୍କ ଆସ୍ଥାନ ଥିଲା । ବର୍ତ୍ତମାନ ସରକାରୀ ଅନୁଦାନ, ସ୍ଥାନୀୟ ବଦାନ୍ୟ ବ୍ୟକ୍ତି ଏବଂ ଗ୍ରାମବାସୀଙ୍କ ସହଯୋଗରେ ଏଠାରେ ଏକ ମନ୍ଦିର ନିର୍ମାାଣ ହୋଇଛି । ଏହି ମାଣିକ ଭୂୟାଁଙ୍କ ମନ୍ଦିରକୁ ଲାଗି ଏକ ପୋଖରୀ ଅଛି । ତାହାର ନାମ ମାଣିକସାଗର । ଏଣୁ ଏହି ଗ୍ରାମର ନାମ ମାଣିକାଗୋଡା ହୋଇଥିବାର ଜଣାଯାଏ । ବର୍ତ୍ତମାନ ଏହି ମାଣିକ ଭୂୟାଁଙ୍କ ମନ୍ଦିରକୁ ବେଢି ମୁସଲମାନ ବସ୍ତି ରହିଛି । ମନ୍ଦିର ସାମ୍ନାରେ ଏକ ନୂତନ ମସଜିଦ୍ ନିର୍ମାଣ ହୋଇଛି । ଓଡିଶାର ଅନ୍ୟାନ୍ୟ ବନବାସୀ ଅଞ୍ଚଳରେ କନ୍ଧମାନଙ୍କର ପୂଜିତ ଠାକୁରାଣୀଙ୍କ ପ୍ରତୀକ କାଠଦଣ୍ଡ ହୋଇଥିବା ଜଣାଯାଏ । ସେହିପରି ଏଠାରେ କନ୍ଧ ଦ୍ୱାରା ପୂଜିତ ମାଣିକ ଭୂୟାଁ ଠାକୁରାଣୀଙ୍କ ପ୍ରତୀକ ଏକ କାଠନିର୍ମିତ ଦଣ୍ଡ ।

ଏହି ଗ୍ରାମର ପଶ୍ଚିମ ଦିଗରେ 'ଦୁମାଳ' ଗଉଡଙ୍କ ଦ୍ୱାରା ପୂଜିତ ମହିଷାଶୁଣୀ ପୀଠ ଅନ୍ୟତମ । ଏହି ଦୁମାଳ ଗଉଡ ବନବାସୀ ଶ୍ରେଣୀର । ପଶୁପାଳନ ଏମାନଙ୍କର ମୁଖ୍ୟ ଜୀବିକା । ପ୍ରାଚୀନ କାଳରୁ ଏ ଅଞ୍ଚଳ ବଣ ଜଙ୍ଗଲରେ ପରିପୂର୍ଣ୍ଣ ଥିଲାବେଳେ କନ୍ଧ ଓ ଦୁମାଳ ଗଉଡ ଦୁଇ ବନବାସୀ ଶ୍ରେଣୀର ଲୋକ ଏଠାରେ ପ୍ରାଚୀନ ଅଧିବାସୀ ଅଟନ୍ତି । ମହିଷାଶୁଣୀ ଠାକୁରାଣୀଙ୍କ ପ୍ରତୀକ ସେଠାରେ ପୂଜିତ ଏକ ଲୁହା ନିର୍ମିତ ବିରାଟ କଟୁରୀ । ଘଞ୍ଚ ଜଙ୍ଗଲରେ ପଶୁ ଚାରଣ ବେଳେ ଏହା ଦୁମାଳ ଗଉଡର ଆତ୍ମରକ୍ଷାକାରୀ ଅସ୍ତ୍ରର ନିଦର୍ଶନ ଥିବାର ଜଣାଯାଏ ।

ଏହା ପରେ ସମାଜରେ ବ୍ରାହ୍ମଣ କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର, ଚାରିବର୍ଣ୍ଣ ପ୍ରତିଷ୍ଠା ଲାଭ ସହ ସାମନ୍ତବାଦ ତଥା ରାଜଶକ୍ତିର ପ୍ରତିଷ୍ଠା ପରେ ମାଣିକାଗୋଡାରେ ଆଉ ଦୁଇ ଶକ୍ତି ପୀଠ ସୃଷ୍ଟି ହୋଇଥିଲା । ଗ୍ରାମର ପୂର୍ବ ଦିଗରେ ଅବସ୍ଥିତ ଭଗବତୀ ପୀଠ । ଅନ୍ୟଟି ମଧ୍ୟ ଭାଗରେ ଅବସ୍ଥିତ ଯୋଗମାୟା ପୀଠ । ଭଗବତୀ ପୀଠର ପୂଜକ ବ୍ରାହ୍ମଣ ହୋଇଥିବାବେଳେ ଯୋଗମାୟା ପୀଠର ପୂଜକ ଖଣ୍ଡାୟତ ଅଟନ୍ତି । ଓଡିଶାରେ ଦଶହରା ପର୍ବ ପାଳନର ଏକ ସ୍ୱାତନ୍ତ୍ୟ ରହିଛି । ସାମନ୍ତବାଦ ତଥା ରାଜଶକ୍ତିର ପ୍ରତିଷ୍ଠା ପରେ ଦଶହରା ପୂର୍ବରୁ ଦେବୀପୀଠ ମାନଙ୍କରେ ଷୋହଳ ପୂଜା ପାଳନର ଏକ ପରମ୍ପରା ରହିଆସିଛି । ଏହି ଅନୁସାରେ ମାଣିକାଗୋଡାରେ ଅନୁଷ୍ଠିତ ଭଗବତୀ ପୀଠର ସପ୍ତମୀ ପୂଜାରେ ଗଜପତି ଦିବ୍ୟସିଂହ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଦିବ୍ୟସିଂହପୁର

ବ୍ରାହ୍ମଣ ଶାସନରେ ପୂଜିତ କନକ ଦୁର୍ଗାଙ୍କୁ ଆବାହନ କରାଯାଇଥାଏ । ସପ୍ତମୀ ଦିନ ରାତିରେ ଭଗବତୀ ପୀଠରେ କନକ ଦୁର୍ଗା କନ୍ଧଜାନୀ ଦ୍ୱାରା ପୂଜିତ ମାଣିକ ଭୂୟାଁଙ୍କର ଛତ୍ରୀ, ଡୁମାଳ ଗଉଡ ଦ୍ୱାରା ପୂଜିତ ମହିଷାଶୁଣୀ ପୀଠର କଟୁରୀ, ମୁସଲମାନ ଦଳବେହେରାଙ୍କ ଘରେ ପୂଜିତ ଗଜପତି ମହାରାଜାଙ୍କ ପ୍ରଦତ୍ତ ପାଟଖଣ୍ଡା, କରଣ ପାଞ୍ଜିକାରଙ୍କ ଲେଖନୀ ତାଳପତ୍ର ବିଧି ଅନୁସାରେ ନିମନ୍ତ୍ରିତ ହୋଇ ଦଶହରା ପର୍ଯ୍ୟନ୍ତ ପୂଜିତ ହୁଅନ୍ତି । ଏହି ପବିତ୍ର ପୂଜା ପୂର୍ବରୁ ସ୍ଥାନୀୟ ଭୋଇ ସାହିର ଅଧିବାସୀମାନେ ପରମ୍ପରା କ୍ରମେ ଭଗବତୀ ପୀଠରେ ଡାଳ ଛାମୁଣ୍ଡିଆ କରିଥାନ୍ତି । ସମାଜର ପ୍ରାଚୀନ ବନବାସୀ କନ୍ଧ (ଆଦିବାସୀ) ଡୁମାଳ ଗଉଡ (ହରିଜନ) ରାଜଶକ୍ତି ଦ୍ୱାରା ପ୍ରତିଷ୍ଠିତ କନକ ଦୁର୍ଗାଙ୍କ ପୁରୋଧା ବ୍ରାହ୍ମଣ, ପାଞ୍ଜିକାର କରଣ ଏବଂ ରାଜ ପ୍ରତିନିଧି ମୁସଲମାନ ଦଳବେହେରା ଏହି ଦଶହରା ପର୍ବର ଅନ୍ତିମ ଭାଗରେ ଅନୁଷ୍ଠିତ ଅପରାଜିତା ହୋମରେ ପୁରୋଧା ହୁଅନ୍ତି । ବ୍ରାହ୍ମଣ ତାଙ୍କ ହାତରେ କୁଶବଟୁ ପ୍ରଦାନ କରନ୍ତି ଏବଂ ଦଳବେହେରା ହୋମରେ ଆହୁତି ଦେବା ସଙ୍ଗେ ସଙ୍ଗେ ଏହାର ସମସ୍ତ ଖର୍ଚ୍ଚ ପରମ୍ପରା ଅନୁସାରେ ଗ୍ରହଣ କରିଥାନ୍ତି । ଏହି ପରମ୍ପରା ସମଗ୍ର ବିଶ୍ୱରେ ବିରଳ । ହିନ୍ଦୁ ମୁସଲମାନ ଏକତାର ପ୍ରତୀକ ମାଣିକାଗୋଡାର ଦଶହରା ପର୍ବ ଏକ ମହାନ ଆଦର୍ଶ ସୃଷ୍ଟି କରିଅଛି । ଏହି ପର୍ବର ସପ୍ତମୀ ତିଥି ଠାରୁ ଦଶମୀ ତିଥି ପର୍ଯ୍ୟନ୍ତ ୩ ଦିନ ଭୋଗ ପାଇଁ ଅରୁଆ ଚାଉଳ, ଗୁଡ ଏବଂ ଅନ୍ୟାନ୍ୟ ସାମଗ୍ରୀ ମୁସଲମାନ ଦଳବେହେରା ଦିଅନ୍ତି । ମୁସଲମାନ ଘରର ଅରୁଆ ଚାଉଳରେ ହିନ୍ଦୁ ଦିଅଁଙ୍କ ପାଇଁ ପ୍ରସ୍ତୁତି ଭୋଗକୁ ପର୍ବରେ ସଂପୃକ୍ତ ୧୩ଟି ଜାତିର ଲୋକ ଗ୍ରହଣ କରିଥାଆନ୍ତି । ଏହା ଏକ ବିଶେଷ ପରମ୍ପରା ଯାହା ଅନ୍ୟତ୍ର ବିରଳ । ବର୍ତ୍ତମାନ ଦଳେଇ ସାହିର ହବିବୁର ରହମାନ ଦଳବେହେରା ଏହି କାର୍ଯ୍ୟ କରୁଅଛନ୍ତି । ଶେଖ୍ ହବିବୁର ରହମାନ ୧୯୯୯ ମସିହାରେ ଜାତୀୟ ସଂହତି ପାଇଁ ସମ୍ମାନଜନକ ଶାରଳା ପୁରସ୍କାର ଇମ୍ପା ଟ୍ରଷ୍ଟ ପକ୍ଷରୁ ପାଇଥିଲେ । ଏହା ଛଡା ସେ ବୋଲଗଡ ମହୋତ୍ସବ-୨୦୦୪ ଏବଂ ଓଡିଶା ସର୍ବୋଦୟ ମେଳା ପୁରୀ ପକ୍ଷରୁ ସମ୍ମାନିତ ହୋଇଅଛନ୍ତି ।



# ଶିକ୍ଷାର କ୍ରମବିକାଶ

ପୂର୍ବକାଳରେ ମାଟି ବଂଶର ଅବଧାନ ମାନେ ବିଭିନ୍ନ ଗ୍ରାମରେ ଚାଟଶାଳୀ ବା ଚାହାଳୀ କରି ପ୍ରଥମେ ଗ୍ରାମର ମୁଖ୍ୟ ମାନଙ୍କର ପିଲାମାନଙ୍କୁ ଶିକ୍ଷା ଦେଉଥିଲେ । କ୍ରମେ ଗ୍ରାମର ସାଧାରଣ ବର୍ଗର ପିଲାମାନେ ବିଶେଷ କରି ପୁଅ ପିଲାମାନେ ଏହି ଚାଟଶାଳୀରେ ଶିକ୍ଷା ଲାଭ କରିଥିଲେ । ମୁଖ୍ୟତଃ ଗଣିତ ଓ ସାହିତ୍ୟ ଏପରି ଦୁଇଟି ବିଷୟ ଉପରେ ଅଧିକ ଗୁରୁତ୍ୱ ଦିଆଯାଉଥିଲା । ଗଣିତ ବିଭାଗରେ କଡାଗଣ୍ଡା, ପଣିକିଆ, ଲୀଲାବତୀ ସୂତ୍ର, ଅଙ୍କ ଶିକ୍ଷା ଦିଆଯାଉଥିଲା ବେଳେ ସାହିତ୍ୟ ବିଭାଗରେ ଅକ୍ଷର ଶିକ୍ଷା, ବ୍ୟାକରଣ, କୋଇଲି ଗୋପୀଭାଷା, ମଥୁରା ମଙ୍ଗଳ ପଦ୍ୟକୁ ମୁଖସ୍ଥ କରିବା ସଂଗେ ସଂଗେ ଓଡିଆ ଭାଷା ଶିକ୍ଷା ଦିଆଯାଉଥିଲା । ବିଶେଷକରି ସ୍ଥାନୀୟ ବିଭିନ୍ନ ଗ୍ରାମର ବାହ୍ମଣ ପଣ୍ଡିତ, କରଣ ଏବଂ ଜ୍ୟୋତିଷ ଜାତିର ଲୋକମାନେ ଏହି ସବୁ ଚାହାଳୀର ଶିକ୍ଷକ ଥିଲେ । ଇଂରେଜ ଶାସନ ସମୟରେ ଲର୍ଡ ହାଡିଞ୍ଜ ସର୍ବପ୍ରଥମେ ଭାରତ ବର୍ଷରେ ଆଧୁନିକ ଶିକ୍ଷାର ପ୍ରଚଳନ କରିବା ଉଦ୍ଦେଶ୍ୟରେ ଇଂରେଜୀ ଭାଷା ବ୍ୟତିତ ସ୍ଥାନୀୟ ଭାଷାରେ ଶିକ୍ଷା ଦାନ ଦେବା ନିମନ୍ତେ ଓଡିଶା ଡିଭିଜନରେ ୧୦ଟି ଭର୍ନାକୁଲର ସ୍କୁଲ ଖୋଲିବା ପାଇଁ ଅନୁମତି ଦେଇଥିଲେ । ଏ ସମ୍ପର୍କରେ ଦୁଇଟି ମତ ଅଦ୍ୟାବଧି ମିଳିଅଛି ।

<u>ପ୍ରଥମ ମତ-</u>

ଇଂରେଜୀ ଶାସନରେ ପ୍ରଚଳିତ ଶିକ୍ଷା ପ୍ରଣାଳୀର ଆରମ୍ଭ ବିଷୟରେ 'ଇତିହାସର ଝଲକ' ପୁସ୍ତକରେ ଖୋରଧା ବି.ଜେ.ବି. ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ଐତିହାସିକ ମୁରଲୀଧର ପ୍ରଧାନଙ୍କର "ଉନ୍ନବିଂଶ ଶତାବ୍ଦିରେ ଓଡିଶାର ଶିକ୍ଷା ସମସ୍ୟା ଓ ପ୍ରଜ୍ଞାପୀଠ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟ" ଶୀର୍ଷକ ପ୍ରବନ୍ଧର ବିଷୟ ବସ୍ତୁ ନିମ୍ନରେ ଦିଆଗଲା ।

### ଇତିହାସର ଝଲକ

### ଉନ୍ନବିଂଶ ଶତାବ୍ଦିରେ ଓଡିଶାର ଶିକ୍ଷା ସମସ୍ୟା ଓ ପ୍ରଜ୍ଞାପୀଠ ଖୋର୍ଦ୍ଧା ଉଚ୍ଚ ଇଂରାଜୀ ବିଦ୍ୟାଳୟ

ଉନବିଂଶ ଶତାବ୍ଦିର ପ୍ରାରମ୍ଭରେ ନୂତନ ଶିକ୍ଷାବ୍ୟବସ୍ଥା କିଛି ନଥିଲା ଯଦିଓ ୧୮୧୩ ମସିହାଠାରୁ ଇଂରେଜ ସରକାର ଶିକ୍ଷାପାଇଁ କିଛି ଖର୍ଚ୍ଚ କରିବାକୁ ନିଷ୍ପତ୍ତି

ନେଇଥିଲେ । ଓଡିଶା ଅଧିକାରର ୫୦ ବର୍ଷ ପୂର୍ବରୁ ଇଂରେଜମାନ ବଙ୍ଗଳା ଅଧିକାର କରିଥିଲେ ।ତେଣୁ ବଙ୍ଗଳାରେ ଇଂରେଜ ପ୍ରଭାବ ବେଶୀ ପଡିଥିଲା ମାନବବାଦୀ ମନୀଷୀ ଡାଭିଡ ହେୟାର ଓ ପ୍ରଗତିବାଦୀ ରାଜାରାମମୋହନ ରାୟଙ୍କ ସହାୟତାରେ ୧୮୧୭ ମସିହାରେ କଲିକତାରେ ହିନ୍ଦୁ କଲେଜ ଓ ପରବର୍ତ୍ତୀ କାଳରେ ପ୍ରେସିଡେନ୍ସି କଲେଜ ସ୍ଥାପିତ ହୋଇସାରିଥିଲା । କିନ୍ତୁ ଓଡିଶା ଡିଭିଜନ ଗ୍ରାମାଞ୍ଚଳରେ ମାଟିବଂଶ ଅବଧାନମାନେ ଗାଁ ମୁଖିଆଙ୍କ ଦାଣ୍ଡ ପିଣ୍ଡାରେ, ଚୌପାଢିରେ, ଅଣଆଡିଆ ଘରେ ପିଲାମାନଙ୍କୁ ପାହିଗଣ୍ଡା, ପଣକିଆ, ଓଡାଙ୍କ, ଫେଡାଣ, ଲୀଳାବତୀ ସୂତ୍ର ପ୍ରଭୃତି ଗଣିତପାଠ ଏବଂ କୋଇଲି, ଗୋପୀଭାଷା , ମଥୁରାମଙ୍ଗଳ , ଭାଗବତ ପ୍ରଭୃତି ସାହିତ୍ୟପାଠ ପଢାଉଥିଲେ । ମିସନାରୀମାନେ ୧୮୨୦ ମସିହା ପରେ ବାଇବେଲ୍ ଓଡିଆ ଭାଷାରେ ଛପେଇ ଥିଲେ । ମାତ୍ର ପଢିବାପାଇଁ ସାହିତ୍ୟ ପୁସ୍ତକ ନଥିଲା । ଗଣିତ ଓ ସାହିତ୍ୟ ଏ ଦୁଇଟି ବିଷୟରେ ପିଲାମାନେ କିଛି ଶିକ୍ଷା କରୁଥିଲେ । ତାଳପତ୍ର ପୋଥିରୁ ସାହିତ୍ୟ ଶିକ୍ଷା କରାଯାଉଥିଲା ।

ଉଇଲକିନ୍‌ସନ ସାହେବ ଖୋର୍ଦ୍ଧାର ସବ୍‌ଡିଭିଜନ ଅଫିସର ଥିଲେ । ତତ୍‌ପରେ ସେ ପୁରୀ କଲେକ୍ଟର ରୂପେ ଅବସ୍ଥାପିତ ହେଲେ । ୧୮୨୮ ମସିହାରୁ ୧୮୩୫ ମସିହା ପର୍ଯ୍ୟନ୍ତ ଲର୍ଡ ଉଇଲିୟମ ବେଣ୍ଟିକ ଭାରତର ଗଭର୍ଣ୍ଣର-ଜେନେରାଲ ଥିଲେ । ମାକଲେ ଥିଲେ ଆଇନ ସଦସ୍ୟ । ରାଜା ରାମମୋହନ ରାୟ ଭାରତରେ ଇଂରେଜ ଶିକ୍ଷା ପ୍ରଚଳନ କରିବାପାଇଁ ପ୍ରଗାଢ ଚେଷ୍ଟା ଚଳେଇଲେ । ଇଂରେଜ ଶିକ୍ଷା ଭାରତରେ ପ୍ରଚଳନ ପାଇଁ ୧୮୩୩ ମସିହାରେ ସରକାରୀ ସିଦ୍ଧାନ୍ତ ନିଆଗଲା ।

୧୮୩୫ ମସିହାରେ ପୁରୀର କଲେକଟର ଥିଲେ ଉଇଲକିନସନ ସାହେବ । ଖୋରଧା ପ୍ରତି ତାଙ୍କର ସ୍ୱତନ୍ତ୍ର ଦରଦ ଥିଲା । ଖୋରଧାରେ ରହି ସେ ଓଡିଆ ଖାଦ୍ୟ,ପେୟ ସଙ୍ଗେ ପରିଚିତ ଥିଲେ । ସେ ପାଠପଢା ପ୍ରତି ଆଗ୍ରହ ପ୍ରକାଶ କରୁଥିଲେ । ତେଣୁ ପୁରୀର ଗୋଟିଏ ଇଂରେଜୀ ସ୍କୁଲ ପ୍ରତିଷ୍ଠା କରିବା ପାଇଁ ୧୦୦୫ ଟଙ୍କା ଦାନ ସୂତ୍ରରେ ଓ ୮୬୭ ଟଙ୍କା ଚାନ୍ଦା ଆକାରରେ ଆଦାୟ କଲେ । ଗୃହ ଖଣ୍ଡିଏ ଠିକ୍ ହୋଇଗଲା ମାତ୍ର ଶିକ୍ଷକ କାହାନ୍ତି । ଓଡିଶାରେ ଶିକ୍ଷକର ଘୋର ଅଭାବ । ତେଣୁ ସୁଦୂର କଲିକତାରୁ ଶିକ୍ଷକ ଆଣିବାର ଚିନ୍ତା କରାଗଲା । ସେତେବେଳେ ଗାଡି, ମଟରର କୌଣସି ସୁବିଧା ନଥିଲା, କଲିକତାକୁ ଯିବାକୁ ୨୫ କି ୩୦ ଦିନ ଲାଗୁଥିଲା । ତଥାପି ଗଙ୍ଗାନାରାୟଣ ବୋଷ ନାମରେ ଜଣେ ଇଂରେଜ ପଢୁଆ ଶିକ୍ଷକ ୧୮୩୫ ମସିହା ନଭେମ୍ବର ମାସରେ ପୁରୀ ଫ୍ରି ସ୍କୁଲରେ ଯୋଗଦେଲେ । ସର୍ବପ୍ରଥମେ ସ୍କୁଲଟି ଏକ ଘରୋଇ ସ୍କୁଲଭାବେପ୍ରତିଷ୍ଠା ଲାଭ କରିଥିଲା, ସେଥିଲେ ୪ ଗୋଟି ଶ୍ରେଣୀ ରହିଥିଲା । ୪ ଶ୍ରେଣୀର ମୋଟରେ ୨୫ ଜଣ ଛାତ୍ର ଥିଲେ । ସେଠାରେ ଇଂରାଜୀ,

ଓଡ଼ିଆ, ବଙ୍ଗଳା , ସଂସ୍କୃତ ଓ ପାରସୀ ପଢାଯିବାର ବନ୍ଦୋବସ୍ତ କରାଯାଇଥିଲା । ମାତ୍ର ମୁସଲମାନ ପିଲା ନଥିଲେ । ପିଲାମାନଙ୍କର ବୟସ ୭ ବର୍ଷରୁ ୧୫ ବର୍ଷ ପର୍ଯ୍ୟନ୍ତ ଥିଲା । କାୟିକ ଦଣ୍ଡ ପ୍ରଥା ନଥିଲା । ଘରୋଇ ଚାନ୍ଦାରୁ ବିଦ୍ୟାଳୟ ପରିଚାଳିତ ହେଉଥିଲା ।

(ପୁରୀ ଜିଲ୍ଲାସ୍କୁଲ ଶତବାର୍ଷିକୀ ମାଗାଜିନ- ପି.ବି. ଶାସ୍ତ୍ରୀଙ୍କ ଲେଖାରୁ ଆନୀତ)

ଓଡ଼ିଶା ଇଂରେଜ ଶାସନାଧୀନ ଥିଲେ ହେଁ ଆଗନ୍ତୁକ ବଙ୍ଗାଳୀ ବିହାରୀମାନେ ଅମଲାରୂପରେ ରହି ଶାସନରେ ପ୍ରଭୁତ୍ୱ ବିସ୍ତାର କରିଥିଲେ । ସେମାନଙ୍କର ପିଲାମାନେ ଉକ୍ତ ସ୍କୁଲରେ ନାମ ଲେଖାଇଲେ । ସେମାନଙ୍କ ସହିତ ପୁରୀ ସହରର ପଣ୍ଡା, ପଢିଆରୀ ଓ ଧନିକ ଶ୍ରେଣୀ ଲୋକଙ୍କର ପିଲାମାନେ ବିଦ୍ୟା ପଢିବାକୁ ଆସିଲେ । ଶିକ୍ଷକମାନେ ପିଲାମାନଙ୍କର ଚାଲିଚଳନ, ଢଙ୍ଗଢାଙ୍ଗ, ବ୍ୟବହାରରେ ସନ୍ତୋଷ ପ୍ରକାଶ କରୁଥିଲେ । ମାତ୍ର ପିଲାଙ୍କ ପାଠପଢାରେ ସନ୍ତୁଷ୍ଟ ନଥିଲେ । ଓଡ଼ିଶା ଭାଷାରେ କୌଣସି ଛପା ପାଠ୍ୟପୁସ୍ତକ ନଥିଲ । ଗଙ୍ଗନାରାୟଣବାବୁ ୨ ବର୍ଷ ରହଣିକାଳ ମଧ୍ୟରେ ବହୁବାର ବେମାରରେ ପଡିଲେ, ତେଣୁ ନିଜ ସ୍ୱାସ୍ଥ୍ୟ ଦୃଷ୍ଟିରୁ ୧୮୩୭ ମସିହାରେ ସେ ପୁରୀ ତ୍ୟାଗ କରି ସ୍ୱଦେଶ ପ୍ରସ୍ଥାନ କଲେ । ପାଠପଢାରେ ବ୍ୟାଘାତ ଘଟିଲା ।

ତପ୍ରେ S.R.Davis ମହୋଦୟ ହେଡ୍‌ମାଷ୍ଟର ହିସାବରେ ଯୋଗଦେଲେ । ସେ କୌଣସି ଦେଶୀୟ ଭାଷା ଶିଖି ନଥିଲେ ତେଣୁ ସ୍କୁଲ ଚଳେଇବାରେ ଅସୁବିଧା ସୃଷ୍ଟି ହେଲା । ତପ୍ରେ W.E.Carpon ଓ ତାଙ୍କ ପରେ ମିଷ୍ଟର Walpole ପ୍ରଧାନ ଶିକ୍ଷକ ପଦରେ ଅବସ୍ଥାପିତ ହେଲେ । ଏଥି ମଧ୍ୟରେ ହିନ୍ଦୁପିଲା ଓ ତାଙ୍କ ବାପା, ମାଆଙ୍କ ମନରେ ରକ୍ଷଣଶୀଳ ମାଟିବଂଶ ଅବଧାନମାନେ ଗୋଟିଏ ଅନ୍ଧ ବିଶ୍ୱାସ ଭର୍ତ୍ତି କରିଦେଲେ ଯେ ଇଂରାଜୀ ସ୍କୁଲରେ ଇଂରେଜ ପାଦ୍ରୀମାନେ ମଧ୍ୟ ସେତେବେଳେ ଖ୍ରୀଷ୍ଟିଆନ ଧର୍ମରେ ଲୋକଙ୍କୁ ଦୀକ୍ଷିତ କରାଉଥିଲେ । ଅପପ୍ରଚାର ଯୋଗୁଁ ବିଦ୍ୟାଳୟରେ ପିଲା ସଂଖ୍ୟା କମିବାରେ ଲାଗିଲା । ଜନସାଧାରଣଙ୍କ ତରଫରୁ ଆର୍ଥିକ ସାହାଯ୍ୟ କିଛି ମିଳିଲା ନାହିଁ । ପୁରୀ ସହରରେ ପରୀକ୍ଷାମୂଳକଭାବେ ଚାରି ପାଞ୍ଚବର୍ଷ ଇଂରାଜି ସ୍କୁଲ ଚାଲିଲା ମାତ୍ର ନାନାକାରଣରୁ ତିଷ୍ଠି ପାରିଲାନାହିଁ । ତେଣୁ ୧୮୪୧ ମସିହାରେ ଏହି ସ୍କୁଲକୁ କଟକ ସହରକୁ ସ୍ଥାନାନ୍ତରିତ କରାଗଲା । କେହି କେହି ଶିକ୍ଷାବିତ୍ ମତପ୍ରକାଶ କରନ୍ତି ଏହି ସ୍କୁଲଟି କଟକ ସ୍କୁଲ ବା ରେଭେନ୍ସା କଲିଜିଏଟ୍ ସ୍କୁଲର ମୂଳ ବୀଜ ଅଟେ ।

( ପୁରୀ ଜିଲା ସ୍କୁଲ ଶତବାର୍ଷିକୀ ମାଗାଜିନ)

୧୮୪୩ ମସିହାରେ ଲର୍ଡ ହାଡିଞ୍ଜ ଭାରତର ଗଭର୍ଣ୍ଣର-ଜେନେରାଲ ହୋଇ ଆସିଲେ । ସେ ଶିକ୍ଷାପ୍ରତି ଅଧିକ ଧ୍ୟାନ ଦେଲେ । କିନ୍ତୁ ସେତେବେଳେ ମଧ୍ୟ ଏ ଦେଶରେ ଇଂରେଜୀ ଶିକ୍ଷାପ୍ରତି ଅନୁକୂଳ ମନୋଭାବ ନଥିଲା । ଓଡିଆମାନେ ପୁରାମାତ୍ରାରେ ରକ୍ଷଣଶୀଳ ଥିଲେ ଇଂରେଜୀ ପାଠ ପ୍ରତି ବିମୁଖ ଥିଲେ । ଯେଉଁ ମାଟିବଂଶ ଅବଧାନ ମାନେ ଗାଁ ଚାଟଶାଳୀରେ ପାଠ ପଢାଉଥିଲେ ସେମାନଙ୍କର ଚାକିରି ଯିବା ଭୟରେ ସେମାନେ ସରକାରୀ ସ୍କୁଲ ପ୍ରତିଷ୍ଠାର ଘୋର ବିରୋଧ କରୁଥିଲେ । ଓଡିଶାର ସମସ୍ତ ଅଫିସ ମାନଙ୍କରେ ସମସ୍ତ ସରକାରୀ କର୍ମଚାରୀ ବଙ୍ଗାଳୀ, ବିହାରୀ, ପଶ୍ଚିମା ଲୋକମାନେ ଥିଲେ । ସାଧାରଣ ମୋହରରି ମଧ୍ୟ ଓଡିଶାର ତତ୍କାଳୀନ କମିଶନର ଜି.ଏଫ୍ କକବର୍ଣ୍ଣ ବଙ୍ଗଳା ସରକାରଙ୍କୁ ଲେଖିଥିଲେ ଯେ- "ଓଡିଶା ଡିଭିଜନ ପାଇଁ ଖର୍ଚ୍ଚ ହେବାକୁ ଥିବା ପଇସା ବଙ୍ଗଳାର ଅନ୍ୟ ଡିଭିଜନରେ ଖର୍ଚ୍ଚ ହେଉଛି । ଓଡିଶାରେ ଜଣେ ମୋହରିର ବି ଅଭାବ ଦେଖାଯାଉଛି । ବଙ୍ଗ ସରକାର ବଙ୍ଗାଳୀ କର୍ମଚାରୀଙ୍କ ପ୍ରଭାବରେ ସବୁ ଧନ ଅନ୍ୟତ୍ର ଖର୍ଚ୍ଚ କରୁଛନ୍ତି ।"

ଗର୍ଭର୍ଣ୍ଣର - ଜେନେରାଲ ଲର୍ଡ ହାର୍ଡିଞ୍ଜ ସମଗ୍ର ଦେଶରେ (ଭାରତବର୍ଷ ) ୧୦୧ଟି ସ୍କୁଲ ପ୍ରତିଷ୍ଠା କରିବାକୁ ସିଦ୍ଧାନ୍ତ ନେଲେ । ବିରାଟ ବଙ୍ଗ ପ୍ରେସିଡେନ୍ସିକୁ ଲକ୍ଷ୍ୟକଲେ ଓଡିଶା ଡିଭିଜନର ୩ଗୋଟି ଜିଲା କଟକ, ପୁରୀ, ବାଲେଶ୍ୱର (୨୦ ଲକ୍ଷ ଲୋକସଂଖ୍ୟା ବିଶିଷ୍ଟ) କେଉଁ ଉପାନ୍ତ ଅଞ୍ଚଳରେ ଅବସ୍ଥିତ ଥିବାପରି ଜଣାପଡୁଥିଲା । ବଙ୍ଗ ସରକାର ବାଧବାଧକତାରେ ଯାହା କରୁଥିଲେ । ଓଡିଶା ପ୍ରତି ସରକାରର ସୁନଜର ନଥିଲା । ତେଣୁ ଓଡିଶା ଡିଭିଜନର ଏହି ୩ ଗୋଟି ଜିଲ୍ଲା ଭାଗରେ ମୋଟ ୮ ଗୋଟି (ଆଠ) ସ୍କୁଲ ପଡିଲା । ସେହି ସ୍କୁଲଗୁଡିକ ହେଲା ଖୋର୍ଦ୍ଧା, ପୁରୀ, ବାଲେଶ୍ୱର, ରେମୁଣା, ଭଦ୍ରକ, କେନ୍ଦ୍ରାପଡା, ହରିହରପୁର ଓ ମହାସିଂହପୁର (ମାହାଙ୍ଗା) । ଏହି ବିଦ୍ୟାଳୟଗୁଡିକ ୧୮୪୪ ମସିହାରେ ହାଡିଞ୍ଜ ସ୍କୁଲ ନାମରେ ପରିଚିତ ହେଲା । ମାତ୍ର କେତେବର୍ଷ ମଧ୍ୟରେ ଦୁଇଟି ସ୍କୁଲ ବ୍ୟତୀତ (ଖୋର୍ଦ୍ଧା, ମହାସିଂହପୁର) ଅନ୍ୟ ଭର୍ଣ୍ଣାକୁଲାର ସ୍କୁଲଗୁଡିକ ଭାଙ୍ଗିଗଲା ।

<u>ଦ୍ୱିତୀୟ ମତ</u>-

୰ ସାଧୁ ଚୌଧୁରୀଙ୍କ ଲିଖିତ ପାଣ୍ଡୁଲିପିରୁ ଉଦ୍ଧାର ତଥ୍ୟ ଅନୁସାରେ ଏଠାରେ ଭର୍ନାକୁଲାର ସ୍କୁଲ ଆରମ୍ଭ ପୂର୍ବରୁ ୧୮୬୭ ମସିହାରେ ପୁରାତନ ଚକ୍ର ବିଦ୍ୟାଳୟ (ପ୍ରାଥମିକ) ଆରମ୍ଭ ହୋଇଥିଲା । ରାମକୃଷ୍ଣ ଭଟ୍ଟାଚାର୍ଯ୍ୟ ଏହାର ପ୍ରଧାନ ଶିକ୍ଷକ ଥିଲେ । ୧୮୮୫ ମସିହାରେ ସରକାରଙ୍କ ତରଫରୁ ଯେଉଁ ୧୦ ଟି ସ୍କୁଲ ଓଡିଶାରେ

ହେବାର ଥିଲା ତନମଧ୍ୟରୁ ବୋଲଗଡରେ ଗୋଟିଏ ଭର୍ନାକୁଲର ସ୍କୁଲ ପ୍ରତିଷ୍ଠା ହେଲା । ସେଥିରେ ପ୍ରଥମେ ୩ ଜଣ ଶିକ୍ଷକ ୧୫ ଟଙ୍କା ଗ୍ରାଣ୍ଟରେ ରହିଲେ । ଆସ୍ତେ ଆସ୍ତେ ବଢି ବଢି ୯ ଜଣ ଶିକ୍ଷକ ୧୯୨୪ ମସିହା ଯାଏଁ ରହିଲେ । ସ୍ଥାନୀୟ ଶିକ୍ଷକ ଭାବରେ ୧୯୧୨ ମସିହାରେ ଶ୍ରୀ ଜଗନ୍ନାଥ ପରିଡା ୫ମ ଶ୍ରେଣୀ ପାସ କରି ମାସିକ ୨ଟଙ୍କା ବେତନରେ ନିଯୁକ୍ତି ପାଇଲେ । ୧୮୯୩ ରେ ଏହି ସ୍କୁଲର ପ୍ରଥମ ଦଫା ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେଥିରେ ୰ ହଟକିଶୋର ସାମନ୍ତରା ମାସିକ ୨ଟଙ୍କା ବୃତ୍ତି ପାଇ ସୁନାମ ଅର୍ଜନ କରିଥିଲେ । ୧୯୨୫ ମସିହାରେ ଭର୍ନାକୁଲର ନାମ ଉଠାଇ ସରକାର ସେହି ଜାଗାରେ ମଧ ଇଂରାଜୀ ବିଦ୍ୟାଳୟ ୪ ର୍ଥ ଶ୍ରେଣୀରୁ ୭ମ ଶ୍ରେଣୀ ଯାଏଁ ଖୋଲିଲେ । ସେହି ସ୍କୁଲର ପ୍ରଥମ ଶିକ୍ଷକ ମାନଙ୍କର ନାମ ନିମ୍ନରେ ଦିଆଗଲା -

| | | | |
|---|---|---|---|
| ୧. | ହୃଷିକେଶ ପଟ୍ଟନାୟକ | ପ୍ରଧାନ ଶିକ୍ଷକ | ବୋଲଗଡ |
| ୨. | ବିଦ୍ୟାଧର ଚୌଧୁରୀ | ୨ୟ ଶିକ୍ଷକ | ବୋଲଗଡ |
| ୩. | ଲିଙ୍ଗରାଜ ନାୟକ | ୩ୟ ଶିକ୍ଷକ | ଗୁଢୁମ |
| ୪. | ନିମାଇଁଚରଣ ପଟ୍ଟନାୟକ | ୪ର୍ଥ ଶିକ୍ଷକ | ଡିଙ୍ଗର |

ସେତିକିବେଳେ ପ୍ରଥମ ଶ୍ରେଣୀରୁ ୩ୟ ଶ୍ରେଣୀ ନିମ୍ନ ପ୍ରାଥମିକ ସ୍କୁଲ ହେବାରେ ହଟ ସାହୁ ଏବଂ ଅନ୍ୟ ୨ଜଣ ସହକାରୀ ଶିକ୍ଷକ ରହିଲେ । ୰ ବିଦ୍ୟାଧର ଚୌଧୁରୀଙ୍କ ଉଦ୍ୟମରେ ୧୯୨୫ ମସିହାରେ ୰ ବାଞ୍ଛାନିଧି ପରମଗୁରୁଙ୍କ ସ୍ତ୍ରୀ ଶ୍ରୀମତୀ ଦେବୀଙ୍କ ନାମ ଅନୁସାରେ ଶ୍ରୀମତୀ ସଂସ୍କୃତ ଟୋଲ (ସଂସ୍କୃତ ଶିକ୍ଷା ପାଇଁ) ସ୍ଥାପନ କରାଗଲା । ସେଥିରେ ଶାସ୍ତ୍ରୀ ପର୍ଯ୍ୟନ୍ତ ଶିକ୍ଷା ଦାନର ବ୍ୟବସ୍ଥା ରହିଲା । ୰ ଚୌଧୁରୀ ସୁଚାରୁ ରୂପେ ଚଲାଇବାରେ ସୁନାମ ଅର୍ଜନ କରିବାରୁ ବିଭିନ୍ନ ସ୍ଥାନରୁ ଛାତ୍ର ଆସି ଏଥିରେ ଶିକ୍ଷା ଲାଭ କରି ଉତ୍ତିର୍ଣ୍ଣ ହେଉଥିଲେ ।

ସ୍ଥାନୀୟ ମଧ ଇଂରାଜୀ ବିଦ୍ୟାଳୟର ସୁନାମ ଥିବାରୁ ଓଡଗାଁ ଠାରୁ ବାଘମାରି ଯାଏଁ ଛାତ୍ରମାନେ ଏଠାରେ ଅଧ୍ୟୟନ କରୁଥିଲେ । ପୁରୀ ଜିଲ୍ଲାରେ ଏହି ସ୍କୁଲ ୨ୟ ସ୍ଥାନ ଅଧିକାର କରିଥିଲା । ଏହି ସ୍କୁଲରେ ମୁସଲମାନ ଛାତ୍ର ବେଶୀ ହେବାରୁ ଜଣେ ଉର୍ଦ୍ଦୁ ଶିକ୍ଷକଙ୍କୁ ରଖାଗଲା । ବୋଲଗଡ ଠାରେ ଥିବା ୨ଟି ମକ୍ତବ ସାରା ଓଡିଶାରେ ପ୍ରତିବର୍ଷ ବୃତ୍ତି ଲାଭ କରୁଥିଲା । ଦେଶ ସ୍ୱାଧୀନତା ଲାଭ ପରେ ମକ୍ତବ ୨ଟି ଉଠାଇନେଲେ । ଏହାଛଡା ସେତେବେଳେ ୧୮୯୮ ମସିହାରେ ମାଣିକାଗୋଡା

ପ୍ରାଥମିକ ବିଦ୍ୟାଳୟ ହୋଇଥିଲା । ନିକଟରେ ଏହି ସ୍କୁଲଟାର ଶତବାର୍ଷିକୀ ଉତ୍ସବ ପାଳନ କରିଅଛି । ଏହାଛଡା ବାଙ୍କୋଇ ପିଢୁକୁଲୀ ଠାରେ ସେ ସମୟରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ମହତ୍ମା ଗାନ୍ଧୀଙ୍କ ବୋଲଗଡ ଆଗମନ ପରେ ଏ ଅଞ୍ଚଳର ଖଦୀ ତଥା ରଚନାତ୍ମକ କାର୍ଯ୍ୟରେ ମୁଗ୍ଧ ହୋଇ କେତେକ ମୌଳିକ ବିଦ୍ୟାଳୟ ଖୋଲିବା ପାଇଁ ତତକାଳୀନ ସରକାର ଏକ ପଦକ୍ଷେପ ନେଇଥିଲେ । ସେହି ଅନୁସାରେ କ୍ରମେ ବୁଢା, ଘୋରଡିଆ, କଳାଙ୍ଗ, ହଳଦୀପଦା, ଚମ୍ପାଇଲୋ, ଗୋଡିଆଳି, ଦିଘିରି ପ୍ରଭୃତି ଗ୍ରାମରେ ମୌଳିକ ପ୍ରାଥମିକ ସ୍କୁଲ ମାନ ଗଢି ଉଠିଲା । ସେତେବେଳେ ବୁଢା ମୌଳିକ ସ୍କୁଲ ପରିସର ଯଥେଷ୍ଟ ବେଶୀ ବୋଲଗଡ ଅଞ୍ଚଳର ସମସ୍ତ ସ୍କୁଲର ଶିକ୍ଷକ ମାନଙ୍କୁ ସ୍ୱଳ୍ପ କାଳୀନ ମୌଳିକ ଶିକ୍ଷା ତାଲିମ ସେଠାରେ ଦିଆଯାଉଥିଲା । ସୂତାକଟା, ବଗିଚା କାମ, ପାଇଖାନା ସଫା ଏବଂ ରୋଷେଇ ଆଦି ବିଷୟରେ ଶିକ୍ଷକମାନେ ତାଲିମ ପାଇ ନିଜ ସ୍କୁଲର ପିଲାମାନଙ୍କୁ ଏ ବିଷୟରେ ଶିକ୍ଷା ଦେଉଥିଲେ । ଫଳରେ ସେତେବେଳେ ପ୍ରତ୍ୟେକ ସ୍କୁଲରେ ବାଡି ବଗିଚା ଥିଲା । ଛାତ୍ର ମାନଙ୍କ ମଧ୍ୟରେ ପ୍ରଧାନ ମନ୍ତ୍ରୀ, ଶୃଙ୍ଖଳା ରକ୍ଷା ନିମନ୍ତେ ବର୍ଗ ମନ୍ତ୍ରୀ, ବଗିଚା କାମ ନିମନ୍ତେ କୃଷି ମନ୍ତ୍ରୀ, ଛାତ୍ର ମାନଙ୍କର ପରଷ୍କାର ପରିଚ୍ଛନତା ପାଇଁ ସ୍ୱାସ୍ଥ୍ୟ ମନ୍ତ୍ରୀ ପ୍ରତି ଶ୍ରେଣୀରେ ବଛା ହେଉଥିଲା । ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ଡଃ. ରାଧାନାଥ ରଥଙ୍କ ଅଧକ୍ଷତାରେ ବୋଲଗଡ ଅଞ୍ଚଳ ଗାନ୍ଧୀଜୀଙ୍କର ଏକ ପ୍ରିୟ ସ୍ଥାନ ଥିବାରୁ ଏ ଅଞ୍ଚଳରେ ମୌଳିକ ଶିକ୍ଷା ଏବଂ ସୁତାକଟା ସହ ଅନ୍ୟାନ୍ୟ ରଚନାତ୍ମକ କାର୍ଯ୍ୟକ୍ରମର ବହୁଳ ପ୍ରସାର ପାଇଁ ଏକ କମିଟି ଗଠନ କରାଯାଇଥିଲା । ଏହି କମିଟି ବୋଲଗଡ ଠାରେ ଏକ ମୌଳିକ ଶିକ୍ଷା ତାଲିମ ସ୍କୁଲ (Basic Training School) ର ପ୍ରତିଷ୍ଠା ପାଇଁ ସରକାରଙ୍କୁ ସୁପାରିଶ କରିଥିଲେ । ତାହା ସରକାରୀ ସ୍ତରରେ ଗୃହୀତ ହେଲା ପରେ ସ୍ଥାନୀୟ ଲୋକଙ୍କର ସହଯୋଗ ଅଭାବରୁ ବୋଧହୁଏ ତତକାଳୀନ କଂଗ୍ରେସ ନେତା ୰ କୃଷ୍ଣଚନ୍ଦ୍ର ମିଶ୍ର ନିଜସ୍ୱ ଜମି ଦାନ କରି ତାଙ୍କ ୰ ପିତା ସୋମନାଥ ମିଶ୍ରଙ୍କ ନାମରେ ଏହି ମୌଳିକ ତାଲିମ ସ୍କୁଲ ରାଜସୁନାଖଳା ଠାରେ କରାଇ ନେଲେ ।

୧୯୪୩ ମସିହା ବେଳକୁ ୰ ଆନନ୍ଦ ରଥ ବୋଲଗଡ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ । ତାଙ୍କର ଏକନିଷ୍ଠ ଉଦ୍ୟମରେ ଅଞ୍ଚଳର ତତକାଳୀନ ପ୍ରମୁଖ ବ୍ୟକ୍ତି ୰ ପତିତପାବନ ହୋତା, ମଧୁସୂଦନ ଛୋଟରାୟ, ଚକ୍ରଧର ମହାପାତ୍ର, ବାଙ୍କନିଧି ପରିଡା, ବିଦ୍ୟାଧର ପଟ୍ଟନାୟକ, ବାଞ୍ଛାନିଧି ପରମଗୁରୁ, ବିଦ୍ୟାଧର ଚୌଧୁରୀ, ସୁଦର୍ଶନ ମହାପାତ୍ର, ଜୟକୃଷ୍ଣ ମିଶ୍ର, ସୁଧାକର ପଶ୍ଚିମକବାଟ, ଅର୍ଜୁନ ସୁବୁଦ୍ଧି, ନସିବ ଖାଁ, କୃଷ୍ଣଚନ୍ଦ୍ର ମିଶ୍ର, ସେର ଅଲ୍ଲି ବେଗ, ପ୍ରିୟନାଥ ହରିଚନ୍ଦନ, ଜଗଦୀଶ ପଟ୍ଟନାୟକ, ଗଙ୍ଗାଧର ବିଧାର ମହାପାତ୍ର, କ୍ଷେତ୍ରମୋହନ ପଟ୍ଟନାୟକ, ରଘୁନାଥ

ସାହୁ, ଧନେଶ୍ୱର ବୈରୀଗଞ୍ଜନ ପ୍ରଭୃତିଙ୍କୁ ଏକାଠି କରି ଏକ ହାଇସ୍କୁଲ ପ୍ରତିଷ୍ଠା କରିବା ପାଇଁ ପ୍ରୟାସ ଆରମ୍ଭ କରିଥିଲେ । ବୋଲଗଡ ଅଞ୍ଚଳର ବିଶିଷ୍ଟ ଧନାଢ୍ୟ ବ୍ୟକ୍ତି ଉଚ୍ଚମନା ୰ ବାମନ ମହାପାତ୍ର ସମସ୍ତଙ୍କ ସହଯୋଗରେ ବାମନ ହାଇସ୍କୁଲ ପ୍ରତିଷ୍ଠା କରିଥିଲେ । ଏହା ବୋଲଗଡ ବ୍ଲକର ପ୍ରଥମ ଉଚ୍ଚ ବିଦ୍ୟାଳୟ ।

ବାମନ ଉଚ୍ଚ ବିଦ୍ୟାଳୟର ପ୍ରତିଷ୍ଠାତା ପ୍ରଧାନ ଶିକ୍ଷକ ୰ ଆନନ୍ଦ ଚନ୍ଦ୍ର ରଥ ଏହି ବିଦ୍ୟାଳୟ ସ୍ଥାପନ ସମ୍ପର୍କରେ ତାଙ୍କର ଅନୁଭୂତି ବାମନ ଉଚ୍ଚ ବିଦ୍ୟାଳୟର ପ୍ରଥମ ସ୍ମରଣୀକା "ବାମନ ପ୍ରଦୀପ"ରେ ପ୍ରକାଶ ପାଇଥିଲା । ପାଠକଙ୍କ ଅବଗତି ନିମନ୍ତେ ତାହା ଏଠାରେ ଦିଆଗଲା ।

ବାମନ ପ୍ରଦୀପ,

ବାମନ ଉଚ୍ଚ ବିଦ୍ୟାଳୟ,ବୋଲଗଡ (୧୯୭୧-୭୨) ବୋଲଗଡ ସ୍ମୃତି

-ଶ୍ରୀ ଆନନ୍ଦ ଚନ୍ଦ୍ର ରଥ, ଭୂତପୂର୍ବ ପ୍ରଧାନ ଶିକ୍ଷକ

(ସମ୍ପାଦକଙ୍କ ଅନୁରୋଧ କ୍ରମେ ଲିଖିତ)

ଆଜିକି ୩୬ ବର୍ଷ ହେଲା, ତଥାପି ସେ ସ୍ମୃତି ଟିକିଏ ହେଲେ ମଉଳି ନାହିଁ । ତାହା ମୋ' କ୍ଷୁଦ୍ର ଜୀବନର ସଂରକ୍ଷିତ ପୁଞ୍ଜି । ସେତେବେଳର ସୁଖ ଦୁଃଖ, ସଂଘର୍ଷ ଓ ସଂଗ୍ରାମରୁ ବର୍ତ୍ତମାନ ସୁଦ୍ଧା ଆନନ୍ଦ ଲାଭ କରୁଛି ଏବଂ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ମଧ୍ୟ କରୁଥିବି । ମୋ'ର ତତ୍କାଳୀନ ସାଥି ଏବଂ ସହାୟକ ମାନଙ୍କ ମଧ୍ୟରୁ ଯେଉଁମାନେ ଇହ ସଂସାରରେ ନାହାଁନ୍ତି ସେମାନଙ୍କ ପ୍ରତି ମୁଁ ଶ୍ରଦ୍ଧାଞ୍ଜଳି ତର୍ପଣ କରୁଛି ।

୧୯୩୪ ମସିହା ଡିସେମ୍ବର ମାସରେ ମୁଁ ଭିଙ୍ଗାରପୁର ମାଇନର ସ୍କୁଲରୁ ଆସି ବୋଲଗଡ ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଦାୟିତ୍ୱ ଗ୍ରହଣ କଲି । ସେତେବେଳେ ଉକ୍ତ ସ୍କୁଲ ପରିଚାଳନା ସଭାରେ ଶ୍ରୀ ମଧୁସୂଦନ ଛୋଟରାୟ, ସଂପାଦକ, ସ୍ୱର୍ଗତ ବିଦ୍ୟାଧର ପଟ୍ଟନାୟକ ସଭାପତି, ୰ କ୍ଷେତ୍ରମୋହନ ପଟ୍ଟନାୟକ, ୰ ରଘୁନାଥ ପାହାଡସିଂହ ୰ ପ୍ରିୟନାଥ ହରିଚନ୍ଦନ, ୰ କ୍ଷେତ୍ରବାସୀ ସାହୁ , ଶ୍ରୀ ମଦନମୋହନ ଜଗଦେବ, ଶ୍ରୀ ପତିତପାବନ ହୋତା, ମୁନ୍‌ସୀ ଶେର୍ ଅଲିବେଗ୍ ପ୍ରଭୃତି ସଭ୍ୟ ଥିଲେ । ସ୍ୱର୍ଗତ ବାମନ ମହାପାତ୍ର ବିଦ୍ୟାଳୟର ଜଣେ ଶିକ୍ଷକଙ୍କୁ ତାଙ୍କ ଦେଉଳ ବେଢା ମଧ୍ୟରେ କଥା ପ୍ରସଙ୍ଗରେ ଅପମାନ ସୂଚକ ବାକ୍ୟ ପ୍ରୟୋଗ କରିଥିବାରୁ ପରଚାଳନା ସଭାରେ ତା'ର ବିଚାର କରାଯାଇ ତତ୍କାଳୀନ ଡେପୁଟି ଇନ୍‌ସ୍ପେକ୍ଟରଙ୍କ ନିକଟରେ ମହାପାତ୍ରଙ୍କ ବିରୋଧରେ ଅଭିଯୋଗ କରାଯାଇଥିଲା ଏବଂ ସେ ଉକ୍ତ ଅଭିଯୋଗ ତଦନ୍ତ କରିବା ବେଳେ ମହାପାତ୍ରଙ୍କୁ ଡକାଇ ପଠାଇବାରେ ସେ ( ମହାପାତ୍ରେ)

ଡେପୁଟି ଇନ୍ସପେକ୍ଟରଙ୍କୁ ସ୍ୱୀକାର କଲେ ନାହିଁ । ମୁଁ ଆସିବା ପରେ ପରେ ପରିଚାଳନା ସଭାରେ ଏ ପ୍ରସଙ୍ଗ ଉତ୍‌ଥାପିତ ହେଲା । କିନ୍ତୁ ଏ ପ୍ରକାର ବିଷୟ ପରିଚାଳନା ସଭାର ବିଚାରଣୀୟ ନୁହେଁ ବୋଲି ମୁଁ ଯୁକ୍ତି ଦେଖାଇବାରେ ମକଦ୍ଦମାଟି ପ୍ରତ୍ୟାହୃତ ହେଲା । ସମ୍ଭବତଃ ଏହି ଘଟଣାରୁ ମହାପାତ୍ରଙ୍କର ପ୍ରଥମେ ମୋ ପ୍ରତି ଟିକିଏ ଶ୍ରଦ୍ଧା ଜାତ ହୋଇପାରିଥିବ । ସେତେବେଳେ ସେ ଜିଲ୍ଲା ବୋର୍ଡର ସଭ୍ୟଥିଲେ । ମୁଁ ମଝିରେ ମଝିରେ ତାଙ୍କ ସହିତ ସାକ୍ଷାତ କରୁଥାଏ ଏବଂ ଅତ୍ୟନ୍ତ ସତର୍କତାର ସହିତ ତାଙ୍କ ସହିତ କଥାବାର୍ତ୍ତା କରୁଥାଏ । ମୁଁ ଜାଣିଥିଲି ଯେ ପରିଚାଳନା ସଭାର ସବୁ ସଭ୍ୟ ତାଙ୍କର ପୂର୍ବ ବିରୋଧୀ ଏବଂ ମହାପାତ୍ରଙ୍କ ସହିତ ସମ୍ବନ୍ଧ ନରଖିବା ପାଇଁ ମଧ କେହି କେହି ମତେ ପ୍ରବର୍ତ୍ତାଇଲେ । କିନ୍ତୁ ତାଙ୍କର ଏ ପ୍ରବର୍ତ୍ତନାକୁ ମୁଁ ଅତ୍ୟନ୍ତ ନମ୍ର ଓ ନିଷ୍ଠଭାବରେ ପ୍ରତ୍ୟାଖ୍ୟାନ କଲି । ମହାପାତ୍ରେ ସ୍କୁଲର ପୂର୍ବ ବିରୋଧୀ ହୋଇଥିଲେ ମଧ ସ୍କୁଲ ଶିକ୍ଷକ ବା ପରିଚାଳନା ସଭାର ସଭ୍ୟଙ୍କ ବିପକ୍ଷ ଆଲୋଚନାରେ ମୁଁ ତାଙ୍କ ସହିତ ଅଂଶ ଗ୍ରହଣ କରୁନଥିଲି । ଏହି ପ୍ରକାର ମୁଁ ଉଭୟ ପକ୍ଷର ବିଶ୍ୱାସଭାଜନ ହୋଇ ପାରିଥିଲି । ପୁରାତନ ସ୍କୁଲ ଗୃହ ଓ ଛାତ୍ରାବାସ ଉଭୟ ଅତି ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଥିଲା । ବିଦ୍ୟାଳୟ ହତା ମଧରେ ଥିବା କଚା କୂଅଟି ଭୁଷୁଡି ପଡିଥିବାରୁ ଛାତ୍ରାବାସରେ ଜଳ ଯୋଗାଣ ଅତ୍ୟନ୍ତ ଅସୁବିଧା ଜନକ ହେଉଥିଲା । ବହୁ ପ୍ରୟାସ ଫଳରେ ସରକାରଙ୍କ ଠାରୁ ଏହି ଗୃହ ନିର୍ମାଣ ପାଇଁ ଟ୬୦୦୦ଙ୍କା ମଞ୍ଜୁର ହେଲା । ସେକାଳର ଅବସ୍ଥା ଦୃଷ୍ଟିରୁ ମାଇନର ସ୍କୁଲର ଗୃହ ନିର୍ମାଣପାଇଁ ଏତେ ଗୁଡାଏ ଟଙ୍କା ମଞ୍ଜୁର ହେବା ଏକ ଉଲ୍ଲେଖ ଯୋଗ୍ୟ ବିଷୟ । ଏହି ଅର୍ଥ ଏବଂ ସେହି ଉଦ୍ଦେଶ୍ୟରେ ବିଦ୍ୟାଳୟ ପାଣ୍ଠିରେ ସଞ୍ଚିତ ଥିବା ଅର୍ଥରେ ୫ ବଖରା ଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ କରାଗଲା । ଇତି ମଧରେ ତତକାଳୀନ ଦଶପଲ୍ଲା ରାଜା ସାହେବ ୪ ଗୋଟି ୫ଫୁଟିଆ ଶାଳ ଏବଂ ପିଆଶାଳ କାଠ ଏଥିପାଇଁ ଦାନ କଲେ । ଏହି ସମସ୍ତ ଅର୍ଥ ଓ ଉପକରଣ ସାହାଯ୍ୟରେ ୩ ବଖରା ଘର ଛାତ ପଡିଗଲା ଏବଂ ଅବଶିଷ୍ଟ ଦୁଇ ବଖରା କଡି ପତନ ପର୍ଯ୍ୟନ୍ତ ଉଠିଗଲା । ଜିଲ୍ଲା ବୋର୍ଡର ଗ୍ରାଣ୍ଟ ଏବଂ ମହାପାତ୍ରଙ୍କ ଆର୍ଥିକ ସାହାଯ୍ୟରେ ଛାତ୍ରାବାସ ମଧରେ ପକ୍‌କା କୂଅଟିଏ ମଧ କରାଗଲା ଏବଂ ଛାତ୍ରାବାସକୁ ଆଉଟିକିଏ ବଢାଇ ଦିଆଗଲା । କାଳକ୍ରମେ ଶିକ୍ଷକମାନଙ୍କ ରହଣି ପାଇଁ ଦୁଇଟି ଜାଆଁଳା କ୍ୱାଟର୍ସ କରାଗଲା । ଏବଂ ଆମେମାନେ (ଶିକ୍ଷକ ଏବଂ ପରିଚାଳନା ସଭାର ସଭ୍ୟ ) ସେଠାରେ ଅତ୍ୟନ୍ତ ଶାନ୍ତି ଓ ସୌହାର୍ଦ୍ଦପୂର୍ଣ୍ଣ ବାତାବରଣ ମଧରେ ଦିନ କାଟୁଥିଲୁଁ ।

କେବଳ ବିଦ୍ୟାଳୟର ଚାରି କାନ୍ଥ ମଧରେ ମୋର ତତ୍‌କାଳୀନ କର୍ମ ପରିସର ଆବଦ୍ଧ ନଥିଲା । ମୁଁ ବୋଲଗଡ ଥାନାର ପ୍ରତ୍ୟେକ ଗ୍ରାମକୁ ଯାଇ ଜଣେ ରାଜନୈତିକ କର୍ମୀ ପରି ଲୋକସମ୍ପର୍କ ସ୍ଥାପନ କରୁଥିଲି । ସେତେବେଳର ବୋଲଗଡ

ଥିଲା ମାଲିମକଦ୍ଦମା ଏବଂ ରାଜନୀତୀର ତପ୍ତ ଶଯ୍ୟା । ଏଠାରେ ଉତ୍କଳ ସମ୍ମୀଳନୀର ମୁକ୍ତ ଅଧିବେଶନ ହୋଇଥିଲା । ମହାତ୍ମାଗାନ୍ଧି ମଧ୍ୟ ଏଠାରେ କିଛିଦିନ କଟାଇଥିଲେ । ଏଠାରୁ ଦଳେ କର୍ମୀ ଲବଣ ସତ୍ୟାଗ୍ରହ କରିଥିଲେ । ମୋ' ବ୍ୟକ୍ତିଗତ ଜୀବନର ରାଜନୀତ ପ୍ରବଣତା ପ୍ରତି ଏ ସ୍ଥାନ ଅତ୍ୟନ୍ତ ଅନୁକୂଳ ହୋଇଥିଲା । ଏବଂ ତତକାଳୀନ ସରକାର ବିରୋଧୀ ଆନ୍ଦୋଳନରେ ଅନ୍ତରାଳରୁ ମତେ ସକ୍ରିୟ ଅଂଶ ଗ୍ରହଣ କରିବାକୁ ପଡୁଥିଲା । ବୋଲଗଡର ଲୋକେ କଂଗ୍ରେସ ଭାବାପନ୍ନ ଥିଲେ । ତେଣୁ ମୁଁ ସେମାନଙ୍କ ସହିତ ସମ୍ପୂର୍ଣ୍ଣ ଭାବରେ ମିଶିଯାଇଥିଲି ।

ଦିନକର ଗୋଟିଏ ରୋମାଞ୍ଚକର ଘଟଣା ବର୍ଣ୍ଣନା କରିବା ଏଠାରେ ଅପ୍ରାସଙ୍ଗିକ ହେବ ନାହିଁ । ୧୯୪୨ ମସିହା ବୋଲି ମନେ ପଡୁଛି । ମହାତ୍ମାଗାନ୍ଧି ଭାରତ ଛାଡ ଆନ୍ଦୋଳନ ଡାକରା ଦେଇ ଜେଲ ଯାଇଥାନ୍ତି । ଓଡିଶାରେ ସେତେବେଳେ ସ୍ୱରାଜ ଦଳ ରାଜତ୍ୱ କରୁଥାନ୍ତି । ହଠାତ୍ ଶୁଣାଗଲା ଯେ ଭାରତ ଚରଖା ସଂଘ (All India Spiners Association) ର ଦିଘିରୀ କେନ୍ଦ୍ରରେ ସରକାର ଚାବି ଠୁକି ଦେଲେ । ଏହା ଫଳରେ ସେଠାରେ ଜମା ରହିଥିବା ବହୁତ ସୂତା, ତୁଳା ଓ ଲୁଗା ଆଦି ନଷ୍ଟ ହୋଇଗଲା ଏବଂ କଟାଳୀ ମାନେ ନିରନ୍ନ ଅବସ୍ଥାରେ ହାହାକାର କଲେ । ଲୋକେ ଜବରଦସ୍ତି ଚାବିଭାଙ୍ଗି ଘର ଦଖଲ କରିବେ ବୋଲି ଶୁଣାଯାଉଥାଏ । ଦିନେ ଖୋରଧା ଏସ.ଡି.ଓ ବନ୍ଧୁକ ଧାରୀ ଫଉଜଧରି ଡାକ ବଙ୍ଗଳାକୁ ଆସିଲେ । ଏବଂ ଏହି ଖବର ପାଇଁ ବହୁତ ଲୋକ ନିଜର ଦୁଃଖ ଜଣାଇବା ପାଇଁ ସାହେବଙ୍କୁ ଦେଖା କରିବାକୁ ବୋଲଗଡ ଆସିଲେ । ସେତେବେଳେ ଶ୍ରୀ ପତିତପାବନ ହୋତା ମୋ' କ୍ୱାଟର୍ସ ବାରଣ୍ଡାରେ ମୋ' ପାଖରେ ବସିଥିଲେ । ହଠାତ୍ ଦେଖାଗଲା ଯେ ଲୋକେ ଛତ୍ରଭଙ୍ଗ ଦେଇ ଇତସ୍ତତଃ ପଳାଇ ଯାଉଥାନ୍ତି । ଲୋକଙ୍କୁ ଏହି ଅବସ୍ଥାରେ ହିମତ୍ ଦେବାପାଇଁ ପତିତପାବନ ବାବୁଙ୍କୁ ମୁଁ ସେଠାରୁ ତୁରନ୍ତ ପଠାଇ ଦେଲି । କିନ୍ତୁ ମୁଁ ଜଳଜଳ କରି ଚାହିଁଥାଏ , ମୋ ଆଖି ଆଗରେ ସାଙ୍ଗେ ସାଙ୍ଗେ ସେ ବନ୍ଦୀ ହୋଇ ଥାନାକୁ ନିଆଗଲେ । ସ୍ଥାନୀୟ ସ୍ୱରାଜପନ୍ଥୀ କେତେକ ଲୋକ ତାଙ୍କୁ ଭେଟି ଗୋଟିଏ ମୁଚାଲିକା ଲେଖି ଦେବାପାଇଁ ପ୍ରବର୍ତ୍ତାଇଲେ । କିନ୍ତୁ ସେ ସେମାନଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି କାରାବରଣ କଲେ । ତାଙ୍କର ଦୀର୍ଘକାଳ ଅନୁପସ୍ଥିତି ହେତୁ ମାଇନର ସ୍କୁଲ ପରିଚାଳନା କମିଟିର ସଭ୍ୟ ପଦରୁ ସେ ଛାଏଁ ଛାଏଁ କଟିଗଲେ ଏବଂ ଆଉ କେତେଜଣ ସଭ୍ୟଙ୍କର କାର୍ଯ୍ୟକାଳ ପୂରି ଯାଇଥିବାରୁ ସେମାନଙ୍କୁ ମଧ୍ୟ ସଭ୍ୟ ପଦରୁ ଅନ୍ତର କରାଯାଇ ସେହି ସଭାରେ ସେମାନଙ୍କର ପୁନଃର୍ନିଯୁକ୍ତି କରାଗଲା । ସେତେବେଳର ଜିଲା ବୋର୍ଡ ସ୍ୱରାଜ ଦଳଦ୍ୱାରା ପରିଚାଳିତ ହେଉଥିଲା । ତେଣୁ ଆମ କମିଟିର ପୁନଃର୍ନିଯୁକ୍ତି ବୋର୍ଡ ମଞ୍ଜୁର ନକରି ଆମ ପରିଚାଳନା କମିଟିକୁ ଭାଙ୍ଗିଦେଲେ ଏବଂ

ନୂଆ ପରିଚାଳନା କମିଟି ଗଢ଼ିବାପାଇଁ ଦଳୀୟ ଲୋକଙ୍କୁ ଗୋପନ ଆଦେଶ ଦେଲେ । ଏହି ଘଟଣା ସେତେବେଳେ ବୋଲଗଡ଼ରେ ଖୁବ୍ ଉତ୍ତେଜନା ସୃଷ୍ଟି କଲା । ଜିଲ୍ଲାବୋର୍ଡ ନିର୍ଦ୍ଦେଶରେ କେତେକ ଲୋକ ଗୋପନରେ ଗୋଟିଏ ସାଧାରଣ ସଭା କଲେ । ଏହି ଗୋପନ ସଭାରେ ଶ୍ରୀ ଚକ୍ରଧର ମହାପାତ୍ର ଏବଂ ଶ୍ରୀ ଭଗବାନ ପ୍ରଧାନ ତୀବ୍ର ପ୍ରତିବାଦ କରି ସଭା ଛାଡ଼ି ଚାଲିଆସିଲେ ।

ଏହାପରେ ବୋଲଗଡ଼ର ବିଶିଷ୍ଟ ଲୋକଙ୍କ ମଧ୍ୟରେ ମସୁଧା ହୋଇ ସ୍କୁଲ ହତାରେ ଗୋଟିଏ ସାଧାରଣ ସଭା ହେଲା । ସ୍ୱର୍ଗତ ଦୟାନିଧି ପଟ୍ଟନାୟକ ସଭାପତି ହୋଇଥିଲେ । ଗୋଟିଏ ସମାନ୍ତର ପରିଚାଳନା ସଭା ଗଢ଼ାଗଲା । ଏହି ସଭାରେ ସ୍ୱର୍ଗତ ବାମନ ମହାପାତ୍ରଙ୍କୁ ପ୍ରଧାନ ସଭ୍ୟରୂପରେ ଗ୍ରହଣ କରାଗଲା ଏବଂ ତାଙ୍କଠାରୁ ସ୍ୱୀକୃତି ପତ୍ର ମଧ୍ୟ ହସ୍ତଗତ କରାଗଲା । କିନ୍ତୁ ଜିଲ୍ଲାବୋର୍ଡ ଏହି ନବଗଠିତ ସମାନ୍ତର କମିଟିକୁ ସ୍ୱୀକାର କଲେ ନାହିଁ ଏବଂ ଇତିପୂର୍ବରୁ ଗଠିତ କମିଟିକୁ ଚାର୍ଜ ବୁଝାଇ ଦେବାପାଇଁ ଆଦେଶ ଦେଲେ । ପୂର୍ବରୁ ସୃଷ୍ଟି ହୋଇଥିବା ଉତ୍ତେଜନା ବର୍ତ୍ତମାନ ଆହୁରି ବଢ଼ିଗଲା । ଏବଂ ସ୍ୱର୍ଗତ ବାମନ ମହାପାତ୍ରଙ୍କ ପକ୍ଷରେ ଏ ପ୍ରକାର ଅପମାନ ଅସହ୍ୟ ହୋଇ ଉଠିଲା । ସ୍ୱର୍ଗତ କ୍ଷେତ୍ର ମୋହନ ପଟ୍ଟନାୟକ ଓ ସ୍ୱର୍ଗତ ବାଳକୃଷ୍ଣ ପଟ୍ଟନାୟକ ପ୍ରଭୃତି ଚାର୍ଜ ନଦେବା ପାଇଁ ବଳ ପ୍ରୟୋଗ କରିବାକୁ ପ୍ରସ୍ତାବ ଦେଲେ । କିନ୍ତୁ ମୁଁ ଏହି ପ୍ରସ୍ତାବରେ ରାଜି ନହୋଇ ଆମ ସମାନ୍ତର କମିଟି ଦ୍ୱାରା ହାଇସ୍କୁଲଟିଏ ପ୍ରତିଷ୍ଠା କରିବାପାଇଁ ପ୍ରସ୍ତାବ ଦେଲି । ସେତେବେଳକୁ ମୁଁ ଘରୋଇ ଭାବରେ ବି.ଏ. ପାସ କରିଥାଏ । ଘନ ଘନ ସଭା ଓ ଆଲୋଚନା ଚାଲିଲା । ଇତି ମଧ୍ୟରେ ମୁଁ ମହାପାତ୍ରଙ୍କୁ କୌଣସି ମତେ ପ୍ରଭାବିତ କରି ହାଇସ୍କୁଲର ବ୍ୟୟ ବହନ କରିବା ପାଇଁ ସ୍ୱୀକୃତି କରାଇଲି । କିନ୍ତୁ ବିରୋଧୀ ଲୋକଙ୍କର ଏଥିରେ ବିଶ୍ୱାସ ଜନ୍ମିଲା ନାହିଁ । ସେମାନେ ନାନାପ୍ରକାର ଅପପ୍ରଚାର କଲେ ଏବଂ ସରକାରଙ୍କର ବିଶ୍ୱସ୍ତ ହୋଇଥିବାରୁ ଆମ ଉଦ୍ୟମରେ ବାଧା ଦେବାପାଇଁ ବିଭାଗୀୟ କର୍ତ୍ତୃପକ୍ଷଙ୍କୁ ମଧ୍ୟ ପ୍ରଭାବିତ କଲେ । ସେତେବେଳେ ସ୍ୱର୍ଗତ ତ୍ରିପାଠୀ ସାହେବ ଡି.ପି.ଆଇ. ଥାଆନ୍ତି । ଶିକ୍ଷାମନ୍ତ୍ରୀ ସ୍ୱର୍ଗତ ଗୋଦାବରୀଶ ମିଶ୍ର ତାଙ୍କର ବନ୍ଧୁ । ତେଣୁ କି ଉପାୟରେ ଆମେ ଏ ଅସୁବିଧା ଅତିକ୍ରମ କରି ପାରିବା ତାର ବିଚାର କରାଗଲା । ସ୍ୱର୍ଗତ ବିଦ୍ୟାଧର ପଟ୍ଟନାୟକଙ୍କ ପୁତ୍ର ସ୍ୱର୍ଗତ ଡାକ୍ତର ଭାଲୁବାବୁ (ଦାମୋଦର ପଟ୍ଟନାୟକ) ତତ୍ କାଳୀନ ଡି.ପି.ଆଇ. ଙ୍କୁ ଆୟତ କରିବାର ଗୋଟିଏ କୌଶଳ ଆମକୁ ବତାଇ ଦେଲେ । ଅବସର ପ୍ରାପ୍ତ ଚିଫ୍ ଜଷ୍ଟିସ୍ ଶ୍ରୀ ହରିହର ମହାପାତ୍ର (ସେତେବେଳର ଓକିଲ) ଙ୍କୁ ଆମ କମିଟିର ସଭାପତି କରାଗଲା । ତାଙ୍କର ଡି.ପି.ଆଇ. ଙ୍କ ସହିତ ଭଲ ସମ୍ବନ୍ଧ ଥିଲା । ତେଣୁ ଏହି ପ୍ରକାରେ କର୍ତ୍ତୃପକ୍ଷଙ୍କ ବାଧାକୁ ଆମେ କୌଣସିମତେ ଏଡ଼ାଇ ଦେଇ ପାରିଥିଲୁଁ ।

୧୯୪୩ ମସିହା ଡିସେମ୍ବର ମାସ ଶେଷ ଆଡକୁ ସ୍କୁଲ ସାମନା ପଡିଆରେ ଗୋଟିଏ ସାଧାରଣ ସଭା କରାଯାଇ ସେଠାରେ ସ୍କୁଲର ସମସ୍ତ ବ୍ୟୟ ବହନ କରିବା ପାଇଁ ମହାପାତ୍ରଙ୍କ ଠାରୁ ଗୋଟିଏ ଲିଖିତ ପ୍ରତିଶ୍ରୁତି ଗୃହୀତ ହେଲା । ତହିଁ ଆରଦିନ ଠାରୁ କାର୍ଯ୍ୟ ଆରମ୍ଭ ହେଲା । ସ୍ୱର୍ଗତ ଲକ୍ଷ୍ମୀଧର ପ୍ରଧାନ ଆଦି ଛାତ୍ରମାନେ ରଣପୁର, ନୟାଗଡ , ଖଣ୍ଡପଡା ଆଦି ରାଜ୍ୟ ମାନଙ୍କରେ ପ୍ରଚାର କରିବା ପାଇଁ ବାହାରିପଡିଲେ । ମାଣିକାଗଡର କମ୍ୟୁନିଷ୍ଟ କର୍ମୀ ପରଶୁରାମ ପଦାତିକରାୟ ପ୍ରଭୃତି ବୋଲଗଡର ଚକ୍ରଧର ମହାପାତ୍ର ଏବଂ ଦିବ୍ୟସିଂହ ପୁରର ଜୟକୃଷ୍ଣ ମିଶ୍ର ପ୍ରଭୃତି କର୍ମୀମାନଙ୍କ ଉଦ୍ୟମରେ ସେ ବର୍ଷ ବହୁତ ଛାତ୍ର ନାମ ଲେଖାଇଲେ ଏବଂ ମାଇନର ସ୍କୁଲ ପାଇଁ ନିର୍ମିତ ନୂତନ ପକ୍‌କା ଗୃହ ଏବଂ କ୍ୱାଟର୍ସ ନୂତନ କମିଟିର ଇଚ୍ଛା ବିରୋଧରେ ଆମେ ଯଥା ପୂର୍ବ ଦଖଲ କରି ରହିଲୁଁ । ହାଇସ୍କୁଲ ପାଇଁ କର୍ମକର୍ତ୍ତା ନିର୍ବାଚନ କରାଯାଇ ସ୍ୱର୍ଗତ ପରମାନନ୍ଦ ମହାପାତ୍ରଙ୍କୁ ସମ୍ପାଦକ ରୂପେ ନିଯୁକ୍ତ କରାଗଲା । ମାଇନର ସ୍କୁଲ କମିଟି ଏବଂ ପ୍ରସ୍ତାବିତ ହାଇସ୍କୁଲ କମିଟିର ମିଳିତ ବୈଠକରେ ମାଇନର ସ୍କୁଲ ପାଇଁ ମହାପାତ୍ରେ ଦୁଇ ବଖରା ପକ୍କା ଘର ଏବଂ ଚାରି ବଖରା ପ୍ରଶସ୍ତ ଚାଳ ଘର ତାଙ୍କ ନିଜ ଜାଗାରେ କରି ଦେବାପାଇଁ ସ୍ୱୀକୃତି ଦେଲେ ଏବଂ ମହାପାତ୍ରଙ୍କ ନାମ ଅନୁସାରେ ଏହାର ନାମ "ବାମନ ହାଇସ୍କୁଲ" ବୋଲି ରଖାଗଲା । କିନ୍ତୁ ମାଇନର ସ୍କୁଲ ଅଲଗା ହୋଇ ରହିଥାଏ । ବର୍ଷକୁ ବର୍ଷ ନୂତନ ଶ୍ରେଣୀମାନ ଖୋଲାଯାଇ ମଞ୍ଜୁର ମିଳୁଥାଏ । ଘର ତୋଳା ଚାଲିଥାଏ । ବିଦ୍ୟାଳୟ ପାଇଁ ଖେଳପଡିଆ, ବିଦ୍ୟାଳୟ ହତା ମଧ୍ୟରେ ଥିବା ପୋ:ଅ: କୁ ସ୍ଥାନାନ୍ତରିତ କରିବା ପାଇଁ ସ୍ଥାନ ନିରୂପଣ ଆଦି ନାନାବିଧ ସଂପ୍ରସାରଣ ଜନିତ କାର୍ଯ୍ୟରୁ ବେଳେବେଳେ ତିକ୍ତତା ସୃଷ୍ଟି ହେଉଥାଏ । ସ୍କୁଲ ପାଇଁ ଦିନକୁ ଦିନ ଅଧିକ ଅର୍ଥ ଆବଶ୍ୟକ ହେଉଥିବାରୁ ମହାପାତ୍ରେ ଟିକିଏ ବିରକ୍ତ ହେଉଥାନ୍ତି । ତଥାପି ବୋଲଗଡରେ ଗୋଟିଏ ଇଣ୍ଟର ମିଡିଏଟ କଲେଜ ସ୍ଥାପନ ପାଇଁ ସେ ବିବାଦୀୟ ୫ ବାଟୀ ଜମି ଛାଡିଦେବେ ବୋଲି ରାଜି ହୋଇଥିଲେ । କିନ୍ତୁ ଅପର ପକ୍ଷରୁ ଏହି ପ୍ରସ୍ତାବରେ ଉତ୍ସାହ ପ୍ରକାଶ ନପାଇବାରୁ ତାହା ସ୍ଥଗିତ ରଖାଗଲା । ଏହିଭଳି ନାନାବିଧ କାର୍ଯ୍ୟଭାରରେ ମୁଁ ଶେଷକୁ କ୍ଳାନ୍ତ ଅନୁଭବ କରି ବିଶ୍ରାମ ପାଇଁ ୧୯୪୭ ମସିହାରେ ସେଠାରୁ ବିଦାୟ ନେଲି ।

********

ତାପରେ ୰ ଆନନ୍ଦ ରଥଙ୍କ ପ୍ରଚେଷ୍ଟାରେ ମାଣିକାଗୋଡା ଠାରେ ୰ ପର୍ଶୁରାମ ପଦାତିକରାୟ, ଶ୍ରୀଯୁକ୍ତ ରାଜକିଶୋର ପଟ୍ଟନାୟକଙ୍କ ମୁଖ୍ୟ ସହଯୋଗ ଏବଂ ସେହି ଗ୍ରାମର ବିଶିଷ୍ଟ ବଦାନ୍ୟ ବ୍ୟକ୍ତି ୰ ବାଞ୍ଛାନିଧି ମହାପାତ୍ରଙ୍କ ଦାନରେ

ବାଗ୍ମାନିଧି ମାଇନର ସ୍କୁଲ ଆରମ୍ଭ ହୋଇଥିଲା । ପରେ ୧୯୫୨ ମସିହାରେ ଏଠାରେ ବାଗ୍ମାନିଧି ହାଇସ୍କୁଲ ପ୍ରତିଷ୍ଠା ହୋଇ ଅଳ୍ପ ବର୍ଷ ପରେ ସ୍ଥାନୀୟ ବଦାନ୍ୟ ବ୍ୟକ୍ତି ୰ ଗଦାଧର ମହାପାତ୍ରଙ୍କ ନାମରେ ଏହି ହାଇସ୍କୁଲକୁ ଗଦାଧର ଏକାଡେମୀ ନାମରେ ନାମିତ କରାଗଲା । ୨୦୦୩ ମସିହାରେ ମହାସମାରୋହରେ ଶିକ୍ଷା ମନ୍ଦିରର ସୁବର୍ଣ୍ଣ ଜୟନ୍ତୀ ପାଳିତ ହୋଇଯାଇଅଛି ।

ମାଣିକାଗୋଡାର ମାଇନର ସ୍କୁଲ ଏବଂ ହାଇସ୍କୁଲ ପ୍ରତିଷ୍ଠାର ମୁଖ୍ୟ ବିନ୍ଧାଣୀ ପୂର୍ବତନ ପ୍ରଧାନ ଶିକ୍ଷକ ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କର 'ସ୍ମୃତିର ଝଲକ' ପ୍ରବନ୍ଧ ୧୯୦୩ ମସିହାରେ ଉପରୋକ୍ତ ଉଭୟ ସ୍କୁଲର ସୁବର୍ଣ୍ଣ ଜୟନ୍ତୀ ସ୍ମରଣିକାରେ ପ୍ରକାଶ ପାଇଥିଲା । ପାଠକଙ୍କ ଅବଗତି ନିମନ୍ତେ ତାହା ନିମ୍ନରେ ସ୍ଥାନୀତ ହେଲା ।

## ସ୍ମୃତିର ଝଲକ

- ଶ୍ରୀ ରାଜକିଶୋର ପଟ୍ଟନାୟକ

ଆମ ଶିକ୍ଷାନୁଷ୍ଠାନର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳିତ ହେବାକୁ ଯାଉଛି ଓ ପୁରାତନ ଛାତ୍ରମାନେ ମୁଖ୍ୟ ଅଂଶଗ୍ରହଣ କରୁଛନ୍ତି ଶୁଣି ଅପାର ଆନନ୍ଦ ଅନୁଭବ କରୁଅଛି । ଉକ୍ତ ଉତ୍ସବ ପାଳନ ଦେଖିବା ସମ୍ଭବ ହେଉ ନାହିଁ । ଦୁଇଟି ଅନୁଷ୍ଠାନରେ ପ୍ରାରମ୍ଭରୁ ଅଦ୍ୟାବଧି ସଂପୃକ୍ତ ରହିବା ହିଁ ସୌଭାଗ୍ୟ । ଏ ଦୁଇ ଅନୁଷ୍ଠାନର ପ୍ରତିଷ୍ଠା ତଥା ପରିଚାଳନାରେ ଜଣେ ସକ୍ରିୟ କର୍ମୀ ଭାବେ ଲିପ୍ତ ରହିବାର ସ୍ମୃତି ଆଖି ଆଗେର ନାଚି ଉଠୁଛି । ୧୯୮୭ ପର୍ଯ୍ୟନ୍ତ ପ୍ରତ୍ୟକ୍ଷଭାବେ ପ୍ରଧାନ ଶିକ୍ଷକ ହିସାବରେ କାର୍ଯ୍ୟକରି ଓ ପରବର୍ତ୍ତୀ କାଳରେ ଏ ଯାବତ୍ ପରୋକ୍ଷ ଭାବେ ଅନୁଷ୍ଠାନ ସହ ସଂପୃକ୍ତ ରହି ଆସିଛି ଏବଂ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ରହିପାରିବି ବୋଲି ମୋର ଦୃଢ ଆଶା ରହିଛି । ମୋ ଜୀବନରେ ଏ ଅନୁଷ୍ଠାନ ଦୁଇଟି ମୋର ମାନସ । ଜୀବନରେ କୈଶୋର, ଯୌବନ ଓ ବାର୍ଦ୍ଧକ୍ୟ ଅବସ୍ଥା ଏହି ମାଟିରେ ବିତାଇଛି । ଅନୁଷ୍ଠାନ ଦୁଇଟି ହିଁ ମୋ ଜୀବନର ଆତ୍ମା । ଆତ୍ମାକୁ ଛାଡିଦେଲେ ଜୀବନ ଯେପରି ନିରର୍ଥକ , ସେହିପରି ଅନୁଷ୍ଠାନଦ୍ୱୟ ବିନା ମୋର ଜୀବନ ମୃତବତ୍ । ଆଜି ମୋର ଏହି ଭାବନାରେ ସବୁ ସ୍ମୃତି ମନେ ପଡୁଛି - କ'ଣ ଲେଖିବି -କ'ଣ ଛାଡିବି । ଭାବନାର ତରଙ୍ଗ ମଧ୍ୟରେ ଭାସି ବୁଲୁଛି । ସବୁ ତରଙ୍ଗକୁ ରୂପଦେବା ସାଧ୍ୟାତୀତ । ଯେତିକି ଲେଖିଲେ ଲେଖାଟିଏ ହେବ ସ୍ମରଣିକାର କଳେବର ଅଯଥା ବୃଦ୍ଧି ପାଇବ ନାହିଁ କେବଳ ସେତିକି ଲେଖୁଛି । ଯେତେଦୂର ପାରେ ଖୁବ୍ ସଂକ୍ଷେପରେ କେତୋଟି ଝଲକ ଅବତାରଣା କରିବାକୁ ପ୍ରୟାସ ମାତ୍ର କରୁଛି ।

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ ସମଗ୍ର ଦେଶରେ ଆଣି ଦେଇଥାଏ ଏକ ଅପୂର୍ବ ଉନ୍ମାଦନା। ସ୍ୱାଧୀନତାର ସ୍ୱପ୍ନ ଜନସାଧାରଣଙ୍କ ହୃଦୟରେ ଜାଗ୍ରତ ହେବାରେ ଲାଗିଥାଏ । ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ବୁଦ୍ଧିଜୀବୀମାନେ ଦିଗ୍‌ଦର୍ଶନ ଦେବାକୁ ଆଗେଇ ଆସିଥାନ୍ତି । ଯୁବଶକ୍ତି ପ୍ରତ୍ୟକ୍ଷ ସଂଗ୍ରାମରେ ନିଜର ଆତ୍ମୋତ୍ସର୍ଗ କରିବାକୁ ବାହାରି ପଡିଥାଆନ୍ତି । କ୍ରମେ ଚତୁର୍ଥ ଦଶକ ବେଳକୁ ଜାତିକୁ ଗଢିବାକୁ ଶିକ୍ଷାର ଉନ୍ନତି ପାଇଁ ଭାରତର ପଟ୍ଟଭୂମିରେ ଶିକ୍ଷା ପ୍ରସାର କ୍ଷେତ୍ରରେ ନୂତନ ଦିଗନ୍ତର ଅନ୍ୱେଷଣ ଓ ଦେଶରେ ନବ ଜାଗରଣର ଅଙ୍ଗ ଆରମ୍ଭ ହୋଇଥାଏ । ଆମ ରାଜ୍ୟରେ ଉତ୍କଳମଣି ଗୋପବନ୍ଧୁ ତଥା ପଞ୍ଚସଖାଗଣ ରାଜନୈତିକ ଆନ୍ଦୋଳନରେ ସୁନିର୍ଦ୍ଦିଷ୍ଟ ଭୂମିକା ଗ୍ରହଣ କରିଥିବା ବେଳେ ଶିକ୍ଷା ମାଧ୍ୟମରେ ଦେଶ ଗଠନରେ ଏକ ବିଶାଳ ଶିକ୍ଷାନୁଷ୍ଠାନର ଆବଶ୍ୟକତାକୁ କଥାରେ ନୁହେଁ କାର୍ଯ୍ୟରେ ପରିଣତ କରିବା ପାଇଁ ସତ୍ୟବାଦୀର ବନ ବିଦ୍ୟାଳୟ ପ୍ରତିଷ୍ଠା କରି ଜନସାଧାରଣଙ୍କୁ ଆକୃଷ୍ଟ କରିଥାନ୍ତି । ଶିକ୍ଷାର ପ୍ରସାର ସରକାରଙ୍କ ପ୍ରୋତ୍ସାହନ ବିନା ଯେ ସମ୍ଭବ, ଏହି ଅବଧାରଣା ଜନତାଙ୍କୁ ପ୍ରେରଣା ଯୋଗାଇଥାଏ ।

କ୍ରମେ ଓଡିଶାରେ ଘରୋଇ ପ୍ରଚେଷ୍ଟାରେ ଧନାଢ୍ୟ ବ୍ୟକ୍ତିମାନେ ବିଦ୍ୟାଳୟମାନ ପ୍ରତିଷ୍ଠା କରିବାରେ ଆଗେଇ ଆସନ୍ତି । ସାଧାରଣ ଗରିବ ମେଧାବୀ ଛାତ୍ରଙ୍କ ପାଇଁ ନିମ୍ନ ମାଧ୍ୟମିକ ଅନୁଷ୍ଠାନଟିଏ ବି ଗୋଟିଏ ଥାନାରେ ଗୋଟିଏ ମାତ୍ର ଥାଏ । ଗ୍ରାମାଞ୍ଚଳର କେତେକ ଉଚ୍ଚ ମଧ୍ୟବିତ୍ତ ଶ୍ରେଣୀର ମୁଷ୍ଟିମେୟ ଛାତ୍ର ଅକଥନୀୟ କଷ୍ଟ ସାଧନ କରି ଅଧ୍ୟୟନ କରିବାର ସୁବିଧା ସୁଯୋଗ ପାଉଥାନ୍ତି । ଏଭଳି ଦୁଃଖ କଷ୍ଟ ଦୂର କରିବା ପାଇଁ ଜନସାଧାରଣଙ୍କ ଆର୍ଥିକ ଦୁଃସ୍ଥିତି ପ୍ରତିବନ୍ଧକ ହୋଇଥାଏ । ଏସବୁ ସତ୍ତ୍ୱେ ଯେଉଁ କେତେଜଣ ଶିକ୍ଷାର ପ୍ରସାର କ୍ଷେତ୍ରରେ ଅନୁଷ୍ଠାନ ସ୍ଥାପନ କରିବାକୁ ଆଗେଇ ଆସିଲେ ଓ ଯେଉଁ କେତେକ ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ, କୃଷକ , ଶ୍ରମିକ ଅକୁଣ୍ଠିତ ସାହାଯ୍ୟ ସହଯୋଗ ଦେଇ ପାରିଲେ ସେମାନେ ନିଶ୍ଚିତ ଭାବେ ଜନସାଧାରଣଙ୍କର ନମସ୍ୟ । ଏହି ଧରଣର ଚାଷୀ- ଶ୍ରମିକ ଗରିବ ଜନସାଧାରଣଙ୍କ ସ୍ୱଚ୍ଛଦାନ ଓ ପ୍ରତ୍ୟକ୍ଷ ଶ୍ରମ ସର୍ବୋପରି ସେମାନଙ୍କର ଅମ୍ଳାନ ହାର୍ଦ୍ଦିକ ସହଯୋଗରେ ଗଢି ଉଠିଥିଲା ମାଣିକାଗୋଡାର ବାଞ୍ଛାନିଧି ମଧ ଇଂରାଜୀ ଓ ଗଦାଧର ଏକାଡେମୀ- ଯାହାର ସୁବର୍ଣ୍ଣ ଜୟନ୍ତୀ ପାଳିତ ହେଉଛି । ଜୀବନରେ ଶିକ୍ଷାର ଆଲୋକରୁ ବଞ୍ଚିତ ଛାତ୍ରଛାତ୍ରୀଙ୍କ ପାଇଁ ଏକମାତ୍ର ଅନୁଷ୍ଠାନ- ଦୁଇ ଶିକ୍ଷାନୁଷ୍ଠାନ । ଏ ଅଞ୍ଚଳ କାହିଁକି ସାରା ଓଡିଶାରେ ଶିକ୍ଷା ପ୍ରସାରର ଏହା ଏକ ମାଇଲ ଖୁଣ୍ଟ । ଘର ଘର ବୁଲି ମୁଷ୍ଟି ଭିକ୍ଷା ସଂଗ୍ରହ କରି, ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି କରିବା, ପିଲାଙ୍କୁ ବିଦ୍ୟାଳୟରେ ପ୍ରବେଶ କରିବାକୁ ପ୍ରବର୍ତ୍ତାଇବା ଥିଲା ସେ ଦିନର ମୁଖ୍ୟ ଆଭିମୁଖ୍ୟ । ଏହି ମହତ୍ ଉଦ୍ଦେଶ୍ୟ

କେତେଦୂର ସଫଳ ହୋଇପାରିଛି, ଏ ଅନୁଷ୍ଠାନରୁ ଉତୁରିଥିବା ଆଜିର ପୁରାତନ ଛାତ୍ରମାନଙ୍କ ଦ୍ୱାରା ପ୍ରକାଶିତ ସ୍ମରଣିକାର ପ୍ରତ୍ୟେକ ଲେଖାରୁ ହିଁ ପ୍ରତିପାଦିତ ହେବ। ଜଣେ ଶିକ୍ଷକ, କର୍ମୀ ଓ ଦିଗ୍‌ଦର୍ଶକଭାବେ ମୁଁ ଜୀବନର ସମସ୍ତ ସମୟ ଦେଇ ସାର୍ଥକ ଜୀବନଟିଏ ବିତାଇ ପାରିବାର ଆନନ୍ଦ ଉପଲବ୍ଧି କରୁଛି । ଅତୀତର ସ୍ମୃତିର ଝଲକ ଯେତେ ଚମକାଇ ଦେଉଛି ତତୋଧିକ ତୃପ୍ତିର ସ୍ୱାଦ ଆଜି ଚଖାଇ ଦେଉଛି ନୀରବରେ, ନିର୍ଜନରେ ଥାଇ ଆନନ୍ଦାଶ୍ରୁ ଆଖିରୁ ଝରି ଆସୁଛି । ହୋଇପାରନ୍ତି ମାତ୍ର ପିତାମାତାଙ୍କ ପାଖରେ ଦୁଃଖ ପାସୋରା ଅମୂଲ୍ୟ ରତ୍ନ । ଆଜିର ପୁରାତନ ଛାତ୍ର ଓ ସେମାନଙ୍କ ବୃତ୍ତି ଏ ଅଞ୍ଚଳ ତଥା ରାଜ୍ୟ ଓ ଦେଶ ପାଇଁ ବିନିଯୋଗ ହୋଇପାରିଛି ଓ ଦେଶ ଗଠନରେ ସାହାଯ୍ୟ କରିପାରିଛି ବୋଲି ଅନ୍ୟମାନେ ନିଶ୍ଚିତଭାବେ ହୃଦୟଙ୍ଗମ କରିପାରୁଥିବେ । ଶିକ୍ଷାନୁଷ୍ଠାନ ହେଉଛି ଶ୍ରେଷ୍ଠ ମନ୍ଦିର- ଉଜ୍ଜଳ ଆଲୋକ ପ୍ରଦାନ କରୁଥିବା ପ୍ରଦୀପ, ଛାତ୍ରଛାତ୍ରୀମାନେ ହିଁ ଦର୍ଶନ । ସେହିମାନଙ୍କ ମାଧ୍ୟମରେ ହିଁ ଉନ୍ନତି ପ୍ରତିଫଳିତ ହୋଇଥାଏ । ଶୁଆ ହିଁ ଶୁଆ ମୂଲ୍ୟ କହିବ । ମୁଁ ବା କିଏ ? ଏ ବିଦ୍ୟାଳୟ ଦୁଇଟିର ଦୀର୍ଘ ୫୦ ବର୍ଷର ଘାତ ପ୍ରତିଘାତ ନିଜେ ଅଙ୍ଗେ ନିଭାଇଛି । ଏ ଅଞ୍ଚଳର ସାମାଜିକ ଜୀବନର ଉନ୍ନତିରେ ସହାୟକ ଭାବେ ଅନୁଷ୍ଠାନର ଛାତ୍ର, ଶିକ୍ଷକ, କର୍ମୀମାନଙ୍କ ଭୂମିକାରେ ପ୍ରଶଂସା ଓ ସଫଳତାରେ ଭାଗୀଦାର ହୋଇ ପାରିଛି । ଆମେ ଦୁଃଖରେ କେବେ ବି ଭାଙ୍ଗି ପଡିନୁ କିମ୍ବା ସୁଖରେ ଆତ୍ମହରା ହୋଇନାହୁଁ । ସମସ୍ତେ ଆଜି ମନେ ପଡୁଛନ୍ତି । ସେ ସମୟର ସ୍ମୃତି କେତୋଟି ଏବେ ବି ନାଚି ଯାଉଛି । ସେଥିରୁ କେତାଟି ମାତ୍ର ସ୍ଥାନ ଦେଉଛି ଏଥିରେ ।

୧୯୪୭ ମସିହାରେ ବାଞ୍ଛାନିଧି ମ.ଇ ସ୍କୁଲରେ ଯୋଗ ଦେଲି ପ୍ରଧାନଶିକ୍ଷକ ଭାବେ । ବିଦାୟ ନେଲି ୧୯୮୭ ରେ ଗଦାଧର ଏକାଡେମୀର ପ୍ରଧାନ ଶିକ୍ଷକ ଭାବେ । ମ.ଇ.ସ୍କୁଲ ସ୍ଥାପିତ ହୋଇଥାଏ- ଶୈଶବାବସ୍ଥା । ଆରମ୍ଭରୁ ପରୋକ୍ଷଭାବେ ସ୍କୁଲ ଗଠନରେ କଲେଜ ଛାତ୍ରାବାସରେ ଥିବାବେଳେ ସହାୟକ ହୋଇଥିଲି । ମୋର ପିତା, ପିତୃତୁଲ୍ୟ ଉଦ୍ୟୋକ୍ତାମାନଙ୍କ ପ୍ରତି ବିଶେଷତଃ ପ୍ରତିଷ୍ଠାତା ଂ ଚକ୍ରଧର ମହାପାତ୍ରଙ୍କ ପ୍ରତି ଏଥିଲା ଅଶେଷ ଭକ୍ତି ଓ ସମ୍ମାନ । ଏ ସ୍କୁଲର ପ୍ରତିଷ୍ଠାରେ ମୁଖ୍ୟ ଭୂମିକା ତଥା ପ୍ରାଣଦାତା ଥିଲେ ବୋଲଗଡ ମ.ଇ.ସ୍କୁଲର ସ୍ୱନାମଧନ୍ୟ ଶିକ୍ଷାବିତ୍ ପୂଜ୍ୟ ଆନନ୍ଦ ଚନ୍ଦ୍ର ରଥ । ବୋଲଗଡ ହାଇସ୍କୁଲ, ନିରାକାରପୁର ହାଇସ୍କୁଲ ଓ କଲେଜ ଥିଲା ତାଙ୍କରି ଶିକ୍ଷାପ୍ରେମର ଜ୍ୱଳନ୍ତ ନିଦର୍ଶନ । ତାଙ୍କରି ପ୍ରେରଣା ଓ ଦିଗ୍‌ଦର୍ଶନ ପାଇଁ ମୁଁ ଧନ୍ୟ ହୋଇଛି ଓ ସାହସର ସହ ଆଗେଇ ପାରିଛି । ମ.ଇ.ସ୍କୁଲର ସଫଳତାରେ ଜନସାଧାରଣଙ୍କ ମନରେ ଏକ ହାଇସ୍କୁଲ ପ୍ରତିଷ୍ଠା କରିବାର ପ୍ରବଳ ପ୍ରଚେଷ୍ଟା ଧନାଭାବକୁ ଖାତିର ନ କରି ସ୍କୁଲ ଗଠନର ସିଦ୍ଧାନ୍ତ ଗ୍ରହଣ କରାଗଲା । କିନ୍ତୁ ଏକମାତ୍ର

ପଡ଼ୋଶୀ ବୋଲଗଡ ହାଇସ୍କୁଲର କର୍ମକର୍ତ୍ତାମାନଙ୍କର ଏକ ଭୁଲ ଧାରଣା ଜାତ ହେଲା । ଆଶଙ୍କା ଜନ୍ମିଲା, ଛାତ୍ରଛାତ୍ରୀ ମିଳିବା ସମ୍ଭବ ହେବନାହିଁ ଓ ପ୍ରୋକ୍ତ ବିଦ୍ୟାଳୟରେ ଛାତ୍ରଛାତ୍ରୀ ସଂଖ୍ୟା କମିଯିବ । ଅଧିକ କିନ୍ତୁ ଉଭୟ ଅନୁଷ୍ଠାନ ଭସ୍ମ ହୋଇଯିବ ବୋଲି ଆଶଙ୍କା କରି ଅପପ୍ରଚାର କରାଗଲା ! ଏପରିକି ଉପରିସ୍ଥ କର୍ମକର୍ତ୍ତାଙ୍କୁ ମଧ ପ୍ରଭାବିତ କରାଗଲା । ଆମ ଅଞ୍ଚଳର ଅଧିବାସୀ ମୁଖ୍ୟତଃ କୃଷକ ଓ ଶ୍ରମିକ । ଯେଉଁ କେତେଜଣ ଧନୀ ବୋଲି ବିବେଚିତ ସେମାନଙ୍କ ସଂଖ୍ୟା ମଧ ଖୁବ୍ କମ୍ । ସ୍କୁଲର ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ କେତେକ ପ୍ରଭାବିତ ହେଲେ, ଏପରି ପ୍ରଚାର ଯୋଗୁଁ । ପ୍ରଥମେ ସହଯୋଗ ଦେବାରୁ କେବଳ ନିବୃତ୍ତ ହେଲେ ନାହିଁ, ବରଂ ବିରୁଦ୍ଧାଚରଣ କରିବା ଓ ଲୋକଙ୍କୁ ନିରୁତ୍ସାହିତ କରିବାକୁ ପଛାଇଲେ ନାହିଁ । ଆମ ଗାଁ ଓ ଆମ ଅଞ୍ଚଳର ଲୋକଙ୍କର ଏକ ସ୍ୱତନ୍ତ୍ର ଐତିହ୍ୟ ଓ ପରମ୍ପରା ଅଛି । ସମସ୍ତେ ସ୍ୱାଭିମାନ ଭାଙ୍ଗନ୍ତି ନାହିଁ କି ପଛାନ୍ତି ନାହିଁ । ବ୍ରିଟିଶ ରାଜୁତିବେଳେ ସ୍ୱାଧୀନତା ସଂଗ୍ରାମୀ, ଗଡ଼ଜାତ ଆନ୍ଦୋଳନ, ଚାଷୀ ଶ୍ରମିକ ଆନ୍ଦୋଳନ ବେଳେ ଏ ଗାଁର ଭୂମିକା ତତ୍କାଳୀନ ସମସ୍ତ ନେତୃମଣ୍ଡଳୀଙ୍କ କର୍ମକ୍ଷେତ୍ର ଥିଲା । ବିଭିନ୍ନ ସଂପ୍ରଦାୟର ଐକ୍ୟଭାବ, ଆତ୍ମୀୟତା ଅତ୍ୟନ୍ତ ବିରଳ । ଆବାଳବୃଦ୍ଧବନିତା ଅସମ୍ଭବ ଭାବରେ ସହଯୋଗର ହାତ ବଢ଼ାଇଲେ । ଶିକ୍ଷିତ ଯୁବଶକ୍ତିଙ୍କ ସଂଖ୍ୟା ଅବଶ୍ୟ ଆଙ୍ଗୁଠି ଗଣତି । ମୋ ସାଙ୍ଗରେ କାନ୍ଧକୁ କାନ୍ଧ ମିଳାଇ ବାହାରି ଆସିଲେ ଉଦୟନାଥ ପୃଷ୍ଟି, କ୍ଷେତ୍ରମୋହନ ସୁବୁଦ୍ଧି ଓ ଅର୍ଜୁନ ପ୍ରଧାନ- ଶାରୀରକି ଓ ମାନସିକ ସ୍ତରରେ ନିର୍ବିକାର ଭାବେ ସହଯୋଗ, ସାହସ ଓ ଦମ୍ଭ ଦେଲେ । ମିର୍ଜା ଶେରଅଲ୍ଲି ବେଗ୍ , କୁମେଦାନ୍ ଖାଁ, ଦାମୋଦର ସୁବୁଦ୍ଧି, ଯୋଗେଶ୍ୱର ସୁବୁଦ୍ଧି ଓ ଦୀନବନ୍ଧୁ ମହାପାତ୍ରଙ୍କ ପୁତ୍ରମାନେ ସକ୍ରିୟ ଭୂମିକା ଗ୍ରହଣ କରିବାକୁ ଆଗେଇ ଆସିଲେ । ପର୍ଶୁରାମ ପଦାତିକ ରାୟ ଦେବରାଜ ସାମନ୍ତରାୟ,୰ ଗଦାଧର ମହାପାତ୍ର, ଅବ୍‌ଦୁଲ ଲତିଫ୍ ମହମ୍ମଦ, ସହଦେବ ପୃଷ୍ଟି, ବାଞ୍ଛାନିଧି ଦାସ ଓଗେର ଅନେକ ଗ୍ରାମବାସୀ । ଗ୍ରାମର ଗରିବ ବେକାର ଯୁବକ ଓ ସେ ସମୟର କିଶୋର ବୃନ୍ଦ ଘର ଘର ବୁଲି ମୁଷ୍ଟିଭିକ୍ଷା ଠାରୁ ଆରମ୍ଭ କରି ଘର ତିଆରିରେ ଶ୍ରମଦାନ କରି ଶୁଶ୍ରୁଚିମୂଷା ପରି ଲାଗିଗଲେ । ମାଣିକାଗୋଡା ବ୍ୟତୀତ ଖଣ୍ଡାପଡାର ବଳଦିଆ ନୂଆ ଗାଁ ଅଞ୍ଚଳର ଓ ଜଗନ୍ନାଥ ପ୍ରସାଦ ଅଞ୍ଚଳର ପ୍ରତ୍ୟେକ ଗାଁର ମୁଖ୍ୟମାନେ, କଳାଙ୍ଗ ପଞ୍ଚାୟତର ସମସ୍ତ ଗ୍ରାମ ଏ ମହତ୍ କାମକୁ ନିଜର ପରି ଗ୍ରହଣ କରିନେଲେ । ଦିବ୍ୟସିଂହପୁରର ସୋମନାଥ ମହାପାତ୍ର ପ୍ରାଣକୃଷ୍ଣ ମହାପାତ୍ର, ବାସୁଦେବ ଷଡଙ୍ଗୀ, କଳାଙ୍ଗର ଦିବାକର ହୋତା, ଗୋବର୍ଦ୍ଧନପୁରର ବ୍ରହ୍ମଚାରୀ ପାତ୍ର, ଦାରୁଡିପର ବୈଷ୍ଣବ ଚରଣ ପଟ୍ଟନାୟକ, ବଳଦିଆ ନୁଆଗାଁର ବସନ୍ତ କୁମାର ପଟ୍ଟନାୟକ ଓଗେର ସକ୍ରିୟଭାବେ ଆଗେଇ ଆସିଲେ । ଫାସିଓଦା ପଞ୍ଚାୟତର କପିଳ ଜେନା, ଭାଗବତ

ପାଟଶାଣୀ, ରାଜକିଶୋର ମହାନ୍ତି, କୋଟପଲାର ମଧୁସୂଦନ ଦାସ, ଭୀମପଡାର ଦୁର୍ଯ୍ୟୋଧନ ସ୍ୱାଇଁଙ୍କର ସହଯୋଗ ଅଶେଷ ପ୍ରେରଣା ଯୋଗାଇ ଦେଲା । ଏହା ଏକ ଜନ- ସଂପୃକ୍ତିର ରୂପ ନେଲା । ବିଦ୍ୟାଳୟର କର୍ମରତ ଶିକ୍ଷକ ତଥା ଛାତ୍ର ଓ ଅଭିଭାବକମାନଙ୍କର ଐକ୍ୟ ଗୁଞ୍ଜରି ଉଠିଲା । ଏହି ବିଦ୍ୟାଳୟ ହିଁ ହୋଇ ଉଠିଲା ଯଥାର୍ଥରେ ସାମାଜିକ ଉନ୍ନତିର ପ୍ରାଣକେନ୍ଦ୍ର । ଏହିଠାରୁ ହିଁ ଏ ଅଞ୍ଚଳର ଯୋଗାଯୋଗ ରାସ୍ତା, ବିଦ୍ୟୁତ ସଂଯୋଗ, ଶିକ୍ଷାର ପ୍ରସାର ପାଇଁ ପରବର୍ତ୍ତୀ କାଳରେ କାର୍ଯ୍ୟାରମ୍ଭ ହେଲା । ଅନ୍ୟାନ୍ୟ ସାଂସ୍କୃତିକ, ସାମାଜିକ ଉନ୍ନତିର କାର୍ଯ୍ୟକ୍ରମର ଦିଗ୍ ଦର୍ଶନ ମିଳିଲା । ଶିକ୍ଷକ ଓ କର୍ମୀମାନେ ହୋଇ ଉଠିଲେ ସମାଜର ଜଣେ ଜଣେ ନେତୃସ୍ଥାନୀୟ ବ୍ୟକ୍ତି । ସ୍କୁଲର ଛାତ୍ରମାନେ ଏକ ଭିନ୍ନ ଧରଣର ସ୍ୱାଭିମାନ ଓ କର୍ମକୁଶଳତାର ପ୍ରେରଣାର ବାହକ ହେଲେ ।

ହାଇସ୍କୁଲ ସ୍ଥାପନ ହୋଇଗଲା । ଛାତ୍ର ସଂଗ୍ରହ କରିବା ଓ ଶିକ୍ଷକ ମିଳିବା ସମସ୍ୟା ରୂପେ ଉଭା ହେଲା । ଖଣ୍ଡପଡା, ନୟାଗଡ ଓ ବୋଲଗଡରେ ହାଇସ୍କୁଲ ସ୍ଥାପିତ ହୋଇଥିଲେ ମଧ ଉକ୍ତ ସ୍କୁଲମାନଙ୍କରେ ମଧ ଛାତ୍ରସଂଖ୍ୟା ଆଶାନୁରୂପ ନଥିଲା । ମୁଖ୍ୟ କାରଣ ହେଲା ଲୋକମାନଙ୍କର ଆର୍ଥିକ ଅସ୍ୱଚ୍ଛଳତା । ପୂର୍ବ ଖଣ୍ଡପଡା ଅଞ୍ଚଳ, ବୋଲଗଡ ଥାନାଞ୍ଚଳ ଓ ନୟାଗଡର ପୂର୍ବାଞ୍ଚଳର ପାର୍ଶ୍ୱବର୍ତ୍ତି ଗ୍ରାମମାନଙ୍କରେ ବହୁ ମେଧାବୀ ଛାତ୍ର ଆର୍ଥିକ ଅସ୍ୱଚ୍ଛଳତା ହେତୁ ଉଚ୍ଚ ଶିକ୍ଷା ଲାଭରୁ ବଞ୍ଚିତ ହୋଇଥିଲେ । ଶିକ୍ଷାର ଆଲୋକରୁ ବଞ୍ଚିତ ଏହି ଶ୍ରେଣୀୟ ପିଲାଙ୍କ ପାଇଁ ମୁଖ୍ୟତଃ ଏହି ବିଦ୍ୟାଳୟର ସ୍ଥାପନକୁ ଉଦ୍ୟୋକ୍ତା ଓ ଶିକ୍ଷକମାନେ ମୂଳମନ୍ତ୍ର ଭାବେ ଗ୍ରହଣ କରିଥିଲେ । ସ୍କୁଲ ଗୃହ, ଆସବାବପତ୍ର ଓ ଆନୁସାଙ୍ଗିକ ଉପକରଣ ସଂଗ୍ରହ ନିମିତ୍ତ ଅର୍ଥ ସଂଗ୍ରହ ସହ ଏହି ଗରିବ ଛାତ୍ରମାନଙ୍କୁ ଛାତ୍ରାବାସରେ ରଖି ଅଧ୍ୟୟନ କରିବାକୁ ବ୍ୟବସ୍ଥା କରାଗଲା, ସହାୟତା ମଧ ଦିଆଗଲା । ଗ୍ରାମବାସୀଙ୍କ ମୁଠି ଚାଉଳ ସଂଗ୍ରହ-ଲବ୍ଧ ଧନରେ ଏକ ସୁନ୍ଦର ଛାତ୍ରାବାସ ନିର୍ମିତ ହେଲା ଓ ଏକ ସମୟରେ ଏହା ଶତାଧିକ ଛାତ୍ରଙ୍କ ଅଧ୍ୟୟନ ଓ ଗତାଗତରେ ଚଳଚଞ୍ଚଳ ହୋଇ ଉଠିଲା । ସମୟକ୍ରମେ ସ୍କୁଲର ଶିକ୍ଷାଦାନ ବ୍ୟବସ୍ଥା, ଶିକ୍ଷକମାନଙ୍କ ନିଷ୍ଠା ଓ ପ୍ରେରଣା ବହୁ ଅଞ୍ଚଳର ଛାତ୍ରଛାତ୍ରୀଙ୍କୁ ଆକୃଷ୍ଟ କରିପାରିଲା । କ୍ରମେ କ୍ରମେ ପ୍ରତ୍ୟେକ ଶ୍ରେଣୀରେ ଦୁଇଟି ଲେଖାଏଁ ବିଭାଗ ସୃଷ୍ଟି ହେଲା । ଛାତ୍ରମାନଙ୍କ ବୃତ୍ତି ଓ ଭବିଷ୍ୟତ ଉନ୍ନତି ସମ୍ବନ୍ଧରେ ସେହି ସମୟର ପିଲାଙ୍କ କଲମରୁ ଏହି ସ୍ମରଣିକାରେ ଅବଶ୍ୟ ଲେଖା ଥାଇପାରେ, ଅଧିକ ଲେଖିବା ଦ୍ୱିରୁକ୍ତି ମାତ୍ର ।

ପ୍ରଧାନ ପ୍ରତିବନ୍ଧକ ରୂପେ ଦେଖାଗଲା ଶିକ୍ଷକ ନିଯୁକ୍ତିର ସମସ୍ୟା-ବିଶେଷତଃ ବିଜ୍ଞାନ ଶିକ୍ଷକ ଓ ବି.ଇଡି. ଟ୍ରେନିଂପ୍ରାପ୍ତ ଶିକ୍ଷକ । ସ୍କୁଲ ଆରମ୍ଭରୁ ସ୍ଥାୟୀଭାବେ ଜଣେ

ବିଜ୍ଞାନ ଶିକ୍ଷକ ମିଳିଲେ ନାହିଁ । ସେପରି ଶିକ୍ଷକ ଯୋଗ ଦିଅନ୍ତି ମାତ୍ର ବର୍ଷକ ପାଇଁ । ସେହିମାନଙ୍କ ବର୍ଷକଟିର ସାହାଯ୍ୟ ସ୍କୁଲ ଗଠନରେ ଅଭୁଲା ହୋଇ ରହିଛି । ସେମାନଙ୍କ ମଧ୍ୟରୁ ପ୍ରତ୍ୟେକ ଉଚ୍ଚଶିକ୍ଷା ଗ୍ରହଣ କରି ଜୀବନରେ ଡାକ୍ତର, ଇଞ୍ଜିନିୟର ଓ ଜଙ୍ଗଲ ବିଭାଗରେ ଉଚ୍ଚ ପଦାଧିକାରୀ ହୋଇ ସୁନାମ ଅର୍ଜନ କରିଛନ୍ତି । ସେମାନଙ୍କର ଲେଖା ଏହି ସ୍ମରଣିକାରେ ପ୍ରକାଶ ପାଇ ଥାଇପାରେ । ମୁଁ ପ୍ରଧାନ ଶିକ୍ଷକ ଥିବା ସମୟରେ ସେମାନଙ୍କର ସ୍ନେହ, ସହଯୋଗ, ନିଷ୍ଠା ଲକ୍ଷ୍ୟ କରିଛି ଓ ସେମାନଙ୍କ ଅବଦାନ ସ୍ମରଣୀୟ ହୋଇ ରହିଛି ତତ୍କାଳୀନ ଛାତ୍ରଛାତ୍ରୀଙ୍କ ମନରେ । ମଧ ଇଂରାଜୀ ବିଦ୍ୟାଳୟରେ କାର୍ଯ୍ୟରତ ଶିକ୍ଷକମାନେ ନିଜର ମଧ ଇଂରାଜୀ ସ୍କୁଲର ଶିକ୍ଷାଦାନ କାଳରେ ଓ ମୋର ପ୍ରଧାନ ଶିକ୍ଷକତା ସମୟରେ ନିଷ୍ଠାର ସହ କର୍ମରତ ଥିବା ହେତୁ, ପ୍ରାୟ ପ୍ରତ୍ୟେକ ବର୍ଷ କୌଣସି ନା କୌଣସି ପିଲା ପୁରୀ ଜିଲ୍ଲାରେ ମ.ଇ. ବୃତ୍ତି ପାଇବାରେ ସକ୍ଷମ ହୋଇଥିଲେ । ସ୍କୁଲର ସୁନାମ ବଢ଼ିଲା ଓ ହାଇସ୍କୁଲରେ ପାଠ ପଢ଼ିବାକୁ ବହୁ ଦୂରଦୂରାନ୍ତରୁ ଅଭିଭାବକମାନେ ସେମାନଙ୍କର ପିଲାଙ୍କୁ ପଠାଇଲେ । ଏହି ଶିକ୍ଷକମାନଙ୍କ ମଧ୍ୟରେ କଳାଙ୍ଗର ଦାମୋଦର ସାହୁ, ପିତୁକୁଳିର ୰ବେଣୁଧର ପଟ୍ଟନାୟକ, ଗର୍ଭଣୀପଡ଼ାର ଅନ୍ତର୍ଯ୍ୟାମୀ ପଟ୍ଟନାୟକ ଓ ଦଳାଇସାହିର ମୁସାହେବ ଅଲ୍ଲି ଖାଁଙ୍କୁ ମୁଁ ଭୁଲି ପାରିବି ନାହିଁ । ଏମାନଙ୍କଠାରୁ ମୁଁ ବୟସରେ ଖୁବ୍ କମ୍ ଅଥଚ ପ୍ରଧାନ ଶିକ୍ଷକ । କିନ୍ତୁ ଏମାନଙ୍କର ସ୍ନେହ, ଶିକ୍ଷାଦାନ ପ୍ରତି ନିଷ୍ଠା- ସର୍ବୋପରି ଶୃଙ୍ଖଳାଜ୍ଞାନ ବିଦ୍ୟାଳୟର ଶ୍ରୀବୃଦ୍ଧିରେ ଅଶେଷ ସହାୟକ ହୋଇଛି । ପରବର୍ତ୍ତୀ କାଳରେ ଆଶା, ଆର୍ଥିକ ସୁବିଧାକୁ ପଛରେ ପକାଇ ସ୍କୁଲରେ ଶିକ୍ଷକତା କଲେ । ନିଜର ଉଚ୍ଚ ଆଶା, ଆର୍ଥିକ ସୁବିଧାକୁ ପଛରେ ପକାଇ ସ୍କୁଲରେ ଶିକ୍ଷକ ରୂପେ ଲାଗିଗଲେ । ସ୍କୁଲର ପୂର୍ଣ୍ଣାଙ୍ଗ ଆର୍ଥିକ ସହାୟତା ନପାଇବା ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ଶିକ୍ଷକ ପୂର୍ଣ୍ଣ ଦରମା ପାଇ ନାହାନ୍ତି । ପେଟରେ ଭୋକ କିନ୍ତୁ ଆଖିରେ କେବେ ଲୁହ ଦେଖାଇ ନାହାନ୍ତି । ପ୍ରଧାନ ଶିକ୍ଷକ, ଭାବେ ଏମାନଙ୍କଠାରୁ ମୁଁ ଯେଉଁ ସାହାଯ୍ୟ ସହଯୋଗ ପାଇଛି , ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ମନେ ରଖିବି । ମୋ ନିଜକଥା ନ କହିବା ଭଲ । ଦଶବର୍ଷ ଶିକ୍ଷକତା କରିବା ପରେ ମୋତେ ନବପ୍ରତିଷ୍ଠିତ ଉଚ୍ଚ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବେ ଟ୍ରେନିଂପ୍ରାପ୍ତ ପ୍ରଧାନ ଶିକ୍ଷକ ପଦ ନମିଳିବାରୁ ଟ୍ରେନିଂ ନେବାକୁ ପଡ଼ିଲା । ପ୍ରତ୍ୟକ୍ଷଭାବେ ଓ ଅଦ୍ୟାବଧି ପରୋକ୍ଷ ଭାବେ ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନ ପାଇଁ ଜୀବନକୁ ଏକ ରକମ ଉତ୍ସର୍ଗୀକୃତ କରି ଦେଇଛି ।

ଲେଖିବାକୁ ବହୁକଥା, ବହୁ ବ୍ୟଥା ଅଛି । ଏ କ୍ଷୁଦ୍ର ଲେଖାରେ ସ୍ଥାନିତ ହେବା ସମ୍ଭବ ନୁହେଁ । ମୁଁ ଅନ୍ତତଃ ଏତିକି ଆତ୍ମତୃପ୍ତି ଲାଭ କରିପାରିଛି ଯେ ଆମ ବାଞ୍ଛାନିଧି ମ.ଇ. ସ୍କୁଲ ଓ ଗଦାଧର ଏକାଡେମୀ ଏ ଅଞ୍ଚଳରେ ଶିକ୍ଷା ପ୍ରସାର କ୍ଷେତ୍ରରେ ଏକ

ମାଇଲ ଖୁଣ୍ଟ ଓ ଗରିବ ଜନସାଧାରଣଙ୍କ ଦ୍ୱାରା ସ୍ୱୀୟ ପ୍ରଚେଷ୍ଟାରେ ଅନୁଷ୍ଠାନ ସ୍ଥାପନ କରିବାପାଇଁ ପ୍ରେରଣାର ଉତ୍ସ । ଏହି ବିଦ୍ୟାଳୟର ପୁରାତନ ଛାତ୍ରମାନଙ୍କ ପ୍ରଚେଷ୍ଟାରେ ବୋଲଗଡ, ଖଣ୍ଡପଡା, ନୟାଗଡର ପୂର୍ବଭାଗରେ ଅନେକ ମଧ ଇଂରାଜୀ ଓ ହାଇସ୍କୁଲ ପ୍ରତିଷ୍ଠା ସମ୍ଭବ ହୋଇ ପାରିଛି ।

ସମାଜରେ ଏ ଶିକ୍ଷାନୁଷ୍ଠାନର ଭୂମିକା ସ୍ୱତନ୍ତ୍ର । ଏହି ଅନୁଷ୍ଠାନରୁ ଯେଉଁମାନେ ଉତ୍ତୀର୍ଣ୍ଣ ହୁଅନ୍ତି ସମାଜର ଅବଦାନରେ ସ୍ଥାପିତ ଅନୁଷ୍ଠାନର ସୁଯୋଗ ଯୋଗୁଁ ହିଁ ସମ୍ଭବ ହୋଇଥାଏ । ସୁତରାଂ ସେହି ଛାତ୍ର ଛାତ୍ରୀମାନଙ୍କ ଅବଦାନରେ ସମାଜର କ୍ରମୋନ୍ନତି ହେବା ଶିକ୍ଷାବ୍ୟବସ୍ଥାର ଲକ୍ଷ୍ୟ । "ଯାହା ନେଲ, ପାଇଲ- ଫେରା (ଗରରୟ ଲବମଳ) ବହୁମାତ୍ରାରେ ସମାଜକୁ" । ଯେଉଁ ଦେଶ, ଜାତିର ଶିକ୍ଷାଳୟରୁ ଉତ୍ତୀର୍ଣ୍ଣ ଛାତ୍ରଛାତ୍ରୀମାନେ ସେହି ସେହି ଦେଶ ଓ ଜାତିକୁ ଜୀବନରେ କିଛି ଅର୍ପଣ କରି ପାରିଛନ୍ତି ସେମାନେ ଧନ୍ୟ ଓ ସମାଜ ମଧ ଧନ୍ୟ- ସେହିମାନଙ୍କ ଅବଦାନରେ ଉନ୍ନତି ଅବଶ୍ୟମ୍ଭାବୀ ।

ମୁଁ ଆଶା କରୁଛି ଅନୁଷ୍ଠାନଦ୍ୱୟର ପୁରାତନ ଛାତ୍ରଛାତ୍ରୀମାନେ ନିଜର କର୍ତ୍ତବ୍ୟ କ୍ଷେତ୍ରରେ ସେମାନଙ୍କର ଯଥେଷ୍ଟ ଅବଦାନ ଦେଇ ସମାଜକୁ ଅଧିକରୁ ଅଧିକତର ଉନ୍ନତି କରାଇବାରେ ସହାୟକ ହେବା ସଙ୍ଗେ ଏହି ଅନୁଷ୍ଠାନଦ୍ୱୟର ଗୌରବ ଅକ୍ଷୁଣ୍ଣ ରଖିବେ ।

ପ୍ରାକ୍ତନ ପ୍ରଧାନ ଶିକ୍ଷକ, ଗଦାଧର ଏକାଡେମୀ

* * * * *

ଏହାପରେ ପିତୁକୁଳି, କଳାଙ୍ଗ, ବାଙ୍କୋଇ, ଆରିକିମା,. ଡାବରଧୁଆ ପାଟଣା, ଅରଖପଲ୍ଲୀ, ମାଣିବନ୍ଧ, ଦେଉଳି, କଡବ, ସାଗର ଗାଁ, ସଂପୁର ଟାଙ୍ଗିସାହି, ତାଳତୁମ୍ବ, ଖଉରୁଣୀ, ହାଟବସ୍ତ, ବଡକୁମାରୀ, ଗେଡିଆପଲ୍ଲୀ, ଧଳାପଥର, ଅସରଳା ପ୍ରଭୃତି ମୁଖ୍ୟ ଗ୍ରାମ ମାନଙ୍କରେ ପ୍ରଥମେ ମାଇନର ସ୍କୁଲ ଓ ପରେ ଉଚ୍ଚ ବିଦ୍ୟାଳୟ ମାନ ଗଢିଉଠିଲା ।

ରାଜ୍ୟ ସରକାରଙ୍କ ଆଦିବାସୀ କଲ୍ୟାଣ ବିଭାଗ ତରଫରୁ ମାଣିବନ୍ଧ ଗ୍ରାମପଞ୍ଚାୟତର ହଡାବନ୍ଧ ଆଦିବାସୀ ବହୁଳ ଅଞ୍ଚଳରେ ଏକ ଆଦିବାସୀ ଆବାସିକ ସେବାଶ୍ରମ ଏବଂ କିଛି ବର୍ଷ ପୂର୍ବରୁ ଖଇଁରିଆ ଗ୍ରାମର ହରିପୁର ଗ୍ରାମରେ ପୂର୍ବରୁ ଥିବା ପୁରାତନ ଆଦିବାସୀ ସେବାଶ୍ରମକୁ ଉନ୍ନତ କରାଯାଇ ଏକ ସରକାରୀ ଆବାସିକ ଉଚ୍ଚବିଦ୍ୟାଳୟରେ ପରିଣତ କରାଯାଇଅଛି । ଏଠାରେ ରାଜ୍ୟର ସମସ୍ତ ଜିଲ୍ଲାର ଆଦିବାସୀ ଛାତ୍ରମାନେ ଅଧୟନ କରନ୍ତି ।

ନାରୀ ଶିକ୍ଷାର ଉନ୍ନତି ପାଇଁ ସର୍ବପ୍ରଥମେ ବୋଲଗଡର ବିଶିଷ୍ଟ ବଦାନ୍ୟ ବ୍ୟକ୍ତି ୰ ବଳଭଦ୍ର ସାହୁ "ବଳଭଦ୍ର ବାଳିକା ବିଦ୍ୟାପୀଠ" ନାମରେ ଏକ ମାଇନର ସ୍କୁଲ ଆରମ୍ଭ କରିଥିଲେ । ଏହାର ମୁଖ୍ୟ ସହଯୋଗୀ ବୋଲଗଡ ବାମନ ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ୰ କିଶୋର ଚନ୍ଦ୍ର ମିଶ୍ର, ୰ ଚକ୍ରଧର ମହାପାତ୍ର, ୰ କାହ୍ନୁଚରଣ ଯତି ଏବଂ କୃଷ୍ଣମୋହନ ପାଲଟାସିଂହ ଏବଂ ଭାସ୍କର ଚନ୍ଦ୍ର ମହାପାତ୍ର ଥିଲେ । ଏହି ସ୍କୁଲ ସରକାରୀ ମାଇନର ସ୍କୁଲର ଭାବରେ ସରକାରୀ ସ୍ୱୀକୃତି ଲାଭକରି ଅନୁଦାନ ଗ୍ରହଣ କରିଥିଲା । ତାପରେ ୧୯୬୫ ମସିହାରେ ୰ ସତ୍ୟପ୍ରିୟ ମହାନ୍ତି ରାଜ୍ୟ ଶିକ୍ଷା ମନ୍ତ୍ରୀ ଥିଲା ବେଳେ ଅବିଭକ୍ତ ପୁରୀ ଜିଲ୍ଲାରେ ୨ଟି ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ ଖୋଲିବାକୁ ନିଆଯାଇଥିବା ନିଷ୍ପତ୍ତି ଅନୁସାରେ ଗୋଟିଏ ଜଟଣୀ ଏବଂ ଅନ୍ୟଟି ବୋଲଗଡରେ ସ୍ଥାପନ କରାଗଲା । ଏଥିରେ ଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ର ଏବଂ କାଳୀପ୍ରସନ୍ନ ରଥଙ୍କର ଉଦ୍ୟମ ପ୍ରଶଂସନୀୟ । ଶ୍ରୀମତୀ ରମାଦେବୀ ଏହାର ପ୍ରଥମ ପ୍ରଧାନ ଶିକ୍ଷୟିତ୍ରୀ ଭାବରେ ସରକାରୀ ନିଯୁକ୍ତି ପାଇଥିଲେ । ରମାଦେବୀ ଅତ୍ୟନ୍ତ ସ୍ନେହଶୀଳା ଏବଂ ଛାତ୍ରୀ ବତ୍ସଳା ଥିଲେ । ତାଙ୍କର କାର୍ଯ୍ୟ ଦକ୍ଷତା ଯୋଗୁଁ ସେ ସ୍ଥାନୀୟ ଜନମାନସରେ ବହୁଦିନ ପାଇଁ ରହିଯାଇଛନ୍ତି । ତାଙ୍କର ସ୍ୱାମୀ ୰ ପଦ୍ମଲୋଚନ ପାଲଟାସିଂହ ବୋଲଗଡ ବ୍ଲକରେ ଶିକ୍ଷା ସହ-ନିରୀକ୍ଷକ ଭାବରେ କାର୍ଯ୍ୟକରି ଜଣେ କର୍ତ୍ତବ୍ୟନିଷ୍ଠ ଏବଂ ନୀତିବାନ ଅଧିକାରୀ ଭାବରେ ସୁନାମ ଅର୍ଜନ କରିଥିଲେ ।

ଏହାପରେ ଧଳପଥର ଠାରେ ୰ ବିଶ୍ୱନାଥ ସାହୁ ଏବଂ ଗୌରମୋହନ ସାହୁଙ୍କ ଉଦ୍ୟମରେ ଏକ ଘରୋଇ ବାଳିକା ଉଚ୍ଚ ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ତାହାପରେ ସର୍ବଶ୍ରୀ ଲକ୍ଷ୍ମୀଧର ସୁବୁଦ୍ଧି, ଗୋପୀନାଥ ଛୋଟରାୟ, ଜ୍ଞାନେନ୍ଦ୍ର ସୁବୁଦ୍ଧିଙ୍କ ଉଦ୍ୟମରେ କଳାଙ୍ଗ ଠାରେ ଏକ ବାଳିକା ଉଚ୍ଚ ବିଦ୍ୟାଳୟ ଏବଂ ବାଙ୍କୋଇ ଠାରେ ଶ୍ରୀ ମାଧବ ଚନ୍ଦ୍ର ବିଶ୍ୱାଳ ଏବଂ ଲିଙ୍ଗରାଜ ପାତ୍ରଙ୍କ ଉଦ୍ୟମରେ ଘରୋଇ ବାଳିକା ଉଚ୍ଚ ବିଦ୍ୟାଳୟ ହୋଇଥିଲା । ଏହିସବୁ ଉଚ୍ଚ ବିଦ୍ୟାଳୟ ଯେଉଁ ବଦାନ୍ୟ ବ୍ୟକ୍ତିଙ୍କ ସହୟତାରେ ସ୍ଥାପିତ ହୋଇଅଛି ସେମାନଙ୍କ ମଧରେ ଫପୁର ଗ୍ରାମର ଗୋପୀନାଥ ପରିଜା, ଟାଙ୍ଗିସାହି ଗ୍ରାମର ୰ ରଘୁନାଥ ବେହେରା, ଡାବରଧୁଆପାଟଣା ଗ୍ରାମର ୰ ଶ୍ୟାମସୁନ୍ଦର ସାହୁଙ୍କ ନାମ ସର୍ବାଗ୍ରେ ସ୍ୱୀକୃତ । ମାଇନର ସ୍କୁଲ ମଧରେ ଦିଘିରି ମାଇନର ସ୍କୁଲର ପ୍ରତିଷ୍ଠାତା କଳାମାଟିଆ ଗ୍ରାମର ୰ ବିଦ୍ୟାଧର ପ୍ରଧାନ, ଫପୁର ମାଇନର ସ୍କୁଲର ପ୍ରତିଷ୍ଠାତା ୰ ଚର୍ତ୍ତୁଭୂଜ ପରିଡା, ଟାଙ୍ଗିସାହି ମାଇନର ସ୍କୁଲର ପ୍ରତିଷ୍ଠାତା ୰ ମଧୁସୁଦନ ଦାସ, କଳାଙ୍ଗ ମାଇନର ସ୍କୁଲର ପ୍ରତିଷ୍ଠାତା ୰ କାହ୍ନୁଚରଣ ପୃଷ୍ଟି, ଡାବରଧୁଆ ପାଟଣା ମାଇନର ସ୍କୁଲର ପ୍ରତିଷ୍ଠାତା ୰ ବାଙ୍କନିଧି ପରିଡା ନିକଟସ୍ଥ

ରଣପୁର ଅଞ୍ଚଳର କାସନ୍ଦା ଗ୍ରାମରେ ଥିବା ମାଇନର ସ୍କୁଲର ପ୍ରତିଷ୍ଠାତା ଡାବରଧୁଆ ପାଟଣା ଗ୍ରାମର ୰ ରାମଚନ୍ଦ୍ର ମହାପାତ୍ର, ରୋଳସିଂହ ଗ୍ରାମର ମାଇନର ସ୍କୁଲର ପ୍ରତିଷ୍ଠାତା ଶ୍ରୀ ହାଡିବନ୍ଧୁ ନାୟକ (Retd. I.A.S.), ଘୋରଡିଆ ମାଇନର ସ୍କୁଲର ପ୍ରତିଷ୍ଠାତା ୰ ସତ୍ୟପ୍ରିୟ ବିଧାର, ଖଣ୍ଡୁରିଆ ମାଇନର ସ୍କୁଲର ପ୍ରତିଷ୍ଠାତା ୰ ନବକିଶୋର ବିଧାର ଜଗଦେବ, ଯୋଡାପଡା ମାଇନର ସ୍କୁଲର ପ୍ରତିଷ୍ଠାତା ୰ ଲୋକନାଥ ନାୟକଙ୍କର ଅବଦାନ ସର୍ବାଗ୍ରେ ଜନାଦୃତ । ଏହାଛଡା ଅନ୍ୟ ଗ୍ରାମରେ ହୋଇଥିବା ମାଇନର ସ୍କୁଲ ଏବଂ ହାଇସ୍କୁଲ ସ୍ଥାନୀୟ ଶିକ୍ଷାପ୍ରେମୀ ପ୍ରମୁଖ ବ୍ୟକ୍ତି ତଥା ଜନପ୍ରତିନିଧିଙ୍କ ସହଯୋଗରେ ପ୍ରତିଷ୍ଠିତ ହୋଇଅଛି ।

## -: ମହାବିଦ୍ୟାଳୟ :-

ବାମନ ହାଇସ୍କୁଲର ପ୍ରତିଷ୍ଠାତା ପ୍ରଧାନ ଶିକ୍ଷକ ୰ ଆନନ୍ଦ ଚନ୍ଦ୍ର ରଥଙ୍କର ଏକ ପ୍ରବନ୍ଧରୁ (ଯାହା ଏଥିରେ) ଦିଆଯାଇଅଛି , ଜଣାଯାଏ ବାମନ ହାଇସ୍କୁଲ ଖୋଲିବାର ୨ ବର୍ଷ ମଧ୍ୟରେ ବୋଲଗଡ ଠାରେ ଏକ ଇଣ୍ଟର ମିଡିଏଟ କଲେଜ ଖୋଲିବା ପାଇଁ ୰ ବାମନ ମହାପାତ୍ର ତାଙ୍କର ବିବାଦୀୟ ୫ ବାଟି ଜମି ଛାଡି ଦେବା ପାଇଁ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ ସେତେବେଳେ ଉପଯୁକ୍ତ ଜନସହଯୋଗ ଅଭାବରୁ ତାହା ସ୍ଥଗିତ ହୋଇଯାଇଥିଲା ।

୧୯୬୭ ମସିହାରେ ଅନୁଷ୍ଠିତ ସାଧାରଣ ନିର୍ବାଚନ ପୂର୍ବରୁ ଓଡିଶାର ତତ୍କାଳୀନ କଂଗ୍ରେସ ନେତା ତଥା ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ବିଜୁ ପଟ୍ଟନାୟକ ଗିରିଗିରିଆ ଗ୍ରାମରେ ଅନୁଷ୍ଠିତ ଏକ କଂଗ୍ରେସ ସାଧାରଣ ସଭାରେ ବୋଲଗଡ ଠାରେ ଏକ କଲେଜ କରାଯିବାର ଘୋଷଣା କରିଥିଲେ । ଏହାପରେ ସମଗ୍ର ଅଞ୍ଚଳରେ ଆନନ୍ଦର ଲହରୀ ଖେଳିଯାଇଥିଲା । ମାତ୍ର ଏଠାରୁ କଂଗ୍ରେସ ପ୍ରାର୍ଥୀ ସତ୍ୟାନନ୍ଦ ଚମ୍ପତିରାୟଙ୍କର ନିର୍ବାଚନରେ ବିଫଳତା କଲେଜ ଗଠନରେ ଅନ୍ତରାୟ ସୃଷ୍ଟିକଲା ।

ପ୍ରଥମେ ରାଜସୁନାଖଳା କଲେଜ ରଣପୁର ଅନ୍ତର୍ଗତ ବିନୋଦପଡା ଟାଙ୍ଗିରେ ଭକ୍ତବିହାର ପରିସରରେ ବିଶିଷ୍ଟ ସମାଜ ସେବୀ ମଧୁସୂଦନ ମହାପାତ୍ର ଏବଂ ଉକ୍ତ କଲେଜର ପ୍ରତିଷ୍ଠାତା ଅଧ୍ୟକ୍ଷ ତଥା ରଣପୁରର ପୂର୍ବତନ ବିଧାୟକ ଶରତ ଚନ୍ଦ୍ର ମିଶ୍ରଙ୍କ ପ୍ରଚେଷ୍ଟାରେ ୧୯୭୮-୭୯ ମସିହାରେ ଆରମ୍ଭ ହୋଇଥିଲା । ମାତ୍ର ଏହା ବୋଲଗଡ ବ୍ଲକର ସରହଦ ଏବଂ ମଧ୍ୟ ଭାଗରେ ଥିବାରୁ ବୋଲଗଡ ବ୍ଲକର ଜନସାଧାରଣ ଏହାକୁ ନିଜର କଲେଜ ଭାବରେ ଗ୍ରହଣ କରିଥିଲେ ।

ଏହି ସମୟରେ ବୋଲଗଡରେ କଲେଜ ପ୍ରତିଷ୍ଠା କରିବା ପାଇଁ ରାଜ୍ୟ ପ୍ରଶାସନିକ ସେବାର ବରିଷ୍ଠ ଅଧିକାରୀ ବୋଲଗଡ ନିବାସୀ ଶ୍ରୀ ଉପେନ୍ଦ୍ର ସିଂହଙ୍କ

ଉଦ୍ୟମରେ ବୋଲଗଡ ହାଇସ୍କୁଲ ହଲରେ ଏକ ବୈଠକ ମାଣିକାଗୋଡାର ବିଶିଷ୍ଟ ଡାକ୍ତର ଆଦାମ ଅଲ୍ଲୀ ବେଗଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିଲା । ଏହି ବୈଠକରେ ବୋଲଗଡ ବ୍ଲକ ଅଞ୍ଚଳର ପ୍ରମୁଖ ଉତ୍ସାହୀ ଶିକ୍ଷାପ୍ରେମୀ ଏବଂ ଜନସାଧାରଣ ଯୋଗ ଦେଇଥିଲେ । ବୋଲଗଡ ଗ୍ରାମର ପୂର୍ବତନ ସୈନ୍ୟ ବିଭାଗର ଅଧିକାରୀ ଶ୍ରୀ ଲୋକନାଥ ପରିଡା କଲେଜ ସ୍ଥାପନ ପାଇଁ ଆବଶ୍ୟକୀୟ ଅର୍ଥ ସାହାଯ୍ୟ ଦେବାପାଇଁ ପ୍ରତିଶ୍ରୁତି ଦେଇଥିଲେ । ଏହାକୁ ବିଶ୍ୱାସକରି ପରିଚାଳନା କମିଟି ରେଜିଷ୍ଟ୍ରେସନ କରାଯିବା ସଙ୍ଗେ ସଙ୍ଗେ କିଛି କାର୍ଯ୍ୟ ଏ ଦିଗରେ ଆଗେଇଥିଲା । ମାତ୍ର ଶେଷରେ ଶ୍ରୀ ପରିଡା ତାଙ୍କର ପାରିବାରିକ ବିବାଦ ଯୋଗୁଁ ଏଥିରୁ ଓହରି ଯାଇଥିଲେ । ଏହାପରେ ୧୯୮୦ ମସିହାରେ ଓଡିଶାରେ ଏବଂ କେନ୍ଦ୍ରରେ କଂଗ୍ରେସ ସରକାର ଗଠନ ହେବାରୁ ଏଠାରୁ ବିଧାୟକ ଭାବରେ କୈଳାସ ମହାପାତ୍ର ଏବଂ ଲୋକସଭା ସଭ୍ୟ ଭାବରେ ଚିନ୍ତାମଣି ପାଣିଗ୍ରାହୀ ନିର୍ବାଚିତ ହେବା ପରେ ବୋଲଗଡ ଠାରେ ଏକ କଲେଜ ସ୍ଥାପନ ନିମନ୍ତେ ଉତ୍ତମ ବାତାବରଣ ସୃଷ୍ଟି ହୋଇଥିଲା । ସର୍ବୋପରି ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ରାଜ୍ୟ ମୁଖ୍ୟ ମନ୍ତ୍ରୀ ଏବଂ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ର ରାଜ୍ୟ ଶିକ୍ଷା ମନ୍ତ୍ରୀ ଭାବରେ ଅଧିଷ୍ଠିତ ହୋଇଥିବାରୁ ସେମାନଙ୍କର ବୋଲଗଡ ଅଞ୍ଚଳ ତଥା ସ୍ଥାନୀୟ କଂଗ୍ରେସ ନେତାଙ୍କ ସହ ଘନିଷ୍ଠ ସମ୍ପର୍କ କଲେଜ ଗଠନରେ ବିଶେଷ ସହାୟକ ହୋଇଥିଲା । ବୋଲଗଡରେ କଲେଜ ଗଠନ ପୂର୍ବରୁ ୧୯୭୮ ମସିହାରେ ରାଜ୍ୟ ସ୍ତରୀୟ ଅଗ୍ରଗାମୀ ସାଂସ୍କୃତିକ ସ୍ୱେଚ୍ଛାସେବୀ ସଂଗଠନ ନନ୍ଦିଘୋଷର ପ୍ରତିଷ୍ଠା କରାଯାଇଥିଲା । ଏହାର ସଭାପତି ଭାବରେ ଡଃ. ବୈଦ୍ୟନାଥ ମିଶ୍ର ପ୍ରଥମରୁ ରହିଛନ୍ତି । ଏହି ଅନୁଷ୍ଠାନ ଗଠନ ହେବାପରେ ତାଙ୍କର ବୋଲଗଡ ଅଞ୍ଚଳ ସହ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପିତ ହେଲା । ବୋଲଗଡରେ କଳା ମହାବିଦ୍ୟାଳୟ ସ୍ଥାପନ ନକରି ବିଜ୍ଞାନ ମହାବିଦ୍ୟାଳୟ ସ୍ଥାପନ କରିବାରେ ଡଃ. ମିଶ୍ର ବିଶେଷ ଗୁରୁତ୍ୱ ଆରୋପ କରିଥିଲେ । ଏକ ଡିଗ୍ରୀ ବିଜ୍ଞାନ କଲେଜ ପାଇଁ ଆବଶ୍ୟକୀୟ ବିଜ୍ଞାନ ଉପକରଣ, ଲାବୋରେଟୋରୀ, ଲାଇବ୍ରେରୀ, ଜମି ଏବଂ ଅର୍ଥର ଆବଶ୍ୟକତାର ଅଭାବ ପ୍ରଥମେ ଅନୁଭୂତ ହୋଇଥିଲା । ଏତିକିବେଳେ ବାମନ ହାଇସ୍କୁଲରେ ଶିକ୍ଷକତା କରୁଥିବା ଘୋରଡିଆ ଗ୍ରାମର ଏ ଅଞ୍ଚଳର ବିଶିଷ୍ଟ କୃତି ସନ୍ତାନ ତଥା ଶିକ୍ଷା ପ୍ରେମୀ ଶ୍ରୀ ଗଦାଧର ଷଡଙ୍ଗୀ, ଭାସ୍କର ଚନ୍ଦ୍ର ମହାପାତ୍ରଙ୍କର ବାଲ୍ୟ ସହପାଠୀ ଏବଂ ଅନ୍ତରଙ୍ଗ ବନ୍ଧୁ ଭାବରେ ବହୁ ଚିନ୍ତା କରି ଘରୋଇ ସ୍ତରରେ ଏକ ଶିକ୍ଷା ମହାବିଦ୍ୟାଳୟ (B. Ed Training College) କରିବାକୁ ତାଙ୍କୁ ପ୍ରସ୍ତାବ ଦେଇଥିଲେ । ଏଥିରେ ସେ ରିଜିଓନାଲ ଟ୍ରେନିଙ୍ଗ କଲେଜର ତତକାଳୀନ ଅଧ୍ୟକ୍ଷ ଗୋଷ୍ଠ ବିହରୀ କାନୁନଗୋ ଏବଂ ଅଧ୍ୟାପକ ମୁରଲୀଧର ପଣ୍ଡାଙ୍କର ସହାୟତା ନେଇ ସଫଳ ହୋଇଥିଲେ । ଏହାପରେ ନନ୍ଦିଘୋଷ ଅନୁଷ୍ଠାନର ପ୍ରମୁଖ ପ୍ରତିଷ୍ଠାତା ସଭ୍ୟ

ଭାସ୍କର ଚନ୍ଦ୍ର ମହାପାତ୍ର, ଅକ୍ଷୟ କୁମାର ପଟ୍ଟନାୟକ, ବାସୁଦେବ ପଟ୍ଟନାୟକ ଏବଂ ଲେଖକ ଏଥିରେ ପ୍ରମୁଖ ଭୂମିକା ଗ୍ରହଣ କରି ପରିଚାଳନା କମିଟିରେ ରହି କଲେଜ ଗଠନ କାର୍ଯ୍ୟକୁ ଆଗେଇ ନେବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସ୍ଥାନୀୟ ବିଧାୟକ କୈଳାସ ଚନ୍ଦ୍ର ମହାପାତ୍ର କଲେଜ ପରିଚାଳନା କମିଟିର ଉପସଭାପତି ଭାବରେ ରହି ପୁରୀ ଜିଲ୍ଲାରେ ସର୍ବ ପ୍ରଥମେ ପରୀକ୍ଷା ମୂଳକ ଭାବରେ ଏକ ଘରୋଇ ଶିକ୍ଷା ମହାବିଦ୍ୟାଳୟ ଆରମ୍ଭ କରିବାକୁ ଜିଲ୍ଲାର ସମସ୍ତ କଂଗ୍ରେସ ବିଧାୟକ ମାନଙ୍କର ସ୍ୱାକ୍ଷର ସଂଗ୍ରହ କରି ମୁଖ୍ୟମନ୍ତ୍ରୀ ଏବଂ ଶିକ୍ଷାମନ୍ତ୍ରୀଙ୍କୁ ଏକ ଅନୁରୋଧ ପତ୍ର ପ୍ରଦାନ କରିଥିଲେ । ସର୍ବ ପ୍ରଥମେ ଏହି ଦରଖାସ୍ତରେ ନୟାଗଡର ତତ୍‌କାଳୀନ କଂଗ୍ରେସ ବିଧାୟକ ତଥା ବୋଲଗଡ ବାମନ ହାଇସ୍କୁଲର ପୂର୍ବତନ ଛାତ୍ର ଶ୍ରୀ ବଂଶୀଧର ସାହୁ ସ୍ୱାକ୍ଷର କରିବା ପରେ ଅନ୍ୟ ବିଧାୟକ ମାନଙ୍କ ଠାରୁ ସ୍ୱାକ୍ଷର ଆଣିବାରେ କୌଣସି ଅସୁବିଧା ହୋଇନଥିଲା । ସର୍ବୋପରି ଡଃ. ବୈଦ୍ୟନାଥ ମିଶ୍ରଙ୍କ ସହ ତତ୍‌କାଳୀନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କର ପରମ ବନ୍ଧୁତା ଏବଂ ଡଃ. ମିଶ୍ରଙ୍କ ଉପରେ ଜାନକୀ ବାବୁଙ୍କର ଅତୁଟ ବିଶ୍ୱାସ ସହ ଶିକ୍ଷା ମନ୍ତ୍ରୀ ଗଙ୍ଗାଧର ମହାପାତ୍ରଙ୍କ ସହ ଭାସ୍କର ବାବୁଙ୍କର ଘନିଷ୍ଠତା କଲେଜ ପ୍ରତିଷ୍ଠାରେ ବିଶେଷ ସହାୟକ ହୋଇଥିଲା । ପ୍ରଥମ ପରିଚାଳନା କମିଟରେ ଉପରୋକ୍ତ ଉଦଯୋଗୀ ବନ୍ଧୁଙ୍କ ଛଡା ଗ୍ରାମର ମୁରବୀ ତଥା ସ୍ୱାଧୀନତା ସଂଗ୍ରାମୀ ଚକ୍ରଧର ମହାପାତ୍ର ଏବଂ ଉପେନ୍ଦ୍ର ସିଂହଙ୍କ ଛଡା ଅରଖପଲ୍ଲୀ ଗ୍ରାମର ବିଶିଷ୍ଟ ଆଇନଜୀବୀ ମୁଜିବୁର ରହମନ୍ ଲୋକସଭା ସଭ୍ୟ ଚିନ୍ତାମଣୀ ପାଣିଗ୍ରାହୀ ଏବଂ ଡଃ. ବୈଦ୍ୟନାଥ ମିଶ୍ରଙ୍କର ପରମ ବନ୍ଧୁ ରାଜ୍ୟର ସୁନାମ ଧନ୍ୟ ଶିକ୍ଷାବିତ ଦେବେନ୍ଦ୍ର ନାଥ ମିଶ୍ରଙ୍କ ସହ ମାଣିକା ଗୋଡାର ଡାକ୍ତର ଆଦାମ ଅଲ୍ଲି ବେଗ ମଧ ସଭ୍ୟ ଥିଲେ । ପ୍ରଥମେ S.E.R.T. ର ତତ୍‌କାଳୀନ ନିର୍ଦ୍ଦେଶକ ଶିକ୍ଷାବିତ ଡଃ. ଶରତ ଚନ୍ଦ୍ର ଦାସଙ୍କ ଅଧକ୍ଷତାରେ ଏଠାରେ ଘରୋଇ ଶିକ୍ଷା ମହାବିଦ୍ୟାଳୟର ସାମ୍ଭାବ୍ୟ ଦିଗ ଅନୁଧ୍ୟାନ କରିବା ପାଇଁ ଏକ କମିଟି ରାଜ୍ୟ କ୍ୟାବିନେଟ ଦ୍ୱାରା ମନୋନିତ ହୋଇ ବୋଲଗଡ ଗ୍ରସ୍ତ କରି ସମ୍ଭାବ୍ୟ ରିପୋଟ ପ୍ରଦାନ କରିଥିଲେ । ତାପରେ ବିଭାଗୀୟ ଅନୁମତି ମିଳିଲା ପରେ ୧୯୮୦ ସେପ୍ଟମ୍ବର ୫ ତାରିଖ ପବିତ୍ର ଗୁରୁଦିବସରେ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପୌରହିତ୍ୟରେ ବୋଲଗଡରେ ଘରୋଇ ଶିକ୍ଷା ମହାବିଦ୍ୟାଳୟର ଶୁଭାରମ୍ଭ ହେଲା । ରାଜ୍ୟର ସୁନାମଧନ୍ୟ ଶିକ୍ଷାବିତ ପ୍ରଫେସର ଶତ୍ରୁଘ୍ନନାଥ ଏହି ମହାବିଦ୍ୟାଳୟର ପ୍ରଥମ ଅଧକ୍ଷ ଭାବରେ ଯୋଗଦେଲେ । କଲେଜର ସ୍ଥାୟୀ ଗୃହ ନିମନ୍ତେ ବୋଲଗଡର ବିସ୍ତୀର୍ଣ୍ଣ ଆମ୍ବତୋଟା ଜଙ୍ଗଲା ପଡିଆ ଯାହା ପୂର୍ବ କାଳରୁ ଗଡଭିତର ଲୋକଙ୍କର ଶ୍ମଶାନ ରୂପେ ବ୍ୟବହାର ହୋଇଆସୁଥିଲା ସେହି ଜମିରେ ଗଡ ଭିତର ସମସ୍ତ ଅଧିବାସୀ ମାନଙ୍କ ସହଯୋଗରେ ସେହି ଜମିକୁ ଅଧିଗ୍ରହଣ

କରାଗଲା । ଏହି କାର୍ଯ୍ୟରେ ୰ ପରମାନନ୍ଦ ଫତେସିଂହ, ୰ ବାଉଧର ପ୍ରଧାନ, ରାମଚନ୍ଦ୍ର ଦଳବେହେରା, କୃଷ୍ଣମୋହନ ପାଲଟାସିଂହ ଏବଂ ଭାଗବତ ପାଟଶାଣୀଙ୍କର ମୁଖ୍ୟ ଭୂମିକା ରହିଥିଲା । ପରେ ଶ୍ରୀ ୰ ଦିବ୍ୟସିଂହ ରାଉତରାୟ ମାତ୍ର ୧୦ ହଜାର ଟଙ୍କାରେ କଲେଜ ସମ୍ମୁଖରେ ଥିବା ତାଙ୍କର ବହୁ ମୂଲ୍ୟ ଜମି କଲେଜକୁ ବିକ୍ରି କରିଥିଲେ । କଲେଜ ସ୍ଥାପନର ଅବ୍ୟବହିତ ପୂର୍ବରୁ ୧ଲକ୍ଷ ଟଙ୍କାର ଜମାର ଜରୁରୀ ଆବଶ୍ୟକତା ଥିଲା । ଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ର ଏଥିପାଇଁ ୧ ଲକ୍ଷ ଟଙ୍କା ଦାନ କରିଥିଲେ । ଏଣୁ ତାଙ୍କର ପିତା ୰ ପରମାନନ୍ଦ ମହାପାତ୍ରଙ୍କ ନାମରେ ଏହି ମହାବିଦ୍ୟାଳୟର ନାମକରଣ କରାଗଲା । ଏହାଛଡା ସେ ତାଙ୍କର ଘରୋଇ ତୋଟାର ଏକ ଅଂଶ କଲେଜ ପାଇଁ ଦାନ କରିଥିଲେ ଯେଉଁଥିରେ ବର୍ତ୍ତମାନ କଲେଜର ଛାତ୍ରାବାସ ସରକାରୀ ଅନୁଦାନରେ ନିର୍ମିତ ହୋଇଅଛି ଏବଂ ଛାତ୍ରୀମାନଙ୍କ ରହିବା ପାଇଁ ତାଙ୍କର ଧାନ ମିଲର ପୂର୍ବ ପାଖ ବିରାଟ ଗୃହକୁ ଛାତ୍ରୀନିବାସ ଭାବରେ ବ୍ୟବହାର କରାଯାଇଥିଲା ।

ଏହାର ବର୍ଷକ ପରେ ୧୯୮୧ ମସିହା ଗୁରୁଦିବସ ଦିନ ଏହି ମହାବିଦୟାଳୟ ପରିଚାଳନା କମିଟି ଏବଂ କାର୍ଯ୍ୟରତ ଅଧାପକଙ୍କ ଅଧିକ କଳା ଏବଂ ବିଜ୍ଞାନ ଅଧାପକଙ୍କୁ ନିଯୁକ୍ତି ଦିଆଯାଇ ବିଜ୍ଞାନ ଏବଂ କଳା ମହାବିଦ୍ୟାଳୟ ୰ ପରମାନନ୍ଦ ମହାପାତ୍ରଙ୍କ ନାମରେ ଖୋଲିଲା । ଶିକ୍ଷା ମହାବିଦ୍ୟାଳୟର ପ୍ରଥମ ୫ ବର୍ଷରେ ଓଡିଶା ରାଜ୍ୟର ଛାତ୍ରଙ୍କ ଛଡା ସୁଦୂର କେରଳ, ଗୁଜୁରାଟ, ବିହାର, ଆନ୍ଧ୍ର, ପଶ୍ଚିମବଙ୍ଗ, ଆସାମ ପ୍ରଭୃତି ରାଜ୍ୟର ଛାତ୍ର ଛାତ୍ରୀମାନେ ଅଧୟନ କରିଥିଲେ । ସେମାନଙ୍କର ଦାନ ଅର୍ଥ (Donation) ପରବର୍ତ୍ତୀ ସମୟରେ ଡିଗ୍ରୀ କଳା ବିଜ୍ଞାନ କଲେଜର ପରିଚାଳନା ଏବଂ ବର୍ତ୍ତମାନ ମହାବିଦ୍ୟାଳୟର ଦୃଶ୍ୟମାନ ବିରାଟ ୨ତଳ ପ୍ରାସାଦ ବିଶିଷ୍ଟ ଅଟ୍ଟାଳିକା ନିର୍ମାଣରେ ବିଶେଷ ସହାୟକ ହୋଇଥିଲା । ୧୯୮୧ରେ କଲେଜ ଆରମ୍ଭ ବେଳେ ମାତ୍ର ୭୮ ଜଣ ଛାତ୍ରଙ୍କୁ ନେଇ ପ୍ରଥମେ ନାମ ଲେଖା ଆରମ୍ଭ ହୋଇଥିଲା । ସେତେବେଳେ ବୋଲଗଡରୁ ରାଜସୁନାଖଳାରେ ପଢୁଥିବା କଲେଜ ଛାତ୍ରଙ୍କୁ ଫେରାଇ ଆଣିବାରେ ସୁନାଖଳା କଲେଜର ଅଧକ୍ଷ ଶରତ ମିଶ୍ର ଏବଂ ସଂପାଦକ ମଧୁସୂଦନ ମହାପାତ୍ର ବିଶେଷ ସାହାଯ୍ୟ କରିଥିଲେ । କଲେଜର ପ୍ରଥମ ବର୍ଷ I.A ଏବଂ I.Sc ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରିବାରେ କଳାରେ ଅଧାପକ ସର୍ବେଶ୍ୱର ସାହୁ, ଗ୍ରାମ ମଣ୍ଡଳ ସିଂହ ଏବଂ ବିଜ୍ଞାନରେ ସୁଦର୍ଶନ ବାଦି, ଗ୍ରାମ- ରୋଳସିଂହ ସୌଭାଗ୍ୟ ଅର୍ଜନ କରିଥିଲେ । ବର୍ତ୍ତମାନ ଅଧାପକ ସାହୁ ଖଣ୍ଡପଡା ପଠାଣୀ ସାମନ୍ତ ମହାବିଦ୍ୟାଳୟର ଅଧାପକ ଥିଲା ବେଳେ ସୁଦର୍ଶନ ବାଦି ବନ ବିଭାଗର ରେଞ୍ଜ ଅଫିସର ଭାବରେ ମନମୁଣ୍ଡା ଠାରେ ଅବସ୍ଥାପିତ ହୋଇଅଛନ୍ତି । ଏହି ୨ ଟି କଲେଜର

ଅନୁମତି ପାଇଁ ୧୬ ଏକର ଜମିର ଆବଶ୍ୟକତା ପଡିବାରୁ କଲେଜର ପ୍ରତିଷ୍ଠାତା କୋଷାଧକ୍ଷ ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ ତାଙ୍କର ପୂର୍ବତନ ସର୍ବାରାକାର କୋଠ ଆୟତୋଟାର ଜମିକୁ କଲେଜ ନାମରେ ବିନା ମୂଲ୍ୟରେ ରେଜେଷ୍ଟ୍ରିକରିବା ସଂଗେ ସଂଗେ ୨୦୦ ଡିସିମିଲ ଜମି ମୁଖ୍ୟ ରାଜପଥରୁ ନନ୍ଦିଘୋଷ ଏବଂ କଲେଜ ହଷ୍ଟେଲକୁ ଯିବା ନିମନ୍ତେ ରାସ୍ତା ପାଇଁ ଦାନ କରିଥିଲେ । କିଛିବର୍ଷ ପରେ B. Ed. କଲେଜ ସରକାରୀ ନିଷ୍ପତ୍ତି କ୍ରମେ ବନ୍ଦ ହୋଇଗଲା । ସେତିକିବେଳକୁ ସେତେବେଳର ବୋଲଗଡ ରାଜନୀତି ଏବଂ ସାଧାରଣ ଉନ୍ନୟନ କାର୍ଯ୍ୟରେ ମୁଖ୍ୟ ଭାବରେ ଅଂଶଗ୍ରହଣ କରୁଥିବା ଭାସ୍କର ଚନ୍ଦ୍ର ମହାପାତ୍ର, ଅକ୍ଷୟ କୁମାର ପଟ୍ଟନାୟକ ଏବଂ ଲେଖକଙ୍କ ମଧ୍ୟରେ ରାଜନୈତିକ ମତାନ୍ତର ଏବଂ ସମୟ କ୍ରମେ ଲେଖକ ଏବଂ ପରେ ଅକ୍ଷୟ ବାବୁଙ୍କର କଂଗ୍ରେସ ଦଳ ପରିତ୍ୟାଗ କଲେଜ ତଥା ଆଞ୍ଚଳିକ ଉନ୍ନତିରେ ମୁଖ୍ୟ ଅନ୍ତରାୟ ସୃଷ୍ଟି କରିଥିଲା । ଏହି କଲେଜରୁ ବହୁ କୃତୀ ଛାତ୍ର ଉତୁରିବା ସହ ଏଠାରେ ଅଧ୍ୟାପକ ଭାବରେ ନିଯୁକ୍ତ ଥିବା ଅଧ୍ୟାପକ ମାନଙ୍କ ମଧ୍ୟରୁ ୨ ଜଣ ସର୍ବଶ୍ରୀ ଅଚ୍ୟୁତ ସାମନ୍ତ ଏବଂ ଜାନକୀ ବଲ୍ଲଭ ପାଢୀ ରାଜ୍ୟ ତଥା ଜାତୀୟ ସ୍ତରରେ ଶିକ୍ଷା ବିକାଶରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ଶ୍ରୀ ଅଚ୍ୟୁତ ସାମନ୍ତ ଭୁବନେଶ୍ୱରର ଚନ୍ଦ୍ର ଶେଖରପୁର ଠାରେ ସ୍ୱୟଶାସିତ କିଟ (KIIT) ବିଶ୍ୱ ବିଦ୍ୟାଳୟର ପ୍ରତିଷ୍ଠାତା କୁଳପତିର ମାନ୍ୟତା ଲାଭ କରିଥିଲା ବେଳେ ଶ୍ରୀ ପାଢୀ 'Padhee's Tutotial Pvt. Ltd' ଗଠନ କରି ଏବଂ କଳିଙ୍ଗ ଭାରତୀ ଭଳି ଆବାସିକ ମହାବିଦ୍ୟାଳୟ ଆରମ୍ଭ କରି ରାଜ୍ୟର ମେଧାବୀ ଛାତ୍ରଙ୍କ ପାଇଁ ଏକ ଆଲୋକବର୍ତ୍ତୀକା ସଦୃଶ୍ୟ ନିଜକୁ ପ୍ରତିଷ୍ଠିତ କରିପାରିଛନ୍ତି ।

ଧଳାପଥର -

୧୯୮୦ ଦଶକ ପୂର୍ବରୁ ବୋଲଗଡ ବ୍ଲକର ଧଳାପଥର ସମୀପବର୍ତ୍ତୀ କଳାପଥର ଠାରେ ବାଙ୍କୀ ଏବଂ ଧଳାପଥର ଅଞ୍ଚଳର ଲୋକମାନଙ୍କ ସହଯୋଗରେ କଳାପଥର ଧଳାପଥର ମହାବିଦ୍ୟାଳୟ ଗଠନ ହୋଇ ସେ ଅଞ୍ଚଳର ଉଚ୍ଚଶିକ୍ଷା ଦିଗରେ ବିଶେଷ କାଯ୍ୟକରିଅଛି । ୰ ଦାସରଥି ମହାପାତ୍ର, ୰ ବିଶ୍ୱନାଥ ସାହୁ, ୰ ବନମାଳୀ ସାହୁ ବାଙ୍କୀର ପୂର୍ବତନ ବିଧାୟକ ଧଳାପଥର ନିବାସୀ ବିଶିଷ୍ଟ ଆଇନଜୀବୀ ତଥା ସମବାୟ ପ୍ରେମୀ ଶ୍ରୀ ଘନଶ୍ୟାମ ସାହୁଙ୍କର ଏହି କଲେଜ ପାଇଁ ଅବଦାନ ସର୍ବଜନ ଆଦୃତ ।

ଦେଉଳି -

ଦେଉଳି ଗ୍ରାମରେ ୧୯୯୦ ଦଶକ ଆରମ୍ଭରେ ରଘୁନାଥ ମହାବିଦ୍ୟାଳୟ

ଆରମ୍ଭ ହୋଇଥିଲା । କଡବ ଗ୍ରାମର ଶ୍ରୀ ରଘୁନାଥ ପାଇକରାୟ ତାଙ୍କର ପ୍ରାୟ ୪ ଏକର ଜମି ପ୍ରଥମେ ଦାନ କରିଥିବାରୁ ତାଙ୍କ ନାମରେ ଏହି ମହାବିଦ୍ୟାଳୟ ନାମିତ କରାଗଲା । ଦେଉଳି ଗ୍ରାମର ଶିକ୍ଷାପ୍ରେମୀ ଭାଗୀରଥି ସାହୁ ଏହାର ପ୍ରଥମେ ଉଦ୍ୟୋକ୍ତା ଥିଲେ । ପୂର୍ବତନ ବିଧାୟକ ଗଙ୍ଗାଧର ପାଇକରାୟ ମୃତ୍ୟୁ ପର୍ଯ୍ୟନ୍ତ ଏ ମହାବିଦ୍ୟାଳୟର ସଭାପତି ଦାୟିତ୍ୱ ବହନ କରିବା ସହ ଏ ଅଞ୍ଚଳର ବିଶିଷ୍ଟ ଯୁବ ନେତା ଶିକ୍ଷା ପ୍ରେମୀ ସୁସଂଗଠକ ଏବଂ ଖୋରଧା କେନ୍ଦ୍ର ସମବାୟ ବ୍ୟାଙ୍କରେ କାର୍ଯ୍ୟରତ ପଣ୍ଡିମେଶ୍ୱର ନାୟକ ପ୍ରଥମେ ସଂପାଦକ ରହି କଲେଜକୁ ଆଗେଇ ନେବାରେ ପ୍ରଧାନ ସହାୟକ ହୋଇଥିଲେ । ପରେ ସେ ପରିଚାଳନା କମିଟି ସଭାପତି ଦାୟିତ୍ୱ ବହନ କରିଥିଲେ । ଏହା ବର୍ତ୍ତମାନ +୩ କଳା ବିଜ୍ଞାନ କଲେଜର ମାନ୍ୟତା ପାଇଅଛି । ଏଥିରେ ପୂର୍ବତନ ବିଧାୟକ ତଥା ଉଚ୍ଚ ଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଶାନ୍ତ ନନ୍ଦଙ୍କ ଅବଦାନ ବିଶେଷ ପ୍ରଶଂସନୀୟ । ଏହା ବୋଇଗଡ କଲେଜର ଦ୍ୱିତୀୟ କଲେଜ ଭାବରେ ସ୍ୱୀକୃତି ଲାଭ କରିଅଛି ।

ବାଙ୍କୋଇ -

୧୯୮୦ ରେ ବୋଇଗଡ ଠାରେ ଶିକ୍ଷା ମହାବିଦ୍ୟାଳୟ ପ୍ରତିଷ୍ଠା ହେଲା ପରେ ବାଙ୍କୋଇ ହାଇସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀ କାଳିଚରଣ ଜୟସିଂହ ବାଙ୍କୋଇ ଠାରେ ଏକ ଘରୋଇ ଘରରେ C.T. School ଆରମ୍ଭ କରିଥିଲେ । ଏଥିରେ ପୂର୍ବତନ ଲୋକସଭା ସଭ୍ୟ ତଥା କେନ୍ଦ୍ରମନ୍ତ୍ରୀ ଚିନ୍ତାମଣୀ ପାଣିଗ୍ରାହୀ ଏବଂ ସ୍ଥାନୀୟ ମୁଖ୍ୟ କଂଗ୍ରେସ କର୍ମୀ ୰ ଗଙ୍ଗାଧର ପରିଡା ବାଙ୍କୋଇର ପୂର୍ବତନ ସରପଞ୍ଚ ଉଦୟନାଥ ଉଉରକବାଟ ବିଶିଷ୍ଟ ଶିକ୍ଷାପ୍ରେମୀ ଅର୍ଜୁନ ପାତ୍ର ଏବଂ ବଡକୁମାରି ଗ୍ରାମପଞ୍ଚାୟତର ପୂର୍ବତନ ସରପଞ୍ଚ ଦୁର୍ଗାଚରଣ ସେନାପତି ରଣପୁର ଇତିହାସର ଲେଖକ ଶିକ୍ଷାବିତ ସତ୍ୟବାଦୀ ବଳିଆର ସିଂହ, ନୟାଗଡ ପ୍ରଜାଆନ୍ଦୋଳନର ପ୍ରମୁଖ ନେତା ୰ ଲକ୍ଷ୍ମଣ ମହାରଣାଙ୍କ ପୁତ୍ର ଭକ୍ତ ବଲ୍ଲଭ ମହାରଣା ଶ୍ରୀ ଜୟସିଂହଙ୍କୁ ବିଶେଷ ସହାୟକ ହୋଇଥିଲେ । ସେଥିରୁ ଆଦାୟ Donation ଅର୍ଥରୁ ପରବର୍ତ୍ତୀ ବର୍ଷରେ ଶ୍ରୀ ଜୟସିଂହ ହାଟବସ୍ତ ଗ୍ରାମ ନିକଟସ୍ଥ ଟାଙ୍ଗିରେ ପାଞ୍ଚଗଡ ଅନଙ୍ଗ ନରେନ୍ଦ୍ର ମହାବିଦ୍ୟାଳୟ ଆରମ୍ଭ କରି ପରେ ସେ ଏବଂ ତାଙ୍କର ସହଧର୍ମୀଣୀଙ୍କ ନାମ ସେଥିରେ ଯୋଡିଥିଲେ । ଏହା ବାଙ୍କୋଇ, ସାଗରଗାଁ, ଆରିକିମା ଏବଂ ବଡକୁମାରୀ ଗ୍ରାମ ପଞ୍ଚାୟତ ଅଞ୍ଚଳର ଉଚ୍ଚଶିକ୍ଷା କ୍ଷେତ୍ରରେ ବିଶେଷ ସହାୟକ ହୋଇଅଛି । ପରେ ପୂର୍ବତନ ବିଧାୟକ ସୁରେନ୍ଦ୍ର ନାଥ ମିଶ୍ର ଏବଂ ପରେ ସାଂସଦ ପ୍ରସନ୍ନ କୁମାର ପାଟଶାଣୀଙ୍କର ଯଥେଷ୍ଟ ଅବଦାନ ଏଥିପ୍ରତି ଅଛି । ଶେଷ ମୁହୂର୍ତ୍ତରେ ଏହି ମହାବିଦ୍ୟାଳୟକୁ ଅନୁମତି ପ୍ରଦାନରେ ସ୍ଥାନୀୟ

ପୂର୍ବତନ ବିଧାୟକ ତଥା ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଶାନ୍ତ ନନ୍ଦ ଏବଂ ବର୍ତ୍ତମାନର ଉଚ୍ଚଶିକ୍ଷା ମନ୍ତ୍ରୀ ଶ୍ରୀ ସମୀର ଦେଙ୍କର ସାହାଯ୍ୟ ଅବିସ୍ମରଣୀୟ ।

ମହିଳା ଶିକ୍ଷାର ପ୍ରସାର ନିମନ୍ତେ ବୋଲଗଡ ଠାରେ ଶ୍ରୀ ଶ୍ୟାମସୁନ୍ଦର ସୁବୁଦ୍ଧିଙ୍କ ଉଦ୍ୟମରେ ବୋଲଗଡ ମହିଳା ମହାବିଦ୍ୟାଳୟ ବିଗତ ୯୦ ଦଶକରେ ଏବଂ ଟିକାତାଳ ଠାରେ ଟିକାତାଳ ରାମକୃଷ୍ଣ ସେବାଶ୍ରମର ପ୍ରତିଷ୍ଠାତା ସ୍ୱାମୀ ଭଗବତାନନ୍ଦ ପୁରୀଙ୍କର ପ୍ରଚେଷ୍ଟାରେ ମା ଶାରଦା ମହିଳା ମହାବିଦ୍ୟାଳୟ ଆରମ୍ଭ ହୋଇଥିଲା । ସରକାରଙ୍କର ସଙ୍କୁଚିତ ଶିକ୍ଷା ନୀତି ବୋଲଗଡ ମହିଳା ମହାବିଦ୍ୟାଳୟକୁ ବନ୍ଦ କରିଦେଇଥିଲା । ଟିକାତାଳ ଠାରେ ଅନୁଷ୍ଠିତ ମହିଳା ମହାବିଦ୍ୟାଳୟ ରାଜ୍ୟ ସରକାରଙ୍କ ଦ୍ୱାରା ଅନୁମତି ଲାଭ କରି ବ୍ଲକ ଅଞ୍ଚଳର ଏକମାତ୍ର ଉଚ୍ଚ ଶିକ୍ଷା କ୍ଷେତ୍ରରେ ନାରୀ ମାନଙ୍କର ଶିକ୍ଷାଦାନ ନିମନ୍ତେ ଅନୁଷ୍ଠାନର କାର୍ଯ୍ୟ ସମ୍ପାଦନ କରୁଅଛି । ଏହାଛଡା ସାନପଦର ଗ୍ରାମରେ ଅନୁଷ୍ଠିତ ମହାବିଦ୍ୟାଳୟ ସରକାରଙ୍କ ଶିକ୍ଷାନୀତି ଯୋଗୁଁ ତିଷ୍ଠି ପାରିନଥିଲା ।

ସର୍ବପ୍ରଥମେ ପରମାନନ୍ଦ ମହାବିଦ୍ୟାଳୟରେ Vocational College ଖୋଲିବାକୁ ଅନୁମତି ଆସିଥିଲା ଏବଂ କିଛି ଦିନ ପରେ ମାଣିକାଗୋଡା ଗଦାଧର ଏକାଡେମୀକୁ ସ୍ଥାନାନ୍ତରିତ ହୋଇଗଲା । ସେଠାରେ ଏହା କିଛି ବର୍ଷ ଚାଲିବା ପରେ ବର୍ତ୍ତମାନ ୨୦୦୪-୨୦୦୫ ଶିକ୍ଷାବର୍ଷ ଠାରୁ ସରକାରୀ ନୀତି ଯୋଗୁ ଏହା ବୋଲଗଡ ସହିତ ସଙ୍ଲଗ୍ନ ହୋଇଅଛି । । ଦେଉଳି ଠାରେ ସଂସ୍କୃତ ମହାବିଦ୍ୟାଳୟ ଶିକ୍ଷାପ୍ରେମୀ ଭାଗୀରଥି ସାହୁ ଏବଂ ତାଙ୍କର ପୁତ୍ର ବଟକୃଷ୍ଣ ସାହୁଙ୍କ ଉଦ୍ୟମରେ ଆରମ୍ଭ ହୋଇ ସଫଳତାର ସହିତ ଆଗେଇ ଅଛି । ଆରିକିମା ଠାରେ ଏଠାରୁ ୧୯୯୫ ମସିହାରେ ମୁଖ୍ୟମନ୍ତ୍ରୀ ଥାଇ ଜାନକୀ ବାବୁ ଉପ ନିର୍ବାଚନରେ ଜିତିଲା ପରେ ତାଙ୍କ ନାମରେ ଏକ ସଂସ୍କୃତ ମହାବିଦ୍ୟାଳୟ ଆରମ୍ଭ ହୋଇଥିଲା । ତାହା ପରେ ବନ୍ଦ ହୋଇଯାଇଅଛି ।

ବୋଲଗଡ ଅଞ୍ଚଳରେ ଶିକ୍ଷାର କ୍ରମବିକାଶ ଶିରୋନାମାରେ ଏକ ନିବନ୍ଧ ଶ୍ରୀ ଅକ୍ଷୟ ପଟ୍ଟନାୟକ ବୋଲଗଡ ମହୋତ୍ସବ - ୨୦୦୫ ର ସ୍ମରଣିକାରେ ପ୍ରକାଶ କରିଛନ୍ତି । ପାଠକମାନଙ୍କ ଅବଗତି ନିମନ୍ତେ ଏହି ନିବନ୍ଧର କେତେକ ଅଂଶ ଏଠାରେ ଉପସ୍ଥାପନା କରାଗଲା ।

*********

ଘନଶ୍ୟାମ କାଳକ୍ରମେ ସଦର ସର୍ବରାକାର ହେଲେ ଏବଂ ନିଜ ପୁତ୍ରମାନଙ୍କୁ ଯୋଗ୍ୟ କରିବାର ଲକ୍ଷ୍ୟ ରହିଲା । ସେତେବେଳକୁ ଭର୍ଣ୍ଣାକୁଲାର ପାଠ ବୋଲଗଡରେ ଆରମ୍ଭ ହୋଇଗଲାଣି । ଭର୍ଣ୍ଣାକୁଲାର ପ୍ରଥମେ କିଏ ଆରମ୍ଭ କଲେ ଲେଖିପାରିବିନି ।

ବୋଇଗଡ ମଠରେ ୰ ଗୋପାଳ ମହାରାଜଙ୍କ ଠାରୁ ଶୁଣିଛି - ୰ ଜଗନ୍ନାଥ ପରିଡା ବୋଇଗଡ, ୰ ଲିଙ୍ଗରାଜ ନାୟକ ଗୁଡୁମ, ହେଡ ପଣ୍ଡିତ ଭାବରେ ଭୁବନେଶ୍ୱର ମିଶ୍ର କାର୍ଯ୍ୟ କରୁଥିଲେ । ଭୁବନେଶ୍ୱର ମିଶ୍ରଙ୍କର କେଉଁ ଗାଁ ମଧ ମୁଁ କହିପାରିବିନି । ଏହି ସମୟରେ ଜଗନ୍ନାଥ ପରିଡାଙ୍କର ସ୍ୱର୍ଗବାସ ହେଲା । ତାଙ୍କ ସ୍ଥାନରେ କୁଳମଣୀ ଆଚାର୍ଯ୍ୟ ଯୋଗଦାନ କଲେ । ଶୁଣିବାକୁ ମିଳେ ରଣପୁର ଜାମୁସାହିର କୃଷ . . . (ତାଙ୍କ ସାଙ୍ଗିଆ ବହୁ ଚେଷ୍ଟାକରି ଜାଣିପାରିଲି ନାହିଁ) ଅଂଶିକ ସମୟ (Part time) ଇଂରାଜୀ ଶିକ୍ଷାଦାନ କରୁଥିଲେ । ଘନଶ୍ୟାମଙ୍କର ୨ୟ ଏବଂ ୩ୟ ପୁତ୍ର ଯଥାକ୍ରମେ - ନାରାୟଣ ଚନ୍ଦ୍ର ପଟ୍ଟନାୟକ ଏବଂ ହୃଷିକେଶ ପଟ୍ଟନାୟକ ଭର୍ନାକୁଲାର ପାଠ ଶେଷକରି ଖୋର୍ଦ୍ଧା ହାଇସ୍କୁଲରେ ଅଧୟନ ଆରମ୍ଭ କଲେ । କୌଣସି କାରଣ ବଶତଃ ନାରୟଣ ଚନ୍ଦ୍ର ପଟ୍ଟନାୟକ ୧୯୧୫ ମସିହାରେ ମାଟ୍ରିକ ପରୀକ୍ଷା ଦେଇପାରିଲେ ନାହିଁ । ହୃଷିକେଶ ପଟ୍ଟନାୟକ ୧୯୧୫ ମସିହାରେ ବୋଇଗଡ ଥାନାର ପ୍ରଥମ ମାଟ୍ରିକୁଲେଟ ହିସାବରେ ପ୍ରଥମ ଶ୍ରେଣୀରେ ଉର୍ତ୍ତୀର୍ଣ୍ଣ ହେବାର ଗୌରବ ହାସଲ କଲେ । ୧ ବର୍ଷ ପରେ ନାରାୟଣ ଚନ୍ଦ୍ର ପଟ୍ଟନାୟକ ପ୍ରଥମ ଶ୍ରେଣୀରେ ମାଟ୍ରିକ ପାସ କଲେ ।

ବାପାଙ୍କ ଠାରୁ ଯାହା ଶୁଣିଛି, ସେ ସମୟରେ ସେମାନେ ଖୋର୍ଦ୍ଧା ପାଦରେ ଚାଲି ଯାଉଥିଲେ । ଗାଡି ମଟର ନ ଥିଲା । କେବଳ ଗ୍ରୀଷ୍ମ ଏବଂ ଦଶହରା ଛୁଟିରେ ସେମାନଙ୍କ ଆସବାବ ପତ୍ର ନେବା ଆଣିବା ପାଇଁ ବୋଇଗଡରୁ ଶଗଡ ଖୋର୍ଦ୍ଧା ଯାଉଥିଲା । ଘନଶ୍ୟାମଙ୍କ ପ୍ରବଳ ଇଚ୍ଛା ଥାଏ ପିଲାମାନଙ୍କୁ ଉଚ୍ଚଶିକ୍ଷିତ କରିବା ପାଇଁ । ନାରାୟଣ ଚନ୍ଦ୍ର ପଟ୍ଟନାୟକ ଇଣ୍ଟରମିଡିଏଟ ପାସ କରି ଅବକାରୀ ଚାକିରୀରେ ଯୋଗଦାନ କଲେ । ହୃଷିକେଶ ଇଣ୍ଟରମିଡିଏଟ ଏବଂ ବିଏ ଶିକ୍ଷା ରେଭେନ୍ସା କଲେଜରୁ ୧୯୧୯ ମସିହାରେ ସମାପ୍ତ କଲେ । ସେତେବେଳେ ଓଡିଶାରେ ଏମ.ଏ. ଶ୍ରେଣୀ ନଥାଏ । ସେହି ବର୍ଷ ହିଁ ଉତ୍କଳ ଗୌରବ ମଧୁସୂଦନଙ୍କ ନାମରେ ଆଇନ ମହାବିଦ୍ୟାଳୟ ପାଟଣା ବିଶ୍ୱବିଦ୍ୟାଳୟ ଅଧୀନରେ ଆରମ୍ଭ ହେଲା ଏବଂ ଓଡିଶାରୁ ଛଅ ଜଣ ଛାତ୍ର ୧୯୨୧ ମସିହାରେ ଆଇନ ପରୀକ୍ଷା ଦେଲେ । ହୃଷିକେଶ ପଟ୍ଟନାୟକ ପାଟଣା ବିଶ୍ୱବିଦ୍ୟାଳୟରୁ ଆଇନଶିକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଶିକ୍ଷା ସମାପ୍ତ କଲେ । ୧୯୨୧ ମସିହାରେ ଆଇନ ପାସ କଲା ପରେ ଖୋର୍ଦ୍ଧା ହାଇସ୍କୁଲରେ ୨ ବର୍ଷ ଶିକ୍ଷକତା କଲେ । ୨ ବର୍ଷ ପରେ ନିଜ ଗ୍ରାମ ବୋଲଗଡକୁ ଫେରିଆସିଲେ । ଏବଂ ତାଙ୍କ ପ୍ରଗାଢ ଚେଷ୍ଟାରେ ଏ ଅଞ୍ଚଳର ପ୍ରଥମ ମାଇନର ସ୍କୁଲ ଆରମ୍ଭ ହେଲା ୧୯୨୫ ମସିହାରେ । ସେ ହେଲେ ପ୍ରଥମ ପ୍ରଧାନ ଶିକ୍ଷକ ବୋଲଗଡ ମାଇନର ସ୍କୁଲର । ଏବଂ ବୋଇଗଡ ମାଇନର ସ୍କୁଲ ହେଲା ବୋଲଗଡ ଥାନା ଅଞ୍ଚଳର ପ୍ରଥମ ମାଇନର ସ୍କୁଲ ଏବଂ ଏହି ଦିନ ଠାରୁ ଇଂରେଜୀ ଶିକ୍ଷା ମୂଳ ଭିତ୍ତି ପ୍ରତିଷ୍ଠା କଲେ ହୃଷିକେଶ

ପଟ୍ଟନାୟକ । ତାର ୨ ବର୍ଷ ପରେ ୰ ବିଦ୍ୟାଧର ଚୌଧୁରୀ ମାଇନର ସ୍କୁଲରେ ଯୋଗଦାନ କଲେ । ତାପରେ ଆସିଲେ ଡିଙ୍ଗର ଗ୍ରାମର ୰ ନିମେଇ ଚରଣ ପଟ୍ଟନାୟକ, ଗୁଡୁମ ଗ୍ରାମର ୰ ଲିଙ୍ଗରାଜ ନାୟକ ଏବଂ ଗର୍ଭଣୀପଡା ଗ୍ରାମର ୰ ଅର୍ନ୍ତଯାମୀ ମହାପାତ୍ର । ଏ ସମସ୍ତେ ଏ ଅଞ୍ଚଳର ଚିର ନମସ୍ୟ । ୧୯୩୬ ମସିହାରେ ମୋର ପିତା ହୃଷିକେଶ ପଟ୍ଟନାୟକ ଅନେକ ଗୁଡିଏ କାରଣରୁ ମାଇନର ସ୍କୁଲ ତ୍ୟାଗ କରି ତତକାଳୀନ ବଲାଙ୍ଗିର ରାଜା ସାହେବ ୰ ରାଜେନ୍ଦ୍ର ନାରାୟଣ ସିଂହ ଦେଓଙ୍କ ଅନୁରୋଧ କ୍ରମେ ବଲାଙ୍ଗିର ଯାଇ ପୃଥ୍ୱିରାଜ ହାଇସ୍କୁଲରେ ଶିକ୍ଷକତା କଲେ । ଏ ସମୟକୁ ନିରାକାରପୁର ନିବାସୀ ୰ ଆନନ୍ଦ ଚନ୍ଦ୍ର ରଥ ମାଇନର ସ୍କୁଲରେ ଯୋଗଦାନ କରିସାରିଲେଣି । ୧୯୪୧ ମସିହାରେ ଏଠାରେ ଏକ ହାଇସ୍କୁଲ ଖୋଲିବା ପାଇଁ ତାଙ୍କର ଉଦ୍ୟମ ଆରମ୍ଭ ହେଲା ଏବଂ ୧୯୪୨ ମସିହାରେ ଏହା ପୂର୍ଣ୍ଣାଙ୍ଗ ରୂପରେଖ ନେଲା । ଉଦ୍ୟମର ଅଗ୍ରରେ ରହିଲେ ୰ ଆନନ୍ଦ ଚନ୍ଦ୍ର ରଥ, ୰ ବିଦ୍ୟାଧର ପଟ୍ଟନାୟକ (ବୋଲଗଡ) କ୍ଷେତ୍ରମୋହନ ପଟ୍ଟନାୟକ (ବୁଡା), ୰ ମଧୁସୂଦନ ମହାପାତ୍ର ଛୋଟରାୟ (ଖଜୁରିଆ), ୰ ରଘୁନାଥ ପାହାଡାସିଂହ (ଗୋବର୍ଦ୍ଧନପୁର) ଏବଂ ସର୍ବୋପରି ସେ ସମୟର ବିରଣାଙ୍କୀ ଜମିଦାର ୰ ବାମନ ଚନ୍ଦ୍ର ମହାପାତ୍ର । ସଭାରେ କ୍ଷେତ୍ରମୋହନ ବାବୁ ବାମନ ମହାପାତ୍ରଙ୍କ ବେକରେ ଫୁଲମାଳ ଦେଇ ସମସ୍ତ ଆର୍ଥିକ ବୋଝ ସମ୍ଭାଳିବା ପାଇଁ ଅନୁରୋଧ କଲେ । ସେ ମଧ ତାହାକୁ ଆନନ୍ଦରେ ଗ୍ରହଣ କରିଥିଲେ । ହାଇସ୍କୁଲ ଆରମ୍ଭ ହେଲା । ପରାଧୀନ ଭାରତରେ ଏ ଅଞ୍ଚଳର ପ୍ରଥମ ହାଇସ୍କୁଲ ପ୍ରତିଷ୍ଠା ହେଲା । ଏହା ପରେ ପରେ ସ୍ୱାଧୀନ ଭାରତରେ ବିଭିନ୍ନ ସ୍ଥାନରେ ମାଇନର ସ୍କୁଲ ଏବଂ ହାଇସ୍କୁଲ ପ୍ରତିଷ୍ଠା ଆରମ୍ଭ ହୋଇଗଲା । ଲେଖାଟିକୁ ସଂକ୍ଷେପ କରିବା ପାଇଁ ମୁଁ ବାଧ ହୋଇ ମାଇନର ସ୍କୁଲ ମାନଙ୍କର ବିଶଦ ବିବରଣୀ ଦେଇପାରୁନାହିଁ । ଆସନ୍ତ ସଂଖ୍ୟାରେ ଦେବା ପାଇଁ ଚେଷ୍ଟା କରିବି । ନିମ୍ନରେ କେଉଁ ସ୍କୁଲ କେବେ ପ୍ରତିଷ୍ଠା କରାଗଲା । ତାହାର କ୍ରମ ସୂଚନା ଦେଉଛି । -

| ସ୍କୁଲର ନାମ | ପ୍ରତିଷ୍ଠା ସମୟ | ଉଦ୍ୟୋକ୍ତାଙ୍କ ନାମ |
|---|---|---|
| ୧. ଗଦାଧର ଏକାଡେମୀ, ମାଣିକାଗୋଡା | ୧୯୫୨ | ଶ୍ରୀରାଜକିଶୋର ପଟ୍ଟନାୟକ, ୰ ପର୍ଶୁରାମ ପଦାତିକରାୟ, ଗଦାଧର ମହାପାତ୍ର, ଗଙ୍ଗାଧର ମହାପାତ୍ର, ଇତ୍ୟାଦି |
| ୨. ରଘୁନାଥ ଦେବ ହାଇସ୍କୁଲ, ପିତୁକୁଳି | ୧୯୬୨ | ରାମଚନ୍ଦ୍ର ବାହିନୀପତି, କୃଷ୍ଣଚନ୍ଦ୍ର ରଥ, ଗଙ୍ଗାଧର ପାଇକରାୟ |

| ସ୍କୁଲର ନାମ | ପ୍ରତିଷ୍ଠା ସମୟ | ଉଦ୍ୟୋକ୍ତାଙ୍କ ନାମ |
|---|---|---|
| ୩. କଳାଙ୍ଗ ହାଇସ୍କୁଲ, କଳାଙ୍ଗ | ୧୯୬୫ | ୰ ସୁଦର୍ଶନ ମହାପାତ୍ର, ୰ ଦିବାକର ହୋତା, ୰ ଶେଷଦେବ ସାମନ୍ତରାୟ, ଉତ୍ସବ ପ୍ରଧାନ (ଗୋଡଭଙ୍ଗା), ବିଶ୍ୱନାଥ ସାମନ୍ତସିଂହାର (ଙ୍ଗପୁର) |
| ୪. ବାଙ୍କୋଇ ହାଇସ୍କୁଲ | ୧୯୭୧ | ଅର୍ଜୁନ ପାତ୍ର, ଲିଙ୍ଗରାଜ ପାତ୍ର, କାଳୀଚରଣ ଜୟସିଂହ, ଶଶୀଶେଖର ରାୟଗୁର । |
| ୫. ଆରିକିମା ହାଇସ୍କୁଲ | ୧୯୭୬ | ତାରେଶ୍ୱର ହୋତା, ଶଙ୍କର ପରିଡା, ଶେଷଦେବ ପଟ୍ଟନାୟକ, ଅକ୍ଷୟ ପଟ୍ଟନାୟକ, ୰ ଲିଙ୍ଗରାଜ ଜଡି, କୈଳାସ ରାୟଗୁରୁ ମହାପାତ୍ର, ପ୍ରଫୁଲ୍ଲ କୁମାର ଜଡି, ବଂଶୀଧର ପ୍ରହରାଜ |
| ୬. ସାଗରଗୁଆଁ ହାଇସ୍କୁଲ | ୧୯୭୭ | ଭିକାରୀ ଚରଣ ଶତପଥୀ, ବ୍ରଜବିହାରୀ ତ୍ରିପାଠୀ, ଜଗଦୀଶ ଚନ୍ଦ୍ର ସାହୁ, କୈଳାସ ଚନ୍ଦ୍ର ସାହୁ, ଇତ୍ୟାଦି |
| ୭. ପଞ୍ଚପଲ୍ଲୀ ହାଇସ୍କୁଲ, ମାଣିବନ୍ଧ | ୧୯୭୬ | ରଘୁନାଥ ଛୋଟରାୟ, ଅନିରୁଦ୍ଧ ଖୁଣ୍ଟିଆ, ପବିତ୍ର ବଳିୟାରସିଂହ, ପତିତ ବଳବନ୍ତରାୟ, ଭାଗ୍ୟଧର ବରାଡ, ବସନ୍ତ ଖୁଣ୍ଟିଆ |
| ୮. ଗିରିଧାରୀ ହାଇସ୍କୁଲ, କଡବ | ୧୯୭୯ | ଗିରିଧାରୀ ଜୟସିଂହ, ଚନ୍ଦ୍ରଶେଖର ପଟ୍ଟନାୟକ, କାଶୀନାଥ ବାହୁ ବଳେନ୍ଦ୍ର, ରାମଚନ୍ଦ୍ର ବଳବନ୍ତରାୟ, ତ୍ରିଲୋଚନ ଗଡବାଡ, ରତ୍ନାକର ପାଟଶାଣି, ଆକବର ତରଫଦାର, ଗୋଲମ ମୁସ୍ତଫା, ଦିବ୍ୟସିଂହ ରାଉତରାୟ, ମାଗୁଣୀ ବେହେରା, ହରିହର ସିଂହ, ମୀନକେତନ |

| ସ୍କୁଲର ନାମ | ପ୍ରତିଷ୍ଠା ସମୟ | ଉଦ୍ୟୋକ୍ତାଙ୍କ ନାମ |
|---|---|---|
| | | ବଳିୟାରସିଂହ । |
| ୯. ଗେଡିଆପଲ୍ଲି ହାଇସ୍କୁଲ | ୧୯୮୦ | ଗୌରମୋହନ ସାହୁ, ରାଜକିଶୋର ମହାପାତ୍ର, ଦେବରାଜ ମହାପାତ୍ର, ମହେଶ୍ୱର ତ୍ରିପାଠୀ |
| ୧୦. ଚତୁର୍ଭୂଜ ହାଇସ୍କୁଲ, ସଂପୁର | ୧୯୮୦ | ଗୋପୀନାଥ ପରିଜା, ବାସୁଦେବ ସୁବୁଦ୍ଧି, ହରିହର ମହାନ୍ତି, ବିଶ୍ୱନାଥ ସାମନ୍ତସିଂହାର, ଶ୍ୟାମସୁନ୍ଦର ଛୋଟରାୟ, ଭଗବାନ ମିଶ୍ର, ବ୍ରଜକିଶୋର ରାୟମହାପାତ୍ର (ଖଣ୍ଡୁରିଆ), ଭଗବାନ ମହାରଣା (କଳାଙ୍ଗ), ବେଣୁଧର ରାୟ, ନରୋତ୍ତମ ଦତ୍ତ, ହରିହର ରାୟ, ବ୍ରଜବଂଧୁ ଦତ୍ତ, କୈଳାସ ପଟ୍ଟନାୟକ, ଗୋବିନ୍ଦ ନାୟକ |
| ୧୧. ରଘୁନାଥ ବିଦ୍ୟାପୀଠ, ଟାଙ୍ଗିସାହ | ୧୯୮୧ | ରଘୁନାଥ ବେହେରା, ସଂବାରୀ ବେହେରା, ପାଣ୍ଡୁ ସାହୁ, ରମାପ୍ରସାଦ ମହାନ୍ତି, ଲକ୍ଷ୍ମଣ ସ୍ୱାଇଁ, ଭରତ ପାଇକରାୟ, ଇତ୍ୟାଦି |
| ୧୨. ଅରଖପଲ୍ଲୀ ହାଇସ୍କୁଲ | ୧୯୮୨ | ଆଦାମଅଲ୍ଲୀ ଖାଁ, ଡଃ. ମନୀରୁଦ୍ଦୀନ, ଶେଖ ତାହିରୁଦ୍ଦୀନ, ରାଜକିଶୋର ମହାପାତ୍ର, ଗୋଲାମ ମୁର୍ତାଜା ହୁସେନ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ପିତବାସ ସୁବୁଦ୍ଧି (ହରିପୁର ପାଟଣା), ହରିହର ସୁବୁଦ୍ଧି ମହାପାତ୍ର, ନାରଣଚନ୍ଦ୍ର ସାହୁ (ଘୋରଡିଆ) |
| ୧୩. ଭକ୍ତଚରଣ ବିଦ୍ୟାପୀଠ, ସାନପଦର | ୧୯୮୪ | ତ୍ରିଲୋଚନ ମହାନ୍ତି, ରାହସବିହାରୀ ବେହେରା, ରାଜକିଶୋର ବ୍ରହ୍ମା, ବିଶ୍ୱନାଥ ନାୟକ, ଜନ୍ମେଶ୍ୱର |

| ସ୍କୁଲର ନାମ | ପ୍ରତିଷ୍ଠା ସମୟ | ଉଦ୍ୟୋକ୍ତାଙ୍କ ନାମ |
|---|---|---|
| | | ଚୌଧୁରୀ, ଯୋଗୀନାଥ ନାୟକ, ରାମଚନ୍ଦ୍ର ସାହୁ |
| ୧୪. ଧଳାପଥର କଳାପଥର ବାଳିକା ବିଦ୍ୟାଳୟ | ୧୯୮୫ | ଗୌରମୋହନ ସାହୁ, ବଜରଙ୍ଗ ଲାଲ, ଭ୍ରମରବର ସାହୁ, ସୁଦର୍ଶନ ସାହୁ, ଧନେଶ୍ୱର ସୁବୁଦ୍ଧି, ବିଶ୍ୱନାଥ ସାହୁ, ବିଶ୍ୱନାଥ ସାମନ୍ତରାୟ, ବୈକୁଣ୍ଠ ନାଥ ସ୍ୱାଇଁ, ମିର୍ଜା ସର୍ଦ୍ଦାର ଅଲ୍ଲୀବେଗ |
| ୧୫. ଅସରଳା ହାଇସ୍କୁଲ, ଅସରଳା | ୧୯୮୮ | ପ୍ରଫୁଲ୍ଲ ପଟ୍ଟନାୟକ, ପୂର୍ଣ୍ଣଚନ୍ଦ୍ର ପାଣ୍ଡେ, ବାନାମ୍ବର ପଟ୍ଟଯୋଶୀ, ପ୍ରଫୁଲ୍ଲ ସୁନ୍ଦରାୟ ଏବଂ ଗ୍ରାମବାସୀ |
| ୧୬. ଶ୍ୟାମସୁନ୍ଦର ବିଦ୍ୟାପୀଠ, ଡାବରଧୁଆ | ୧୯୮୫ | ରାଧାମୋହନ ସାହୁ, ଶରତ ପରିଡ଼ା, ଦାସରଥି ମହାପାତ୍ର, ସତ୍ୟବାଦୀ ଚୌଧୁରୀ, ଘୋରୀ ଖାଁ, ରଘୁନାଥ ମହାପାତ୍ର । |
| ୧୭. ଆଞ୍ଚଳିକ ହାଇସ୍କୁଲ, ବେଉଳ | | ଦାଶରଥି ଦାସ, ଭାଗୀରଥି ସାହୁ, ପଣ୍ଡିମେଶ୍ୱର ନାୟକ, ଅନ୍ତର୍ଯ୍ୟାମୀ ମହାପାତ୍ର, ଭ୍ରମର ଦଳେଇ, ଗୋଲଖ ସାହୁ । |
| ୧୮. ଠଣାପଲ୍ଲୀ ହାଇସ୍କୁଲ | | ରତ୍ନାକର ମହାପାତ୍ର, ମାଗୁଣୀ ମହାପାତ୍ର, ଲକ୍ଷ୍ମଣ ସାହୁ, ଉଦୟନାଥ ସୁବୁଦ୍ଧି, ଭାଗୀରଥି ଦାସ । |

ଏହାପରେ ମଧ ଅନେକ ହାଇସ୍କୁଲ ପ୍ରତିଷ୍ଠା ହୋଇଗଲାଣି । ଲୋକମାନଙ୍କର ହାଇସ୍କୁଲ କରିବାର ନିଶା ପ୍ରାୟ ୧୯୮୫ ମସିହା ପର୍ଯ୍ୟନ୍ତ ଖୁବ ଜୋରସୋର ଥିଲା ।

କଲେଜ କରିବାର ନିଶା ଓଡିଶାରେ ପ୍ରାୟ ୧୯୭୫ ମସିହାରୁ ଆରମ୍ଭ ହୋଇଗଲା । ୧୯୭୯ ବେଳକୁ ଆମ ପଡୋଶୀ ଅଞ୍ଚଳ ବେଗୁନିଆ, ରଣପୁର, ରାଜସୁନାଖଳାରେ କଲେଜ ପ୍ରତିଷ୍ଠା ହୋଇଗଲା । ବୋଲଗଡରେ କିନ୍ତୁ କଲେଜ ପ୍ରତିଷ୍ଠା ହୋଇପାରିନଥିଲା । ଅନେକ ତତକାଳୀନ ରାଜ୍ୟସ୍ତରୀୟ ନେତୃବୃନ୍ଦ ଆସି

ବୋଲଗଡରେ କଲେଜ କରିବା ପାଇଁ ଘୋଷଣା କରିଯାଇଥିଲେ ମଧ ତାହା ସାକାର ହୋଇନଥିଲା । ୧୯୭୯ ମସିହାରେ ଜନୈକ ଅବସାର ପ୍ରାପ୍ତ ସାମରିକ କର୍ମଚାରୀ କଲେଜ କରିବା ପାଇଁ ୧ ଲକ୍ଷ ଟଙ୍କା ଦାନ କରିବା ପାଇଁ ପ୍ରକାଶ କରିଥିଲେ ମଧ ଟଙ୍କା ଦେଇ ନପାରିବାରୁ କଲେଜ ଖୋଲା ନୋହିଲା । ଏହା ଆମ୍ଭ ମାନଙ୍କୁ ଅନେକ ମର୍ମାହତ କରିଥିଲା । କଲେଜ କରିବା ନିଶା ମଉଳି ପଡିଥିଲା । ହଠାତ୍ ୧୯୮୦ ମସିହାରେ ମୋର ଅନ୍ତରଙ୍ଗ ବନ୍ଧୁ କନିଷ୍ଠ ଗଦାଧର ଷଡଙ୍ଗୀ ଏକଦା ମୋତେ ଏଠାରେ ଏକ ସାଧାରଣ ମହାବିଦ୍ୟାଳୟ ପରିବର୍ତ୍ତେ ଏକ ଟ୍ରେନିଙ୍ଗ ମହାବିଦ୍ୟାଳୟ ସ୍ଥାପନ କରିବା ପାଇଁ ପ୍ରସ୍ତାବ ବାଢିବସିଲେ । ୧୯୮୦ ମସିହାରେ ସରକାରଙ୍କ ବିଭିନ୍ନ କଟକଣା ମଧରେ ବେସରକାରୀ ସ୍ତରରେ ଏକ ଟ୍ରେନିଙ୍ଗ ମହାବିଦ୍ୟାଳୟ ଖୋଲିବା କେତେଦୂର ସମ୍ଭବ ହୋଇପାରିବ ଏହି ପ୍ରଶ୍ନ ମଧ ମୋ ମନକୁ ଆନ୍ଦୋଳିତ କରିଥିଲା । ଦୁଇ ଜଣଙ୍କ ମଧରେ ଅନେକ ଆଲୋଚନା ହେଲା ପରେ ଟ୍ରେନିଂ ମହାବିଦ୍ୟାଳୟ ଖୋଲିବା ପାଇଁ ଚେଷ୍ଟା ଚାଲୁ ରଖିବା ପାଇଁ ଦୁଇ ଜଣ ଯାକ ନିଷ୍ପତ୍ତି କଲୁ । ତଦନୁସାରେ ଦୁଇଜଣ ଭୁବନେଶ୍ୱର ଯାଇ ପ୍ରଥମେ ସର୍ବଶ୍ରୀ ଶତ୍ରୁଘ୍ନ ନାଥ (ଅବସରପ୍ରାପ୍ତ ଶିକ୍ଷାବିତ୍), ଗୋଷ୍ଠବିହାରୀ କାନୁନଗୋ (ଅଧକ୍ଷ ଆଞ୍ଚଳିକ ଶିକ୍ଷା ମହାବିଦ୍ୟାଳୟ, ଭୁବନେଶ୍ୱର), ଶ୍ରୀ ଦେବେନ୍ଦ୍ର ଚନ୍ଦ୍ର ମିଶ୍ର (ଅବସରପ୍ରାପ୍ତ ଉପ-କୁଳପତି) ଏବଂ ଏସ.ସି.ଇ.ଆର.ଟି. ର ଅନେକ ଶିକ୍ଷାବିତ ମାନଙ୍କ ସାଙ୍ଗରେ ଆଲୋଚନା କରି ଏହି ମହାବିଦ୍ୟାଳୟ ପ୍ରତିଷ୍ଠା ସମ୍ଭବ ବୋଲି ଜାଣିପାରିଲୁ । ଏହାପରେ ତତକାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ଗଙ୍ଗାଧର ମହାପାତ୍ରଙ୍କ ସଙ୍ଗରେ ମଧ ଆମ୍ଭ ଦୁଇ ଜଣଙ୍କର ଆଲୋଚନା ହୋଇ ଅନୁକୂଳ ମନ୍ତବ୍ୟ ପାଇଥିଲୁ । ତାପରେ କଲେଜ ସମ୍ପର୍କରେ ମୋର ଦୁଇବନ୍ଧୁ ଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ର ଏବଂ ଶ୍ରୀ ରବୀନ୍ଦ୍ର କୁମାର ପରିଡା ଯୋଗଦାନ କଲେ । ସମସ୍ତେ ଏକତ୍ରିତ ହୋଇ ତତକାଳୀନ ଅର୍ଥନୀତି ପ୍ରଫେସର ଶ୍ରୀଯୁକ୍ତ ବୈଦ୍ୟନାଥ ମିଶ୍ରଙ୍କ ସଙ୍ଗେ ବହୁତ ଆଳାପ ଆଲୋଚନା ହୋଇ କଲେଜ କରିବା ପାଇଁ ସମୂହ ଆବେଦନ ତତକାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଆଗରେ ପ୍ରସ୍ତାବ ବାଢିବା ପାଇଁ ନିଷ୍ପତ୍ତି ହେଲା । ବୈଦ୍ୟନାଥ ବାବୁ ଓ ଜାନକୀ ବାବୁଙ୍କ ମଧରେ ଆଲୋଚନା ହେବା ପରେ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଜାନକୀ ବଲ୍ଲଭ ପଟ୍ଟନାୟକ ବୋଲଗଡରେ ଟ୍ରେନିଙ୍ଗ କଲେଜ କରିବା ପାଇଁ ସମ୍ମତି ପ୍ରଦାନ କଲେ । ତାଙ୍କରି ଆଶୀର୍ବାଦରୁ ବୋଲଗଡରେ ବେସରକାରୀ ସ୍ତରରେ ଖୋଲାଯାଇ ଓଡିଶା ଶିକ୍ଷା ଇତିହାସରେ ଏକ ମାଇଲ ଖୁଣ୍ଟ ପ୍ରତିଷ୍ଠା କରାଗଲା । ଏହା ପରେ ପରେ ୧୯୯୦ ମସିହାରେ ଗୋପାଳପୁର ପଞ୍ଚାୟତ ଅନ୍ତର୍ଗତ ଦେଉଳି ଗ୍ରାମରେ ପୂର୍ବତନ ବିଧାୟକ ୰ ଗଙ୍ଗାଧର ପାଇକରାୟ, ରଘୁନାଥ ପାଇକରାୟ (କଡବ), ଭାଗୀରଥି ସାହୁ, ପଣ୍ଡିମେଶ୍ୱର ନାୟକ, ଭାଗିରଥି

ବେହେରା, ସାରଙ୍ଗଧର ଜେନା, ଜନ୍ମେଶ୍ୱର ଖୁଣ୍ଟିଆ ଙ୍କ ଉଦ୍ୟମରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠା ହେଲା । ସେହି ବର୍ଷ ମଧ ହାଟବସ୍ତରେ କାଳିଚରଣ ଜୟସିଂହଙ୍କ ଅକ୍ଲାନ୍ତ ଉଦ୍ୟମ ଏବଂ ତାଙ୍କ ସାଥିକୁ ଦୁର୍ଗାଚରଣ ସେନାପତି, ସର୍ବେଶ୍ୱର ରାଉତରାୟ, କାଶୀନାଥ ଖଟେଇ, ପ୍ରମୋଦ ମହାପାତ୍ର, ଜୟକୃଷ୍ଣ ଫତେସିଂହ (ବାଙ୍କୋଇ), ଶତ୍ରୁଘ୍ନ ପ୍ରଧାନ (ଖଲିକୋଟ) ଓ ବିଜୟ ସାହୁ (ହାଟବସ୍ତ)ଙ୍କ ସହଯୋଗରେ ହାଟବସ୍ତରେ ଏକ ମହାବିଦ୍ୟାଳୟ ଆରମ୍ଭ ହେଲା । ୧୯୮୦-୮୧ ମସିହାରେ ଶ୍ରୀ କାଳିଚରଣ ଜୟସିଂହଙ୍କ ପ୍ରବଳ ଉଦ୍ୟମ କ୍ରମେ ଏବଂ ତତକାଳୀନ ସାସଂଦ ୰ ଚିନ୍ତାମଣି ପାଣିଗ୍ରାହୀଙ୍କ ଅକୁଣ୍ଠିତ ସହଯୋଗରେ ହାଟବସ୍ତରେ ଏକ ସି.ଟି. ସ୍କୁଲ ସ୍ଥାପନ ହେଲା । ଫଳରେ ଶହ ଶହ ଛାତ୍ର ଏହି ଅନୁଷ୍ଠାନରୁ ଉତ୍ତୀର୍ଣ୍ଣ ହୋଇ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଶିକ୍ଷକତା କରିବାର ସୁଯୋଗ ପାଇଲେ । . . . . . . . . ୧୯୮୦ ମସିହାରେ ପ୍ରଥମ ବେସରକାରୀ ଶିକ୍ଷା ମହାବିଦ୍ୟାଳୟ ବୋଲଗଡରେ ଆରମ୍ଭ ହେବା ପରେ ସରକାର ବିଭିନ୍ନ ଚାପର ବଶବର୍ତ୍ତୀ ହୋଇ ଓଡିଶାର ଅନେକ ସ୍ଥାନରେ ବେସରକାରୀ ସ୍ତରରେ ଶିକ୍ଷା ମହାବିଦ୍ୟାଳୟମାନ ଖୋଲିବା ପାଇଁ ବାଧ ହେଲେ । ତେଣୁ ମନରେ ଶଙ୍କା ଉଠିଲା ଯେ, ଏ ମହାବିଦ୍ୟାଳୟ ମାନଙ୍କର ସ୍ଥାୟୀତ୍ୱ କେତେ ବର୍ଷ । ସେହି ଅନୁସାରେ ଆମେ ଚାରି ବନ୍ଧୁ ଗଦାଧର ଷଡଙ୍ଗୀ, ଭାସ୍କର ଚନ୍ଦ୍ର ମହାପାତ୍ର, ରବୀନ୍ଦ୍ର କୁମାର ପରିଡା ଓ ମୁଁ ମିଶି ନିଷ୍ପତ୍ତି କଲୁ ଯେ, ଏଠାରେ ଏକ ବିଜ୍ଞାନ ଓ କଳା ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ । ସେହି ଅନୁସାରେ ୧୯୮୧ ମସିହାରେ ବୋଲଗଡରେ କଳା ମହାବିଦ୍ୟାଳୟ ଓ ୧୯୮୨ ମସିହାରେ ବିଜ୍ଞାନ ମହାବିଦ୍ୟାଳୟ ଖୋଲିଲା । ମହାବିଦ୍ୟାଳୟ ପ୍ରତିଷ୍ଠା କରିବାରେ ଅନେକ ସ୍ଥାନୀୟ ଲୋକଙ୍କର ସାହାଯ୍ୟ ଓ ସହାନୁଭୂତି ନିଶ୍ଚିତ ଭାବରେ ମହନୀୟ । ସମସ୍ତ ବିଷୟର ବର୍ଣ୍ଣନା କଲେ ଲେଖାଟିର କାୟା ବୃଦ୍ଧି ହୋଇଯିବ ବୋଲି ଚାହୁଁନାହିଁ, ଭବିଷ୍ୟତରେ ସୁଯୋଗ ପାଇଲେ ସମସ୍ତ ବିଷୟ ବର୍ଣ୍ଣନା କରିବି ।

ନବୋଦୟ ବିଦ୍ୟାଳୟ ଏବଂ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନ -

ବୁଢା ଡାବରଧୂଆ ଗ୍ରାମ ମଧ୍ୟରେ ପୂର୍ବରୁ ନିର୍ମିତ ହୋଇଥିବା ମିନି ଆଇ.ଟି.ଆଇ ଗୃହରେ ଖୋର୍ଦ୍ଧା ଜିଲ୍ଲାର ପ୍ରଥମ ନବୋଦୟ ସ୍କୁଲ ୨ ବର୍ଷ ହେଲା ଆରମ୍ଭ ହୋଇଅଛି । ଏହାଛଡା ବୋଲଗଡ, ଦେଉଳୀ ଓ ଭୀମପଡା ଗ୍ରାମରେ ବିବେକାନନ୍ଦ ଶିକ୍ଷା କେନ୍ଦ୍ର, କୁମ୍ଭାରୀ ଛକରେ ଭକ୍ତଚରଣ ଇଂରାଜୀ ମିଡିୟମ ସ୍କୁଲ, ପିତୃକୁଳୀ ଠାରେ ବୀଣାପାଣୀ ଶିଶୁ ମନ୍ଦିର, ଧଳାପଥର ଏବଂ ବୋଲଗଡ ଠାରେ ସରସ୍ୱତୀ ଶିଶୁ ମନ୍ଦିର ପ୍ରତିଷ୍ଠିତ ହୋଇଅଛି । ବାଙ୍କୋଇ ଗ୍ରାମରେ ଶ୍ରୀ ମାଧବ ବିଶ୍ୱାଳଙ୍କର ସମ୍ପୂର୍ଣ୍ଣ

ସହଯୋଗରେ 'ସାଧନା' ନାମରେ ଏକମାତ୍ର ବୈଷୟିକ ଶିକ୍ଷାନୁଷ୍ଠାନ (ଆଇ.ଟି.ଆଇ) ହୋଇଅଛି ।



## ବିଶିଷ୍ଟ ବ୍ୟକ୍ତିତ୍ୱ

ଏ ଅଞ୍ଚଳର ପ୍ରାଚୀନ କବି, ଲେଖକ ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କ ଛଡା ଅନ୍ୟାନ୍ୟ ବିଶିଷ୍ଟ ବ୍ୟକ୍ତିଙ୍କ ଛଡା ବିଗତ ୧୦୦ ବର୍ଷ ମଧ୍ୟରେ ବହୁ ନାମଧେୟ ବ୍ୟକ୍ତି ନିଜର ପ୍ରତିଷ୍ଠା ବଳରେ ଉଚ୍ଚାସନ ଲାଭ କରିବା ସଂଗେ ସଂଗେ ଅଞ୍ଚଳର ବହୁ ଉନ୍ନତିରେ ସହାୟକ ହୋଇଛନ୍ତି । ସେମାନଙ୍କ ମଧ୍ୟରେ ଇଂରେଜୀ ଅମଳର ପୂର୍ବତନ ଶାସକ ୰ ବାବୁ ସଦାନନ୍ଦ ପଟ୍ଟନାୟକ ଦିଘିରୀ ଏବଂ ୰ ମୁରଲୀଧର ପଟ୍ଟନାୟକ ଆରିକିମା ସୁନାମ ଧନ୍ୟ ଅଟନ୍ତି । ରାଜ୍ୟ ପ୍ରଶାସନରେ ପ୍ରମୁଖ ଭୂମିକା ଗ୍ରହଣ କରି ଅଞ୍ଚଳ ବାସୀଙ୍କର ବହୁ ଉପକାର ସାଧନ କରିଅଛନ୍ତି । ସ୍ଥାନୀୟ ବୋଲଗଡ ଅଞ୍ଚଳର ଯୁବକ ମାନଙ୍କୁ ସରକାରୀ କର୍ମସଂସ୍ଥାନ (ସରକାରୀ ପ୍ରାଥମିକ ଶିକ୍ଷକ) ଯୋଗାଇବାରେ ବିଶେଷ ନାମ ଅର୍ଜନ କରିଥିବା ବଲାଙ୍ଗୀରରେ ଅବସ୍ଥାପିତ ପୂର୍ବତନ ଡି.ଆଇ, ବୋଲଗଡ ଗ୍ରାମର ୰ ସାଧୁଚରଣ ଜଗଦେବ, ପୋଲିସ ଚାକିରିରେ ବୋଲଗଡ ଗ୍ରାମର ୰ ଡାକ୍ତର ଦାମୋଦର ପଟ୍ଟନାୟକ, ମେଲେରିଆ କର୍ମୀ ନିଯୁକ୍ତିରେ ଅରଖପଲ୍ଲୀ ଗ୍ରାମର ପୂର୍ବତନ ଜିଲ୍ଲା ମେଲେରିଆ ଅଧିକାରି ୰ ଅବଦୁଲ ହମିଦ ଖାଁ, ସମବାୟ ସମିତିରେ ସଂପାଦକ ଚାକରି ନିଯୁକ୍ତିରେ ବୋଲଗଡର ୰ କାହ୍ନୁଚରଣ ଯତି, ରାଜ୍ୟ ସରକାରଙ୍କ ନିଯୁକ୍ତି ଅଧିକାରୀ ଭାବରେ ବୋଲଗଡ ଗ୍ରାମର ଶ୍ରୀଯୁକ୍ତ ଉପେନ୍ଦ୍ର ସିଂହଙ୍କର ବିଶେଷ ନାମ ରହିଅଛି । ଅଦ୍ୟାବଧି ସାଧାରଣରେ ସେମାନଙ୍କର ସୁନାମ ଆଲୋଚନା ହେଉଅଛି ।

ରାଜ୍ୟସ୍ତରରେ ଏବଂ ଜାତୀୟ ସ୍ତରରେ ସୁନାମ ଅର୍ଜନ କରିଥିବା ବିଶିଷ୍ଟ ଅର୍ଥନିତିଜ୍ଞ ତଥା ଶିକ୍ଷାବିତ ପ୍ରଫେସର ଡଃ. ବୈଦ୍ୟନାଥ ମିଶ୍ର ଦିବ୍ୟସିଂହପୁର ଶାସନର ବାସିନ୍ଦା ଅଟନ୍ତି । ଶିକ୍ଷକ ନେତା ତଥା ରାଜ୍ୟ ମାଧ୍ୟମିକ ଶିକ୍ଷକ ସଂଘର ବହୁ ବର୍ଷ ଧରି ସଭାପତି ଭାବରେ ମାଣିକାଗୋଡା ଗ୍ରାମର ରାଜକିଶୋର ପଟ୍ଟନାୟକ ଏକାଧିକ ଥର ରାଜ୍ୟ ଆଡଭୋକେଟ ଜେନେରାଲ ଭାବରେ ଅଧିଷ୍ଠିତ ଆରିକିମା ଗ୍ରାମର ବାରିଷ୍ଟର

୰ ବୀରେନ୍ଦ୍ର ମୋହନ ପଟ୍ଟନାୟକ, ରାଜ୍ୟ ମୁଖ୍ୟ ବନ ସଂରକ୍ଷକ ଭାବରେ ଏକାଧିକ୍ରମେ ୧୪ ବର୍ଷ ଧରି ଅବସ୍ଥାପିତ ବୋଲଗଡର ୰ ଦୟାନିଧି ଚୌଧୁରୀ (Unique in Asia) ଭାବରେ ପରିଚିତ । ଦିବ୍ୟସିଂହପୁର ଶାସନର ହରେକୃଷ୍ଣ ହୋତା, ଲୋକନାଥ ଷଡଙ୍ଗୀ ଏବଂ କଳାଙ୍ଗ ଗ୍ରାମର ରାଧାନାଥ ହୋତା ଶିକ୍ଷା ବିଭାଗର ଉଚ୍ଚ ପଦାଧିକାରୀ ଭାବେ ଅବସର ଗ୍ରହଣ କରିଅଛନ୍ତି । ମାଣିକାଗୋଡା ଗ୍ରାମର ଉଦୟନାଥ ପୃଷ୍ଟି ରାଜ୍ୟ ଫୁଟବଲ ଏବଂ ବାସ୍କେଟ ବଲ କୋଚ, ଅବଦୁଲ ହମିଦ ଖାଁ ଓଡିଶାର ଜଣେ ଲବ୍ଧପ୍ରତିଷ୍ଠିତ ଶିକ୍ଷକ, ହୃଦୟାନନ୍ଦ ପୃଷ୍ଟି, ବୀରକିଶୋର ପଟ୍ଟନାୟକ, ଲକ୍ଷ୍ମଣ ବିଶ୍ୱାଳ, ଚନ୍ଦ୍ରଶେଖର ସାହୁ, ଖଣ୍ଡୁରିଆ ଗ୍ରାମର ପ୍ରସନ୍ନ କୁମାର ହୋତା, ବୋଲଗଡ ଗ୍ରାମର ଶ୍ୟାମଘନ ପୃଷ୍ଟି, ସଂପୁର ଗ୍ରାମର ପୂର୍ଣ୍ଣଚନ୍ଦ୍ର ପଟ୍ଟନାୟକ, ହରିପୁର ଶାସନର ଘନଶ୍ୟାମ ତ୍ରିପାଠୀ ପ୍ରମୁଖ ଅବସର ଗ୍ରହଣ ପରେ ଗ୍ରାମ ଉନ୍ନତିରେ ଅଗ୍ରଣୀ ଭୂମିକା ଗ୍ରହଣ କରିଛନ୍ତି । ରୋଳସିଂହ ଗ୍ରାମର ଶ୍ରୀ ହାଡିବନ୍ଧୁ ନାୟକ (I.A.S) ପଶ୍ଚିମ ବଙ୍ଗ ସରକାରଙ୍କ ଅଧିନରେ ବହୁ ବିଭାଗର ଉଚ୍ଚ ପଦବୀରେ ଅଧିଷ୍ଠିତ ହୋଇ ନିକଟରେ Principal Secretary cum Commissioner ଭାବରେ ଅବସର ଗ୍ରହଣ କରିଅଛନ୍ତି । ବର୍ତ୍ତମାନ ସାନକୁମାରୀ ଗ୍ରାମର ପୂର୍ଣ୍ଣେନ୍ଦୁ କୁମାର ସେନାପତି (I.P.S) ରାଜ୍ୟ ଅଗ୍ନି ସେବା ଶ୍ରମର ଡି.ଜି. ପଦବୀରୁ ଅବସର ଗ୍ରହଣ କରିଛନ୍ତି । ସାନପଦର ଗ୍ରାମର ଶ୍ରୀକାନ୍ତ ପାଇକରାୟ (I.A.S) ବିଭିନ୍ନ ଉଚ୍ଚ ପଦରେ ଅଧିଷ୍ଠିତ ହୋଇ କାର୍ଯ୍ୟ କରୁଛନ୍ତି । ଡୁଡା ଗ୍ରାମର ପୂର୍ବତନ ପୋଲିସ ଏସ.ପି. ମୁରଲୀମୋହନ ଦାସ, ପୂର୍ବତନ ଶିକ୍ଷକ ବିକ୍ରମ ସ୍ୱାଇଁ ବହୁ ଜନ ପ୍ରଂଶସିତ । ସଂପୁର ଗ୍ରାମର ଶ୍ରୀ ଭଗବାନ ଜୟସିଂହ ରାଜ୍ୟ ଉଚ୍ଚ ଶିକ୍ଷା ବିଭାଗର ଉପ ନିର୍ଦ୍ଦେଶକ ରହିବା ପରେ ବର୍ତ୍ତମାନ ଇଂରାଜୀ ପ୍ରାଧାପକ ଭାବରେ ପୁରୀ ସାମନ୍ତ ଚନ୍ଦ୍ର ଶେଖର କଲେଜରେ କାର୍ଯ୍ୟରତ । ସେହି ଗ୍ରାମର କୃଷ୍ଣଚନ୍ଦ୍ର ମିଶ୍ର ବର୍ତ୍ତମାନ ରାଜ୍ୟ ସାଧାରଣ ପ୍ରଶାସନ (G.A.) ର ବରିଷ୍ଠ ଅତିରିକ୍ତ ସଚିବ (Additional Secretary) ରୁ ଅବସର ଗ୍ରହଣ କରିଛନ୍ତି ଏବଂ ତାଙ୍କର ବଡଭାଇ ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ର ପୋଲିସ ଡି.ଏସ.ପି. ପଦରୁ ଅବସର ଗ୍ରହଣ କରିଛନ୍ତି । ସେହି ଗ୍ରାମର ଚକ୍ରଧର ପ୍ରଧାନ ଜଣେ ବରିଷ୍ଠ କୃଷି ଅଧିକାରୀ ଭାବରେ ଅବସର ଗ୍ରହଣ କରିଛନ୍ତି । ସାନପଦର ଗ୍ରାମର ଶ୍ରୀ ରାସବିହାରୀ ବେହେରା ବରିଷ୍ଠ ଟେଲିକମ ଇଞ୍ଜିନିୟର, ଅରଖପଲ୍ଲୀ ଗ୍ରାମର ଇହସନୁଲା ଖାଁ ମଧ୍ୟ ଟେଲିକମ ବିଭାଗର ଜଣେ ବରିଷ୍ଠ ଇଞ୍ଜିନିୟର ଭାବରେ କାର୍ଯ୍ୟରତ । ଓଡିଶା ନିମ୍ନ ମାଧମିକ ଶିକ୍ଷକ ସଂଘର ରାଜ୍ୟ ସ୍ତରୀୟ ନେତା ଭାବରେ ପାଟବନ୍ଧ ଗ୍ରାମର ସୁମନ୍ତ ଛୋଟରାୟ ପରିଗଣିତ । ରାଜ୍ୟର ବିଶ୍ୱ ହିନ୍ଦୁ ପରିଷଦ ବନବାସି କଲ୍ୟାଣ ଆଶ୍ରମ ରାଷ୍ଟ୍ରୀୟ ସ୍ୱୟଂସେବକ ସଂଘର ମୁଖ୍ୟ ସଂଗଠକ ଅଧୁନା ରାଜ୍ୟରେ ପରିଚାଳିତ ସମସ୍ତ ସରସ୍ୱତୀ ଶିଶୁ ମନ୍ଦିର ନିୟନ୍ତ୍ରକ

ସଂସ୍ଥା ଶିକ୍ଷା ବିକାଶ ସମିତି ଓଡିଶାର ସଂପାଦକ ବିଶିଷ୍ଟ ସମାଜ ସେବୀ ଚିରକୁମାର ୰ ରଘୁନାଥ ସେଠୀ ବୋଲଗଡ ଗ୍ରାମର ବାସିନ୍ଦା ଅଟନ୍ତି । ଭାରତୀୟ ଶିକ୍ଷା ପରିଷଦ ଓଡିଶା ଦ୍ୱାରା ପରିଚାଳିତ ରାଜ୍ୟର ସମସ୍ତ ବିବେକାନନ୍ଦ ଶିକ୍ଷା କେନ୍ଦ୍ରର ମୁଖ୍ୟ କାର୍ଯ୍ୟ ନିର୍ବାହୀ ଶ୍ରୀ ବ୍ରଜବନ୍ଧୁ ମହାପାତ୍ର କଳାଙ୍ଗ ଗ୍ରାମର ନିବାସୀ ଅଟନ୍ତି । ରାଜ୍ୟ ମୃତ୍ତିକା ସଂରକ୍ଷଣ ବିଭାଗର ପ୍ରତିଷ୍ଠାତା ନିର୍ଦ୍ଦେଶକ ୰ ଶ୍ୟାମାନନ୍ଦ ପଟ୍ଟନାୟକ ଏବଂ ରାଜ୍ୟ ଜଳସେଚନ ବିଭାଗର ପୂର୍ବତନ ମୁଖ୍ୟଯନ୍ତ୍ରୀ ଶ୍ରୀଯୁକ୍ତ ମଦନ ପଟ୍ଟନାୟକ ବନ ବିଭାଗର ଉଚ୍ଚ ପଦାଧିକାରୀ ହରମୋହନ ପଟ୍ଟନାୟକ ଦିଘିରି ଗ୍ରାମର ବାସିନ୍ଦା ଅଟନ୍ତି । ସେହି ଗ୍ରାମର ଡଃ. ସୁରେନ୍ଦ୍ରନାଥ ପଟ୍ଟନାୟକ ଜଣେ ଆର୍ନ୍ତଜାତିକ ଖ୍ୟାତି ସମ୍ପନ୍ନ ଅଧ୍ୟାପକ ତଥା ଅନୁବିଜ୍ଞାନୀ ଭାବରେ ସୁପରିଚିତ । ୰ ଡାକ୍ତର ଆଦାମ ଅଲ୍ଲୀ ବେଗ ମାଣିକାଗୋଡା ଏବଂ ବିଶିଷ୍ଟ ଶିଶୁ ଚିକିତ୍ସକ ଡାକ୍ତର ଗଦାଧର ଷଡଙ୍ଗୀ ଦିବ୍ୟସିଂହପୁର ଶାସନର ବାସିନ୍ଦା ଅଟନ୍ତି । ଡାକ୍ତର କାଳୀ ପ୍ରସାଦ ମଙ୍ଗରାଜ ଗ୍ରାମ ସାନପଦର ଜଣେ ସମାଜ ସେବୀ ଏବଂ ଶିକ୍ଷାପ୍ରେମୀ ଭାବରେ ଖୋର୍ଦ୍ଧା ମହିଳା ମହାବିଦ୍ୟାଳୟର ପ୍ରତିଷ୍ଠାତା ସଂପାଦକ ଭାବରେ ସୁନାମ ଅର୍ଜନ କରିଛନ୍ତି । ଅରଖପଲ୍ଲୀ ଗ୍ରାମର ବରିଷ୍ଠ ଜଳସେଚନ ବିଭାଗର ପୂର୍ବତନ ନିର୍ବାହୀ ଯନ୍ତ୍ରୀ ଙ୍କ ରହମତୁଲ୍ଲା ଖାନ ନିଜର କାର୍ଯ୍ୟକାଳ ଶେଷ କରି ଅବସର ଗ୍ରହଣ କରିଛନ୍ତି । ମାଣିକାଗୋଡା ଗ୍ରାମର ଲତିଫ ଖାନ୍ ଓ ଜଗନ୍ନାଥ ବିଶ୍ୱାଳ, ଖଣ୍ଡୁରିଆ ଗ୍ରାମର ବିରୁପାକ୍ଷ ହୋତା, ବୋଲଗଡର ଡଃ. ରବୀନ୍ଦ୍ର କୁମାର ଚୌଧୁରୀ, ପାଟବନ୍ଧର ଡଃ. ରୋହିଣୀକାନ୍ତ ପଟ୍ଟନାୟକ, ଆରିକିମାର ଡଃ. ପ୍ରଫୁଲ କୁମାର ଯତି, ଦେଉଳିର ଡଃ. ନରସିଂହ ନାୟକ, ଅରଖପଲ୍ଲୀ ଗ୍ରାମର ଜୟପୁର ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ ଶେଖ ହାପିଜ ଉଦ୍ଦିନ, ଧଳାପଥର ଗ୍ରାମର ପୂର୍ବତନ ଅଧ୍ୟକ୍ଷ ଭରତ ଚନ୍ଦ୍ର ସାହୁ, ମାଳିସାହିର ଡଃ. ହରିହର ମହାପାତ୍ର, ଢୋଳପଥର ଗ୍ରାମର ଡଃ. ବାନାମ୍ବର ମାର୍ଥା ଅଧ୍ୟାପକ ଏବଂ ଅଧ୍ୟକ୍ଷ ଭାବରେ ମହାବିଦ୍ୟାଳୟରେ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି । ଅରଖପଲ୍ଲୀ ଗ୍ରାମର ଡାକ୍ତର କିମତ ଅଲ୍ଲୀ ଏବଂ ଦିବ୍ୟସିଂହପୁର ଶାସନର ବିଶିଷ୍ଟ ଦନ୍ତ ଚିକିତ୍ସକ ୰ ମୁକୁନ୍ଦ ମହାପାତ୍ର, ଧଳାପଥର ଗ୍ରାମର ଆମେରିକାରେ ଅବସ୍ଥାପିତ ଡଃ. କାଶିନାଥ ସାହୁ, ବୋଲଗଡ ଗ୍ରାମର ଡଃ. ଅରକ୍ଷିତ ଯତି କନ୍ଧମାଳ ଜିଲ୍ଲାର ସହକାରୀ ଜିଲ୍ଲା ମୁଖ୍ୟ ଚିକିତ୍ସକ ପଦରୁ ଅବସର ଗ୍ରହଣ କରିଛନ୍ତି । ଆରିକିମା ଗ୍ରାମର ସାମରିକ ବିଭାଗ ଡାକ୍ତର ହିସାବରେ ପ୍ରଫୁଲ୍ଲ କୁମାର ସାହୁ, ବୋଲଗଡ ଗ୍ରାମର ଡଃ. ଶିବପ୍ରସାଦ ସିଂହ ରାଜ୍ୟ ଡାକ୍ତର ସଂଘର ସାଧାରଣ ସଂପାଦକ ଥିଲାବେଳେ ଡାବରଧୁଆ ପାଟଣା ଗ୍ରାମର ଡଃ. ସରୋଜ କୁମାର ମହାପାତ୍ର ଜଣେ ବିଶିଷ୍ଟ ସଲ୍ୟ ଚିକିତ୍ସକ ଭାବରେ ସୁପରିଚିତ । କଳାଙ୍ଗ ଗ୍ରାମର ଚକ୍ରଯୁଧ ହୋତା ଏବଂ ରାଧାନାଥ ହୋତାଙ୍କ ପୁତ୍ର, ରଙ୍କନିଧି ହୋତା ଏବଂ ପ୍ରଦୀପ୍ତ

ହୋତା ରାଜ୍ୟର ବରିଷ୍ଠ ପ୍ରଶାସକ ଭାବରେ କାର୍ଯ୍ୟରତ । ସାନକୁମାରୀ ଗ୍ରାମର ପ୍ରଶାନ୍ତ କୁମାର ସେନାପତି, ବୋଲଗଡ ଗ୍ରାମର କିଶୋର ଚନ୍ଦ୍ର ଜଗଦେବ ରାଜ୍ୟର ବରିଷ୍ଠ ପ୍ରଶାସକ ଭାବରେ ଅବସ୍ଥାପିତ । ଯୋଡାପଡା ଗ୍ରାମର ଚିନ୍ତାମଣି ପାତ୍ର ଦୂରଦର୍ଶନର ବରିଷ୍ଠ ଇଞ୍ଜିନିୟର, ରୋଳସିଂହ ଗ୍ରାମର ଯଦୁନାଥ ଚଣ୍ଡ ଭାରତୀୟ ରେଳସେବାରେ ଚିଫ ଇଞ୍ଜିନିୟର ଭାବରେ ଅବସ୍ଥାପିତ । ହରିପୁର ଗ୍ରାମର ହିମାଂଶୁ ଶେଖର ତ୍ରିପାଠୀ କେନ୍ଦ୍ର ସରକାରଙ୍କ ଜାହଜ ଚଳାଚଳ ମନ୍ତ୍ରାଳୟରେ ବରିଷ୍ଠ ମାରାଇନ ରେଡିଓ ଅଫିସର ଭାବରେ ଅବସ୍ଥାପିତ । ବୋଲଗଡ ଗ୍ରାମର ଇଂ. ବିଦ୍ୟାଧର ରାମ ଓ ଡାବରଧୂଆ ଗ୍ରାମର ଇଂ. ବୃନ୍ଦାବନ ପରିଡା ବିଦ୍ୟୁତ୍ ବିଭାବରେ କାର୍ଯ୍ୟକରି ଅବସର ଗ୍ରହଣ କରିଛନ୍ତି । ବୃଡା ଗ୍ରାମର ଶ୍ରୀ ଯମେଶ୍ୱର ଦାସ ଏସ.ସି.ଆର.ଟି. ଭୁବନେଶ୍ୱର ବରିଷ୍ଠ ଇଂରେଜୀ ପାଠ୍ୟକ୍ରମ ବିଶେଷଜ୍ଞ ଭାବରେ ଅବସର ଗ୍ରହଣ କରିଛନ୍ତି । ତାଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ ବହୁଦିନ ଧରି ରାଜ୍ୟର ଗଣଶିକ୍ଷା ବିଭାଗର ପାଠ୍ୟକ୍ରମରେ ସ୍ଥାନ ପାଇଥିଲା ।

ବିଶିଷ୍ଟ କଂଟ୍ରାକ୍ଟର ଭାବରେ ଠଣାପଲ୍ଲୀ ଗ୍ରାମର ଲିଙ୍ଗରାଜ ପଣ୍ଡା, ବୋଲଗଡର ଗୋବିନ୍ଦ ସାହୁଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । ଗତ ନବକଳେବର ସମୟରେ ପୁରୀ ବଡଦାଣ୍ଡକୁ ନିର୍ଦ୍ଧାରିତ ସମୟ ପୂର୍ବରୁ ପିଚୁ କାର୍ଯ୍ୟ କରିବାରେ ଶ୍ରୀ ଗୋବିନ୍ଦ ସାହୁ ବିଶେଷ ନାମ ଅର୍ଜନ କରିଥିଲେ ।

ଆମେରିକାରେ ଅବସ୍ଥାପିତ ଡଃ. କାଶୀନାଥ ସାହୁ, ଏ ଅଞ୍ଚଳର ବିଶିଷ୍ଟ ଧର୍ମତତ୍ୱବିତ ଚଣ୍ଡୀସାଧକ ଭାବରେ ପାଟପୁର ଶାସନ ଗ୍ରାମର ୰ ପଣ୍ଡିତ ଗଦାଧର ମିଶ୍ର ସୁନାମ ଅର୍ଜନ କରିଛନ୍ତି । ବର୍ତ୍ତମାନ ସ୍ଥାନୀୟ ବିଶିଷ୍ଟ ଯାଜ୍ଞିକ ପଣ୍ଡିତ ଭାବରେ ଦିବ୍ୟସିଂହପୁର ଶାସନର କୃଷ୍ଣଚନ୍ଦ୍ର ହୋତା, ବୋଲଗଡର ପଣ୍ଡିତ ସର୍ବେଶ୍ୱର କର, ପାଟପୁରଶାସନର ହରିହର ମିଶ୍ର, ଆରିକିମା ଗ୍ରାମର ଗୋଦାବରୀଶ ଦାସ ପ୍ରମୁଖ ବିଶେଷ ନାମ ଅର୍ଜନ କରିଛନ୍ତି । ଏ ସମସ୍ତଙ୍କର ବୋଲଗଡ ଅଞ୍ଚଳ ପ୍ରତି ସହୃଦୟତା ସବୁବେଳେ ରହିଅଛି । ପାଇଲଟ ଭାବରେ ବୋଲଗଡର ନିତ୍ୟାନନ୍ଦ ପଟ୍ଟନାୟକ ଏବଂ ହରିପୁର ପାଟଣାର ପ୍ରଭାସ ରଞ୍ଜନ ସୁବୁଦ୍ଧି କାର୍ଯ୍ୟକରିଅଛନ୍ତି । ନିକଟରେ ବୋଲଗଡ ବ୍ଲକ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ସଂଘର ସଭାପତି ନବକିଶୋର ପଟ୍ଟନାୟକ, ସମ୍ପାଦକ ମଧୁସୂଦନ ସାହୁ , ଉପସଭାପତି ବିକ୍ରମ ସ୍ୱାଇଁ, ବରିଷ୍ଠ ସଭ୍ୟ ରଘୁନାଥ ସାହୁ, ହୃଷିକେଶ ମାନ୍ଧତା, କଳାଙ୍ଗ ହାଇସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ ହରିବନ୍ଧୁ ସାହୁ, ଶିକ୍ଷାବିତ୍ କାଳିଚରଣ ଜୟସିଂହ, ବାଲୁଙ୍କି ବଳିୟାର ସିଂହ, ଅଇଁଠୁ ରଣଜିତ ସିଂହ, କାଦର ଖାଁ, ମନାନ ଖାଁ ପ୍ରମୁଖଙ୍କର ଏ ଅଞ୍ଚଳ ପ୍ରତି ଉଲ୍ଲେଖ ଯୋଗ୍ୟ ଅବଦାନ ରହିଛି । ଏତଦ ବ୍ୟତିତ ହରିପୁର ଶାସନର ଶ୍ରୀ କାଳୀ ପ୍ରସନ୍ନ ତ୍ରିପାଠୀ ରାଜ୍ୟ ଉଚ୍ଚ

ଶିକ୍ଷା ପରିଷଦର ଅର୍ଥନୈତିକ ପରାମର୍ଶଦାତା ପଦବୀରୁ ଅବସର ଗ୍ରହଣ କରିବା ସଙ୍ଗେ ସଙ୍ଗେ ନାଉପଡା ଗ୍ରାମର ଶ୍ରୀ ନବକିଶୋର ଶ୍ରୀଚନ୍ଦନ ରାୟ ରାଜ୍ୟର ଜଣେ ବରିଷ୍ଠ ସମବାୟ ପଦାଧିକାରୀ ଏବଂ ଆରିକିମା ଗ୍ରମର ହରିବନ୍ଧୁ ପରିଡା କୃଷି ଅଧିକାରୀ, ବାଙ୍କୋଇ ଗ୍ରାମର କେଶବ ଚନ୍ଦ୍ର ଭୋଳ ଏବଂ ଖଗୁରିଆ ଗ୍ରାମର ବାଞ୍ଛାନିଧି ହୋତା ଅବସର ପ୍ରାପ୍ତ ଉଦ୍ୟାନ ବିଭାଗର ପଦଧିକାରୀ ଅଛନ୍ତି । ଗବଡି ଗ୍ରାମର ଗଦାଧର ସାହୁ, ଗର୍ଭଣୀପଡା ଗ୍ରାମର ପ୍ରଫୁଲ୍ଲ କୁମାର ପଟ୍ଟନାୟକ ଏବଂ ଖଲିକୋଟ ଗ୍ରାମର ଜଗନ୍ନାଥ ରାଉତ ବନବିଭାଗର ଉଚ୍ଚ ପଦରେ ରହି ଅବସର ଗ୍ରହଣ କରିଛନ୍ତି । ଦିବ୍ୟସିଂହପୁର ଶାସନର ଶରତ ଚନ୍ଦ୍ର ମିଶ୍ର ଏବଂ ପୂର୍ଣ୍ଣଚନ୍ଦ୍ର ମିଶ୍ର, ଡାବରଧୂଆ ପାଟଣାର ଗୋବିନ୍ଦ ଚନ୍ଦ୍ର ସାହୁ ବନବିଭାଗର ପୂର୍ବତନ ଉଚ୍ଚ ବିଭାଗୀୟ ଅଧିକାରୀ ଭାବରେ ସୁପରିଚିତ । ସହଜପୁର ଗ୍ରାମର ଲକ୍ଷ୍ମୀଧର ଗୁମାର୍ନସିଂହ, ପାଟବନ୍ଧ ଗ୍ରାମର ସୁରେଶ ଛୋଟରାୟ ରାଜ୍ୟର ବରିଷ୍ଠ ପ୍ରଶାସନିକ ଅଧିକାରୀ ଭାବରେ ଅଧିଷ୍ଠିତ । ବୋଲଗଡ ଗ୍ରାମର ମଧୁସୁଦନ ପୃଷ୍ଟି, ହରିପୁର ପଟଣା ଗ୍ରାମର ଯୋଗେଶ୍ୱର ସୁବୁଦ୍ଧି, ବୃଡା ଗ୍ରାମର ଅବଦୁଲ ବାରୀ ରାଜ୍ୟର ବରିଷ୍ଠ ପ୍ରଶାସନିକ ଅଧିକାରୀ ଭାବରେ ଅବସର ଗ୍ରହଣ କରିଛନ୍ତି । ଅବସରପ୍ରାପ୍ତ ଏସ.ପି. ଭାବରେ ମାଣିକାଗୋଡାର ନାରାୟଣ ମଲ୍ଲିକ ଏବଂ କଡବ ଗ୍ରାମର ଫଜ୍ଜୁଲ ତରଫଦାର ଅବସର ଗ୍ରହଣ କରିଅଛନ୍ତି । ରାଜ୍ୟ ବନବିଭାଗର ଅଧିକାରୀ ଭାବରେ ଡାବରଧୂଆ ପାଟଣା ଗ୍ରାମର ଦାମଦୋର ସାହୁ, ଗୋବିନ୍ଦ ସାହୁ, ମାଣିକାଗୋଡା ଗ୍ରାମର ଶରତ ଚନ୍ଦ୍ର ମହାପାତ୍ର, ମଣ୍ଡଳସିଂହ ଗ୍ରାମର ଶରତ କୁମାର ଜେନା କାର୍ଯ୍ୟରତ । ନିକଟରେ ଜାତୀୟ ରାଜପଥ ସହକାରୀ କାର୍ଯ୍ୟନିର୍ବାହୀ ଯନ୍ତ୍ରୀ ଭାବରେ ଖଲିକୋଟ ଗ୍ରାମର ଇଂ. ରଘୁନାଥ ଚମ୍ପତି, ଗ୍ରାମ୍ୟ ଉନ୍ନୟନ ଏବଂ ଜଳସେଚନ ବିଭାଗରେ ବୋଲଗଡ ଗ୍ରାମର ଇଂ. ବ୍ରଜବନ୍ଧୁ ପଟ୍ଟନାୟକ ଓ ପଙ୍କାଳସାହି ଗ୍ରାମର ଇଂ. ପ୍ରଫୁଲ୍ଲ କୁମାର ସିଂହ ଅବସର ଗ୍ରହଣ କରିଛନ୍ତି । ବୃତଙ୍ଗ ଜଳସେଚନ ଯୋଜନାର ସମଗ୍ର ସର୍ଭେ କାର୍ଯ୍ୟରେ ଶ୍ରୀ ପ୍ରଫୁଲ୍ଲ କୁମାର ସିଂହ ତାଙ୍କ କାର୍ଯ୍ୟକାଳର ବହୁ ସମୟ ଅତିବାହିତ କରିଥିଲେ ।

ଗ୍ରାମ୍ୟ କନ୍ଦଳର ସରଳ ସମାଧାନ କରି ଅଯଥା ମାଲିମକଦ୍ଦମାରେ ନିରୀହ ଲୋକଙ୍କୁ ରକ୍ଷା କରିବାରେ ବହୁ ପୂର୍ବରୁ ଅନୁସୃତ ଗ୍ରାମ୍ୟ ନ୍ୟାୟ ପରିଚାଳନା କ୍ଷେତ୍ରରେ ସାନପଦର ଗ୍ରାମର ପୂର୍ବତନ ସରପଞ୍ଚ ୰ ବାଙ୍କନିଧି ସୁବୁଦ୍ଧି, କାଦୁଆପଡା ଗ୍ରାମର ବିଶିଷ୍ଟ ଶିକ୍ଷକ ତାରେଶ୍ୱର ହୋତା, ଗେଡିଆପଲ୍ଲୀ ଗ୍ରାମର ଗୌରମୋହନ ସାହୁ, ରାସୋଳ ଗ୍ରାମର ନାରାୟଣ ବଳିୟାର ସିଂହ, ସାଗର ଗାଁର ସଦାଶିବ ରାୟଗୁରୁ, ବୋଲଗଡ ଗ୍ରାମର କୃଷ୍ଣମୋହନ ପାଲଟା ସିଂହ, ବୃଡା ଗ୍ରାମର କୈଳାସ ଚନ୍ଦ୍ର ରାଉତ, ମାଣିକାଗୋଡା ଗ୍ରାମର ଅଗାଧୁ ପ୍ରଧାନ ଏବଂ ଫିଦା ହୁସେନ ଙ୍କ ନାମ ବିଶେଷ

ଉଲ୍ଲେଖନୀୟ । ଆଧୁନିକ ବୋଲଗଡ ପ୍ରଗତିର ମୁଖ୍ୟ ସଂଯୋଯକ ଭାବରେ ସର୍ବଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ର, ଅକ୍ଷୟ କୁମାର ପଟ୍ଟନାୟକ, ସୀତାକାନ୍ତ ବିଧାର ଏବଂ ଲେଖକଙ୍କ ର ନାମ ସର୍ବାଗ୍ରେ ବିଦିତ । ଖୋର୍ଦ୍ଧା ଜିଲ୍ଲା ଗଠନର ମୁଖ୍ୟ ସୂତ୍ରଧର ସାନପଦର ଗ୍ରାମର ବିଶିଷ୍ଟ ଆଡଭୋକେଟ ପ୍ରଫୁଲ ଚନ୍ଦ୍ର ମହାନ୍ତି ଏବଂ ମୁଖ୍ୟ ପରାମର୍ଶଦାତା ବୋଲଗଡ ପଞ୍ଚାୟତ ସମିତିର ପୂର୍ବତନ ଅଧକ୍ଷ ତଥା ବିଶିଷ୍ଟ ଆଡଭୋକେଟ ବାଙ୍କୋଇ ଗ୍ରାମର ଗୌରଶ୍ୟାମ ପଟ୍ଟନାୟକଙ୍କ ଭୂମିକା ସମଗ୍ର ଖୋର୍ଦ୍ଧା ଜିଲ୍ଲାରେ ପ୍ରଂଶସନୀୟ । ବୋଲଗଡ ଗ୍ରାମର ଶ୍ରୀ ମଧୁସୂଦନ ପରିଡା ଭାରତ ବର୍ଷର ପ୍ରତ୍ୟେକ ତୀର୍ଥସ୍ଥାନ ସହ ପରିଚିତ । ସେ ପ୍ରତିବର୍ଷ ଓଡିଶାର ବିଭିନ୍ନ ସ୍ଥାନରୁ ତୀ୍ର୍ଥାଟନରେ ତୀର୍ଥଯାତ୍ରୀମାନଙ୍କୁ ନେଇ ଥାନ୍ତି । ଚମ୍ପୋଇଲୋ ଗ୍ରାମର ସଂସ୍କୃତିପ୍ରେମୀ ଯଦୁମଣୀ ସୁମାନସିଂହ ଏବଂ ଦେଉଳୀ ଗ୍ରାମର ଶିକ୍ଷାପ୍ରେମୀ ଭାଗିରଥି ସାହୁ ସରକାରୀ ଚାକିରୀରୁ ନିକଟରେ ଅବସର ଗ୍ରହଣ କରିଛନ୍ତି ।



## ଶହୀଦ

କାରଗିଲ ଏବଂ ସୀମାନ୍ତରେ ଜାଗ୍ରତ ପ୍ରହରୀ ରୂପେ ନିଯୁକ୍ତ ବୋଲଗଡ ଅଞ୍ଚଳର ବୀର ସୈନିକ ମାନଙ୍କ ମଧରୁ ମାଣିକାଗୋଡାର ଜାଫରୁଲା ଖାନ (ବୟସ-୨୮), ଟିକାତାଳର ଶ୍ରୀନିବାସ ସାମନ୍ତରା (ବୟସ- ୨୫), ଦେଉଳି ଗ୍ରାମର ଦୁଃଶାସନ ବେହେରା (ବୟସ-୨୪) ଏବଂ ଶଙ୍କର ପ୍ରଧାନ ଶଦୀଦ ହୋଇ ଜାତି ଏବଂ ଦେଶ ମାତୃକା ପାଇଁ ପ୍ରାଣ ବିସର୍ଜନ କରିଛନ୍ତି ।



# ସ୍ୱାଧୀନତା ପରେ

୧୯୪୭ ରେ ଦେଶ ସ୍ୱାଧୀନ ହେଲା । ତାହା ପୂର୍ବରୁ ୧୯୪୬ ରେ ଡଃ. ହରେକୃଷ୍ଣ ମହତାବ ଓଡିଶାର ପ୍ରଧାନ ମନ୍ତ୍ରୀ (ବର୍ତ୍ତମାନ ମୁଖମନ୍ତ୍ରୀଙ୍କୁ ସେତେବେଳେ ପ୍ରଧାନ ମନ୍ତ୍ରୀ କୁହାଯାଉଥିଲା) ହେଲେ । ସେତେବେଳେ ପଶ୍ଚିମ ଖୋରଧା ନିର୍ବାଚନ ମଣ୍ଡଳୀ ବୋଲଗଡ, ବେଗୁନିଆଁ, ଟାଙ୍ଗୀକୁ ନେଇ ଗଠିତ ହୋଇଥିଲା । ଏଠାର କଂଗ୍ରେସ କର୍ମୀ ୰ ପତିତପାବନ ହୋତା (କ୍ଷୁଗୁରିଆ), ୰ବିଶ୍ୱନାଥ ସାମନ୍ତ (ଚମ୍ପାଇଲୋ), ଦୁଃଖିଶ୍ୟାମ ଦାଶ (କୋଟପଲ୍ଲୀ, ଉତ୍ତର ବେଗୁନିଆଁ) ବିଧାୟକ ହେବାକୁ ଚାହୁଁଥିଲେ । ଟାଙ୍ଗି ଅଞ୍ଚଳରୁ କେହି ଚାହୁଁଥିବେ । ଚତୁରତାର ସହ ଡଃ. ମହତାବ ବୋଲଗଡ ଏବଂ ବେଗୁନିଆଁ ଅଂଚଳରେ ଖଦୀ କାମ କରିଥିବା ବିଶିଷ୍ଟ ଖଦୀ କର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ସାକ୍ଷୀଗୋପାଳ ଅଂଚଳର ୰ ସତ୍ୟବାଦୀ ନନ୍ଦଙ୍କୁ ଏଠାରୁ ବିଧାୟକ ଭାବରେ ମନୋନୀତ କଲେ । ୧୯୪୬ରେ ବିଧାୟକ ମନୋନୀତ ହେଉଥିଲେ । ସେହି ସମୟରେ ନୟାଗଡ ବିଧାୟକ ଶ୍ରୀଧର ଦାଶ ଏବଂ ଖଣ୍ଡପଡା ବିଧାୟକ ୰ ଅନ୍ତର୍ଯ୍ୟାମୀ ସାହୁ (କଣ୍ଟିଲୋ) ଥିଲେ । ୧୯୪୮ ମସିହାରେ ସର୍ବପ୍ରଥମେ ବୋଲଗଡ ବେଗୁନିଆ ଅଞ୍ଚଳରେ କଂଗ୍ରେସ ସଂଗଠନ କରିବା ପାଇଁ ଡଃ. ହରେକୃଷ୍ଣ ମହତାବଙ୍କ ନିର୍ଦ୍ଦେଶରେ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, ୰ ବନମାଳୀ ପଟ୍ଟନାୟକ, ୰ ମାଧବ ରାଉତରାୟ, ଡଃ. ବୈଦ୍ୟନାଥ ମିଶ୍ର, ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ଯୁବ ଛାତ୍ର ସଂଗଠନ ଆରମ୍ଭ କରିଥିଲେ । ସ୍ଥାନୀୟ କେତେକ ପୁରୁଖା କଂଗ୍ରେସ କର୍ମୀ ସେମାନଙ୍କର ପ୍ରତିଷ୍ଠା ନଷ୍ଟ ହେବା ଭୟରେ ଏହାକୁ ବିରୋଧ କରିଥିବା କଥା ଡଃ. ମିଶ୍ର ତାଙ୍କର ଆତ୍ମଜୀବନୀ 'ସ୍ମୃତି ତୀର୍ଥ' ରେ ଉଲ୍ଲେଖ କରିଛନ୍ତି ।



# କୃଷକ ଭାଗଚାଷୀ ଆନ୍ଦୋଳନ

୧୯୩୮ ମସିହାରେ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ଗଠନ ବେଳେ ୰ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ବୋଲଗଡ ଅଂଚଳରୁ ସର୍ବପ୍ରଥମେ ମାଣିକାଗୋଡା ଗ୍ରାମର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ୰ ପର୍ଶୁରାମ ପଦାତିକରାୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଇଥିଲେ । ୧୯୪୩ ମସିହାରେ ୰ ଗଂଗାଧର ପାଇକରାୟ କମ୍ୟୁନିଷ୍ଟ ପାର୍ଟିରେ ଯୋଗଦେଲେ । ପରେ ପରେ କମ୍ୟୁନିଷ୍ଟ ପାର୍ଟି ବ୍ୟାନ ହୋଇଯାଇଥିଲା । ସେ ଅଣ୍ଡର ଗ୍ରାଉଣ୍ଡରେ ଥିଲେ । ସର୍ବପ୍ରଥମେ ସେ ତାଙ୍କର ଅନୁଗାମୀ ବନ୍ଧୁ ବାଙ୍କନିଧି ସୁବୁଦ୍ଧି, ଫକିର ମହାନ୍ତି, ଅଗାଧୁ ସାହୁ, ଗଂଗାଧର ମହାପାତ୍ର, ମହନ୍ତ ପରିଡା, ଲକ୍ଷ୍ମଣ ମହାପାତ୍ର ଓ କୃଷ୍ଣ ବେହେରାଙ୍କୁ ନେଇ ସାନପଦର ଗ୍ରାମରେ କୃଷକ ସଂଗଠନ କରି ସ୍ଥାନୀୟ ପ୍ରମୁଖ ଧନୀ ଲୋକ ୰ ବାଇଧର ମହାପାତ୍ରଙ୍କ ଜମିରେ ଭାଗଚାଷ ଆନ୍ଦୋଳନ ଆରମ୍ଭ କରି ସଫଳ ହୋଇଥିଲେ । ଅବସ୍ଥା ଏପରି ହେଲା ଯେ, ସାନପଦରରେ ଏକ ଅସ୍ଥାୟୀ ପୋଲିସ ଫାଣ୍ଡି ସ୍ଥାପିତ ହୋଇଥିଲା । ସାନପଦର ଗ୍ରାମର ଉପରୋକ୍ତ ସମସ୍ତ ନେତୃମଣ୍ଡଳୀଙ୍କର ସ୍ୱର୍ଗତ ଉଦୟନାଥ ମହାନ୍ତି ଗୁରୁ ଥିଲେ । ସେ ଜଣେ ସ୍ୱାଧୀନତା ସଂଗ୍ରାମୀ । ଚାଟଶାଳୀ ଖୋଲି ଗ୍ରାମର ପିଲାମାନଙ୍କୁ ପାଠ ପଢାଇବା ଅବସ୍ଥାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ ଏବଂ ତାଙ୍କର ସମ୍ପତ୍ତି ନିଲାମ ହୋଇଯାଇଥିଲା । ଶେଷରେ ସେ କେଉଁ ଆଡେ ଗଲେ ତାଙ୍କର ପତ୍ତା ମିଳିନଥିଲା । ବୋଲଗଡ ବେଗୁନିଆଁର ଅଖ୍ୟାତ ଶଅରସାହି ଏବଂ ରାସୋଳ ପାହାଡ ୰ ଗଙ୍ଗାଧର ବାବୁଙ୍କ ଆଶ୍ରୟ ସ୍ଥଳ ଥିଲା । ତାଙ୍କର ବାପା ୰ ରାଜୀବ ପାଇକରାୟ ଜଣେ ସ୍ୱାଧୀନ ଚେତା ଲୋକ ଥିଲେ । ସେ ଖୋରଧାରେ ଖଜଣା ଆନ୍ଦୋଳନରେ ଯୋଗ ଦେଇଥିଲେ । ୰ ଗଙ୍ଗାଧର ବାବୁ ବହୁବାର ପୋଲିସ ଘେରରୁ ସ୍ତ୍ରୀ ଲୋକ ବେଶରେ ଖସି ଯାଇଥିବାର ଅଦ୍ୟାବଧି ସେହି ଶଅର ସାହିର ପୁରୁଣା ଲୋକଙ୍କ ଠାରୁ ଶୁଣାଯାଏ । ଶେଷବେଳକୁ ତାଙ୍କ ସ୍ୱାସ୍ଥ୍ୟର ଅବନତି ହେବାରୁ ସେ ଗୁପ୍ତରେ କଲିକତା ଯାଇ ଚିକିତ୍ସା ହେଲା ପରେ ଆରୋଗ୍ୟ ଲାଭ କରି ଫେରିଥିଲେ । ୧୯୨୭ରେ ମହତ୍ମା ଗାନ୍ଧୀ ବୋଲଗଡ ଆସିଲା ବେଳେ ତାଙ୍କର ବୟସ ୧୩ ବର୍ଷ । ସେ ତାଙ୍କର ବାପା ରାଜୀବ ପାଇକରାୟଙ୍କ ସହ ବୋଲଗଡ ଆସି ଗାନ୍ଧୀଜୀଙ୍କ ସଭାରେ ଯୋଗ ଦେଇଥିଲେ । ତାଙ୍କର ଯୁବକ ଅବସ୍ଥାରେ ସାନପଦର ଗ୍ରାମରେ ଏକ ନାଟ୍ୟ ଦଳ ଗଢିଥିଲେ । ୧୯୫୨ ବେଳକୁ କମ୍ୟୁନିଷ୍ଟ ପାର୍ଟିରୁ ବ୍ୟାନ ଉଠିଯାଇଥିଲା । ସେ ଅଣ୍ଡର

ଗ୍ରାଉଣ୍ଡରୁ ବାହାରି ୧୯୫୨ ମସିହାରେ ଅନୁଷ୍ଠିତ ଦେଶର ସର୍ବ ପ୍ରଥମ ସାଧାରଣ ନିର୍ବାଚନରେ କମ୍ୟୁନିଷ୍ଟ ପାର୍ଟିରୁ ଏଠାରୁ ପ୍ରାର୍ଥୀ ହୋଇଥିଲେ । କଂଗ୍ରେସ ଦଳରୁ ୰ ପତିତ ପାବନ ହୋତା, ୰ ବିଶ୍ୱନାଥ ସାମନ୍ତ, ୰ ବୈଷ୍ଣବ ଚରଣ ନାଗ (ଡିଙ୍ଗର), ୰ ଗୋଇକ ପଣ୍ଡା (ବାଘମାରୀ), ଏବଂ ଦୁଃଖିଶ୍ୟାମ ଦାଶ (କୋଟପଲ୍ଲା, ଉତ୍ତର ବେଗୁନିଆ) ପ୍ରାର୍ଥୀ ପାଇଁ ଆଶାୟୀ ଥିଲେ । ବୋଇଗଡର ଓକିଲ ମାଧବ ଚୌଧୁରୀ ଉଚ୍ଚ ଶିକ୍ଷିତ ହୋଇଥିବାରୁ ତାଙ୍କୁ କଂଗ୍ରେସ ପ୍ରାର୍ଥୀ କରିବା ପାଇଁ କେତେକ କଂଗ୍ରେସ କର୍ମୀ ଉଦ୍ୟମ କରିଥିଲେ । ମାତ୍ର ତାହା ହୋଇପାରି ନଥିଲା । ଶେଷରେ ଉପରୋକ୍ତ ପ୍ରାର୍ଥୀମାନେ ସଂଗ୍ରାମୀ ଏବଂ ଉପଯୁକ୍ତ ପ୍ରାର୍ଥୀ ହେଲେ ମଧ ରାଜସୁନାଖଳା ନିବାସୀ ଗାନ୍ଧୀବାଦୀ କଂଗ୍ରେସ କର୍ମୀ, ଆଧୁନିକ ରାଜସୁନାଖଳାର ସକଳ ଉନ୍ନତିର ନିର୍ମାତା ୰ କୃଷ୍ଣ ଚନ୍ଦ୍ର ମିଶ୍ର ସେତେବେଳେ କଂଗ୍ରେସର ଜଣେ ପ୍ରତିଷ୍ଠିତ ନେତା ଥିବାରୁ ଏବଂ ବୋଇଗଡ ବେଗୁନିଆ ଅଞ୍ଚଳ ସହ ତାଙ୍କର ବନ୍ଧୁ ଭାବରେ ବ୍ୟକ୍ତିଗତ ସମ୍ପର୍କ ତାଙ୍କୁ ଏଠାରୁ କଂଗ୍ରେସ ପ୍ରାର୍ଥୀ କରିବାରେ ସହାୟକ ହୋଇଥିଲା ସର୍ବୋପରି ସେତେବେଳଙ୍କୁ ରଣପୁର ରାଜମାତା ବସନ୍ତ ମଞ୍ଜରୀ ଦେବୀ କଂଗ୍ରେସରେ ଯୋଗ ଦେଇ ଡଃ. ହରେକୃଷ୍ଣ ମହତାବଙ୍କ ଅନ୍ତରଙ୍ଗ ଥିବାରୁ ତାଙ୍କ ସହ କୃଷ୍ଣ ମିଶ୍ରଙ୍କର ଘରୋଇ ସମ୍ପର୍କ ଚଳିତ ନିର୍ବାଚନରେ ପ୍ରାଥୀ ହେବା ପାଇଁ ୰ ମିଶ୍ରଙ୍କ ପଥ ସୁଗମ କରିଥିଲା ବୋଲି ଅନୁମାନ କରାଯାଏ ।

ଗଙ୍ଗାଧର ପାଇକରାୟଙ୍କ ଯୁବ ନେତୃତ୍ୱ କୃଷକ ଆନ୍ଦୋଳନ ସର୍ବୋପରି ସେ ବେଗୁନିଆଁ ଥାନା ଏବଂ ବୋଲଗଡ ବ୍ଲକ ଅନ୍ତର୍ଗତ ସାନପଦର ସାମିଲି କୃଷ୍ଣଶରଣପୁର ମୌଜାର ଅଧିବାସୀ ହେବାସହ ଏକ ସଂଭ୍ରାନ୍ତ ଖଣ୍ଡାୟତ ବଂଶର ଦାୟାଦ ହୋଇଥିବାରୁ ତାଙ୍କୁ ନିର୍ବାଚନରେ ଜିଣିବାକୁ ସୁଯୋଗ ଦେଇଥିଲା । ଦୀର୍ଘଦିନ ଧରି ଶବରସାହି ମାନଙ୍କରେ ତାଙ୍କର ବିଗତ ଅଜ୍ଞାତବାସ ତାଙ୍କୁ ସେତେବେଳେ ଅଧିକ ଲୋକପ୍ରିୟ କରିବା ସଙ୍ଗେ ସଙ୍ଗେ ବହୁଦିନ ଧରି ଏହି ନିର୍ବାଚନ ମଣ୍ଡଳୀରେ ଆଦିବାସୀ ଭୋଟ ତାଙ୍କର ଭୋଟ ବ୍ୟାଙ୍କରେ ପରିଣତ ହୋଇଥିଲା । ଏହିପରି ଭାବରେ ସେ ୧୯୫୨, ୧୯୬୨, ୧୯୬୭ ଏବଂ ୧୯୭୧ ନିର୍ବାଚନରେ ୪ଥର (୧୭ ବର୍ଷ) ଏଠାରୁ ବିଧାୟକ ଭାବରେ ନିର୍ବାଚିତ ହୋଇ ରାଜ୍ୟରେ ଏହାକୁ ଏକ କମ୍ୟୁନିଷ୍ଟ ଦୁର୍ଗରେ ପରିଣତ କରିଥିଲେ । ସେ ଜୀବନସାରା ଦଳ ପରିବର୍ତ୍ତନ କରିନାହାନ୍ତି । କେବଳ ୧୯୫୨ ମସିହା ପ୍ରଥମ ନିର୍ବାଚନରେ ତାଙ୍କ ସହ ପ୍ରତିଦ୍ୱନ୍ଦ୍ୱିତା କରିଥିବା ୰ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ପୁତ୍ର ଶ୍ରୀ ସୁରେନ୍ଦ୍ର ମିଶ୍ର ୧୯୯୦ ମସିହା ନିର୍ବାଚନରେ ବିଜୁବାବୁଙ୍କ ନେତୃତ୍ୱରେ ଜନତା କମ୍ୟୁନିଷ୍ଟ ଦଳ ମେଣ୍ଟ କରିଥିବାରୁ ୰ ଗଙ୍ଗାଧର ବାବୁ ଏବଂ ତାଙ୍କର ଦଳ ଶ୍ରୀ ସୁରେନ୍ଦ୍ର ମିଶ୍ରଙ୍କୁ ସମର୍ଥନ କରିଥିଲେ । ସେ ଖୋରଧା ପ୍ରାଣନାଥ ମହାବିଦ୍ୟାଳୟ, ବେଗୁନିଆଁ

ମହାବିଦ୍ୟାଳୟ ର ପ୍ରାଣ ପ୍ରତିଷ୍ଠାତା ଥିଲେ । ଶେଷ ଜୀବନ ଯାଏ ଦେଉଳି ରଘୁନାଥ ମହାବିଦ୍ୟାଳୟର ପରିଚାଳନା କମିଟି ସଭାପତି ଥିଲେ । ସାନପଦରରେ ମହାବିଦ୍ୟାଳୟ ଆରମ୍ଭ କରିଥିଲେ ମଧ୍ୟ ସରକାରଙ୍କ ସଙ୍କୁଚିତ ଶିକ୍ଷାନୀତି ଯୋଗୁଁ ତାହା ହୋଇପାରିନଥିଲା । ସେ ସକଳ ପ୍ରତିବନ୍ଧକ ସତ୍ତ୍ୱେ ପିତୁକୁଳି ହାଇସ୍କୁଲର ରକ୍ଷାକବଚ ଥିଲେ । ଗଡମାଣତ୍ରୀ କଲେଜ ପରିଚାଳନା କମିଟିର ସଭାପତି ମଧ୍ୟ ଥିଲେ । ସେ ସ୍ୱଳ୍ପ ଶିକ୍ଷା (ଷଷ୍ଠ ଶ୍ରେଣୀ) ଲାଭ କରିଥିଲେ । ୧୯୫୨ ମସିହାରେ ରାଜ୍ୟ ବିଧାନସଭାରେ ବିରୋଧି ଦଳନେତା ଥିବା ଓଡିଶାର ସର୍ବମାନ୍ୟ ନେତା ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର ପାର୍ଲ୍ୟାମେଣ୍ଟାରୀ ରାଜନୈତିକ ଗୁରୁଥିଲେ ବୋଲି ୰ ପାଇକରାୟ ବହୁବାର ପ୍ରକାଶ୍ୟରେ ସ୍ୱୀକାର କରିଛନ୍ତି । ସେ କମ୍ୟୁନିଷ୍ଟ ପାର୍ଟି ଦ୍ୱାରା ପରିଚାଳିତ ରାଜ୍ୟ କୃଷକ ସଭାର ୨୦ ବର୍ଷକାଳ ସଭାପତି ଥିଲେ । ବନ୍ୟା, ବାତ୍ୟା, ଘରପୋଡି, ମରୁଡି ପ୍ରଭୃତି ବିପତ୍ତି ବେଳେ ଦୁର୍ଗତ ଲୋକଙ୍କୁ ସାହାଯ୍ୟ ତାଙ୍କର ଲୋକପ୍ରିୟତାକୁ ବୃଦ୍ଧି କରିଥିଲା । ବିଧାନ ସଭାରେ ତାଙ୍କର ଅକାଟ୍ୟ ଯୁକ୍ତିକୁ ସମସ୍ତେ ଗ୍ରହଣ କରୁଥିଲେ । ତାଙ୍କର ସମସ୍ତ ରାଜ୍ୟ ନେତୃବୃନ୍ଦ ଏବଂ ପ୍ରଶାସନିକ ଅଧିକାରୀଙ୍କ ସହ ଉତ୍ତମ ସମ୍ପର୍କ ଥିଲା । ଏହି ମହାନ ନେତା ଶେଷରେ ବର୍ଷାଧିକ କାଳ ଭୀଷଣ ରୋଗ ଯନ୍ତ୍ରଣାରେ ପୀଡିତ ହୋଇ ୧୯୯୯ ମସିହା ଅଗଷ୍ଟ ୩୦ ତାରିଖରେ ଇହଲୀଳା ସମ୍ବରଣ କଲେ ।

୧୯୮୬ ମାର୍ଚ୍ଚରେ ଗଡମାଣିତ୍ରୀଠାରେ ଡଃ. ରାଧାନାଥ ରଥଙ୍କ ସହ ଗଙ୍ଗାଧର ପାଇକରାୟଙ୍କୁ ହୋଇଥିବା ବୋମାମାଡ ରାଜ୍ୟ ରାଜନୀତିକୁ ଚହଲାଇ ଦେଇଥିଲା ।

ନିକଟରେ ୰ ଗଙ୍ଗାଧର ବାବୁଙ୍କର ୩ୟ ବାର୍ଷିକ ଶ୍ରାଦ୍ଧ ଅବସରରେ ସାଥି ସୋମନାଥ ପାତ୍ର "ଅନିର୍ବାଣ ଅଗ୍ନିଶିଖା ବିପ୍ଳବୀ ଗଙ୍ଗାଧର" ନାମରେ ଏକ ପୁସ୍ତକ ରଚନା କରିଛନ୍ତି । ସେଥିରେ ୰ ଗଙ୍ଗାଧର ବାବୁଙ୍କ ରାଜନୈତିକ ଜୀବନର ମୁଖ୍ୟ ଘଟଣାବଳୀ ଉଲ୍ଲେଖ କରିଛନ୍ତି । ତାଙ୍କର ରାଜନୈତିକ କୃତିତ୍ୱକୁ ସଫଳ କରିବାକୁ ସମଗ୍ର ନିର୍ବାଚନ ମଣ୍ଡଳୀରେ ବହୁ ସାଥି ବହୁ ଜଟିଳ ସମସ୍ୟାର ସମ୍ମୁଖୀନ ହୋଇଥିଲେ । ସେହି ସାଥି ମାନଙ୍କ ମଧ୍ୟରୁ ୨, ୩ ଜଣଙ୍କ ଛଡା ଅନ୍ୟ ସମସ୍ତଙ୍କ ନାମ ଶ୍ରୀ ପାତ୍ର ସେହି ବହିରେ ଉଲ୍ଲେଖ କରିନାହାନ୍ତି । ଏହି ପରିପ୍ରେକ୍ଷିରେ ଅଂଚଳର ସେମାନଙ୍କର ନାମ ଉଲ୍ଲେଖ କରାଯାଇଅଛି ।

୰ ପର୍ଶୁରାମ ପଦାତିକରାୟ, ୰ ଅକ୍ରୁର ସାହୁ, ରାଜକିଶୋର ପଟ୍ଟନାୟକ, ୰ ଅଧିକାରୀ ସାହୁ, ୰ ରମେଶ ପଟ୍ଟନାୟକ (ମାଣିକାଗୋଡା); ବାବାଜୀ ଦାଶ, ହରିହର ମିଶ୍ର, ୰ ହରିହର ରାୟ, ନୃସିଂହ ଚରଣ ଲେଙ୍କା (ସଂପୁର); ପ୍ରହ୍ଲାଦ ଶ୍ରୀଚନ୍ଦନ (ଗୋପାଳିପଡା); ବାସୁଦେବ ଷଡଙ୍ଗୀ, ବାସୁଦେବ ମିଶ୍ର, କାଶୀନାଥ ମିଶ୍ର (ଦିବ୍ୟସିଂହପୁର ଶାସନ); ପ୍ରାଣକୃଷ୍ଣ ମହାପାତ୍ର (ମାଳିସାହି); ମାଧବ ମହାପାତ୍ର

(କଳାଙ୍ଗ); ବ୍ରହ୍ମଚାରୀ ପାତ୍ର (ଗୋବର୍ଦ୍ଧନପୁର); ଜୟକୃଷ୍ଣ ସ୍ୱାଇଁ (ଭୀମପଡା); କପିଳ ଜେନା (କଳାମାଟିଆ); କାହ୍ନୁଚରଣ ଯତି, କୃଷ୍ଣମୋହନ ପାଲଟାସିଂହ, ମଦନ ବୈଠାରୁ, ସୁଦାମ ଚୌଧୁରୀ, ଦିବାକର ମହାପାତ୍ର (ବୋଲଗଡ); ଦୟାନିଧି ସୁବୁଦ୍ଧି (ହରିପୁର ପାଟଣା); ହୃଷି ସାମନ୍ତରାୟ (ଖଇରିଆ); ସେଖ୍ ମୁସାଏବ (ଅରଖପଲ୍ଲୀ); ଚଇତନ ବେହେରା (ଖଲ୍ଲିକୋଟ); ମଜିଦ ଖାଁ (ବୃଡା); ବ୍ରଜବନ୍ଧୁ ମହାପାତ୍ର (କାଉଁରୀ ପାଟଣା); ଆନନ୍ଦ ପରିଡା (ଖଉରୁଣୀ); ଶ୍ୟାମ ମୁଦୁଲୀ (ବାରଦାଣ୍ଡୀ); ଗୋପାଳ ସାହୁ, ଲିଙ୍ଗରାଜ ଯତି (ଆରିକିମା); ଭ୍ରମର ସାହୁ (ଧଳାପଥର); କାମଦେବ ପାଇକରାୟ (ମାଣିବନ୍ଧ), ଗୋକୁଳ ସୁନ୍ଦରାୟ (ଅସରଳା); ଜଗନ୍ନାଥ ନାୟକ, ଜଳଧର ମାର୍ଥା (ପିତୁକୁଳି); ବାଙ୍କନିଧି ସୁବୁଦ୍ଧି, ଅଗାଧୁ ସାହୁ, ଗଙ୍ଗାଧର ମହାପାତ୍ର, ଲକ୍ଷଣ ମହାପାତ୍ର (ସାନପଦର); ମହନ୍ତ ପରିଡା (ରାସୋଳ); ବଂଶୀଧର ସାହୁ (ଦେଉଳୀ); ଅନ୍ତର୍ଯ୍ୟାମୀ ମହାପାତ୍ର (ତୁଳସୀ ବେରଣା); ଆକବର ତରଫଦାର (କଡବ); ମାଗୁଣୀ ମହାପାତ୍ର (ଠଣାପଲ୍ଲୀ); ମଙ୍ଗୁଳୀ ସାହୁ (ଘୋରଡିଆ) ; ପରମାନନ୍ଦ ନାୟକ (ଯୋଡାପଡା); ବାନାମ୍ବର ଜଗଦେବ, ଯୁଗଳ ମାନସିଂହ (ଟିକାତାଳ); ଚନ୍ଦ୍ରଶେଖର ଖାଡେଙ୍ଗା (ବଡପଦର); ବାଞ୍ଛାନିଧି ନାୟକ (ମାଣିବନ୍ଧ); ଆର୍ତ୍ତବନ୍ଧୁ ଦଳେଇ (ବାଳସିଙ୍ଗ); ବ୍ରଜକିଶୋର ରାୟମହାପାତ୍ର (ଟୁନ ଜଗଦେବ), ଖଇରିଆ; ସୁମନ୍ତ ଛୋଟରାୟ (ପାଟବନ୍ଧ) ; ସନାତନ ନାୟକ, ବାଇଧର ମଲ୍ଲିକ, ବ୍ରଜବନ୍ଧୁ ଦେଓ, ବ୍ରଜ ବେହେରା (ସଂପୁର); ସଦାଶିବ ରାୟଗୁରୁ, ପୂର୍ଣ୍ଣଚନ୍ଦ୍ର ରାୟଗୁରୁ (ସାଗରଗାଁ) ପ୍ରଭୃତି ବହୁ କର୍ମୀ କମ୍ୟୁନିଷ୍ଟ ପାର୍ଟିରେ ସଂପୃକ୍ତ ହୋଇ ସ୍ଥାନୀୟ ରାଜନୀତିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ।

ଏହି ସମସ୍ତ କର୍ମୀଙ୍କ ମଧ୍ୟରେ ମାଣିକାଗୋଡାର ରାଜକିଶୋର ପଟ୍ଟନାୟକ, ବୋଲଗଡର କାହ୍ନୁଚରଣ ଯତି, କାଦୁଆପଡାର ତାରେଶ୍ୱର ହେଡା ଏବଂ ସାନପଦରର ବାଙ୍କନିଧି ସୁବୁଦ୍ଧିଙ୍କର ଚିନ୍ତାଧାରା ଏଠାରେ କମ୍ୟୁନିଷ୍ଟ ଆନ୍ଦୋଳନକୁ ଅଗ୍ରଗାମୀ କରିଥିଲା । ପର୍ଶୁରାମ ପଦାତିକରାୟ ଏବଂ ପ୍ରହଲାଦ ଶ୍ରୀଚନ୍ଦନଙ୍କର ଜ୍ୱାଳାମୟୀ ଭାଷଣ ଜନସାଧାରଣଙ୍କ ଦ୍ୱାରା ବିଶେଷ ଭାବରେ ଆଦୃତ ହେଉଥିଲା । ଗଙ୍ଗାଧର ପାଇକରାୟ ରାଜ୍ୟରେ ବୁଣାକାର ଆନ୍ଦୋଳନ, ଭାଗଚାଷୀ ଆନ୍ଦୋଳନ, ସ୍ୱର୍ଣ୍ଣକାର ଆନ୍ଦୋଳନ, ଆଜାଦହିନ୍ଦ ଫୌଜ ଏବଂ ବର୍ମା ଫେରନ୍ତା ସଂଘର ଅନ୍ୟତମ ସ୍ଥାପୟିତା କହିଲେ ଅତ୍ୟୁକ୍ତି ହେବନାହିଁ ।

୧୯୭୭ ରେ ଦେଶରେ ଏବଂ ରାଜ୍ୟରେ ଜନତା ପାର୍ଟି ସରକାର ଗଠନ ହେଲା ପରେ ବୋଲଗଡ ବ୍ଲକ ଆଗରେ କମ୍ୟୁନିଷ୍ଟ ପାଟି ତରଫରୁ କିଛି ଦିନ ଧରି କେତେକ ଦାବି ନେଇ ଏକ ଗଣ ଅନଶନ ଚାଲିଥିଲା । ହରିଶ ମହାପାତ୍ର ସେତେବେଳେ

ମଣ୍ଡଳ ଉନ୍ନୟନ ଅଧିକାରୀ ଥିଲେ । ଆନ୍ଦୋଳନକୁ ଭଣ୍ଡୁର କରିବା ପାଇଁ କୌଣସି ସୂତ୍ରରୁ ଏକ ବୋମା ଆନ୍ଦୋଳନକାରୀଙ୍କ ଉଦ୍ଦେଶ୍ୟରେ ନିକ୍ଷେପ କରାଯାଇଥିଲା । ମାତ୍ର ଏହି ବୋମା ବ୍ଲକର ସେତେବେଳେ ଥିବା ସିମେଣ୍ଟ ଝାଲେରୀ ବାଡ ଅତିକ୍ରମ କରି ବ୍ଲକ ହତା ଭିତରେ ବି.ଡି.ଓ.ଙ୍କ କାର୍ଯ୍ୟାଳୟ ସମ୍ମୁଖରେ ପଡିବାରୁ ଓଲଟି ବୋମା ଫିଙ୍ଗା ଘଟଣାରେ ଅନଶନରତ ସମସ୍ତ କମ୍ୟୁନିଷ୍ଟ କର୍ମୀଙ୍କୁ ମୁଦଲା କରାଯାଇ ସେମାନଙ୍କ ନାମରେ ମକଦ୍ଦମା ରୁଜୁ କରାଯାଇଥିଲା । ସେତେବେଳକୁ କମ୍ୟୁନିଷ୍ଟ ପାର୍ଟିର ସ୍ଥିତି ଦୁର୍ବଳ ହୋଇ ଆସୁଥାଏ । ଠିକ ସମୟରେ ମୁଦଲାଙ୍କ ଭିତରୁ କେତେକ ଘର ହାଜିର ହେବାରୁ ତାରିଖରେ ହାଜିର ହୋଇଥିବା କମ୍ୟୁନିଷ୍ଟ କର୍ମୀମାନେ ଜେଲ ହାଜତକୁ ଚାଲିଗଲେ । ତାହାପରେ କମ୍ୟୁନିଷ୍ଟ ପାର୍ଟିର କାର୍ଯ୍ୟକ୍ରମରେ ସମସ୍ତ କର୍ମୀଙ୍କର ଅସହଯୋଗ ପରିଲକ୍ଷିତ ହେଲା । ପରେ ମୁଖ୍ୟ କମ୍ୟୁନିଷ୍ଟ ମାନଙ୍କ ମଧ୍ୟରୁ ବାଙ୍କନିଧି ସୁବୁଦ୍ଧି, ଲିଙ୍ଗରାଜ ଯତି, ଲିଙ୍ଗରାଜ ପାତ୍ର, କୃଷ୍ଣମୋହନ ପାଳଟାସିଂହ, ସଦାଶିବ ରାୟଗୁରୁ ପ୍ରମୁଖ ସତ୍ୟାନନ୍ଦ ଚମ୍ପତିରାୟ, କୈଳାସ ଚନ୍ଦ୍ର ମହାପାତ୍ର ଏବଂ ଶତ୍ରୁଘନ ମାନସିଂଙ୍କ ମାଧ୍ୟମରେ କଂଗ୍ରେସରେ ମିଶିଯିବାରୁ ବସ୍ତୁତଃ କମ୍ୟୁନିଷ୍ଟ ପାର୍ଟି ଦୁର୍ବଳ ହୋଇ ପଡିଲା ।

କ୍ରମେ ବିଭିନ୍ନ କାରଣରୁ ଏମାନଙ୍କ ମଧ୍ୟରୁ ବହୁ ମୁଖ୍ୟ କର୍ମୀ ସତ୍ୟାନନ୍ଦ ଚମ୍ପତିରାୟ ଏବଂ ଚିନ୍ତାମଣି ପାଣିଗ୍ରାହୀଙ୍କ ସମ୍ପର୍କରେ ଆସି ଦଳ ଛାଡିବାରେ କମ୍ୟୁନିଷ୍ଟ ଦଳ ଆସ୍ତେ ଆସ୍ତେ ଦବିବାକୁ ଲାଗିଲା । ମାତ୍ର ଗଙ୍ଗାଧର ବାବୁ ୧୯୮୪ ପର୍ଯ୍ୟନ୍ତ ପ୍ରାର୍ଥୀ ହୋଇଥିଲେ । ଅନୁଧ୍ୟାନରୁ ଜଣାଯାଏ ଯେ, ସର୍ବମୋଟ ୯ଟି ବିଧାନସଭା ନିର୍ବାଚନରେ ଲଢିଥିଲେ । ୪ଟି ନିର୍ବାଚନରେ ଜିଣିଥିଲେ ଏବଂ ୫ଟି ନିର୍ବାଚନରେ ହାରିଥିଲେ । ତାହାପରେ କମ୍ୟୁନିଷ୍ଟ ପ୍ରଭାବ କମିଥିଲେ ମଧ୍ୟ ଦଳୀୟ କାର୍ଯ୍ୟକ୍ରମକୁ ବଞ୍ଚାଇ ରଖିବାକୁ ଆନ୍ଦୋଳନମୂଳକ ପନ୍ଥା ତାଙ୍କ ପରେ ତାଙ୍କ ପୁତ୍ର ଯୁବ କମ୍ୟୁନିଷ୍ଟ ନେତା ବସନ୍ତ ପାଇକରାୟ ଚାଲୁରଖିଛନ୍ତି । ୧୯୯୫ ଏବଂ ୨୦୦୪ ନିର୍ବାଚନରେ ଏଠାରୁ ବସନ୍ତ ବାବୁ କମ୍ୟୁନିଷ୍ଟ ବିଧାୟକ ପ୍ରାର୍ଥୀ ହୋଇଥିଲେ । ତାଙ୍କର ଧର୍ମପତ୍ନୀ ବୋଲଗଡ ବ୍ଲକର ପ୍ରଥମ ମହିଳା ଉପାଧ୍ୟକ୍ଷା ଶ୍ରୀମତୀ ପ୍ରମୋଦିନୀ ପାଇକରାୟ ୨୦୦୦ ମସିହା ସାଧାରଣ ନିର୍ବାଚନରେ ଦଳୀୟ ପ୍ରାର୍ଥୀ ହୋଇଥିଲେ ।

ଏଠାରେ କମ୍ୟୁନିଷ୍ଟ ଦଳର ସୁଦୃଢ ସଂଗଠନ ଥିଲା ବେଳେ କେରଳର ପୂର୍ବତନ ମୁଖ୍ୟମନ୍ତ୍ରୀ ଏବଂ ସର୍ବଭାରତୀୟ କମ୍ୟୁନିଷ୍ଟ ନେତା ଇ.ଏସ. ନମ୍ବୁଦ୍ରିପଦ ଏବଂ ଜାତୀୟ ପାର୍ଟି ସେକ୍ରେଟାରୀ ସି. ରାଜେଶ୍ୱର ରାଓ ଓ ବଙ୍ଗଳାର ବିଶିଷ୍ଟ କମ୍ୟୁନିଷ୍ଟ ନେତା ବିଶ୍ୱନାଥ ମୁର୍ଖାଜୀ ଏବଂ ଜ୍ୟୋତି ବସୁ ବୋଲଗଡ ଏବଂ ପିଚୁକୁଳି ଅଂଚଳକୁ ଆସିଥିବାର ଜଣାଯାଏ ।

ବୋଲଗଡ ବ୍ଲକରେ ଏକ ମାତ୍ର କମ୍ୟୁନିଷ୍ଟ ଦଳର ସ୍ଥାୟୀ ରେକର୍ଡ ଭୁକ୍ତ ପାର୍ଟି କାର୍ଯ୍ୟାଳୟ ଅଛି । ସାଙ୍ଗଠନିକ ସ୍ଥିତି ଦୁର୍ବଳ ଥିବାରୁ ଏହି ପୁରୁଣା ଗୃହ ଭାଙ୍ଗିଯିବାରେ କିଛି ବର୍ଷ ହେଲା ଏକ ଛୋଟ ଚାଳିଆ ଘର ଏହାର ମୂକ ସାକ୍ଷୀ ଭାବରେ ଛିଡା ହୋଇଛି । କମ୍ୟୁନିଷ୍ଟ ପାର୍ଟିର ସ୍ଥାନୀୟ ପୂର୍ବ ଇତିହାସ ଅଦ୍ୟାବଧି ଯାହା ମିଳିଅଛି ତାହା ହେଲା - ସ୍ୱାଧୀନତା ପୂର୍ବରୁ ତାହା ବୋଲଗଡ ଡମ ସାହିର ୰ ପ୍ରହଲ୍ଲାଦ ଘଡେଇଙ୍କର ଜମିଥିଲା । ସେଠାରେ ସ୍ୱାଧୀନତା ସଂଗ୍ରାମୀ ୰ ରଘୁନାଥ ପାହାଡସିଂହ ଏବଂ ଗଙ୍ଗାଧର ମିଶ୍ର (ସାରଙ୍ଗଧରପୁର, ରଣପୁର) ୨ୟ ବିଶ୍ୱଯୁଦ୍ଧ ପରେ ୧୯୪୫ ମସିହାରେ ସ୍ଥାନୀୟ ତନ୍ତୀ ରଙ୍ଗଣୀ ମାନଙ୍କୁ ସଂଗଠିତ କରି ମାରୁଆଡି ବ୍ୟବସାୟୀଙ୍କ ଶୋଷଣରୁ ରକ୍ଷାକରିବାକୁ ସୁବିଧା ଦରରେ ସୂତା ଯୋଗାଇବା ଉଦ୍ଦେଶ୍ୟରେ ଏକ ସୂତା ବଣ୍ଟନ ସମିତି ଆରମ୍ଭ କରିଥିଲେ । ରଘୁନାଥ ପାହାଡସିଂହ ଏହି ଜମି ପ୍ରହଲ୍ଲାଦ ଘଡେଇଙ୍କ ଠାରୁ କିଣିଥିଲେ । ପରେ ଟ୯୦୦ଙ୍କାରେ ଉକ୍ତ ଜମିକୁ ସୂତା ବଣ୍ଟନ ସମିତି ନାମରେ ବିକ୍ରୀ କରିବା ବେଳେ ପଶ୍ଚିମ ତରଫରୁ ୯ ହାତ ଜମି ସମିତିର ସମ୍ପତ୍ତି ହୋଇ ରହିଲା, ବାକି ପୂର୍ବ ଅଂଶ ଜମି କମ୍ୟୁନିଷ୍ଟ ପାର୍ଟି ନାମରେ ରେକର୍ଡଭୁକ୍ତ ହେଲା । ସେତେବେଳର ଯୁବ କମ୍ୟୁନିଷ୍ଟ ୰ କାହ୍ନୁଚରଣ କତିଙ୍କର ବାଲ୍ୟ ବନ୍ଧୁ ପ୍ରହଲ୍ଲାଦ ଘଡେଇଙ୍କର ଧର୍ମପୁତ୍ର ଭଗବାନ ଘଡେଇ ଥିବାରୁ ତାଙ୍କର ଏଥିରେ ମୁଖ୍ୟ ସହଯୋଗ ଥିଲା ।

ସେ ଯାହାହେଉ ପଛକେ ଏଠାରେ ଦୀର୍ଘଦିନ ଧରି କମ୍ୟୁନିଷ୍ଟ ଆନ୍ଦୋଳନ ହୋଇଥିବାରୁ ସ୍ଥାନୀୟ ଗରୀବ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ସଚେତନତା ବୃଦ୍ଧି ପାଇଥିଲା । ପୂର୍ବେ ଯେପରି ଧନୀ ଏବଂ ପ୍ରଭାବଶାଳୀ ଲୋକମାନେ ଗରିବ ଲୋକମାନଙ୍କୁ ଚାପିରଖିଥିଲେ ତାହାର ପରିସମାପ୍ତି ଘଟିଥିଲା ।

ସ୍ଥାନୀୟ କୃଷକ ଏବଂ ଭାଗଚାଷୀ ଆନ୍ଦୋଳନର ସୁଦୂର ପ୍ରସାରୀ ପ୍ରଭାବ ଥିଲା । ଏହି ଭାଗଚାଷୀ ଆନ୍ଦୋଳନ ଯୋଗୁଁ ଗରୀବ ଭାଗଚାଷୀ ମାନେ ବୋଲଗଡ ବେଗୁନିଆ ଅଞ୍ଚଳରେ ୨୨ ଶହ ଏକର ଜମିର ମାଲିକନା ସତ୍ତ୍ୱ ହାସଲ କରିବା ସଙ୍ଗେ ସଙ୍ଗେ କଅଁରପୁର ଗ୍ରାମର ଆକୁଳି ନାୟକ ଏଥିପାଇଁ ଶହୀଦ ହୋଇଥିଲା । ମିଳିତ ଜାତିସଂଘ ଦ୍ୱାରା ଏକ କମିଟି ଏହା ଅନୁଧ୍ୟାନ କରିବାକୁ ଆସିଥିବା ବିଷୟ ବର୍ତ୍ତମାନ ରାଜ୍ୟ ପ୍ରମୁଖ ଶାସନ ସଚିବ ଏବଂ କମିସନର ଶ୍ରୀ ଯୁଗଳ କିଶୋର ମହାପାତ୍ର, ଆଇ.ଏ.ଏସ. ୧୯୭୭ ରେ ଖୋରଧା ସବକଲେକ୍ଟର ଥିଲାବେଳେ ଭାସ୍କର ମହାପାତ୍ରଙ୍କ ଚେୟାରମ୍ୟାନ ଅନାସ୍ଥା ପ୍ରସ୍ତାବ ପଞ୍ଚାୟତ ସମିତି ବୈଠକରେ ପ୍ରକାଶ କରିଥିବା ତଥ୍ୟ ଲେଖକ ଶୁଣିବାର ସୁଯୋଗ ପାଇଥିଲେ ।

ଏଠାରେ କମ୍ୟୁନିଷ୍ଟମାନଙ୍କର ବିଶେଷ ପ୍ରଭାବ ଥିବା ସତ୍ତ୍ୱେ ପୁରାତନ ସ୍ୱାଧୀନତା ସଂଗ୍ରାମୀ ଏବଂ କଂଗ୍ରେସ କର୍ମୀମାନେ ନୀରବ ନଥିଲେ । ୧୯୫୫ ମସିହାରେ ବିନୋବାଜୀ ଭୂଦାନ ଆନ୍ଦୋଳନ ପାଇଁ ପଦଯାତ୍ରା କରିବା ଅବସରରେ ବୋଲଗଡ ଠାରେ ପହଞ୍ଚି ଥିଲେ ଏବଂ ନିକଟସ୍ଥ ଟାଙ୍ଗିସାହି ସ୍କୁଲ ଠାରେ ଅବସ୍ଥାନ କରିଥିଲେ । ଏହି ଭୂଦାନ ଅନ୍ଦୋଳନରେ ୰ ପତିତପାବନ ହୋତା, ବଳଭଦ୍ର ସାହୁ, ବାଙ୍କନିଧି ପରିଡା, ସୁଦର୍ଶନ ମହାପାତ୍ର, ଗୋଲାମ ମୁସ୍ତଫା ପ୍ରଭୃତି ମୁଖ୍ୟ କଂଗ୍ରେସ କର୍ମୀମାନେ ଅଂଶଗ୍ରହଣ କରିଥିଲେ । ଏମାନଙ୍କ ଉଦ୍ୟମରେ ମାଣିକାଗୋଡାର ସେର ଅଲ୍ଲି ବେଗ, ବୋଲଗଡର ବାମନ ମହାପାତ୍ର ଏବଂ ରଘୁନାଥ ମହାପାତ୍ର, ଖଗୁରିଆର ମଧୁସୂଦନ ଛୋଟରାୟ, ଘୋରଡିଆର ଗଙ୍ଗାଧର ବିଧାର, ଭାଗବତ ସାମନ୍ତରାୟ କିଛି ଜମି ଭୂଦାନ ଉଦ୍ଦେଶ୍ୟରେ ଗରିବ ଲୋକଙ୍କ ପାଇଁ ଦାନ କରିଥିଲେ ।



## ସ୍ୱାଧୀନତାର ପରବର୍ତ୍ତୀ ଅବସ୍ଥା

ସେହି ୧୯୫୫ ମସିହାରେ ବୋଲଗଡ ଅଞ୍ଚଳରେ ଭୀଷଣ ମରୁଡି ପଡିଥିଲା । ମରୁଡି ଅନୁଧ୍ୟାନ ପାଇଁ ତତକାଳୀନ ପୁରୀ ଜିଲ୍ଲାପାଳ ବୋଲଗଡ ଆସି ଡାକବଙ୍ଗଳାରେ ଅବସ୍ଥାନ କରିବା ଅବସରରେ ସ୍ଥାନୀୟ ଲୋକମାନେ ୰ ପତିତପାବନ ହୋତାଙ୍କ ନେତୃତ୍ୱରେ ସେମାନଙ୍କର ଦୁଃଖ ଜଣାଇବାକୁ ଯିବାରେ ଜିଲ୍ଲାପାଳ ୰ ହୋତାଙ୍କୁ ଖରାପ ବ୍ୟବହାର ପ୍ରଦର୍ଶନ କରିଥିଲେ । ଏ ବିଷୟରେ ୰ ହୋତାଙ୍କର ଜିଲ୍ଲାପାଳଙ୍କ ବ୍ୟବହାର ବିରୁଦ୍ଧରେ ଦୈନିକ ପ୍ରଜାତନ୍ତ୍ରକୁ 'ସମ୍ପାଦକଙ୍କୁ ପତ୍ର' ଶିରୋନାମାରେ ଏକ ଅଭିଯୋଗ ପତ୍ର ଦେଇଥିଲେ । ତାହା ଉପରେ ତତକାଳୀନ ପ୍ରଜାତନ୍ତ୍ରର ସମ୍ପାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ କଡା ମନ୍ତବ୍ୟ ଦେଇ 'ମେଘ ଦୁଲୁକୁଚି' ଶିରୋନାମାରେ ସମ୍ବାଦ ପ୍ରକାଶ କରିଥିବାରୁ ତାହା ସେତେବେଳେ ରାଜ୍ୟ ପ୍ରଶାସନକୁ ଦୋହଲାଇ ଦେଇଥିଲା । ଏ ସମ୍ପର୍କରେ ନିକଟରେ ସମ୍ବାଦରେ ବରିଷ୍ଠ ପ୍ରଶାସକ ଶ୍ରୀକାନ୍ତ ଚାଟାର୍ଜୀ (I.A.S) ଙ୍କର "ସେକାଳର ହାକିମ, ଏକାଳର ହାକିମ" ଶୀର୍ଷକ ପ୍ରବନ୍ଧ ଯାହା ସମ୍ବାଦରେ ପ୍ରକାଶ ପାଇଥିଲା ତାହା ନିମ୍ନରେ ସ୍ଥାନୀତ ହେଲା ।

## ବୋଲଗଡ଼ ଇତିହାସ

(ସମ୍ବାଦ-ବୁଧବାର, ୨୪-୯-୨୦୦୩)

ବିଷୟ - ହାକିମ ଏକାଳର ସେକାଳର (ଲେଖକ- ଶ୍ରୀକାନ୍ତ ଚାଟାର୍ଜି)

ସ୍ୱାଧୀନୋତ୍ତର କାଳରେ ଆଇ. ସି. ଏସ. ମନୋଭାବର ଅନ୍ତତଃ କିଛି ଅଂଶ ଆମ ଦେଶୀୟ ପ୍ରଶାସକ ମାନେ ଉତ୍ତରାଧିକାର ସୂତ୍ରରେ ପାଇଲେ । ମୌଳିକ ଅମଲାତାନ୍ତ୍ରିକ ଢାଞ୍ଚା ଏବଂ ମନୋଭାବରେ ବିଶେଷ ପରିବର୍ତ୍ତନ ଆସିଲା ନାହିଁ । ଦୁଇଟି ଉଦାହରଣ ନେଇ ଆମେ ଏହାକୁ ସାବ୍ୟସ୍ତ କରିବାକୁ ଚେଷ୍ଟା କରିବା । (ଏଥିରୁ ପ୍ରଥମ ଉଦାହରଣଟି ବୋଲଗଡ ଅଞ୍ଚଳ ପାଇଁ ଲିଖିତ )

<u>ପ୍ରଥମ ଉଦାହରଣ</u> - ୧୩-୮-୧୯୫୫ ମସିହାରେ 'ପ୍ରଜାତନ୍ତ୍ର'ର ସମ୍ପାଦକୀୟ ପୃଷ୍ଠାରେ ପ୍ରକାଶିତ ଏକ ପତ୍ର । ପତ୍ରର ଲେଖକ ଥିଲେ ପତିତପାବନ ହୋତା । ପତ୍ରର ଶୀର୍ଷକ ହେଲା "ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଦୁର୍ବ୍ୟବହାର" । ପତ୍ରଟି ହେଲା - 'ପୁରାପୁରି ବୋଲଗଡ ଥାନାରେ ମରୁଡି ହୋଇଅଛି । ଦୀର୍ଘ ଅଢେଇ ମାସ ହେଲା ବର୍ଷା ନହେବା ଫଳରେ ଜମି ସବୁ ଫାଟିଗଲାଣି । ଗରିବ ଲୋକମାନେ କାମ ନପାଇ ହାହାକାର କରୁଛନ୍ତି । ମହାଜନ ମାନେ ଧାନ କରଜ ଦେଉନାହାନ୍ତି । ପ୍ରତିଦିନ ଶହ ଶହ ଲୋକ ଆସି ଆମ କର୍ମୀ ମାନଙ୍କ ଦ୍ୱାରେ ଉପସ୍ଥିତ ହୋଇ ପ୍ରତିକାର ଲୋଡୁଛନ୍ତି ଇତ୍ୟାଦି . . . . । ଗତକାଲି ପୁରୀ ଜିଲ୍ଲା କଲେକ୍ଟର ବୋଲଗଡ ଡାକବଙ୍ଗଳାକୁ ଆସିଥିଲେ । ସମ୍ବାଦ ପାଇ ମଫସଲର ଶହ ଶହ ଲୋକ ସେଠାରେ ରୁଣ୍ଡ ହେଲେ । ମାତ୍ର ଦୁଃଖର କଥା ତାଙ୍କର ଚପରାଶି ତାଙ୍କ ଝାଟସାରରେ ଲୋକମାନଙ୍କୁ ଚାଲିଯିବାକୁ ନିର୍ଦ୍ଦେଶ ଦେଲେ । ଲୋକେ ଚପରାଶିଙ୍କ ଏହି ନିର୍ଦ୍ଦେଶରେ ୨ ଘଣ୍ଟାରୁ ଅଧିକ କାଳ ନୀରବ ହୋଇ ବସିଲେ । ବଙ୍ଗଳା ଭିତରୁ ବାରଣ୍ଡାକୁ ବାହାରିବାରୁ ମୁଁ ହାକିମଙ୍କ ପାଖକୁ ଯାଇ ଲୋକଙ୍କ ଦୁଃଖ କଥା ଏବଂ ସେମାନେ କିପରି ଚପରାସିଙ୍କ ଦ୍ୱାରା ଅପମାନିତ ହୋଇ ବାହାରେ ବସିଛନ୍ତି ତାହା ଜଣାଇବା ସଂଗେ ସେମାନଙ୍କୁ ଡାକି ସେମାନଙ୍କ କଥା ବୁଝିନେବା ପାଇଁ ହାକିମଙ୍କୁ ଅନୁରୋଧ କରିଥିଲି । ହାକିମ ମୋ କଥା ଶୁଣିବା ମାତ୍ରେ ହଠାତ ମୋ ଉପରେ ରାଗିଯାଇ କହିଲେ ଯେ, ବ୍ରିଟିଶ ଅମଳ ହୋଇଥିଲେ । ଲୋକେ ଏମିତି ହତା ଭିତରକୁ ପଶିପାରିନଥାନ୍ତେ .... । ହାକିମ ଚାଲିଗଲା ପରେ ଲୋକମାନେ ମିଳିତ ହୋଇ ଯୁଗଳ କିଶୋର ପଟ୍ଟନାୟକଙ୍କ ସଭାପତିତ୍ୱରେ ଗୋଟିଏ ସାଧାରଣ ସଭାକରି ଏ ଦୁର୍ବ୍ୟବହାରର ଘୋର ପ୍ରତିବାଦ କଲେ । ଦେଶ ସ୍ୱାଧୀନ ହେଲା ପରେ ହାକିମମାନେ ଯଦି ଲୋକମାନଙ୍କ ପ୍ରତି ବ୍ରିଟିଶ ଅମଳର ବ୍ୟବହାର ଦେଖାନ୍ତି, ସେମାନଙ୍କର ଆତ୍ମସମ୍ମାନ ପ୍ରତି ନଜର ନଦେଇ ସେମାନଙ୍କର ନାଗରିକତ୍ୱ ଉପରେ ପଦାଘାତ କରନ୍ତି, ତାହା ହେଲେ ସ୍ୱରାଜ ଲାଭପରେ ହେଲା କଣ ? '

ଏଥିରୁ ସୁସ୍ପଷ୍ଟ ଯେ ୧୯୫୫ ମସିହା ପର୍ଯ୍ୟନ୍ତ ଦେଶୀୟ କଲେକ୍ଟରଙ୍କର ବ୍ରିଟିଶ ଅମଳ ନିଶା ଯାଇନଥିଲା ।

ଏହିପରି ଭାବରେ ସ୍ଥାନୀୟ ଲୋକଙ୍କ ସମସ୍ୟା ସହିତ ସଂପୃକ୍ତ ହୋଇ ପ୍ରଥମେ କଂଗ୍ରେସ କର୍ମୀ ମାନେ ଧନୀଲୋକଙ୍କ ବିରୁଦ୍ଧରେ ଭାଗଚାଷ ଆନ୍ଦୋଳନ କରିବା ପାଇଁ ବୋଲଗଡରେ କୋଠଖଳା ପ୍ରସ୍ତୁତ କରି ଭାଗଚାଷୀଙ୍କ ଧାନ ଧନୀ ଲୋକଙ୍କ ବାଡିକୁ ନନେଇ ସେଠାରେ ଜମା କରିଥିଲେ । ପତିତପାବନ ହୋତା, ବଳଭଦ୍ର ସାହୁ, ଚକ୍ରଧର ମହାପାତ୍ର ଏହାର ନେତୃତ୍ୱ ନେଇଥିଲେ ମଧ୍ୟ ପ୍ରକାଶ୍ୟରେ ଶ୍ରୀ ରଘୁନାଥ ସେଠୀ, ଭିକାରୀ ଚରଣ ସାହୁ ଏବଂ ୰ ଦିଗମ୍ବର ନରେନ୍ଦ୍ର ଏଥିରେ ସାମିଲ ହୋଇଥିଲେ । ଭାଗଚାଷୀଙ୍କୁ ଏକାଠୀ କରି କଳେଇ ବିଡା ବୋଲଗଡର ସେତେବେଳେ ସଂସ୍କୃତ ଟୋଲ ସାମାନାରେ ଥିବା ଘୋରଡିଆ ସାମନ୍ତରା ବିଧାର ପରିବାରଙ୍କ ବାଡିରେ କୋଠଖଳା କରିଥିଲେ । ଏଥିରେ ଭାଗଚାଷୀଙ୍କ ଭିତରୁ ୰ ଅଗାଧୁ ଦାସ ଏବଂ ୰ ବୁଲା ପ୍ରଧାନ ଆଗୁଆ ଥିଲେ । ୰ ଅଗାଧୁ ଦାସ ବହୁ ଦିନ ଧରି ୰ ବିଦ୍ୟାଧର ପଟ୍ଟନାୟକଙ୍କର ବିଶ୍ୱସ୍ତ ଖମାରି ଥାଇ ଏବଂ ତାଙ୍କ ଠାରୁ ଭାଗ ଧରିଥିବା ବିଲରୁ ଧାନ କଳେଇ ଆଣି କୋଠଖଳାରେ ରଖିବାରେ ୰ ଦାସଙ୍କ ପରିବାରରେ ଅଶାନ୍ତି ସୃଷ୍ଟି ହୋଇଥିଲା । ଏହି ଘଟଣାକୁ ନେଇ ଏପରି ଦୁଃଖଦ ଘଟଣା ଘଟିଲା ଯାହା ଫଳରେ ଭାଗଚାଷ ଆନ୍ଦୋଳନ ପ୍ରତି ସାଧାରଣ ସମର୍ଥନ ଦେଖାଦେଲା ନାହିଁ । ଫଳରେ ତାହା ବନ୍ଦ ହୋଇଯାଇଥିଲା । ପରେ ଏହି ଆନ୍ଦୋଳନକୁ କମ୍ୟୁନିଷ୍ଟ ମାନେ ତାଙ୍କ ସଂଗଠନର ମୁଖ୍ୟ ମାଧମ ଭାବେ ବାଛିନେଇଥିଲେ ।

୧୯୫୨ ମସିହା ପରେ ୧୯୫୭ରେ ସାଧାରଣ ନିର୍ବାଚନ ଆସିଲା । ସେତେବେଳେ ବୋଲଗଡ ଥାନା କଂଗ୍ରେସ କମିଟି ଥିଲା । ଏଥିରେ ୰ ପତିତପାବନ ହୋତା, ୰ ଚକ୍ରଧର ମହାପାତ୍ର, ୰ ବଳଭଦ୍ର ସାହୁ, ୰ ବାଙ୍କନିଧି ପରିଡା, ୰ ବାସୁଦେବ ସୁବୁଦ୍ଧି, ୰ ଗୋଲାମ ମୁସ୍ତଫା ଖାଁ, ୰ ବିଶ୍ୱନାଥ ସାମନ୍ତ ପ୍ରମୁଖ ମୁଖ୍ୟ କର୍ମୀ ଥିଲେ । ବୋଲଗଡ ଏକ ଖଣ୍ଡାୟତ ଅଧ୍ୟୁସିତ ଅଞ୍ଚଳ ହୋଇଥିବାରୁ ପ୍ରତି ନିର୍ବାଚନରେ ୰ ଗଙ୍ଗାଧର ପାଇକରାୟ ଅଧିକ ଖଣ୍ଡାୟତ ଶ୍ରେଣୀର ଭୋଟ ପାଉଥିବାରୁ ତାଙ୍କ ବିରୁଦ୍ଧରେ ଜଣେ ଖଣ୍ଡାୟତ ଶ୍ରେଣୀର ପ୍ରାର୍ଥୀ କରିବାକୁ ଚିନ୍ତା କଲେ । ଏମାନେ ଏକାଠି ହୋଇ କଟକ ଗଲେ । କଟକ ବିହାରୀ ବାଗ (ପ୍ରଜାତନ୍ତ୍ର ପରିସର) ତତ୍‌କାଳୀନ ଓଡିଶାର ରାଜନୀତିର ଭାଗ୍ୟ ନିୟନ୍ତ୍ରଣ ସ୍ଥଳ ଥିଲା । ଡଃ. ହରେକୃଷ୍ଣ ମହତାବ ସେତେବେଳେ ଓଡିଶାର ମୁକୁଟ ବିହୀନ ସମ୍ରାଟ । ଉପରୋକ୍ତ ସ୍ଥାନୀୟ କଂଗ୍ରେସ ମୁଖ୍ୟମାନେ ବହୁ ବିଚାର ବିମର୍ଶ କରି ଡଃ. ମହତାବଙ୍କୁ ଭେଟିଲେ । ସେତେବେଳେ ସଦ୍ୟ ଏମ.ଏ. ପାସ କରି ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ସେଠାରେ ସାହିତ୍ୟ ପତ୍ରିକା

'ଝଙ୍କାର'ର ସଂପାଦନା ଦାୟିତ୍ୱ ବହନ କରୁଥିଲେ । ସେ ଜଣେ ପାରମ୍ପରିକ ସଂଭ୍ରାନ୍ତ ଖଣ୍ଡାୟତ ଏବଂ ଉଚ୍ଚ ଶିକ୍ଷିତ ବ୍ୟକ୍ତି । ଏହାକୁ ଦୃଷ୍ଟିରେ ରଖି ବୋଲଗଡ - ବେଗୁନିଆଁର ଉପରୋକ୍ତ ସ୍ୱାଧୀନତା ସଂଗ୍ରାମୀ ଏବଂ କଂଗ୍ରେସ ମୁଖ୍ୟ ସତ୍ୟାନନ୍ଦଙ୍କୁ ପ୍ରାର୍ଥୀ କରିବାକୁ ଡଃ. ମହତାବଙ୍କୁ ପ୍ରର୍ବରାଇଲେ । ପ୍ରଥମେ ଡଃ. ମହତାବ ରାଜି ହେଲେନାହିଁ । ଜାନକୀବାବୁ ସତ୍ୟାନନ୍ଦଙ୍କର ପିଲାଦିନର ସାଙ୍ଗ । ସେତେବେଳେ ଜାନକୀବାବୁ 'ପ୍ରଜାତନ୍ତ୍ର'ର ସଂପାଦକ । ଡଃ. ହରେକୃଷ୍ଣ ମହତାବଙ୍କୁ ବୁଝାଇ ରାଜି କରାଇଲେ । ୨ୟ ସାଧାରଣ ନିର୍ବାଚନରେ ସତ୍ୟାନନ୍ଦ ୪ ପାଇକରାୟଙ୍କୁ ହରାଇଥିଲେ । ଏହି ନିର୍ବାଚନରେ କଳାଙ୍ଗର ଦିବାକର ହୋତା, ଶିକ୍ଷକ ରାଧାନାଥ ହୋତା, ସଂପୁର ଗୋପୀନାଥ ପରିଡା, ହରିହର ମହାନ୍ତି, ହରିପୁର ଶାସନର କୃଷ୍ଣଚନ୍ଦ୍ର ତ୍ରିପାଠୀ , ବୋଲଗଡର ରଘୁନାଥ ସେଠୀ, ମାଧବଚନ୍ଦ୍ର ଦାସ, ଗଙ୍ଗାଧର ପରିଡା, ଡାବରଧୂଆ ଏବଂ ରୋଳସିଂହର ଅନ୍ତର୍ଯ୍ୟାମୀ ପଟ୍ଟନାୟକ ମୁଖ୍ୟ ଅଂଶ ଗ୍ରହଣ କରିଥିଲେ । ଛାତ୍ର ଭାବରେ ହରିବନ୍ଧୁ ସାହୁ, ରବୀନ୍ଦ୍ର କୁମାର ଚୌଧୁରୀ, ରହମତୁଲ୍ଲା ଖାଁ, ସୁମନ୍ତ ଛୋଟରାୟ ଏହି ନିର୍ବାଚନରେ ସତ୍ୟାନନ୍ଦ ଚମ୍ପତିରାୟଙ୍କ ପାଇଁ ସକ୍ରିୟ ପ୍ରଚାର କରିଥିଲେ ।

ସେତେବେଳେ ଆରିକମା ଅଞ୍ଚଳର କମ୍ୟୁନିଷ୍ଟ ନେତା ତାରେଶ୍ୱର ହୋତା ସ୍ୱାଧୀନ ପ୍ରାର୍ଥୀ ଥିଲେ । ସତ୍ୟାନନ୍ଦ ବାବୁ ଏହି ନିର୍ବାଚନରେ ଜିଣିଲେ । ଗ୍ରାମ ଗହଳିର ଯୁବକ ମାନଙ୍କୁ ଏକାଠି କରି ସତମାର୍ଗ ଆନ୍ଦୋଳନ ଆରମ୍ଭକରି ସବୁଗ୍ରାମକୁ ରାସ୍ତା ତିଆରି କଲେ । ହେଲେ ପରବର୍ତ୍ତୀ ନିର୍ବାଚନରେ ଲଢେଇ କରି ଜିଣିପାରିଲେ ନାହିଁ । ତାଙ୍କ ଅମଳରେ ୧୯୬୨ରେ ବୋଲଗଡ ବ୍ଲକ ଏବଂ ୧୯୬୩ରେ ବେଗୁନିଆଁ ବ୍ଲକର ଶୁଭାରମ୍ଭ ହେଲା । ଦେଉଳି ସତମାର୍ଗ ଏମ.ଇ. ସ୍କୁଲ ମଧ ସେତେବେଳେ ହୋଇଥିଲା । ବୋଲଗଡ ସତମାର୍ଗ ଆନ୍ଦୋଳନକୁ ପଣ୍ଡିତ ନୀଳକଣ୍ଠ ଦାଶ ଆସି ଉଦ୍‌ଘାଟନ କରିଥିଲେ । କୋଦୁଅବେରେଣୀ ଠାରେ ଏକ ସତମାର୍ଗ କର୍ମୀ ସମ୍ମିଳନୀକୁ ତତ୍‌କାଳୀନ ଓଡିଶାର ରାଜ୍ୟପାଳ ଡଃ. ସୁବ୍ରାଙ୍କର ଆସିଥିଲେ । ସତମାର୍ଗ ଜରିଆରେ ବୋଲଗଡ ବେଗୁନିଆରେ ୧୦୦ଟି ଗ୍ରାମ୍ୟ ରାସ୍ତା ନିର୍ମିତ ହୋଇଥିଲା । ଏଥିରେ ଜନସହଯୋଗ ଥିବାରୁ ଆଚାର୍ଯ୍ୟ ବିନୋବା ଭାବେ, ପଣ୍ଡିତ ନେହେରୁ, ଡଃ. ରାଜେନ୍ଦ୍ର ପ୍ରସାଦ ପ୍ରମୁଖ ରାଷ୍ଟ୍ରୀୟ ନେତା ମାନେ ଏହି ସତମାର୍ଗ ଆନ୍ଦୋଳନର ଉଚ୍ଚ ପ୍ରଂଶସା କରିବା ସହ ପରବର୍ତ୍ତୀ କାଳରେ ତତକାଳୀନ କେନ୍ଦ୍ର ଗ୍ରାମ୍ୟ ଗୋଷ୍ଠୀ ଉନ୍ନୟନ ମନ୍ତ୍ରୀ ଏସ. କେ. ଦେଙ୍କ ଦ୍ୱାରା ଏହା ସ୍ୱୀକୃତି ଲାଭ କରି ସମଗ୍ର ଦେଶରେ ଏହା ଗ୍ରାମ୍ୟ ଗୋଷ୍ଠୀ ଯୋଜନା (Community Development) ଭାବରେ କାର୍ଯ୍ୟକାରୀ ହୋଇଥିଲା । ସତ୍ୟାନନ୍ଦ ବାବୁ ମୂଳରୁ କବି ସ୍ୱଭାବ ଲୋକ ଥିଲେ । ତାଙ୍କର ସରଳତା

ଭଦ୍ର ବ୍ୟବହାର ସମସ୍ତଙ୍କୁ ବିମୋହିତ କରୁଥିଲା । ମାତ୍ର ତାଙ୍କର ଲଗାତର ପରାଜୟ ଦ୍ୱାରା କଂଗ୍ରେସ କର୍ମୀମାନେ ହତୋତ୍ସାହ ହୋଇଗଲେ ।

ସେହି ସମୟରେ ସ୍ଥାନୀୟ କଂଗ୍ରେସ କମ୍ୟୁନିଷ୍ଟ ରାଜନୀତିରେ ତୀବ୍ର ମତାନ୍ତର ଏବଂ ମନାନ୍ତର ଅଞ୍ଚଳର ପ୍ରଗତି ପଥରେ ବାଧାସୃଷ୍ଟି କରିଥିଲା । ବିଶେଷ କରି ୧୯୬୭ ମସିହାରେ ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବୋଲଗଡକୁ ନିର୍ବାଚନ ପ୍ରଚାର କରିବାକୁ ଆସିଥିଲେ ମଧ ପୁନର୍ବାର ସେହି ନିର୍ବାଚନରେ ଗଙ୍ଗାଧର ପାଇକରାୟଙ୍କ ବିଜୟ ସ୍ଥାନୀୟ ବାତାବରଣକୁ ଅଧିକ ଉତ୍ତେଜନା ପରିସ୍ଥିତି ସୃଷ୍ଟି କରିଥିଲା । ଏପରିକି ସେତେବେଳେ ଫୁଟବଲ ଟୁର୍ଣ୍ଣାମେଣ୍ଟ କ୍ଲବ ସର୍ବୋପରି ସ୍ଥାନୀୟ ବାମନ ହାଇସ୍କୁଲ ବ୍ୟାପାରରେ ଦଳୀୟ ରାଜନୀତି ପ୍ରବେଶ କରି ଏକ ଅଶାନ୍ତ ମୟ ପରିସ୍ଥିତି ସୃଷ୍ଟି କରିଥିଲା । ଯାହା ଫଳରେ ଏଠାରେ ଖେଳ ପ୍ରେମୀ ମାନଙ୍କର ଆଶା ଆକାଂକ୍ଷାର ଉତ୍ସ ଲିଙ୍ଗରାଜ ମେମୋରିଆଲ ଫୁଟବଲ ଟୁର୍ଣ୍ଣାମେଣ୍ଟ ଏବଂ ୧୯୬୮ ମସିହାରେ ବାମନ ହାଇସ୍କୁଲ ଲଗାତାର ଛାତ୍ର ଧର୍ମଘଟ ପରିଶେଷରେ ଛାତ୍ରାବାସରେ ଅଗ୍ନିକାଣ୍ଡ ପ୍ରଭୃତି ଘଟଣାବଳୀ କେତେକ ଛାତ୍ରଙ୍କର ଜୀବନକୁ ଦିଗହରା କରିଦେବା ସଂଗେ ସଂଗେ ଉଭୟ ଦଳର କର୍ମୀମାନଙ୍କ ମଧରେ ଚରମ ତିକ୍ତଭାବ ସୃଷ୍ଟି ହୋଇଥିଲା । ୧୯୬୨ ମସିହା ଭାରତ ଚୀନ ଯୁଦ୍ଧବେଳେ ଶ୍ରୀ କୃଷ୍ଣମୋହନ ପାଲଟାସିଂହଙ୍କ ନେତୃତ୍ୱରେ ଗଠିତ ଗ୍ରାମରକ୍ଷୀ ଦଳ ସେତେବେଳେ ଗ୍ରାମର ଅଗ୍ରଣୀ ଯୁବ ସଂଗଠନ ଭାବରେ ପ୍ରତିଷ୍ଠିତ ହୋଇ ବହୁ ଜନହିତକର କାର୍ଯ୍ୟ କରିବାରେ ସହାୟକ ହୋଇଥିଲା ବେଳେ କ୍ରମେ ଏହା କମ୍ୟୁନିଷ୍ଟ ପାର୍ଟି ଆଡକୁ ଢଳିବାରୁ ସ୍ୱାଧୀନତା ସଂଗ୍ରାମୀ ଚକ୍ରଧର ମହାପାତ୍ରଙ୍କ ନେତୃତ୍ୱରେ ଶାନ୍ତି ସେନା ଦଳ ନାମରେ ଅନ୍ୟ ଏକ ସଂଗଠନ ଗଢି ଉଠିଥିଲା । ୧୯୬୦ରେ ପ୍ରତିଷ୍ଠିତ ଜନତା କ୍ଲବ ଏହି ସବୁ ପରିସ୍ଥିତି ଯୋଗୁଁ ଅକାମି ହୋଇଯାଇଥିଲା । ୧୯୬୨ ଚାଇନା ଯୁଦ୍ଧବେଳେ ସ୍ଥାନୀୟ ବାମନ ହାଇସ୍କୁଲର ଛାତ୍ରମାନେ ଲେଖକ ଏବଂ ତାଙ୍କର ସହପାଠୀ ରାସବିହାରୀ ବେହେରା, ଅଇଁଠୁ ରଣଜିତ ସିଂହ, ସୀତାକାନ୍ତ ବିଧାର, ଘନଶ୍ୟାମ ତ୍ରିପାଠୀ ପ୍ରଫୁଲ୍ଲ ସିଂହଙ୍କ ସହଯୋଗରେ ଅଜ୍ଞାତରେ ଧାନକାଟି ଏହି ମଜୁରୀ ଯୁଦ୍ଧ ପାଣ୍ଠିକୁ ଦାନକରିବା ପାଇଁ ପ୍ରୟାସ ରଖିଥିଲେ । ସର୍ବପ୍ରଥମେ ତୃତୀୟପଡା ଗ୍ରାମର ଲିଙ୍ଗରାଜ ସୁବୁଦ୍ଧି ଛାତ୍ରମାନଙ୍କୁ ଉତ୍ସାହିତ କରିବାପାଇଁ ନିଜ ବିଲରେ ଧାନ କାଟିବାକୁ ସୁଯୋଗ ଦେଇଥିଲେ । ଏଥିରେ ତତକାଳୀନ ବ୍ଲକରେ କାର୍ଯ୍ୟରତ ଶ୍ରୀ ଜଗତ ଚନ୍ଦ୍ର ଦାସ ଛାତ୍ରମାନଙ୍କୁ ପୂର୍ଣ୍ଣପ୍ରାଣରେ ସହଯୋଗ କରିବା ସଙ୍ଗେ ସଙ୍ଗେ ସେମାନଙ୍କ ସହ ମିଶି ଧାନ କାଟୁଥିଲେ । ପରେ ଏହି ଘଟଣା ପ୍ରଚାର ହେଲା ମାତ୍ରେ ସ୍କୁଲର ତତକାଳୀନ ପ୍ରଧାନ ଶିକ୍ଷକ କିଶୋର ଚନ୍ଦ୍ରଶେଖର ମିଶ୍ର ଏହି କାର୍ଯ୍ୟର ପ୍ରଶଂସା କରି ସମସ୍ତ ଶିକ୍ଷକ ଏବଂ ଛାତ୍ରମାନଙ୍କର

ମିଳିତ ସହଯୋଗରେ ଧାନ କାଟି ତାହାର ଲବ୍ଧ ଧନ ଟ୧୧୧୧ଙ୍କା ତତ୍‌କାଳୀନ ପ୍ରଜାତନ୍ତ୍ରର ସମ୍ପାଦକ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ବୋଲଗଡ ନିମନ୍ତ୍ରଣ କରି ଏକ ସଭାରେ ଯୁଦ୍ଧ ପାଣ୍ଠି ପାଇଁ ଉକ୍ତ ଧନ ଅର୍ପଣ କରାଯାଇଥିଲା । ଏହି ସଭାରେ ଜାନକୀ ବାବୁଙ୍କୁ ଦିଆଯାଇଥିବା ଫୁଲମାଳକୁ ନିଲାମ କରାଯାଇ ସର୍ବୋଚ ଟ୮୦ଙ୍କାରେ ତତକାଳୀନ ବୋଲଗଡ ବ୍ଲକର ଜନୈକ ଅଧିକାରୀ ଏବଂ ବୋଲଗଡର ପରମ ବନ୍ଧୁ ଶ୍ରୀ ଜଗତ ଚନ୍ଦ୍ର ଦାସ ନେଇ ସେହି ଟଙ୍କାକୁ ଯୁଦ୍ଧ ପାଣ୍ଠିକୁ ଦାନ କରିଥିଲେ । ସେତେବେଳେ ଛାତ୍ରମାନଙ୍କ ଦ୍ୱାରା ଧାନକାଟି ଯୁଦ୍ଧ ପାଣ୍ଠିକୁ ସାହାଯ୍ୟ ଦେବା ନିକଟସ୍ଥ ମାଣିକାଗୋଡା ହାଇସ୍କୁଲରେ ଅନୁସୃତ ହୋଇଥିଲା । ୧୯୭୧ ଭାରତ ପାକିସ୍ଥାନ ଯୁଦ୍ଧବେଳେ ମଧ୍ୟ ବାମନ ହାଇସ୍କୁଲର ଛାତ୍ରମାନେ ଏହି ପୂର୍ବ ପରମ୍ପରାକୁ ଅନୁସରଣ କରିଥିଲେ । ସର୍ବ ପ୍ରଥମେ ହାଇସ୍କୁଲରେ ଶ୍ରୀ କିଶୋର ଚନ୍ଦ୍ରଶେଖର ମିଶ୍ର ଏକ ସାହିତ୍ୟ ଉତ୍ସବ ଆରମ୍ଭ କରିଥିଲେ । ଏଥିରେ ଓଡିଶାର ବହୁ ସାହିତ୍ୟିକ ଏପରିକି ୰ ପ୍ରାଣନାଥ ପଟ୍ଟନାୟକ ଏବଂ ତତକାଳୀନ ଛାତ୍ର ନେତା ପରେ ମନ୍ତ୍ରୀ ୰ ଭାଗବତ ବେହେରା ସେତେବେଳେ ସଦ୍ୟ ବିଶ୍ୱ ଛାତ୍ର ସଂଗଠନର କଲମ୍ବୋ ଅଧିବେଶନରୁ ଫେରି ଯୋଗଦେଇଥିବା କଥା ଲେଖକ ଛାତ୍ର ଥିଲା ବେଳେ ଦେଖିଅଛି । ବାମନ ହାଇସ୍କୁଲର ସିଲେଇ ଶିକ୍ଷକ ୰ ମାଧବ ଚନ୍ଦ୍ର ଦାସ ଏ ସମସ୍ତ କାର୍ଯ୍ୟରେ କିଶୋର ବାବୁଙ୍କର ମୁଖ୍ୟ ସହଯୋଗୀ ଥିଲେ ।



## ଖଦୀ କେନ୍ଦ୍ର ସ୍ଥାପନ

ବହୁ ପୂର୍ବରୁ ବୋଲଗଡ ଅଞ୍ଚଳ ଲୋକମାନଙ୍କର ସୂତାକଟା ପ୍ରତି ପ୍ରବଳ ଆଗ୍ରହ ଥିବାରୁ ସୂତାକଟା ବଏଂ ଖଦୀ କାର୍ଯ୍ୟକୁ ସଂଗଠିତ କରିବାପାଇଁ ୧୯୨୧ ମସିହାରେ ସର୍ବପ୍ରଥମେ ବୋଲଗଡ ଠାରେ ଅଖୀଳ ଭାରତ ଚରଖସଂଘର ଏକ ଶାଖା ଗଠନ ହୋଇଥିବା ପୂର୍ବରୁ ବର୍ଣ୍ଣନା ହୋଇଅଛି । ଖଦୀ ସଂଗଠନ କଂଗ୍ରେସ ଦଳର ରାଜନୀତିରେ ଏକ ପ୍ରମୁଖ ଭୂମିକା ସ୍ୱାଧୀନତା ପରଠାରୁ ଗ୍ରହଣ କରିଥିଲା । ସ୍ୱତନ୍ତ୍ର ଜନକଂଗ୍ରେସ କ୍ଷମତାକୁ ଆସିଲା ପରେ ରାଜ୍ୟ ଖଦୀ ବୋର୍ଡକୁ ଭାଙ୍ଗି ଦେଲେ । ସୂତାକଟା ବନ୍ଦ ହୋଇଗଲା । କଟାଳି, ବୁଣାଳି ଏବଂ ଅନ୍ୟ କର୍ମଜୀବୀଙ୍କ ମଧ୍ୟରେ ଭାଳେଣି ପଡିଲା । ସେତେବେଳେ କେନ୍ଦ୍ରରେ କଂଗ୍ରେସ ସରକାର, ଇନ୍ଦିରା ଗାନ୍ଧୀ ପ୍ରଧାନ ମନ୍ତ୍ରୀ । ରାଜ୍ୟରେ ସ୍ୱତନ୍ତ୍ର ଜନକଂଗ୍ରେସ ସରକାର ବିରୁଦ୍ଧରେ ବୋଲଗଡର ବିଧାୟକ

କମ୍ୟୁନିଷ୍ଟ ନେତା ୰ ଗଙ୍ଗାଧର ପାଇକରାୟ କଟାଳି ମାନଙ୍କ ସହ ମିଶି ଆନ୍ଦୋଳନ କଲେ । ଲେଖକ ଏହାର ପୁରୋଭାଗରେ ଥିଲା । ମୂଳରୁ ଗଙ୍ଗାଧର ବାବୁ ଖଦୀ ବିରୋଧି ଥିଲେ ମଧ ତାଙ୍କ ଗ୍ରାମ ସାନପଦରର ବହୁ ଲୋକ ଏଥିରେ ଚଳୁଥିବାରୁ (ଏହା ସେତେବେଳେ ଏକ ମୁଖ୍ୟ କର୍ମ ସଂସ୍ଥାନ ଥିଲା) ଏଠାକୁ ସେ ରାଜ୍ୟ ଖଦୀ ବୋର୍ଡ ତତକାଳୀନ ସଭାପତି ଜୟକୃଷ୍ଣ ମହାନ୍ତି ଏବଂ ରାଜ୍ୟ ଖଦୀ ବୋର୍ଡ କର୍ମଚାରୀ ସଂଘର ସଭାପତି ଯାଜପୁରର ଯୁବ ବିଧାୟକ ପ୍ରଫୁଲ ଚନ୍ଦ୍ର ଘଡେଇ (ଜନ କଂଗ୍ରେସ) ଙ୍କୁ ଆଣି ଆସିଥିଲେ । ଏହି କଟାଳୀ ସମାବେଶରେ ତତ୍କାଳୀନ ବ୍ଲକ ଚେୟାରମ୍ୟାନ ପର୍ଶୁରାମ ପଦାତିକରାୟ ଏବଂ ବୋଲଗଡ ସରପଞ୍ଚ କୃଷ୍ଣମୋହନ ପାଇଟାସିଂହ ମଧ ଉପସ୍ଥିତ ଥିଲେ । ଚକ୍ରଧର ମହାପାତ୍ର, ଜନାର୍ଦ୍ଦନ ପଟ୍ଟନାୟକ, ରାଧାଚରଣ ରାଉତରାୟ, ତାରାପ୍ରସନ୍ନ ରଥ, ବଳଭଦ୍ର ସାହୁ, ପତିତପାବନ ହୋତା ପ୍ରମୁଖ ପୁରାତନ ଖଦୀକର୍ମୀମାନେ ଉପସ୍ଥିତ ହୋଇ ଖଦୀ କାର୍ଯ୍ୟ କିପରି ଚାଲିବ ସେ ବିଷୟ ଆଲୋଚନା କରିବା ସଙ୍ଗେ ସଙ୍ଗେ ଏଠାରେ ଖଦୀକାର୍ଯ୍ୟ ଯେ କୌଣସି ମତେ ଚାଲୁ ରଖିବାକୁ ଯତ୍ନବାନ ହୋଇଥିଲେ । ମାତ୍ର ଫଳ ଓଲଟା ହେଲା । ରାଜ୍ୟ ଖଦୀ ବୋର୍ଡ ଭାଙ୍ଗିଗଲା । ଅବସ୍ଥା ଗୁରୁତର ହେଲା । ସଙ୍ଗେ ସଙ୍ଗେ ଖଲ୍ଲୁରିଆର ବାସୁଦେବ ପଟ୍ଟନାୟକ, ମହାଦେବ ପ୍ରଧାନ ଏବଂ ତାରାପ୍ରସନ୍ନ ରଥ ଏକାଠି ହୋଇ ଖଦୀ ସଂଗଠନକୁ ରକ୍ଷାକରିବାକୁ ପ୍ରସ୍ତୁତ ହେଲୁ । ରାତାରାତି ବୋଲଗଡ, ନୟାଗଡ଼ କଟାଳି ବୁଣାଳି ସଂଘ ଗଠନ ହୋଇ ଲେଖକ ତାର ସଂପାଦକ ହେଲା । ଏକ ସ୍ମାରକ ପତ୍ର ସହ କିଛି କଟାଳିଙ୍କୁ ନେଇ ଭୁବନେଶ୍ୱର ଗଲୁ । ଡାବରଧୁଆର ଗୋବିନ୍ଦ ଚୌଧୁରୀ ପ୍ରମୁଖ କଟାଳି ଭାବରେ ସାଥିରେ ଥିଲେ । ଆମେ ପୁରୁଣା ବସଷ୍ଟାଣ୍ଡରେ ଓହ୍ଲାଇ ଖଦୀ ବୋର୍ଡକୁ ଗଲାବେଳେ ମାର୍କେଟ ବିଲଡିଙ୍ଗ ଠାରେ ସଦ୍ୟ ନିର୍ବାଚିତ ଏମ.ପି. ଚିନ୍ତାମଣି ବାବୁଙ୍କ ସହ ସାକ୍ଷାତ ହେଲା । ସେ ଆମ ଆସିବାର କାରଣ ବୁଝି ଆମକୁ ନେଇ ଖଦୀ ବୋର୍ଡକୁ ଗଲେ ଏବଂ କର୍ମକର୍ତ୍ତାଙ୍କୁ ସାକ୍ଷାତ କରାଇ ଏ ଦିଗରେ ଦିଲ୍ଲୀରୁ ସାହାଯ୍ୟ କରିବାକୁ କହି ଆମକୁ ବିଦାୟ ଦେଲେ । ଖଦୀକର୍ମୀ ଚକ୍ରଧର ତ୍ରିପାଠୀଙ୍କର ଏଥିରେ ପ୍ରମୁଖ ଭୂମିକା ଥିଲା । ରାଜ୍ୟ ସରକାର ଟାଳଟୁଳ ନୀତି କରିବାରୁ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସହ କଥା ହୋଇ ତତକାଳୀନ କେନ୍ଦ୍ର ଶିଳ୍ପ ଉପମନ୍ତ୍ରୀ ସଫିମହମ୍ମଦ କ୍ୟୁରେସୀଙ୍କର ବୋଲଗଡ ପ୍ରୋଗ୍ରାମ କରି ସଭା ଆୟୋଜନ କରିବାକୁ ଦିଲ୍ଲୀରୁ ଚିନ୍ତାମଣି ପାଣିଗ୍ରାହୀ ତାର ପଠାଇଲେ । ଆମେ ଶତଗୁଣରେ ଉତ୍ସାହୀତ ହୋଇ ୩୦୦୦ରୁ ଊର୍ଦ୍ଧ୍ୱ କଟାଳି ବୁଣାଳିଙ୍କୁ ନୟାଗଡ ଅଞ୍ଚଳରୁ ବୋଲଗଡକୁ ଆଣିଥିଲୁ । ବିରାଟ ସଭା ହେଲା । ମହତ୍ମା ଗାନ୍ଧୀ ବୋଲଗଡକୁ ଖଦୀ ପ୍ରଚାର ପାଇଁ ଆସିଥିବାରୁ ତାହା କେହି ଏଠାରେ ବନ୍ଦ କରିପାରିବେ ନାହିଁ ବୋଲି ପ୍ରଧାନ ମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଦେଇଥିବା

ସଂଦେଶ ମନ୍ତ୍ରୀ ମହୋଦୟ ଏଠାରେ ଦୃଢ଼ଭାବରେ ଘୋଷଣା କରିଥିଲେ । ଏଥିରେ ସମସ୍ତେ ଆନନ୍ଦ ପ୍ରକାଶ କରିଥିଲେ । ପରେ ପ୍ରଧାନ ମନ୍ତ୍ରୀଙ୍କ ନିର୍ଦ୍ଦେଶରେ ଭାରତ ଖଦୀ କମିଶନର ଚେୟାରମ୍ୟାନ ୟୁ.ଏନ. ଧେବର ଓଡିଶା ଆସି ସମସ୍ତଙ୍କ ସହ କଥାବର୍ତ୍ତା କରି ୨୧ ଟି ନୂଆ ଖଦୀ ସଂଗଠନକୁ ମାନ୍ୟତା ଦେଲେ । ଏଠାରୁ ଉତ୍କଳମଣି ଖଦୀ ଗ୍ରାମୋଦ୍ୟୋଗ ସଂଘ ନୟାଗଡରେ ଜନ୍ମ ନେଲା । ଏହାର ମୁଖ୍ୟ କାର୍ଯ୍ୟାଳୟ ବୋଲଗଡରେ ରହିଲା । ନୟାଗଡ ବିଧାୟକ ୰ ଅଚ୍ୟୁତାନନ୍ଦ ମହାନ୍ତି ଏହାର ପ୍ରଥମ ସଭାପତି ରହିଲେ । ଖଦୀ ବୋଲଗଡରେ ରହିଗଲା । ଫୁଲବାଣୀ ସମେତ ସମଗ୍ର ଦକ୍ଷିଣ ଓଡିଶା ଏହାର ଅଧୀନରେ ରହିଲା । କଂଗ୍ରେସର ଏକ ଗୋଷ୍ଠୀ ମଧ୍ୟ ଏହି ସଂସ୍ଥାର ବିରୋଧୀ ହୋଇ ଚକ୍ରଧର ମହାପାତ୍ର, କାଳୀପ୍ରସନ୍ନ ରଥ, ଗୋପୀନାଥ ପରିଡା ଓ ଗଙ୍ଗାଧର ପରିଡାଙ୍କ ପ୍ରଚେଷ୍ଟାରେ ବାପୁଜୀ ଖଦୀ ଅନୁଷ୍ଠାନ ଗଠନ କରିଥିଲେ । କିନ୍ତୁ ପରିଚାଳନା ତ୍ରୁଟି ଯୋଗୁଁ ଏହା ବନ୍ଦ ହୋଇଯାଇଥିଲା । ଉତ୍କଳମଣି ଖଦୀ ସଂସ୍ଥା ଅଦ୍ୟାବଧି ରହିଥିଲେ ମଧ୍ୟ ଖଦୀ ପ୍ରତି ସରକାରୀ ଅନୁଦାନ ଏବଂ ସହାୟତା ଅଭାବରୁ ଏହା ସକ୍ରିୟ ହେବାରେ ଅନ୍ତରାୟ ସୃଷ୍ଟି ହୋଇଅଛି ।



## ରାଜନୈତିକ ପଟ୍ଟପରିବର୍ତ୍ତନ

୧୯୬୭ ବେଳକୁ ଚିନ୍ତାମଣି ବାବୁ (ଏମ.ପି.) ବୋଲଗଡ ବେଗୁନିଆ କଂଗ୍ରେସ କର୍ମୀଙ୍କ ସହ ନିବିଡ ଭାବରେ ଜଡିତ ହୋଇଗଲେ । ବୋଲଗଡର ରାଜନୈତିକ ଆକାଶରେ ଆଶାର ସଂଚାର ଦେଖାଗଲା । ସ୍ଥାନୀୟ ଲୋକଙ୍କୁ ଉପର ମହଲରେ କମ୍ୟୁନିଷ୍ଟ ଅଂଚଳର ଲୋକ ବୋଲି ଅନ୍ୟ ଦୃଷ୍ଟିରେ ଦେଖୁଥିଲେ । ସ୍ଥାନୀୟ କଂଗ୍ରେସ ନେତାମାନେ କୌଣସି କାର୍ଯ୍ୟରେ କଂଗ୍ରେସ ନେତାମାନଙ୍କ ପାଖକୁ ଗଲାବେଳେ ସବୁବେଳେ ଏଠାରୁ କଂଗ୍ରେସ କମ ଭୋଟରେ ହାରୁଥିବା ସାଂଗଠନିକ ଦୁର୍ବଳତା ଯୋଗୁଁ ସେମାନଙ୍କୁ ଲଜ୍ଜିତ ହେବାକୁ ପଡୁଥିଲା । ସେତେବେଳେ ବୋଲଗଡ ବେଗୁନିଆ କଂଗ୍ରେସର ୰ ବିଶ୍ୱନାଥ ସାମନ୍ତ, ୰ ଦୁଃଖିଶ୍ୟାମ ମହାପାତ୍ର (ପୂର୍ବତନ ପଞ୍ଚାୟତ ସମିତି ଚେୟାରମ୍ୟାନ, ବେଗୁନିଆ), ବୈଷ୍ଣବ ଚରଣ ନାଗ, ପତିତପାବନ ହୋତା, ଚକ୍ରଧର ମହାପାତ୍ର, ବଳଭଦ୍ର ସାହୁ, ବାଙ୍କନିଧି ପରିଡା, ଗୋଲାମ ମୁସ୍ତାଫା,

ବାସୁଦେବ ସୁବୁଦ୍ଧି, ସୁଦର୍ଶନ ମହାପାତ୍ର, ବାନାମ୍ବର ରାଉତରାୟ, ମହେଶ୍ୱର ସୁବୁଦ୍ଧି, ଲଛମନ ପରିଡା ପ୍ରମୁଖ କଂଗ୍ରେସ କର୍ମୀ ଥିଲେ । ଏତିକିବେଳେ ଯୁବକ ଭାସ୍କର ଚନ୍ଦ୍ର ମହାପାତ୍ର କଂଗ୍ରସ ସଂଗଠନରେ ସାମିଲ ହୋଇଥିଲେ । ସମସ୍ତଙ୍କ ନିଷ୍ପତ୍ତି ଅନୁସାରେ ୰ ଲଛମନ ପରିଡା କଂଗ୍ରେସ ସଂଗଠନର ଦାୟୀତ୍ୱ ନେଇ ପ୍ରତ୍ୟେକ ଗ୍ରାମକୁ ଯାଇ କଂଗ୍ରେସ ଲୋକଙ୍କୁ ସଙ୍ଗଠିତ କରିବା ପାଇଁ ବୈଠକ ମାନ କରିଥିଲେ । ଆସ୍ତେ ଆସ୍ତେ କଂଗ୍ରେସ ସଂଗଠନ ଦାନା ବାନ୍ଧିଲା । ପ୍ରତ୍ୟେକ କାମରେ ଚିନ୍ତାମଣି ବାବୁ ବୋଲଗଡ-ବେଗୁନିଆଁ ଅଞ୍ଚଳକୁ ଘନ ଘନ ଗସ୍ତ କଲେ । ଲେଖକ ସେତେବେଳେ ତାଙ୍କର ପ୍ରଧାନ ଅନୁଗାମୀ ଥିଲା । ସେ ତାଙ୍କର ଛୋଟ Vicky Motor Cycle ରେ ଆସୁଥିଲେ । ସାଥିରେ ଏକ ଟିଣରେ ୫ ଲିଟର ପେଟ୍ରୋଲ ଆଣୁଥିଲେ । ବୋଲଗଡ ଠାରେ ଗାଡିଟି ରଖି ଦୟାମଙ୍ଗରାଜ ଦୋକାନରୁ ସାଇକେଲ ଧରି ସବୁ ଗ୍ରାମକୁ ଯାଆନ୍ତି । ଦଳମତ ନିର୍ବିଶେଷରେ ସମସ୍ତଙ୍କ ସହ ମିଶନ୍ତି । ଗ୍ରାମର ସାଧାରଣ ଲୋକଙ୍କ ଠାରୁ ଆରମ୍ଭ କରି ମୁଖ୍ୟ ଲୋକଙ୍କର ଠିକଣା ସଂଗ୍ରହ କରନ୍ତି । ଏଠାରୁ ଫେରିଲା ପରେ ମାଛ ମଞ୍ଜି ପରି ଗୋଲ ଅକ୍ଷରରେ ଚିଠିଲେଖି ଡାକରେ ପଠାଇ ଦିଅନ୍ତି । ଏକ ସପ୍ତାହ ମଧ୍ୟରେ ପ୍ରତ୍ୟେକ ଗ୍ରାମରେ ଚିଠି ସବୁ ପହଞ୍ଚିଯାଏ । ସମସ୍ତେ ଆନନ୍ଦିତ । ତାଙ୍କର ଭୂୟସୀ ପ୍ରଶଂସା । ଏପରି ସେ ୧୯୬୭ ରୁ ୭୦ ପର୍ଯ୍ୟନ୍ତ ତିନି ଚାରି ବର୍ଷ ବୁଲିଲା ପରେ ଅଞ୍ଚଳର ଅବସ୍ଥା ବଦଳିଲା । ଘରପୋଡି ହେଲା ମାତ୍ରେ କିଛି ଲୁଗା ଦିଲ୍ଲୀରୁ ଆସି ପହଞ୍ଚିଯାଏ ।

୧୯୬୯ ମସିହାରେ ବୋଲଗଡ ଅଂଚଳରେ ପ୍ରବଳ ମରୁଡି ହୋଇଥାଏ । ଲେଖକ ସେତେବେଳେ ନୟାଗଡ ଅଂଚଳର ନଛିପୁର ଅଚ୍ୟୁତାନନ୍ଦ ଏକାଡେମୀରେ ସହକାରୀ ଶିକ୍ଷକ । ଚିନ୍ତାମଣି ବାବୁ ବୋଲଗଡ ଅଂଚଳରୁ ଫେରିଥାଆନ୍ତି । ଜଳସେଚନ ପ୍ରକଳ୍ପ କରିବାକୁ ତାଙ୍କର ଆଗ୍ରହ । ଦିନେ ନଛିପୁରଠାରେ କଲିକତା CASA (Christian Agency for Social Action) Releaf and Development ସଂସ୍ଥାର ଏକ ପତ୍ର ଲେଖକଙ୍କ ପାଖରେ ପହଞ୍ଚିଲା । ଉକ୍ତ ସଂସ୍ଥା ଲେଖକଙ୍କୁ Contact Person ଭାବରେ ଗ୍ରହଣ କରିଅଛି । ବୋଲଗଡ ବ୍ଲକର ମର୍ଦ୍ଦାବାଡି ବଡଧୋଡା ବନ୍ଧ, ବୋଲଗଡ ଡାବୁରିଆ ଖୋଳ ବନ୍ଧ, କୋଟପଲ୍ଲୀ ଯୋଗୀ ବନ୍ଧ, କୁଶପଲ୍ଲୀ ଗୋଜୀ ବନ୍ଧ, ସଂପୁର ଗଡଦୁଆର ବନ୍ଧ ଏବଂ ହରିପୁର ବନ୍ଧର ଅଟକଳ ପ୍ରସ୍ତୁତ କରିବା ସହ ଏକ ପରାମର୍ଶଦାତା କମିଟି ଗଠନ କରିବାକୁ ଏଥିରେ ଜଣାଇ ଦିଆଯାଇଥିଲା । ମୋର ପିଲାଦିନର ପାଠପଢା ସାଙ୍ଗ ପ୍ରଫୁଲ୍ଲ କୁମାର ସିଂହ ସେତେବେଳକୁ ବହ୍ମପୁର ଇଂଜିନିୟରିଂ (Diploma) ପାଠ୍ୟ ଶେଷ କରିସାରି ଘରେ ଥାଆନ୍ତି । ତାଙ୍କର ସହଯୋଗ ଏହି ସବୁ ଜଳଯୋଜନାର ଏଷ୍ଟିମେଟ କରିବାକୁ ନିହାତି ଦରକାର । ସେ ଏଥିରେ ରାଜି ହୋଇ ଏହାର ବୈଷୟିକ ପରାମର୍ଶଦାତା ହେଲେ । ଭାସ୍କର ମହାପାତ୍ର

ଏହି କମିଟିର ସଭାପତି, ଦୟାନିଧି ମଙ୍ଗରାଜ ଏବଂ ଶତ୍ରୁଘ୍ନ ପ୍ରଧାନ ଏହାର ସଭ୍ୟ ରହିଲେ । ସମସ୍ତ ରିପୋର୍ଟ ଗଲା । ମାତ୍ର ମର୍ଦ୍ଦାବାଡି ପଙ୍କାଳସାହି ମଧ୍ୟରେ ଥିବା ବଡଧୋଡା ବନ୍ଧ ପାଞ୍ଚଗଡ ଅଟକ ଜଙ୍ଗଲ ମଧ୍ୟରେ ଥିବାରୁ ଏବଂ କୁଣ୍ଡପଲ୍ଲୀ ବନ୍ଧ ପାଇଁ କିଛି ଶାଳ ଗଛ କାଟିବାର ଆବଶ୍ୟକତା ପଡୁଥାଏ । ସେତେବେଳେ ବୋଲଗଡର ୰ ଦୟାନିଧି ଚୌଧୁରୀ Chief Conservator of Forest ଥିବାରୁ ଏହି ଅସୁବିଧା ଦୂର ହୋଇଗଲା । ପଙ୍କାଳସାହିର ୰ ଭୁବନେଶ୍ୱର ସିଂହ ଏବଂ ମର୍ଦ୍ଦାବାଡି ଗ୍ରାମର ହରିହର ମହାପାତ୍ର, ୰ ବଂଶୀଧର ଚମ୍ପତି, ୰ ଭ୍ରମରବର କହଳସିଂହ, ୰ ନାରାୟଣ ରାଉତରାୟ, ୰ ଅଧିକାରୀ ଚମ୍ପତିଙ୍କ ସହଯୋଗରେ ଗ୍ରାମବାସୀ ମାନେ ୪୦ ଏକର ଅଟକ ଜଙ୍ଗଲ ପାଇଁ ସ୍ୱଳ୍ପ ରୟାଲିଟି ଦେବାରେ ଫରେଷ୍ଟ ବିଭାଗର ଅନୁମତି ମିଳିଗଲା । କିଛିଦିନ ପରେ ୨ ଟ୍ରକ ଗହମ ଏବଂ ଏକ ଟ୍ରକ ସୋୟାବିନ ତେଲ ଖୋର୍ଦ୍ଧାରୋଡ ଷ୍ଟେସନରୁ ଉଠାଇବାକୁ ଚିଠି ଆସିଲା । ତାକୁ ଆଣି ଭାସ୍କର ବାବୁଙ୍କ ମିଲ୍ ଘରେ ଜମା କଲୁ । ସବୁ ବନ୍ଧରେ କାମ ଚାଲିଲା । ଏହି ତେଲ ଗହମରେ ଆରମ୍ଭ ହୋଇଥିବା ଉକ୍ତ ବନ୍ଧ ପରବର୍ତ୍ତୀ କାଳରେ ରାଜ୍ୟ କ୍ଷୁଦ୍ର ଜଳସେଚନ ବିଭାଗ ଦ୍ୱାରା ଅନ୍ତର୍ଭୁକ୍ତ ହୋଇଗଲା ।

ଏହାପରେ କଂଗ୍ରେସର ଶକ୍ତି ବୃଦ୍ଧି ହେଲା । ସେହିବର୍ଷ ୧୯୬୯ ମସିହା ଗାନ୍ଧୀ ଜନ୍ମ ଶତବାର୍ଷିକୀ ପାଳନ ବର୍ଷ । ପୂର୍ବରୁ ସ୍ଥାନୀୟ ଖଦୀକର୍ମୀଙ୍କ ଉଦ୍ୟମରେ ଏକ ଗାନ୍ଧୀ ମୂର୍ତ୍ତି ନିର୍ମାଣ କରାଯାଇଥାଏ । ସରକାରୀ ସ୍ତରରେ ଗଠିତ ବ୍ଲକ ସ୍ତରୀୟ ଗାନ୍ଧୀ ଶତବାର୍ଷିକୀ କମିଟିରେ ସ୍ଥାନୀୟ ମୁଖ୍ୟ କଂଗ୍ରେସ କର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀଙ୍କୁ ନିଆଗଲା ନାହିଁ । କାରଣ ସେତେବେଳେ କମ୍ୟୁନିଷ୍ଟ ସମର୍ଥକ ସରପଞ୍ଚ ଅଧିକ ଥିଲେ ଏବଂ କମ୍ୟୁନିଷ୍ଟ ଦଳୀୟ ଚେୟାରମ୍ୟାନ ଥିଲେ । ଫଳରେ ସର୍ବଶ୍ରୀ ବଳଭଦ୍ର ସାହୁ, ବାଙ୍କନିଧି ପରିଡା, ପତିତପାବନ ହୋତା, ଚକ୍ରଧର ମହାପାତ୍ର, ବାସୁଦେବ ସୁବୁଦ୍ଧି ପ୍ରମୁଖ ଏକ ବେସରକାରୀ ଗାନ୍ଧୀ ଶତବାର୍ଷିକୀ କମିଟି ଗଠନ କଲେ । କଟକ ଜିଲ୍ଲା କେନ୍ଦୁପାଟଣା ଗ୍ରାମରୁ ଆସିଥିବା ଗାନ୍ଧୀ ପ୍ରତିମୂର୍ତ୍ତି ସ୍ଥାପନ ପାଇଁ ଖଦୀ କେନ୍ଦ୍ର ସାମନାରେ ଏକ ବଡ ପକ୍କା ମଣ୍ଡପ ନିର୍ମାଣ ହେଲା । ୰ ଚକ୍ରଧର ତ୍ରିପାଠୀ, ଜନାର୍ଦ୍ଦନ ପଟ୍ଟନାୟକ ଏବଂ ତାରା ପ୍ରସନ୍ନ ରଥ ଏବଂ ଖଦୀ ସଂସ୍ଥା ସଂପାଦକ ଶ୍ରୀ ମହାଦେବ ପ୍ରଧାନ ଏଥିରେ ମୁଖ୍ୟ ସହଯୋଗୀ ଥିଲେ । ସେତେବେଳେ ବୋଲଗଡ ବ୍ଲକରେ କାର୍ଯ୍ୟରତ ଶ୍ରୀ ଜଗତ ଚନ୍ଦ୍ର ଦାସ ଏହି କାର୍ଯ୍ୟକ୍ରମର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ରାଜନୈତିକ ଆକ୍ରୋଶର ଶିକାର ହୋଇ ତାଙ୍କୁ ବଦଳି ହୋଇ କୋରାପୁଟ ଯିବାକୁ ହୋଇଥିଲା । ଯାହାହେଉ ୧୯୬୯ ମସିହା ଅକ୍ଟୋବର ୨ ତାରିଖ ପବିତ୍ର ଗାନ୍ଧି ଜୟନ୍ତୀ ଦିନ ମହାତ୍ମା ଗାନ୍ଧୀଙ୍କର ଏକ ବଡ ପ୍ରତିମୂର୍ତ୍ତୀ ସ୍ଥାନୀୟ ଗାନ୍ଧୀ ମଣ୍ଡପଠାରେ ୰ ଚିନ୍ତାମଣି ପାଣିଗ୍ରାହୀଙ୍କ

ଦ୍ୱାରା ଉନ୍ମୋଚିତ ହୋଇଥିଲା । ଏହି ସଭାରେ ସୀତାକାନ୍ତ ବିଧାର, ବୃଢା କୈଳାସ ରାଉତ ଏବଂ ଘୋରଡିଆର ବ୍ରଜ ସାମନ୍ତରାଙ୍କର ଭାଷଣ ଯୁବକ ମାନଙ୍କୁ ବିଶେଷ ଆକୃଷ୍ଟ କରିଥିଲା । ଯୁବ କର୍ମୀ ଭାଗବତ ପାଟଶାଣୀ ଗାନ୍ଧୀ ମୂର୍ତ୍ତି ସ୍ଥାପନର ପ୍ରଧାନ ସହଯୋଗୀ ଥିଲେ । ଏହି କାର୍ଯ୍ୟକ୍ରମ କଂଗ୍ରେସ ସଂଗଠନକୁ ବିଶେଷ ସାହାଯ୍ୟ କରିଥିଲା । ଏହାପରେ ୧୯୭୦ରେ ଅନୁଷ୍ଠିତ ଗ୍ରାମପଞ୍ଚାୟତ ନିର୍ବାଚନରେ ବୋଲଗଡ ଏବଂ ବେଗୁନିଆ ରେ କଂଗ୍ରେସକୁ ଆଶାତୀତ ସଫଳତା ମିଳିଲା । ବୋଲଗଡ ପଞ୍ଚାୟତ ସମିତିରେ କମ୍ୟୁନିଷ୍ଟଙ୍କ ଆଧିପତ୍ୟ କମିଗଲା । ବେଗୁନିଆରେ ସେତେବେଳେ କଂଗ୍ରେସ ଦଖଲ ଥିଲେ ମଧ୍ୟ ୧୯୭୦ ନିର୍ବାଚନରେ ଯୁବ ନେତୃତ୍ୱ ଦଖଲ କଲେ । ବୋଲଗଡରେ ସୀତାକାନ୍ତ ବିଧାର ଅଧ୍ୟକ୍ଷ, ଲେଖକ ଉପାଧ୍ୟକ୍ଷ, ବେଗୁନିଆରେ ଭଗବାନ ପଣ୍ଡା ଅଧ୍ୟକ୍ଷ, କୈଳାସ ମହାପାତ୍ର ଉପାଧ୍ୟକ୍ଷ ( ପରେ ୧୯୮୦ରୁ ୧୯୮୯ ପର୍ଯ୍ୟନ୍ତ ୨ ଥର ବିଧାୟକ) ହେଲେ ।

ବୋଲଗଡ ବ୍ଲକର ପ୍ରଥମ ଚେୟାରମ୍ୟାନ ବାଙ୍କୋଇ ଗ୍ରାମର ଗୌରୀଶ୍ୟାମ ପଟ୍ଟନାୟକ ଏବଂ ଭାଇସ-ଚେୟାରମ୍ୟାନ ୰ ବାଙ୍କନିଧି ପରିଡା ଥିଲେ ।

୧୯୭୦ ରେ ଏପରି ଭଲ ଅବସ୍ଥା କଂଗ୍ରେସ ପାଇଁ ଆସିଥିଲା ବେଳେ ୧୯୭୧ ସାଧାରଣ ନିର୍ବାଚନ ବେଳକୁ ଏଥିରେ ଗୋଷ୍ଠୀ କନ୍ଦଳ ଚରମ ସୀମାରେ ପହଞ୍ଚିଲା । ଉତ୍କଳ କଂଗ୍ରେସର ସଭାପତି ୰ ନୀଳମଣି ରାଉତରାୟ ଏବଂ ବିଜୁବାବୁ ସର୍ବମାନ୍ୟ ନେତା । ଶାସକ କଂଗ୍ରେସ କେନ୍ଦ୍ରରେ ଅଧିଷ୍ଠିତ । ଶତ୍ରୁଘ୍ନ ମାନସିଂହ, ହଟନାଥ ମଙ୍ଗରାଜ, ଗୋବିନ୍ଦ ପଣ୍ଡା, ଭ୍ରମର ଦଳେଇ ପ୍ରମୁଖ ସତ୍ୟାନନ୍ଦ ବାବୁଙ୍କ ପଛରେ । ଶାସକ କଂଗ୍ରେସ ପଛରେ ପତିତପାବନ ହୋତା, ଚକ୍ରଧର ମହାପାତ୍ର, ସୁଦର୍ଶନ ମହାପାତ୍ର, ଗଙ୍ଗାଧର ପରିଡା, କାଳୀ ପ୍ରସନ୍ନ ରଥ ଏବଂ ସମସ୍ତ ସରପଞ୍ଚ ଏବଂ ଯୁବଗୋଷ୍ଠୀ ଭାସ୍କର ମହାପାତ୍ରଙ୍କ ପଛରେ ଥିଲେ । ସତ୍ୟାନନ୍ଦ ବାବୁ ଏବଂ ଭାସ୍କର ବାବୁ ଉତ୍କଳ କଂଗ୍ରେସ ଦଳେରୁ ପ୍ରାର୍ଥୀ ହେଲେ । ବହୁ ଆଲୋଚନା ପରେ ସତ୍ୟାନନ୍ଦ ଉତ୍କଳ କଂଗ୍ରେସ ଟିକେଟ ପାଇଲେ । ଭାସ୍କର ବାବୁ ଉତ୍କଳ କଂଗ୍ରେସ ଦଳର ସଭାପତି ନୀଳମଣି ରାଉତରାୟଙ୍କୁ ଇସ୍ତଫା ପତ୍ର ଦେଇ ସ୍ୱାଧୀନ ଭାବରେ ବିଧାୟକ ପ୍ରାର୍ଥୀ ହେଲେ । ଏପ୍ରକାର ଘଡିସନ୍ଧି ବେଳରେ ପୁରୀ ଥାଟ ରାଜା ରାଜରାଜ ଦେବ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ହେଲେ । ଥାଟ ରାଜାଙ୍କୁ ଏହି ନିର୍ବାଚନରେ ଲକ୍ଷ୍ମୀଧର ରଥ (ପିତୃକୁଳି) ଏବଂ ବିରଞ୍ଚି ପାଇକରାୟ (ସାନବାଡ, ଚମ୍ପାଇଲୋ) ବିଶେଷ ସାହାଯ୍ୟ କରିଥିଲେ । ପୁରାତନ କଂଗ୍ରେସ ସଂଗଠକ ବିଶ୍ୱନାଥ ସାମନ୍ତ ଲୋକ ସଂପର୍କ କର୍ମୀ ଭାବରେ କାମ କରି ମାସିକ କିଛି ଟଙ୍କା ସରକାରଙ୍କ ଠାରୁ ପାଉଥିବାରୁ ତାହା ସତ୍ୟାନନ୍ଦ ବାବୁ କାଟି ତାଙ୍କର ଜଣେ ମୁଖ୍ୟ ସହଯୋଗୀ ହଳ ଗ୍ରାମର ଗୋବିନ୍ଦ ଭାଇନାଙ୍କୁ ଏଥିରେ ନିଯୁକ୍ତି କରିବାରୁ

ସେଥିରେ ବିଶ୍ୱନାଥ ସାମନ୍ତ କ୍ଷୁବ୍ଧ ହୋଇ ଏହି ନିର୍ବାଚନରେ କଂଗ୍ରେସ ଛାଡି ସ୍ୱତନ୍ତ୍ର ଦଳ ପ୍ରାର୍ଥୀ ଥାଟ ରାଜାଙ୍କୁ ସମର୍ଥନ କରିଥିଲେ । ଗୌରୀଶ୍ୟାମ ପଟ୍ଟନାୟକ ମଧ୍ୟ ଶାସକ କଂଗ୍ରେସ ପ୍ରାର୍ଥୀ ହେଲେ । ଏହି ପରିପ୍ରେକ୍ଷୀରେ ଅଣ କମ୍ୟୁନିଷ୍ଟ ଭୋଟ ୨୮ ହଜାର ଥିଲା ବେଳେ ଏକତା ଅଭାବରୁ ଏଠାରୁ କମ୍ୟୁନିଷ୍ଟ ପ୍ରାର୍ଥୀ ୪ର୍ଥ ଥର ପାଇଁ ନିର୍ବାଚିତ ହେଲେ । ୧୯୭୧ ନିର୍ବାଚନରେ ବିଜୁବାବୁ ଭଞ୍ଜନଗର, ଖୋର୍ଦ୍ଧା, ଚଉଦ୍ୱାର, ପାଟକୁରା ଏବଂ ରାଜନଗର ନିର୍ବାଚନ ମଣ୍ଡଳୀରୁ ଲଢେଇ କରିଥିଲେ ମଧ୍ୟ ହାରିଯାଇଥିଲେ । ସେ ରାଜନୀତିରୁ ଓହରି ଯାଇନଥିଲେ । ସେତେବେଳେ ନୟାଗଡ ବିଧାୟକ ଅଚ୍ୟୁତାନନ୍ଦ ମହାନ୍ତି ଥିଲେ । ସେ ସଂପୁର ଗ୍ରାମର ସ୍ୱାଧୀନତା ସଂଗ୍ରାମୀ ୰ ବାସୁଦେବ ସୁବୁଦ୍ଧିଙ୍କର କ୍ୱାଇଁ ଥିବାରୁ ସର୍ବୋପରି ସ୍ଥାନୀୟ ଖଦୀ ସଂସ୍ଥାର ମୁଖ୍ୟ ଭାବରେ ବୋଲଗଡ ଅଞ୍ଚଳ ସହିତ ବିଶେଷ ଭାବରେ ସଂପୃକ୍ତ ଥିଲେ । ସେ ସ୍ଥାନୀୟ କଂଗ୍ରେସ ଲୋକଙ୍କର ସମସ୍ୟା ସହ ସଂପୃକ୍ତ ରହି ସରକାରୀ ସ୍ତରରେ ସେମାନଙ୍କୁ ସାହାଯ୍ୟ କରୁଥିଲେ ।

ଯଦିଓ ୧୯୭୦ ନିର୍ବାଚନରେ ବୋଲଗଡ ବେଗୁନିଆ ପଞ୍ଚାୟତ ସମିତି କଂଗ୍ରେସ ସମର୍ଥକ ଜନପ୍ରତିନିଧି ମାନଙ୍କ ଦ୍ୱାରା କବଳିତ ହୋଇଥିଲା ୧୯୭୧ ମସିହା ସାଧାରଣ ନିର୍ବାଚନରେ ପୁନର୍ବାର ଗଙ୍ଗାଧର ପାଇକରାୟ ଏଠାରୁ ୪ର୍ଥ ଥର ପାଇଁ ବିଧାୟକ ହେଲା ପରେ ଭାଗଚାଷୀ ଆନ୍ଦୋଳନ ଆଦିବାସୀଙ୍କର ଆମ୍ବତୋଟା ଦଖଲ କରି ଜବରଦସ୍ତ ଗଛ କାଟିବା ପ୍ରଭୃତି କେତେକ ପଦକ୍ଷେପକୁ ସାଧାରଣ ଲୋକ ବହୁଳ ଭାବରେ ଗ୍ରହଣ କରିପାରୁନଥିଲେ । ଫଳରେ ସେତେବେଳେ ଉତ୍ତର ବେଗୁନିଆର ଦିନିଆରି ଠାରେ ଆଦିବାସୀ ଏବଂ ସବର୍ଣ୍ଣଙ୍କ ମଧ୍ୟରେ ଦିବାଲୋକରେ ଏକ ସମ୍ମୁଖ ସଂଗ୍ରାମ ସୃଷ୍ଟି ହୋଇଥିଲା । ସବର୍ଣ୍ଣଙ୍କର ମୁଖ୍ୟ ଏହି ସଂଘର୍ଷରେ ମୃତ୍ୟୁ ବରଣ କରିବାରୁ ଆଦିବାସୀ ମାନଙ୍କର ସେତେବେଳର ନେତା ନାରାୟଣ ଜୟସିଂହ ମର୍ଡର କେସରେ ସଂପୃକ୍ତ ହୋଇଥିଲେ । ଏହି ପରିସ୍ଥିତି ସେତେବେଳେ ବୋଲଗଡ ବେଗୁନିଆ ରାଜନୀତିକୁ ବିଶେଷ ଆନ୍ଦୋଳିତ କରିଥିଲା । ଏହା ସହ ଦକ୍ଷିଣ ବେଗୁନିଆର ଜଗନ୍ନାଥ ମହାପ୍ରଭୁଙ୍କର ଏଖରାଜାତ ମାହାଲର ଟାଙ୍ଗି ପଡିଆରେ କେରଳ କାଜୁ କମ୍ପାନୀ ଦ୍ୱାରା କାଜୁ ବୃକ୍ଷ ରୋପଣ ବିରୁଦ୍ଧରେ ଏକ ବିରାଟ ଜନ ଆନ୍ଦୋଳନ ସୃଷ୍ଟି ହୋଇଥିଲା । ଏଥିରୁ କିଛି ରାଜନେତା ଫାଇଦା ଉଠାଇଥିଲେ ମଧ୍ୟ ବହୁ ସାଧାରଣ ଲୋକଙ୍କର କର୍ମ ସଂସ୍ଥାନ ବନ୍ଦ ହୋଇଗଲା । ଏହି ସବୁ ପରିସ୍ଥିତିର ସଙ୍କୁଳିତ ବାତାବରଣ ମଧ୍ୟରେ ୧୯୭୩ ମସିହା ଦଶହରା ସମୟରେ ଠାକୁରାଣୀଙ୍କ ନିକଟରେ ବୋଦା ବଳିକୁ କେନ୍ଦ୍ରକରି ପିଚୁକୁଳି ଗ୍ରାମ ପଞ୍ଚାୟତର ଶିଉଳା (ଗିରିଗିରିଆ) ଗ୍ରାମରେ ଏକ ଗଣ୍ଡଗୋଳ ପରିସ୍ଥିତି ସୃଷ୍ଟି ହେଲା । ଶତ୍ରୁଘ୍ନ ମାନସିଂହ ଙ୍କର ରାଜନୀତିରେ ପ୍ରବେଶ ଠାରୁ ସମସ୍ତ

କାର୍ଯ୍ୟକଳାପ ଗଙ୍ଗାଧର ପାଇକରାୟଙ୍କ ବିରୁଦ୍ଧରେ କରୁଥିବାରୁ ଦିବାଲୋକରେ ମାନସିଂହ ପୋଲିସ ସହାୟତାରେ ବେଗୁନିଆ ଥାନାକୁ ଯିବା ଅବସ୍ଥାରେ ଗ୍ରାମ ମୁଣ୍ଡରେ କିଛି ଆଦିବାସୀ ଲୋକ ପୋଲିସ ପାଖରୁ ଭିଡି ଆଣି ତାଙ୍କୁ ହାଣି ଦେଇଥିଲେ । ସେତିକି ବେଳେ ସଂପୁର, କର୍ପୁରପୁର, ମାଣିକାଘୋଡାରେ ମଜୁରି ବୃଦ୍ଧି ଆନ୍ଦୋଳନ ସାଙ୍ଗକୁ ସାଗରଗାଁରେ ଯୁବ କଂଗ୍ରେସ କର୍ମୀ ରବି ଅଟଙ୍କ ଉପରେ ବିରୋଧି ମାନଙ୍କର ଦାଉସାଧିବା କାର୍ଯ୍ୟକ୍ରମ ସାଧାରଣ କଂଗ୍ରେସ କର୍ମୀଙ୍କୁ ଆତଙ୍କିତ କରିଦେଇଥିଲା । ସେତେବେଳେ କୁଖ୍ୟାତ ଡକାୟତମାନଙ୍କର ସ୍ଥାନୀୟ ବିଭିନ୍ନ ଧନୀଲୋକଙ୍କ ଘରେ ଡକାୟତି ଅଧିକ ଭୟ ସଂଚାର କରିଥିଲା । ୧୯୭୧ ନିର୍ବାଚନରେ ଭାସ୍କର ମହାପାତ୍ରଙ୍କର ପରାଜୟ ପରେ ଏକ ସାମାନ୍ୟ ଘଟଣାରେ ତାଙ୍କର ସ୍ଥାନୀୟ ଆର.ଆଇ ଙ୍କ ସହ ଗଣ୍ଡଗୋଳକୁ ରାଜନୈତିକ ରଙ୍ଗ ଦିଆଯାଇ ତାଙ୍କୁ ଗିରଫ କରିବାକୁ ପ୍ରବଳ ଉଦ୍ୟମ ଆରମ୍ଭ ହୋଇଥିଲା । ପ୍ରତିବର୍ଷ କୁମାର ପୂର୍ଣ୍ଣିମା ଦିନ ଖଣ୍ଡୁରିଆ ଗ୍ରାମରେ ଶ୍ରୀ ବାସୁଦେବ ପଟ୍ଟନାୟକ ଉତ୍କଳ ଯୁବ ବାହିନୀ ଏବଂ ମିନା ମଣ୍ଡଳୀ ସଂଗଠନର ବାର୍ଷିକ ଉତ୍ସବ ପାଳନ କରନ୍ତି । ୧୯୭୩ ମସିହାର ଅକ୍ଟୋବର ୨୩ ତାରିଖ କୁମାର ପୂର୍ଣ୍ଣିମା ତିଥିରେ ଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ ଏହି ଉତ୍ସବର ଅତିଥି ଭାବରେ ଯୋଗ ଦେବାକୁ ଆସି ବୋଲଗଡରେ ପହଞ୍ଚିଥିଲେ । କିନ୍ତୁ ବାସୁ ବାବୁଙ୍କ ସହ ଖଣ୍ଡୁରିଆ ଗ୍ରାମର ଟୁନ ବାବୁଙ୍କର ତିକ୍ତତା ଯୋଗୁଁ ସେ ବର୍ଷ ଉତ୍ସବ ହୋଇପାରିଲା ନାହିଁ । ଖଣ୍ଡୁରିଆରେ ଉତ୍ସବରେ ସତ୍ୟାନନ୍ଦ ବାବୁ ଅତିଥି ଭାବରେ ଯୋଗଦେବାକୁ ଆସିଥିଲେ ମଧ୍ୟ ଉତ୍ସବ ବନ୍ଦ ହୋଇ ଯିବାରୁ ସେ ସେଦିନ ରାତିରେ ଲେଖକଙ୍କର 'କଳ ଘର' (ସେତେବେଳେର କଂଗ୍ରେସ କାର୍ଯ୍ୟାଳୟ) ରେ ବିଶ୍ରାମ ନେଇଥିଲେ । ସେତିକିବେଳକୁ ଶତ୍ରୁଘନ ମାନସିଂହ ହଣା ଖାଇ ଭୁବନେଶ୍ୱର ଡାକ୍ତରଖାନାରେ ଚିକିତ୍ସିତ ହେଉଥାନ୍ତି । କୁମାର ପୂର୍ଣ୍ଣିମା ଦିନ ସାଗର ଗାଁର ଜଣେ ପୁରୁଖା କଂଗ୍ରସ କର୍ମୀ ବୃନ୍ଦାବନ ମହାପାତ୍ର ଏବଂ ଯୁବ କର୍ମୀ ରବୀନ୍ଦ୍ର ଅଟ ଭୁବନେଶ୍ୱର ଡାକ୍ତରଖାନାରେ ଶତ୍ରୁଘନ ମାନସିଂହଙ୍କୁ ସାକ୍ଷାତ୍ କରି ସଂଧ୍ୟାରେ ବୋଲଗଡ ଫେରିଲେ । ରାତିସାରା ସମସ୍ତ କଂଗ୍ରେସ କର୍ମୀଙ୍କୁ ଏକତ୍ରିତ କରି ଆଗାମୀ ସାଧାରଣ ନିର୍ବାଚନରେ ଲଢିବା ପାଇଁ ବିଚାର ବିମର୍ଶ ଚାଲିଲା । ଏଥିରେ ଶ୍ରୀ ଭାସ୍କର ମହାପାତ୍ର, ସୀତାକାନ୍ତ ବିଧାର (ତତକାଳୀନ ପଞ୍ଚାୟତ ସମିତି ଚେୟାରମ୍ୟାନ, ବୋଲଗଡ), ଶ୍ରୀ ଭଗବାନ ପଣ୍ଡା (ତତକାଳୀନ ପଞ୍ଚାୟତ ସମିତି ଚେୟାରମ୍ୟାନ, ବେଗୁନିଆ), ବେଗୁନିଆର ଯୁବନେତା ହରିହର ସାହୁ ଏବଂ ରବୀନ୍ଦ୍ର କୁମାର ପରିଡା ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ପୁରୁଖା ସ୍ୱାଧୀନତା ସଂଗ୍ରାମୀ ତଥା କଂଗ୍ରେସ କର୍ମୀ ପତିତପାବନ ହୋତା ଏବଂ ବାସୁଦେବ ପଟ୍ଟନାୟକ ଏମାନଙ୍କୁ ଏକାଠୀ କରିବାରେ ସଫଳ ହୋଇଥିଲେ । ଶ୍ରୀ ଗୌରୀଶ୍ୟାମ ପଟ୍ଟନାୟକ ଗତ ୧୯୭୧

ନିର୍ବାଚନରେ ଶାସକ କଂଗ୍ରେସ ଦଳର ପ୍ରାର୍ଥୀ ହୋଇ କଂଗ୍ରେସ କର୍ମୀଙ୍କ ଅସହଯୋଗରୁ ପରାଜିତ ହେବାରୁ ସେ ମନଦୁଃଖରେ ଉକ୍ତ ବୈଠକକୁ ନଆସିଥିଲେ ମଧ ଯାହା ନିଷ୍ପତ୍ତି ହେବ ତାକୁ ମାନିନେବେ ବୋଲି ନିର୍ଭର ପ୍ରତିଶ୍ରୁତି ଦେଇଥିଲେ । ସମସ୍ତଙ୍କ ଲକ୍ଷ ବୋଲଗଡ ବେଗୁନିଆଁରୁ କମ୍ୟୁନିଷ୍ଟଙ୍କ ପାଦୁର୍ଭାବ ଲୋପ କରିବା । ସେହି ରାତ୍ରୀର ପାହାନ୍ତିଆରୁ ସର୍ବଶ୍ରୀ ସତ୍ୟାନନ୍ଦ ଚମ୍ପତିରାୟ, ଭାସ୍କର ମହାପାତ୍ର, ସୀତାକାନ୍ତ ବିଧାର, ଭଗବାନ ପଣ୍ଡା, ହରି ସାହୁ, ରବି ଅଟ ଏବଂ ରବୀନ୍ଦ୍ର କୁମାର ପରିଡା ହରି ସାହୁଙ୍କର Hilly Man କାରରେ ଯାଇ ପୁରୀ ଲୋକନାଥଙ୍କ ଘାଟରେ ନିୟମ କରି ଆଗାମୀ ନିର୍ବାଚନରେ ସତ୍ୟାନନ୍ଦ ବାବୁଙ୍କୁ ସର୍ବସମ୍ମତି କ୍ରମେ ଉତ୍କଳ କଂଗ୍ରେସ ପ୍ରାର୍ଥୀ ଭାବରେ ମନୋନୀତ କରିଥିଲେ । ସେତେବେଳକୁ ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାରେ ଶାସକ କଂଗ୍ରେସ ଦଳର ସଭାନେତ୍ରୀ । ଅନ୍ୟ ପକ୍ଷରେ ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ଦଳ ଏବଂ ଜନ କଂଗ୍ରେସର ତୁଙ୍ଗ ନେତା ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ନୀଳମଣି ରାଉତରାୟ, ରାଜେନ୍ଦ୍ର ନାରାୟଣ ସିଂହ ଦେଓ, ପ୍ରତାପ କେଶରୀ ଦେଓ, ପବିତ୍ର ମୋହନ ପ୍ରଧାନ ମିଶି 'ଓଡିଶା ପ୍ରଗତି ଦଳ' ଗଠନ କରିଥାନ୍ତି । ସତ୍ୟାନନ୍ଦ ବାବୁ ଶାସକ କଂଗ୍ରେସ ଦଳ ତରଫରୁ ମୁଖପତ୍ର ଭାବରେ ପ୍ରକାଶ ପାଉଥିବା "ଆଗମନୀ" ଖବର କାଗଜର ସଂପାଦନା ଦାୟିତ୍ୱରେ ଥାଆନ୍ତି । କଂଗେସରୁ ପ୍ରାର୍ଥୀ ହେବାକୁ ସତ୍ୟାନନ୍ଦ ବାବୁ ଆଗ୍ରହୀ ଥିଲାବେଳେ ଜାତୀୟ ସ୍ତରରେ କଂଗ୍ରେସ ଓ କମ୍ୟୁନିଷ୍ଟ ଦଳ ଏକାଠି ଲଢ଼ିବାର ଖବର ପତିତପାବନ ହୋତା, ରବୀନ୍ଦ୍ର କୁମାର ପରିଡା ଏବଂ ବାସୁଦେବ ପଟ୍ଟନାୟକ ରାଜ୍ୟସ୍ତରୀୟ କଂଗ୍ରେସ ନେତା ୪ ବ୍ରଜମୋହନ ମହାନ୍ତିଙ୍କଠାରୁ ଶୁଣିବା ପରେ ବୋଲଗଡ ବେଗୁନିଆର ଉପରୋକ୍ତ ଯୁବ ନେତାଙ୍କ ଚାପରେ ସେ ଶାସକ କଂଗ୍ରେସରୁ ଇସ୍ତଫା ଦେଇ ଏଠାରୁ ଉତ୍କଳ କଂଗ୍ରେସର ପ୍ରାର୍ଥୀ ଭାବରେ ୧୯୭୪ ଫେବ୍ରୁୟାରୀ ମାସରେ ହୋଇଥିବା ସାଧାରଣ ନିର୍ବାଚନରେ ଲଢ଼ିଲେ । ଏହି ନିର୍ବାଚନରେ ବୋଲଗଡ ବେଗୁନିଆରେ ବହୁ ଦିନ ଧରି କଂଗ୍ରେସ କମ୍ୟୁନିଷ୍ଟ ଦଳ ମଧ୍ୟରେ ନିର୍ବାଚନ ଲଢେଇ ଏବଂ ଅନ୍ୟ ବହୁ ପ୍ରସଙ୍ଗରେ ସମ୍ପର୍କର ଦୂରତା ବହୁତ ଥିଲେ ମଧ ଏହି ନିର୍ବାଚନରେ ଉପରେ କଂଗ୍ରେସ କମ୍ୟୁନିଷ୍ଟ ମେଣ୍ଟ ହେବାରୁ ସ୍ଥାନୀୟ କଂଗ୍ରେସ ସମର୍ଥକ ମାନେ ଗଙ୍ଗାଧର ପାଇକରାୟଙ୍କୁ ସାହାଯ୍ୟ କଲେନାହିଁ । ଫଳରେ ସତ୍ୟାନନ୍ଦ ବାବୁ ଏଠାରୁ ଏହି ନିର୍ବାଚନରେ ୧୦ ହଜାର ପାଖାପାଖି ଭୋଟ ବ୍ୟବଧାନରେ ଗଙ୍ଗାଧର ପାଇକରାୟଙ୍କୁ ପରାଜୟ କଲେ । ଏହି ନିର୍ବାଚନରେ ଓଡିଶାରେ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ନେତୃତ୍ୱରେ କଂଗ୍ରେସ ସରକାର ଗଠନ କଲା । ସେହି ଦିନ ଠାରୁ ଅଦ୍ୟାବଧି ସବୁଦିନ ପାଇଁ ଏଠାରୁ କମ୍ୟୁନିଷ୍ଟ ପାର୍ଟି ନିର୍ବାଚନରେ ହାରିଅଛି ଏବଂ କମ୍ୟୁନିଷ୍ଟଙ୍କର କର୍ତ୍ତୃତ୍ୱ ଲୋପ ପାଇଅଛି ।

# ଜରୁରୀକାଳୀନ ପରିସ୍ଥିତି

୧୯୭୫ ମସିହାରେ ଇନ୍ଦିରା ଗାନ୍ଧୀ ଦେଶରେ ଜରୁରୀ କାଳୀନ ପରିସ୍ଥିତି ସୃଷ୍ଟି କରିଥିଲେ । ଏହା ପରେ ସମଗ୍ର ଦେଶରେ ଏକ ଅଭୂତପୂର୍ବ ପରିସ୍ଥିତି ସୃଷ୍ଟି ହୋଇଥିଲା । ବହୁ ନେତାଙ୍କୁ ଜେଲକୁ ଯିବାକୁ ପଡିଥିଲା । ଏହି ସମୟରେ ସତ୍ୟାନନ୍ଦ ଚମ୍ପତିରାୟ ତାଙ୍କର ବନ୍ଧୁ କାହ୍ନୁଚରଣ ଲେଙ୍କା ଏବଂ ବେଣୁଧର ବଳିଆର ସିଂହଙ୍କ ସହୟତାରେ ଉତ୍କଳ କଂଗ୍ରେସ ପରିତ୍ୟାଗ କରି କଂଗ୍ରେସ ଦଳରେ ଯୋଗଦେଲେ । ସେ ଉତ୍କଳ କଂଗ୍ରେସ ଟିକେଟରେ ଜିଣିଥିବାରୁ ଏବଂ ଏହି ନିର୍ବାଚନର ସମସ୍ତ ଖର୍ଚ୍ଚ ଉତ୍କଳ କଂଗ୍ରେସ କର୍ତ୍ତୃପକ୍ଷ ବହନ କରିଥିବାରୁ ସତ୍ୟାନନ୍ଦଙ୍କର ଦଳ ପରିବର୍ତ୍ତନ ସେମାନଙ୍କୁ ଏକ ଶକ୍ତ ଧକ୍କା ହେଲା । ନୀଳମଣି ରାଉତରାୟ ସେ ସମ୍ପର୍କରେ ସତ୍ୟାନନ୍ଦ ବାବୁଙ୍କ ସହ ବାରମ୍ବାର ଯୋଗାଯୋଗ କରି ବିଫଳ ହେବାରେ ନିର୍ବାଚନରେ ମୁଖ୍ୟ ଅଂଶ ଗ୍ରହଣ କରିଥିବା ହରିହର ସାହୁଙ୍କୁ ଡାକି ସତ୍ୟାନନ୍ଦ ବାବୁଙ୍କୁ ପୁନରାୟ ଦଳକୁ ଫେରାଇ ଆଣିବାକୁ ପ୍ରବର୍ତ୍ତାଇ ଥିଲେ । ହରି ବାବୁ ଅନ୍ୟ କୌଣସି ବନ୍ଧୁଙ୍କ ସହ ପରାମର୍ଶ ନକରି ସିଧା ସଳଖ ସତ୍ୟାନନ୍ଦ ବାବୁଙ୍କୁ ଭେଟି ତାଙ୍କୁ ଧମକ ଦେବାରେ ପ୍ରତିଶୋଧ ପରାୟଣ ହୋଇ ସେ ହରିହର ସାହୁଙ୍କୁ ୧୮ ମାସ ପାଇଁ ମିଶା MISA ରେ ଗିରଫ କରିବାରେ ସଫଳ ହୋଇଥିଲେ । ଏସମ୍ପର୍କରେ ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ନୀଳମଣି ରାଉତରାୟଙ୍କ ଆତ୍ମଜୀବନୀ "ସ୍ମୃତି ଅନୁଭୂତି" (ପୃ- ୫୯୫) ତଥ୍ୟ ନିମ୍ନରେ ଦିଆଗଲା -

ପୁରୀ ଜିଲ୍ଲା ବେଗୁନିଆର ହରି ସାହୁ ନାମକ ଜଣେ ଯୁବକ ଲୋକ ଦଳର ଜଣେ ବଡ ସମର୍ଥକ ଥିଲେ । ତାଙ୍କ ସାହାଯ୍ୟରେ ନିର୍ବାଚନରେ ଲୋକ ଦଳର ପ୍ରାର୍ଥୀ ସତ୍ୟାନନ୍ଦ ଚମ୍ପତିରାୟ ଜୟଲାଭ କରିଥିଲେ । ଜରୁରୀ କାଳୀନ ପରିସ୍ଥିତି ବେଳେ ସତ୍ୟାନନ୍ଦ ବାବୁ ଲୋକ ଦଳ ଛାଡି ଶାସକ କଂଗ୍ରେସ ଦଳରେ ଯୋଗ ଦେଲେ । ମୁଁ ଶ୍ରୀ ଚମ୍ପତିରାୟଙ୍କୁ ଅନେକ ଥର ଫୋନରେ ଡାକିଥିଲି , ମୋତେ ଦେଖା କରିବାକୁ । ସେ ମୋତେ ଦେଖାକରିବାକୁ କୁହନ୍ତି ମାତ୍ର ଆସନ୍ତି ନାହିଁ । ତେଣୁ ମୁଁ ହରି ସାହୁଙ୍କୁ ଡକାଇ ସତ୍ୟାନନ୍ଦ ବାବୁଙ୍କ ବ୍ୟବହାର କଥା କହିଥିଲି । ସେ ଯାଇ ସତ୍ୟାନନ୍ଦ ବାବୁଙ୍କୁ ଦେଖା କରି କଡା ଭାଷାରେ ସମାଲୋଚନା କରିଥିଲେ । ସେ କିପରି ଲୋକ ଦଳକୁ ଫେରି ଆସିବେ ସେଥିପାଇଁ ଉଦ୍ୟମ କରିଥିଲେ । ଶ୍ରୀ ଚମ୍ପତିରାୟ ମୁଖ୍ୟମନ୍ତ୍ରୀଙ୍କ ସହ ଚକ୍ରାନ୍ତ କରି ଅଫିସରଙ୍କ ଅନିଚ୍ଛା ସତ୍ତ୍ୱେ ତାଙ୍କୁ ଜେଲରେ ଅଟକ ରଖାଇ ଶ୍ରୀ ସାହୁଙ୍କର ପ୍ରକାଶ୍ୟ ଭର୍ତ୍ସନାରୁ ରକ୍ଷା ପାଇଲେ ।

୧୯୭୪ ମସିହା ନିର୍ବାଚନରେ ସତ୍ୟାନନ୍ଦ ବାବୁଙ୍କର ମୁଖ୍ୟ ସହଯୋଗୀ ବେଗୁନିଆ ବ୍ଲକ ଚେୟାରମ୍ୟାନ ଭଗବାନ ପଣ୍ଡାଙ୍କର ଘର ଜରୁରୀ ପରିସ୍ଥିତି ବେଳେ ଖାନତଲାସ ହେବା ସହ ବହୁ ମୁଖ୍ୟ ସମର୍ଥକ ଧନୀ ଲୋକଙ୍କର ଘର ଖାନତଲାସ ହେବାରୁ ସେମାନେ ଭୟରେ ହରିହର ସାହୁଙ୍କ ପ୍ରତି ନୀରବ ସହାନୁଭୂତି ଜଣାଇବା ଛଡା ଅନ୍ୟ କିଛି ଗତି ନଥିଲା । ଭାସ୍କର ମହାପାତ୍ର ଏବଂ ସୀତାକାନ୍ତ ବିଧାର ବାଧ୍ୟ ହୋଇ ଏଇ କାରଣରୁ ନୀରବ ରହିଥିଲେ । ଲେଖକ ଇତିମଧ୍ୟରେ "ହିନ୍ଦୁସ୍ତାନ ସମାଚାର"ର ପ୍ରତିନିଧି ଏବଂ RSS କାର୍ଯ୍ୟକଳାପରେ ସଂପୃକ୍ତ ଥିବାରୁ ୭୫ ମସିହା ଜୁଲାଇ ମାସରେ ହଠାତ ତାଙ୍କ ଘର ଖାନତଲାସ ସରକାରଙ୍କ ତରଫରୁ କରାଯାଇଥିଲା । ଏହିଭଳି ଏକ ପରିବର୍ତ୍ତିତ ରାଜନୈତିକ ପରିସ୍ଥିତି ପରିଶେଷରେ 'ଉତ୍କଳ କଂଗ୍ରେସ'ର ସମସ୍ତ ମୁଖ୍ୟ ମାନଙ୍କୁ କଂଗ୍ରେସରେ ସାମିଲ ହେବା ପାଇଁ ଏକ ସୁଯୋଗ ଦେଇଥିଲା । ଅବଶ୍ୟ ଏଥିପାଇଁ ବିଧିବଦ୍ଧ ଭାବରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କର ନିମନ୍ତ୍ରଣ ରହିଥିଲା । ସମସ୍ତେ କଂଗ୍ରେସରେ ମିଶିଲା ପରେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କର ଦୁଇଟି ପ୍ରକାଶ୍ୟ ସାଧାରଣ ସଭା ବୋଲଗଡ ବେଗୁନିଆ ଠାରେ କଂଗ୍ରେସ ସଂଗଠନକୁ ମଜବୁତ କରିବା ସଂଗେ ସଂଗେ କମ୍ୟୁନିଷ୍ଟ ଦଳକୁ ବହୁ ପଛକୁ ନେଇଯାଇଥିଲା । ଜରୁରୀ ପରିସ୍ଥିତି ଶେଷ ବେଳକୁ ଓଡିଶା କଂଗ୍ରେସ ରାଜନୀତିରେ ଏକ ନୂତନ ମୋଡ ନେଇଥିଲା । ନନ୍ଦିନୀ ଦେବୀ ଇନ୍ଦିରା ଗାନ୍ଧୀଙ୍କର ବିରୋଧୀ ହୋଇଯାଇଥିଲେ ଏବଂ ଦେଶରେ ସଂଜୟ ଗାନ୍ଧୀଙ୍କର ଉତଥାନ ହୋଇଥିଲା । ଏହାର ସୁଯୋଗ ନେଇ ଜାନକୀ ବଲ୍ଲଭ ପଟ୍ଟନାୟକ କେନ୍ଦ୍ରରେ ମନ୍ତ୍ରୀ ଥାଇ ଚିନ୍ତାମଣି ପାଣିଗ୍ରାହୀ, ବ୍ରଜମୋହନ ମହାନ୍ତି, ବାଙ୍କବିହାରୀ ଦାସ ପ୍ରଭୃତି କଂଗ୍ରେସ ନେତାଙ୍କ ସହାୟତାରେ ନନ୍ଦିନୀ ହଟାଅ ଆରମ୍ଭ କରି ସେଥିରେ ସଫଳ ହୋଇ ଅଳ୍ପ ଦିନ ପାଇଁ ବିନାୟକ ଆଚାର୍ଯ୍ୟଙ୍କ ନେତୃତ୍ୱରେ ରାଜ୍ୟରେ ନୂତନ କଂଗ୍ରେସ ସରକାର ଗଠନ ହୋଇଥିଲା । ସେତେବେଳେ ବସ୍ତୁତଃ ବୋଲଗଡ ବେଗୁନିଆରେ ସତ୍ୟାନନ୍ଦ ବାବୁ ନନ୍ଦିନୀ ଶତପଥୀଙ୍କ ପକ୍ଷରେ ଥିଲା ବେଳେ ଚିନ୍ତାମଣି ବାବୁଙ୍କ ନେତୃତ୍ୱରେ ସମସ୍ତ ଯୁବ ନେତୃତ୍ୱ ଓ ଜନପ୍ରତିନିଧି ରହିଥିଲେ । ଜରୁରୀ ପରିସ୍ଥିତିରେ ବୋଲଗଡରୁ RSS କାର୍ଯ୍ୟକଳାପରେ ରଘୁନାଥ ସେଠୀ ଏବଂ କଙ୍କାଙ୍କର ବ୍ରଜବନ୍ଧୁ ମହାପାତ୍ର ୧୮ ମାସ ପାଇଁ କାରାବରଣ କରିଥିଲେ । ଭୁବନେଶ୍ୱରରେ ସତ୍ୟାଗ୍ରହ କରି ବୋଲଗଡର ହରିହର ସାହୁ ୧ ମାସ ଜେଲ ରହି ଜାମିନରେ ଖଲାସ ହୋଇଥିଲେ । ଜରୁରୀ ପରିସ୍ଥିତି ଉଠିଲା ପରେ ୧୯୭୭ ମସିହାପରେ ଦେଶରେ ଲୋକସଭା ନିର୍ବାଚନ ଅନୁଷ୍ଠିତ ହେଲା । ଏହି ନିର୍ବାଚନରେ ଭୁବନେଶ୍ୱର ଲୋକସଭା କଂଗ୍ରେସ ପ୍ରାର୍ଥୀ ଚିନ୍ତାମଣି ପାଣିଗ୍ରାହୀ ପରାଜୟ ବରଣ କରିଥିଲେ ଏବଂ C.P.I. (M) ପ୍ରାର୍ଥୀ ଶିବାଜୀ ପଟ୍ଟନାୟକ ବିଜୟ ହାସଲ

କରିଥିଲେ । ଏହି ନିର୍ବାଚନରେ ଗଙ୍ଗାଧର ପାଇକରାୟ C.P.I. ତରଫରୁ ଲୋକସଭା ପ୍ରାର୍ଥୀ ଭାବରେ ଲଢି ୪୦ ହଜାର ଭୋଟ ପାଇଥିବାରୁ ଏହା ଚିନ୍ତାମଣି ବାବୁଙ୍କର ହାରିବାର ଏକ ମୁଖ୍ୟ କାରଣ ଥିଲା । ଚିନ୍ତାମଣି ବାବୁ ବହୁ ସମୟରେ ବୋଲଗଡ ବେଗୁନିଆ ଅଞ୍ଚଳ ଗସ୍ତ କରି କଂଗ୍ରେସ ସଂଗଠନକୁ ଦୃଢୀଭୂତ କରୁଥିବାରୁ କମ୍ୟୁନିଷ୍ଟ ଦଳର ସ୍ୱତଃ ସେ ବିରାଗ ଭାଜନ ହୋଇଥିଲେ । ୧୯୭୭ ମସିହାରେ କେନ୍ଦ୍ରରେ ଜନତା ପାର୍ଟି ସରକାର ମୋରାରଜୀ ଦେଶାଇଙ୍କ ନେତୃତ୍ୱରେ ଗଠିତ ହେବାରୁ ସମଗ୍ର ଦେଶରେ ନଅଟି ରାଜ୍ୟରେ ଥିବା କଂଗ୍ରେସ ସରକାରକୁ ରାତାରାତ ଭାଙ୍ଗି ରାଷ୍ଟ୍ରପତି ଶାସନ ଜାରି କରିବା ସହ ସେହି ସବୁ ରାଜ୍ୟରେ ନିର୍ବାଚନ କରିବା ପାଇଁ ଘୋଷଣା କରାଗଲା । ଏହି ସୁଯୋଗରେ ଚିନ୍ତାମଣି ପାଣିଗ୍ରାହୀ ଏଠାରୁ କଂଗ୍ରେସ ପ୍ରାର୍ଥୀ ଏବଂ ଜେଲରୁ ଫେରି ହରିହର ସାହୁ ଜନତା ପାର୍ଟି ପ୍ରାର୍ଥୀ ଏବଂ ଗଙ୍ଗାଧର ପାଇକରାୟ କମ୍ୟୁନିଷ୍ଟ ପ୍ରାର୍ଥୀ ଭାବରେ ନିର୍ବାଚନ ଲଢିଲେ । ଏହି ନିର୍ବାଚନରେ ମୁଖ୍ୟତଃ ତ୍ରିମୁଖୀ ପ୍ରତିଦ୍ୱନ୍ଦୀତା ହେଲା । ଚିନ୍ତାମଣି ବାବୁ ଅଳ୍ପ ଭୋଟ ବ୍ୟବଧାନରେ ଜିଣି ରାଜ୍ୟ ବିଧାନ ସଭାରେ ବିରୋଧି ଦଳ ନେତା ଭାବରେ ଅଧିଷ୍ଠିତ ହେଲେ । ସେତିକିବେଳେ ଜାତୀୟ ସ୍ତରରେ ଇନ୍ଦିରା କଂଗ୍ରେସ ଗଠନ ହୋଇଥିଲା । ଜନତା ପାର୍ଟିରେ ସରକାରର ଆଭ୍ୟନ୍ତରୀଣ ଗୋଳମାଳ ଯୋଗୁ ଏ ସରକାର ୫ ବର୍ଷ ପାଇଁ ରହିପାରିନଥିଲା । ୧୯୮୦ ମସିହାରେ ପୁନର୍ବାର ଦେଶରେ ଲୋକସଭା ଏବଂ ରାଜ୍ୟରେ ବିଧାନସଭା ନିର୍ବାଚନ ହେବାରୁ ଏଠାରୁ କୈଳାସ ଚନ୍ଦ୍ର ମହାପାତ୍ର କଂଗ୍ରେସ ବିଧାୟକ ଏବଂ ଲୋକସଭା ଆସନରେ ଚିନ୍ତାମଣି ପାଣିଗ୍ରାହୀ କଂଗ୍ରେସ M.P. ଭାବରେ ବିଜୟୀ ହୋଇଥିଲେ । ଜାନକୀ ବାବୁ ଓଡିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କଲେ । ସେହି ସମୟରୁ ବୋଲଗଡ ବେଗୁନିଆରେ ପ୍ରଗତିର ବାଟ ଖୋଲିଲା । ବୋଲଗଡରେ ମହାବିଦ୍ୟାଳୟ, ବେଗୁନିଆ ଡାକ୍ତରଖାନା, ପିତୁକୁଳି ଠାରେ ରଙ୍ଗ କାରଖାନା ପ୍ରଭୃତି ବହୁ ଆଖିଦୃଷିଆ କାମ ଆରମ୍ଭ ହୋଇଥିଲା । ୧୯୮୪ରେ ଆତତାୟୀ ଗୁଳିରେ ଇନ୍ଦିରା ଗାନ୍ଧୀଙ୍କ ଦେହାନ୍ତରେ ରାଜୀବ ଗାନ୍ଧୀଙ୍କ ନେତୃତ୍ୱରେ ସାଧାରଣ ନିର୍ବାଚନ ହୋଇ ଏଠାରୁ ପୂର୍ବବତ ଉଭୟ ବିଧାୟକ ଏବଂ ଲୋକସଭା ସଭ୍ୟ ହେବା ସହ ଜାନକୀ ବାବୁ ଦ୍ୱିତୀୟ ଥର ପାଇଁ ଓଡିଶାର ମୁଖ୍ୟମନ୍ତ୍ରୀ ଆସନ ଗ୍ରହଣ କରିଥିଲେ । ସେତେବେଳେ ବୋଲଗଡ ବେଗୁନିଆରେ ମୂଳ କଂଗ୍ରେସ ବସ୍ତୁତଃ ଦୁଇ ଭାଗ ହୋଇଗଲା । ଗୋଟିଏ ଦଳ କଂଗ୍ରେସର ରହିଲା ବେଳେ ଅନ୍ୟ ଭାଗଟି ହରିହର ସାହୁଙ୍କ ନେତୃତ୍ୱରେ ଜନତା ଦଳରେ ସାମିଲ ହୋଇଗଲା । ୧୯୯୦ ମସିହା ବେଳକୁ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଓଡିଶାରେ ପ୍ରବଳ ଜନତା ହାଓ୍ୱା ବହିଲା । ଚକ୍ର ସେତେବେଳେ ଜନତା ଦଳ ଚିହ୍ନ ଥିଲା । ଏଠାରୁ ହରି ସାହୁ ଏବଂ ଗଙ୍ଗାଧର

ପାଇକରାୟଙ୍କ ବିଗତ ୩ ଗୋଟି ନିର୍ବାଚନରେ ପରାଜୟ ହେବା ପରେ ଜନତା ଏବଂ କମ୍ୟୁନିଷ୍ଟ ମେଣ୍ଟ ହୋଇ ସୁରେନ୍ଦ୍ର ନାଥ ମିଶ୍ରଙ୍କୁ ଜନତା ଦଳ ପ୍ରାର୍ଥୀ ଭାବରେ ମନୋନୀତ କରାଗଲା । ଏହି ନିର୍ବାଚନରେ ଶତ୍ରୁଘନ ମାନସିଂହଙ୍କ ନେତୃତ୍ୱରେ ପୁରାତନ କଂଗ୍ରେସ କର୍ମୀମାନେ କୈଳାସ ମହାପାତ୍ରଙ୍କର ବିରୋଧି ହୋଇଯିବାରୁ ଶ୍ରୀ ମିଶ୍ରଙ୍କର ବିଜୟର ପଥ ପରିଷ୍କାର ହୋଇଗଲା । ତାଙ୍କ ସମୟରେ ମାଗୁରା ଜଳସେଚନ ଯୋଜନା ଏକ ପ୍ରଧାନ ଜନହିତକର କାର୍ଯ୍ୟ । ଏହାଛଡା ନୂତନ ଭାବରେ ସାନପଦର, ଧଳାପଥର, ମାଣିବନ୍ଧ ଏବଂ ପରେ ଅସରଳା ଗ୍ରାମ ପଞ୍ଚାୟତ ସୃଷ୍ଟି ହୋଇଥିଲା । ୧୯୯୫ ସାଧାରଣ ନିର୍ବାଚନରେ କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିବାରୁ ବିଧାୟକ ନଥାଇ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବିଧାୟକ ଦଳର ନେତା ଭାବରେ ମୁଖ୍ୟମନ୍ତ୍ରୀ ଆସନ ଅଳଙ୍କୃତ କରିଥିଲେ । ସେତେବେଳେ ସେ ଉପନିର୍ବାଚନରେ ବେଗୁନିଆରୁ ପ୍ରାର୍ଥୀ ହେବା ନିଶ୍ଚିତ ଭାବରେ ସ୍ଥିର ହୋଇଯାଇଥିଲା । ଏତିକି ବେଳକୁ ଜନତା ଦଳରେ ତୀବ୍ର କନ୍ଦଳ ହୋଇ ଏଠାରୁ ଦଳୀୟ ବିଧାୟକ ସୁରେନ୍ଦ୍ର ମିଶ୍ରଙ୍କ ଟିକେଟ କଟାଯାଇ ରାଜ୍ୟ ଜନତା ଦଳର ସଭାପତି ଅଶୋକ ଦାଶଙ୍କର ବନ୍ଧୁ ଭବାନୀ ଶଙ୍କର ଜଗଦେବ ମହାପାତ୍ରଙ୍କୁ ଜନତା ଦଳ ଟିକେଟ ମିଳିଥିଲା । ଚିନ୍ତାମଣି ପାଣିଗ୍ରାହୀ ମଣିପୁର ରାଜ୍ୟପାଳ ହୋଇଯିବାପରେ କଂଗ୍ରେସରେ କଂଗ୍ରେସ ବିରୋଧି ଲୋକଙ୍କୁ ପ୍ରାଧାନ୍ୟ ଦିଆଯିବାରେ ରବୀନ୍ଦ୍ର କୁମାର ପରିଡା କଂଗ୍ରେସ ଦଳ ତ୍ୟାଗ କରି ଭାରତୀୟ ଜନତା ପାର୍ଟିରେ ଯୋଗଦେଇ ୧୯୯୫ ସାଧାରଣ ନିର୍ବାଚନରେ ଏଠାରୁ BJP ପ୍ରାର୍ଥୀ ଭାବରେ ନିର୍ବାଚନରେ ଲଢିଥଲେ । ଏହି ପରି ଏକ ଗୋଳମାଳିଆ ପରିସ୍ଥିତିରେ ହରିହର ସାହୁ କଂଗ୍ରେସ ପ୍ରାର୍ଥୀ ହିସାବରେ ବିଧାୟକ ହୋଇ ୧୫ ଦିନ ପରେ ଇସ୍ତଫା ଦେଇଥିଲେ ଏବଂ ଉପନିର୍ବାଚନରେ ଜାନକୀ ବାବୁ କଂଗ୍ରେସ ପ୍ରାର୍ଥୀ ହୋଇ ପ୍ରସନ୍ନ ପାଟଶାଣୀ (ଜନତା ଦଳ ପ୍ରାର୍ଥୀ) ଙ୍କ ସହ ଲଢି ୨୨ ହଜାରରୁ ଅଧିକ ଭୋଟରେ ଜୟଯୁକ୍ତ ହୋଇ ନିଜର ମୁଖ୍ୟମନ୍ତ୍ରୀ ପଦ ବଜାୟ ରଖିଥିଲେ ।

୧୯୯୫ ମସିହା ମେ ମାସ ଉପନିର୍ବାଚନ ସମୟରେ ୯ ଦିନ ବ୍ୟାପି ପ୍ରବଳ ବର୍ଷା ଭିତରେ ଉପନିର୍ବାଚନ ହୋଇଥିଲା । ବୈଶାଖ ମାସରେ ନଈ ନାଳ ଜମି ବାଡିରେ ପାଣି ଚାଲିବା ସହ କାଦୁଅ ହୋଇଯାଇଥିଲା । ଠିକ୍ ସେହି ବର୍ଷ ଜୁଲାଇ ଅଗଷ୍ଟ ମାସରେ ଆଦୌ ବର୍ଷା ନହେବାରୁ ବୋଲଗଡ ବ୍ଲକ ଅଞ୍ଚଳରେ ଭୀଷଣ ମରୁଡି ହୋଇଥିଲା । ଲୋକେ ସେତେବେଳେ ଅଚ୍ୟୁତାନନ୍ଦଙ୍କର ମାଳିକା ଠିକ ହେଲା ବୋଲି ବିଶ୍ୱାସ କରିଥିଲେ ।

ବୈଶାଖ ମାସରେ ଫୁଟିବ କଇଁ
ଭାଦ୍ରବ ମାସରେ ଫାଟିବ ଭୂଇଁ

ମାଳିକାର ଏହି ବାକ୍ୟ ବୋଲଗଡ ଅଞ୍ଚଳ ପ୍ରତି ପ୍ରଜ୍ୟୁଜ୍ୟ ଥିଲା । ଏତିକି ବେଳେ ଚିତ୍ତରଞ୍ଜନ (ଷଡଙ୍ଗୀ) ବୋଲଗଡ ଅଞ୍ଚଳକୁ ଆସି ସମସ୍ତ କଲେଜ ଛାତ୍ରଙ୍କୁ ଏକାଠି କରି ଜଳସେଚନ ବ୍ୟବସ୍ଥା କରିବା ପାଇଁ ବିଭିନ୍ନ ଗ୍ରାମ ମାନଙ୍କରେ ଲୋକଙ୍କୁ ସଂଗଠିତ କରିଥିଲେ । ଏଥିପାଇଁ ସାଇକେଲ ରାଲି ଭୁବନେଶ୍ୱର ମଧ୍ୟ ଯାଇଥିଲା । ଏହି ଆନ୍ଦୋଳନରେ ଅକ୍ଷୟ ପଟ୍ଟନାୟକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା ବେଳେ ଅଦୈତ ସ୍ୱାଇଁ, ଲେଖକ ଏବଂ ବହୁ ଯୁବକ ଅଂଶଗ୍ରହଣ କରିଥିଲେ । ଶେଷରେ ୯୬ ମସିହା ପ୍ରାରମ୍ଭରେ ଏହା ଏକ ଗଣ ଆନ୍ଦୋଳନରେ ପରିଣତ ହୋଇ ୬ ଦିନ କାଳ ବୋଲଗଡ ବ୍ଲକ ଅଚଳ ହେବାରେ ରାତି ଅଧରେ ଅନଶନରତ ଆନ୍ଦୋଳନକାରୀଙ୍କୁ ପୋଲିସ ଧରି ନେଇ ଖୋର୍ଦ୍ଧା ଜେଲରେ ଭର୍ତ୍ତି କରିଥିଲେ । ବହୁଦିନ ରହିବା ପରେ ଜାମିନରେ ଖଲାସ ହୋଇ ଆନ୍ଦୋଳନକାରୀମାନେ ବାହାରି ଥିଲେ । ଏହାପରେ ଭୂତଳ ଜଳ ସମ୍ପଦର ବିନିଯୋଗ ପାଇଁ ସରକାରୀ ଏବଂ ବେସରକାରୀ ଉଦ୍ୟମ ହୋଇ କେତେକାଂଶରେ ସଫଳ ହୋଇଅଛି । ତଥାପି ଏ ସମ୍ପର୍କରେ ବହୁତ କାମ ବାକି ଅଛି । ଏ ଆନ୍ଦୋଳନ ଫଳରେ ତତକାଳୀନ ମୁଖ୍ୟମନ୍ତ୍ରୀ ଏକ ମେଗା ଜଳ ପ୍ରକଳ୍ପ ଜରିଆରେ ମହାନଦୀରୁ ପାଣି ଆଣି ଟିକାତାଳ ଟାଙ୍ଗିରେ ତାକୁ ଭଣ୍ଡାର କରି ବ୍ଲକ୍ ଅଞ୍ଚଳକୁ ଯୋଗାଇବାର ଯୋଜନା କରିଥିଲେ ମଧ୍ୟ ପରବର୍ତ୍ତୀ ଅବସ୍ଥାରେ ତାହା ଧିମେଇ ଯାଇଥିଲା । ଅକ୍ଷୟ ପଟ୍ଟନାୟକ ସେହି ଦିନ ଠାରୁ ଭୂତଳ ଜଳ ସମ୍ପଦ ବିନିଯୋଗ ସମ୍ପର୍କରେ ଅହରହ କାର୍ଯ୍ୟ କରିଚାଲିଛନ୍ତି । ମାତ୍ର ଏହା ସମ୍ପୂର୍ଣ୍ଣ ହୋଇନାହିଁ ।

ଏହି ନିର୍ବାଚନରେ ସୁରେନ୍ଦ୍ର ନାଥ ମିଶ୍ର, ବସନ୍ତ ବିଶ୍ୱାଳଙ୍କ ପରାମର୍ଶରେ କଂଗ୍ରେସ ଦଳରେ ଯୋଗଦେଇ ଜାନକୀ ବାବୁଙ୍କୁ ସମର୍ଥନ କରିଥିଲେ । ପରେ ସେ କଂଗ୍ରେସ ଦଳ ଛାଡିଦେଇଥିଲେ । ଏହି ସମୟରେ ଜାନକୀ ବାବୁଙ୍କ ମୁଖ୍ୟମନ୍ତ୍ରୀତ୍ୱରେ ବୋଲଗଡ ବେଗୁନିଆ ଅଞ୍ଚଳର ବହୁ ପିଚୁରାସ୍ତା, ବୋଲଗଡ ସରକାରୀ ଡାକ୍ତରଖାନାର ସମ୍ପ୍ରସାରଣ, ବହୁ ଜଳସେଚନ ପ୍ରକଳ୍ପ ବିଶେଷ କରି ମଲାଗୁଣି ନଦୀ ଉପରେ ଏହି ନିର୍ବାଚନ ମଣ୍ଡଳୀର ଟାଙ୍ଗୋଳ ଏବଂ ସରପାରୀ ଅଞ୍ଚଳକୁ ଦୁଇଟି ବିରାଟ ସେତୁ ନିର୍ମିତ ହୋଇଥିଲା । ବୋଲଗଡ ଇଲେକ୍ଟ୍ରି ଷ୍ଟ୍ରକଚର, ପାନୀୟ ଜଳ ଯୋଗାଣ ପ୍ରକଳ୍ପ ଏବଂ ଡାକ ବଙ୍ଗଳାର ସମ୍ପ୍ରସାରଣ କରାଯାଇଥିଲା । ୨୦୦୦ ନିର୍ବାଚନରେ ଏଠାରୁ BJP BJD ମେଣ୍ଟ ପ୍ରାର୍ଥୀ ଭାବରେ ଚଳଚ୍ଚିତ୍ର ଅଭିନେତା ପ୍ରଶାନ୍ତ ନନ୍ଦ ନିର୍ବାଚିତ ହୋଇ ରାଜ୍ୟ ମନ୍ତ୍ରୀମଣ୍ଡଳରେ ଗ୍ରାମ୍ୟ ଉନ୍ନୟନ ଏବଂ ଉଚ୍ଚ ଶିକ୍ଷା ମନ୍ତ୍ରୀ ଭାବରେ ଅଧିଷ୍ଠିତ ହେବାର ଦେଢ ବର୍ଷ ପରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ତାଙ୍କ ସହ ମତାନ୍ତର ଯୋଗୁଁ ସେ ମନ୍ତ୍ରୀମଣ୍ଡଳରୁ ବିଦାୟ ନେଇଥିଲେ । ତାଙ୍କ କାର୍ଯ୍ୟକାଳ ମଧ୍ୟରେ ବୋଲଗଡ, ଦେଉଳି ଓ ବାଙ୍କୋଇ ମହାବିଦ୍ୟାଳୟକୁ ବହୁ ପ୍ରକାରେ ସାହାଯ୍ୟ

କରିଥିଲେ । ତାଙ୍କର ସବୁଠାରୁ ବଡ କାମ ଥିଲା ରାଜସୁନାଖଳା ଧଳାପଥର ରାସ୍ତାର ସମ୍ପୂର୍ଣ୍ଣ ନବୀକରଣ । ସେ ସମୟରେ ବୋଲଗଡ ବେଗୁନିଆରେ ୨୦୦ ପୋଖରୀ ଏକାଦଶ ଅର୍ଥ କମିଶନ ଅନୁଦାନରେ ଖୋଳା ଯିବା ସଂଗେ ସଂଗେ କେତେକ ମୁଖ୍ୟ ରାସ୍ତାକୁ ପ୍ରଧାନ ମନ୍ତ୍ରୀ ଗ୍ରାମ ସଡକ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଥିଲା । ସାଗର ଗାଁ ଗ୍ରାମପଞ୍ଚାୟତ ଅଧୀନ ବାଳସିଂହ ଏବଂ ସଲଗ୍ନ ଗ୍ରାମର ଲୋକମାନେ ଦୂଷିତ ଜଳ ଜନିତ ଏକ ଦୁଃସାଧ ବ୍ୟାଧିରେ ଆକ୍ରାନ୍ତ ହୋଇ ଅକର୍ମଣ୍ୟ ହୋଇଯାଉଥିବାରୁ ସେମାନଙ୍କ ସ୍ଥାୟୀ ଥଇଥାନ ନିମନ୍ତେ ବିଧାୟକ ପ୍ରଶାନ୍ତ ନନ୍ଦ ତତକାଳୀନ ରାଜସ୍ୱ ମନ୍ତ୍ରୀ ଶ୍ରୀ ବିଶ୍ୱ ଭୂଷଣ ହରିଚନ୍ଦନଙ୍କ ସହାୟତାରେ ପଦକ୍ଷେପ ନେଇ ସଫଳ ହୋଇଥିଲେ ।  ୨୦୦୪ ନିର୍ବାଚନରେ ପୁନର୍ବାର ଜାନକୀ ବାବୁ କଂଗ୍ରେସ ପ୍ରାର୍ଥୀ ଭାବରେ ନିର୍ବାଚିତ ହୋଇ ରାଜ୍ୟ ବିଧାନ ସଭାରେ ବିରୋଧୀ ଦଳ ନେତା ଭାବରେ ଅଧିଷ୍ଠିତ ହୋଇଛନ୍ତି । ତାଙ୍କର ସାଥିରେ ପ୍ରତିଦ୍ୱନ୍ଦିତା କରୁଥିବା ଖୋରଧା ଜିଲ୍ଲା ପରିଷଦ ଅଧକ୍ଷ ପ୍ରଶାନ୍ତ ଜଗଦେବ ଅଳ୍ପ ଭୋଟରେ ପରାସ୍ତ ହୋଇଥିଲେ ।



## ନିର୍ବାଚନ ଇତିହାସ

ଓଡିଶା ସ୍ୱତନ୍ତ୍ର ପ୍ରଦେଶ ୧୯୩୪ ମସିହା ଏପ୍ରିଲ ପହିଲା ଦିନ ହେଲା ତାହାପରେ ୧୯୩୮ ମସିହାରେ ପ୍ରଥମ ନିର୍ବାଚନ ହେଲା । ଓଡିଶାର ଅଧିକାଂଶ ଅଞ୍ଚଳ ଗଡ ଜାତ ଥିଲା । ୬୦ ଟି ବିଧାନସଭା ନିର୍ବାଚନ ମଣ୍ଡଳୀ ଥିଲା । ପାର୍ଲିଆମେଣ୍ଟକୁ କେନ୍ଦ୍ର ଆସେମ୍ବ୍ଲୀ (Central Assembly) କୁହାଯାଉଥିଲା । ପଣ୍ଡିତ ନୀଳକଣ୍ଠ ଦାଶ ଏଠାରୁ ସେଣ୍ଟ୍ରାଲ ଆସେମ୍ବ୍ଲୀର ସଭ୍ୟ ଭାବରେ ନିର୍ବାଚିତ ହୋଇଯାଇଥିଲେ । ପଣ୍ଡିତ ମୋତିଲାଲ ନେହେରୁ କେନ୍ଦ୍ର ଆସେମ୍ବ୍ଲୀରେ କଂଗ୍ରେସ ଦଳର ନେତା ଥିଲେ । ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କର ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ଥିଲେ । "ନବଜୀବନ" ସଂପାଦକ ଚିନ୍ତାମଣି ମିଶ୍ର ସେ ସମୟରେ ପଣ୍ଡିତ ନୀଳକଣ୍ଠ ଦାଶଙ୍କର ବ୍ୟକ୍ତିଗତ ସହାୟକ (Private Secretary) ଭାବରେ କାର୍ଯ୍ୟକରୁଥିଲେ । "ନବଜୀବନ"ରେ ସେତେବେଳେ ୰ ଚିନ୍ତାମଣି ମିଶ୍ର ତାଙ୍କ ଜୀବନୀ "ଜୀବନ ଭଉଁରୀ" ଧାରାବାହିକ ଭାବରେ ପ୍ରକାଶ କରୁଥିଲେ । ତତକାଳୀନ କେନ୍ଦ୍ର ଆସେମ୍ବ୍ଲୀ ଘଟଣା ବଳୀର ନିଚ୍ଛକ ଚିତ୍ର ଏବଂ ପଣ୍ଡିତ ନୀଳକଣ୍ଠଙ୍କ ବାଗ୍ମୀତା ସହ ତାଙ୍କର ଜାତୀୟତା ନେତୃବୃନ୍ଦଙ୍କ ସହ

ସମ୍ପର୍କ ବିଶଦ ଭାବରେ ବର୍ଣ୍ଣିତ ହୋଇଥିଲା । ଲେଖକ ତାହା ପଢ଼ିବାର ସୁଯୋଗ ପାଇଥିଲେ ।

ସେହିପରି ବାଣପୁର ସହ ପଶ୍ଚିମ ଖୋରଧା ଏକ ନିର୍ବାଚନ ମଣ୍ଡଳୀ ଥିଲାବେଳେ ଏହାର ପ୍ରଥମ ବିଧାୟକ ପଣ୍ଡିତ ଗୋଦାବରୀଶ ମିଶ୍ର ଥିଲେ । ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ପ୍ରଥମ କଂଗ୍ରେସ ମନ୍ତ୍ରୀମଣ୍ଡଳରେ ଓଡ଼ିଶାରେ ଗଠନ ହୋଇଥିଲା । ୨ୟ ବିଶ୍ୱଯୁଦ୍ଧ ଯୋଗୁଁ ଅଳ୍ପ ସମୟ ମଧ୍ୟରେ ଅଖିଳ ଭାରତ କଂଗ୍ରେସ କମିଟି ନିଷ୍ପତ୍ତି କ୍ରମେ ଦେଶର ସମସ୍ତ ରାଜ୍ୟରେ ଗଠିତ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥିଲେ । ତାହାପରେ ପାରଳା ମହାରାଜାଙ୍କ ନେତୃତ୍ୱରେ ଗଠିତ ମନ୍ତ୍ରୀମଣ୍ଡଳରେ କଂଗ୍ରେସ ଦଳ ତ୍ୟାଗ କରି ପଣ୍ଡିତ ଗୋଦାବରୀଶ ମିଶ୍ର ପାରଳା ମହାରାଜାଙ୍କ ମନ୍ତ୍ରୀ ମଣ୍ଡଳରେ ଯୋଗ ଦେଇଥିବାରୁ ସାଧାରଣ ସଭାସମିତିରେ କଂଗ୍ରେସ କର୍ମୀମାନେ ତାଙ୍କୁ ଅପଦସ୍ଥ କରିବାକୁ ପଛାଉ ନଥିବାର ଶୁଣାଯାଏ । ଶିକ୍ଷାମନ୍ତ୍ରୀ ଭାବରେ ସେତେବେଳେ ବାମନ ହାଇସ୍କୁଲକୁ ଥରେ ପଣ୍ଡିତ ଗୋଦାବରୀଶ ମିଶ୍ର ଆସିଥିଲା ବେଳେ ମାଣିକାଗୋଡାର ପର୍ଶୁରାମ ପଦାତିକ ରାୟ ଏବଂ ଅଧିକାରୀ ମହାନ୍ତିଙ୍କ ନେତୃତ୍ୱରେ ବହୁ ଲୋକ ଆସି ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କୁ ବିରୋଧ କରିଥିବାର ଜଣାଯାଏ । ମାତ୍ର ବୋଲଗଡ ବାମନ ହାଇସ୍କୁଲ ପ୍ରତିଷ୍ଠା ଦିଗରେ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ଅବଦାନ ଅତୁଳନୀୟ ।

ବୋଲଗଡ କଂଗ୍ରେସ ବସ୍ତୁତଃ ୨ ଭାଗ ହୋଇଯାଇଥିଲା । ୰ ସୁଦର୍ଶନ ମହାପାତ୍ରଙ୍କ ନେତୃତ୍ୱରେ ଦଳେ କଂଗ୍ରେସ କର୍ମୀ ପଣ୍ଡିତ ଗୋଦାବରୀଶଙ୍କୁ ସମର୍ଥକ କଲାବେଳେ, ପତିତପାବନ ହୋତାଙ୍କ ନେତୃତ୍ୱରେ ଆଉ ଦଳେ କଂଗ୍ରେସର ମୂଳ ଅନୁଷ୍ଠାନରେ ଥିଲେ । ଏହାପରେ ୧୯୪୮ରେ ଡଃ. ହରେକୃଷ୍ଣ ମହତାବ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ । ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । ୧୯୪୮ରେ ବିଧାନସଭା ସଭ୍ୟଙ୍କୁ ମନୋନୀତ କରାଯାଇଥିଲା । ସାକ୍ଷୀଗୋପାଳ ଅଞ୍ଚଳର ବିଶିଷ୍ଟ ଗାନ୍ଧୀବାଦୀ ଖଦୀକର୍ମୀ ଏବଂ ସ୍ୱାଧୀନତା ସଂଗ୍ରାମୀ ସତ୍ୟବାଦୀ ନନ୍ଦ ବୋଲଗଡ-ବେଗୁନିଆର ବିଧାୟକ ଭାବରେ କାର୍ଯ୍ୟ କରିଥିଲେ । "ସ୍ୱାଧୀନତା ପରେ" ଅଧ୍ୟାୟରେ ବିଭିନ୍ନ ସାଧାରଣ ନିର୍ବାଚନରେ ପ୍ରାର୍ଥୀ ମନୋନୟନ ଏବଂ ସେତେବେଳର ରାଜନୈତିକ ଅବସ୍ଥାର ଚିତ୍ର ଦିଆଯାଇଛି । ବର୍ତ୍ତମାନ ଏଠାରେ ୧୯୫୨, ୧୯୫୭, ୧୯୬୨, ୧୯୬୭, ୧୯୭୧, ୧୯୭୪, ୧୯୭୭, ୧୯୮୦, ୧୯୮୪, ୧୯୯୦, ୧୯୯୫, ୨୦୦୦ ଏବଂ ୨୦୦୪ରେ ଅନୁଷ୍ଠିତ ବିଧାନସଭାର ସଂକ୍ଷିପ୍ତ ବିବରଣୀ ଏଠାରେ ଦିଆଗଲା ।

ବେଗୁନିଆ (୬୦)-

ବେଗୁନିଆ ନିର୍ବାଚନ ମଣ୍ଡଳୀ ୧୯୫୧-୧୯୫୨ରେ ବେଗୁନିଆ (୬୦) ଥିଲା । ସେତେବେଳେ ବେଗୁନିଆ ବ୍ଲକର ପଙ୍ଗାରସିଂହ, ବଡବେରଣା, ବାଘମାରୀ ଓ ସାରୁଅ ଆଦି ଖୋର୍ଦ୍ଧା ଥାନା ଅନ୍ତର୍ଭୁକ୍ତ ଗ୍ରାମ ପଞ୍ଚାୟତ ଗୁଡିକ ଖୋର୍ଦ୍ଧା ନିର୍ବାଚନ ମଣ୍ଡଳୀରେ ଥିଲା । ୧୯୫୭ରେ ନିର୍ବାଚନ ମଣ୍ଡଳୀ ପୁର୍ନଗଠିତ ହୋଇ ଏହାର ନାମ ବେଗୁନିଆ ରହିଲା । ଏଥିରେ ବୋଲଗଡ ବ୍ଲକ, ବେଗୁନିଆ ବ୍ଲକ ଓ ଟାଙ୍ଗି ବ୍ଲକର କମାଗୁରୁ, ସରପାରି ଓ ଅଚ୍ୟୁତପୁର ପାଟଣା ଗ୍ରା.ପ. ଅନ୍ତର୍ଭୁକ୍ତ ହେଲା । ଅଦ୍ୟାବଧି ବେଗୁନିଆଁ ନିର୍ବାଚନ ମଣ୍ଡଳୀରେ ହୋଇଥିବା ସମସ୍ତ ବିଧାନସଭା ନିର୍ବାଚନରେ ପ୍ରତିଦ୍ବନ୍ଦିତା କରିଥିବା ପ୍ରାର୍ଥୀଙ୍କର ତାଲିକା ନିମ୍ନରେ ପ୍ରଦାନ କରାଗଲା ଏବଂ ସେମାନେ ପାଇଥିବା ଭୋଟର ପରିମାଣ ମଧ ଏଠାରେ ଦିଆଗଲା ।

| ସାଧାରଣ ନିର୍ବାଚନ | ପ୍ରାର୍ଥୀଙ୍କ ନାମ | ପାଇଥିବା ଭୋଟ | ଫଳାଫଳ |
|---|---|---|---|
| ୧୯୫୧-୫୨ | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୭,୫୨୧ | ବିଜେତା |
| (ତା୨୦-୧୨ ରୁ | କୃଷ୍ଣଚନ୍ଦ୍ର ମିଶ୍ର (କଂଗ୍ରେସ) | ୬,୮୦୧ | |
| ତା୧୫-୦୧) | ଦୁଃଖିଶ୍ୟାମ ଦାସ (ସ୍ୱାଧୀନ) | ୧,୭୭୮ | |
| ୧୯୫୭ | ସତ୍ୟାନନ୍ଦ ଚମ୍ପତିରାୟ (କଂଗ୍ରେସ) | ୧୩,୫୨୮ | ବିଜେତା |
| (ତା୨୪-୦୨ ରୁ | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୩,୧୯୬ | |
| ତା୧୨-୦୩) | ତାରେଶ୍ୱର ହୋତା (ସ୍ୱାଧୀନ) | ୧,୭୮୫ | |
| ୧୯୬୧ | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୬,୧୧୭ | ବିଜେତା |
| (ତା୦୨-୦୬ ରୁ | ସତ୍ୟାନନ୍ଦ ଚମ୍ପତିରାୟ (କଂଗ୍ରେସ) | ୧୫,୬୧୬ | |
| ତା୦୮-୦୬) | | | |
| ୧୯୬୭ | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୯,୯୧୮ | ବିଜେତା |
| (ତା୨୧-୦୧-୬୭) | ସତ୍ୟାନନ୍ଦ ଚମ୍ପତିରାୟ (କଂଗ୍ରେସ) | ୧୮,୭୩୯ | |
| ତା୦୮-୦୬) | ଦୁଃଖିଶ୍ୟାମ ଦାସ (ସ୍ୱତନ୍ତ୍ର) | ୨,୫୩୬ | |
| | ମନୀନ୍ଦ୍ର କାନୁନଗୋ (ସ୍ୱାଧୀନ) | ୨,୩୮୧ | |

| | | | |
|---|---|---|---|
| ୧୯୭୧ | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୫,୧୮୭ | ବିଜେତା |
| (ତା୦୩-୦୫-୭୧) | ସତ୍ୟାନନ୍ଦ ଚମ୍ପତିରାୟ (ଉ. କଂଗ୍ରେସ) | ୧୧,୩୯୮ | |
| ତା୦୮-୦୬) | ଗୌରଶ୍ୟାମ ପଟ୍ଟନାୟକ (କଂଗ୍ରେସ) | ୫,୦୭୮ | |
| | ଭାସ୍କର ଚନ୍ଦ୍ର ମହାପାତ୍ର (ସ୍ୱାଧୀନ) | ୮,୪୯୨ | |
| | ରାଜ ରାଜ ଦେବ (ସ୍ୱତନ୍ତ୍ର) | ୩,୧୧୯ | |

| | | | |
|---|---|---|---|
| ୧୯୭୪ | ସତ୍ୟାନନ୍ଦ ଚମ୍ପତିରାୟ (ଉ.କଂଗ୍ରେସ) | ୩୩,୫୪୪ | ବିଜେତା |
| (ଫେବୃୟାରୀ ୨୨, ୨୪, | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୨୩,୭୭୨ | |
| ୨୬-୧୯୭୪) | ବାଞ୍ଛାନିଧି ନାହାକ (ସ୍ୱାଧୀନ) | ୧,୬୮୧ | |
| | ମଧୁସୂଦନ ରଥ (ସ୍ୱାଧୀନ) | ୯୧୬ | |
| | ଦୟାନିଧି ପଣ୍ଡା (ଜନ କଂଗ୍ରେସ) | ୮୧୨ | |
| | ଆନନ୍ଦ ଚନ୍ଦ୍ର ଦାସ (ସ୍ୱାଧୀନ) | ୬୧୪ | |

| | | | |
|---|---|---|---|
| ୧୯୭୭ | ଚିନ୍ତାମଣି ପାଣିଗ୍ରାହୀ (କଂଗ୍ରେସ) | ୧୮,୦୫୨ | ବିଜେତା |
| (ତା୧୬-୦୩-୭୭) | ହରିହର ସାହୁ (ଜନତା) | ୧୫,୮୨୦ | |
| | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୪,୮୯୦ | |
| | ବ୍ରଜକିଶୋର ସାହୁ (ସ୍ୱାଧୀନ) | ୧,୫୬୫ | |
| | ଅଗାଧୁ ନାୟକ (ସ୍ୱାଧୀନ) | ୧,୦୩୬ | |
| | ସିଦ୍ଧେଶ୍ୱର ବଳିୟାର ସିଂହ(ସ୍ୱାଧୀନ) | ୯୭୧ | |

| | | | |
|---|---|---|---|
| ୧୯୮୦ | କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ) | ୨୮,୨୩୧ | ବିଜେତା |
| (ତା୦୩-୦୧-୮୦) | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୧୬,୧୭୭ | |
| | ହରିହର ସାହୁ (ସ୍ୱାଧୀନ) | ୬,୬୧୫ | |
| | ସୀତାକାନ୍ତ ବିଧାର ମହାପାତ୍ର (ଜନତା ଜୟପ୍ରକାଶ) | ୩,୫୮୮ | |
| | ବାଉରୀବନ୍ଧୁ ଖଟେଇ (ସ୍ୱାଧୀନ) | ୩,୦୩୫ | |
| | ମିର୍ଜା ଅମଜାଦ ଅଲ୍ଲୀ (କଂଗ୍ରେସ ଅର୍ଶ) | ୨,୩୧୫ | |

| | | | |
|---|---|---|---|
| ୧୯୮୫ | କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ) | ୩୦,୫୬୫ | ବିଜେତା |
| (ତା୦୩-୫-୮୫) | ହରିହର ସାହୁ (ଜନତା ଦଳ) | ୧୧,୬୯୪ | |

| | | | |
|---|---|---|---|
| | ଗଙ୍ଗାଧର ପାଇକରାୟ (କମ୍ୟୁନିଷ୍ଟ) | ୯,୦୧୧ | |
| | ବସନ୍ତ ଜୟସିଂହ (ସ୍ୱାଧୀନ) | ୨,୭୬୪ | |
| | ଗୌରାଙ୍ଗ ଚନ୍ଦ୍ର ମହାପାତ୍ର (ବି.ଜେ.ପି) | ୧,୫୪୯ | |
| | ବାଉରୀ ବନ୍ଧୁ ଖଟେଇ (ସ୍ୱାଧୀନ) | ୮୭୨ | |
| | ବାଙ୍କନିଧି ସୁବୁଦ୍ଧି (ସ୍ୱାଧୀନ) | ୩୯୨ | |
| | ଅମ୍ବିକା ପ୍ରସାଦ ମହାନ୍ତି (ସ୍ୱାଧୀନ) | ୧୯୩ | |
| ୧୯୯୦ | ସୁରେନ୍ଦ୍ର ନାଥ ମିଶ୍ର (ଜନତା ଦଳ) | ୫୧,୬୦୭ | ବିଜେତା |
| (ତା୨୪-୦୨-୯୦) | କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ) | ୩୧,୮୮୯ | |
| | ନବକିଶୋର ମାନ୍ଧାତା (ଜନତା ପାର୍ଟି ଜୟପ୍ରକାଶ) | ୨,୨୧୬ | |
| | ଭବାନୀ ଶଙ୍କର ଜଗଦେବ ମହାପାତ୍ର(ସ୍ୱାଧୀନ) | ୧,୧୪୯ | |
| | ବ୍ରଜବନ୍ଧୁ ହୋତା (ସ୍ୱାଧୀନ) | ୩୬୭ | |
| | ବାଉରି ବନ୍ଧୁ ଖଟେଇ | ୩୨୮ | |
| | ହାଲୁରୀ ପ୍ରଧାନ | ୧୪୨ | |
| | ଅନ୍ତର୍ଯ୍ୟାମୀ ସୁବୁଦ୍ଧି | ୭୩ | |
| ୧୯୯୫ | ହରିହର ସାହୁ (କଂଗ୍ରେସ) | ୫୩,୨୩୮ | ବିଜେତା |
| | ସୁରେନ୍ଦ୍ରନାଥ ମିଶ୍ର (ସ୍ୱାଧୀନ) | ୩୬,୨୨୯ | |
| | ଭବାନୀ ଶଙ୍କର ଜଗଦେବ ମହାପାତ୍ର(ଜନତା ଦଳ) | ୯,୪୪୨ | |
| | ବସନ୍ତ କୁମାର ପାଇକରାୟ (କମ୍ୟୁନିଷ୍ଟ) | ୮୫୮୫ | |
| | ରବୀନ୍ଦ୍ର କୁମାର ପରିଡା (ଭା.ଜ.ପା) | ୪୮୬୯ | |
| | ସତ୍ୟାନନ୍ଦ ଚମ୍ପତିରାୟ (ସ୍ୱାଧୀନ) | ୧୪୧୬ | |
| | ବାଉରୀ ବନ୍ଧୁ ଖଟେଇ | ୫୬୭ | |
| | ସୁଶୀଳ ବ୍ରହ୍ମା (ସମତା ପାର୍ଟି) | ୩୯୩ | |
| | ଶେଖ୍ କୁଲଫିକର ଅଲ୍ଲୀ | ୨୯୯ | |
| | କିଶୋର ପାତ୍ର | ୨୩୫ | |
| | ସଚ୍ଚୀନ୍ଦ୍ର କୁମାର ଷଡଙ୍ଗୀ | ୨୩୧ | |
| | ନବକିଶୋର ମାନ୍ଧାତା | ୨୦୬ | |
| | ସ୍ୱାମୀ ରବିନାରାୟଣ ଦାସ | ୧୪୮ | |

| | | |
|---|---|---|
| ସିଦ୍ଧେଶ୍ୱର ବଳିଆରସିଂହ | ୮୮ | |
| ହୃଷୀକେଶ ନାୟକ | ୫୮ | |

ବେଗୁନିଆ ବିଧାନସଭା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ଦଳର ପ୍ରାର୍ଥୀଭାବେ ନିର୍ବାଚିତ ହୋଇଥିବା ହରିହର ସାହୁ ଇସ୍ତଫା ଦେବାରୁ ତା ୨୭-୫-୯୫ ରିଖରେ ଉପନିର୍ବାଚନ ହୋଇଥିଲା ।

| | | | |
|---|---|---|---|
| ୧୯୯୫ | ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ) | ୭୦,୨୨୩ | ବିଜେତା |
| (ଉପନିର୍ବାଚନ) | ପ୍ରସନ୍ନ କୁମାର ପାଟଶାଣୀ (ଜନତା ଦଳ) | ୪୭,୨୩୬ | |
| | କେ. ଶ୍ୟାମବାବୁ ସୁବୁଦ୍ଧି | ୯୯୯ | |
| | ଶେଖ୍ ଜୁଲଫିକର ଅଲ୍ଲୀ | ୩୩୮ | |
| | କିଶୋର ପାତ୍ର | ୨୭୯ | |
| | ବଂଶୀଧର ପଣ୍ଡା | ୧୬୬ | |
| | ସୁରେନ୍ଦ୍ର ପଟ୍ଟନାୟକ | ୧୬୪ | |
| | ଭାଗୀରଥି ବେହେରା | ୧୨୨ | |
| | ଅକ୍ଷୟ ବାରିକ | ୧୧୭ | |
| | ନବକିଶୋର ବଳିଆର ସିଂହ | ୧୦୦ | |
| ୨୦୦୦ | ପ୍ରଶାନ୍ତ ନନ୍ଦ (ବି.ଜେ.ପି) | ୪୫,୮୭୭ | ବିଜେତା |
| | କୈଳାସ ଚନ୍ଦ୍ର ମହାପାତ୍ର (କଂଗ୍ରେସ) | ୪୩,୭୨୩ | |
| | ଅକ୍ଷୟ କୁମାର ପଟ୍ଟନାୟକ (ସ୍ୱାଧୀନ) | ୮,୫୬୨ | |
| | ପ୍ରମୋଦିନୀ ପାଇକରାୟ (ସି.ପି.ଆଇ) | ୫,୯୯୬ | |
| | ପି.କେ. ପଟ୍ଟନାୟକ (ତୃଣମୂଳ କଂଗ୍ରେସ) | ୧,୬୬୭ | |
| | ଅପର୍ତ୍ତି ନାୟକ (ବି.ଏସ.ପି) | ୧,୬୨୦ | |
| ୨୦୦୪ | ଜାନକୀ ବଲ୍ଲଭ ପଟ୍ଟନାୟକ (କଂଗ୍ରେସ) | ୫୯,୬୫୮ | ବିଜେତା |
| ତା ୨୬-୪-୦୪ | ପ୍ରଶାନ୍ତ କୁମାର ଜଗଦେବ (ବିଜେଡି) | ୫୭,୬୫୭ | |
| | ବସନ୍ତ ପାଇକରାୟ (କମ୍ୟୁନିଷ୍ଟ) | ୪୫୯୪ | |
| | ସଞ୍ଜିବ ପାଇକରାୟ (ସ୍ୱାଧୀନ) | ୧୪୪୪ | |
| | ଟିଲୁ ନାୟକ (ଆର.ପି.ଆଇ) | ୧୨୦୮ | |
| | ଇିଙ୍ଗରାଜ ମଲ୍ଲିକ (ସ୍ୱାଧୀନ) | ୮୦୭ | |

ବିଜେତା - ବେଗୁନିଆ ନିର୍ବାଚନ ମଣ୍ଡଳୀର ନିର୍ବାଚିତ ହୋଇଥିବା ପ୍ରତିନିଧି ଗଙ୍ଗାଧର ପାଇକରାୟ ବିଧାନ ସଭାରେ କମ୍ୟୁନିଷ୍ଟ ଦଳର ଦଳପତି, ଚିନ୍ତାମଣି ପାଣିଗ୍ରାହୀ ବିରୋଧୀ ଦଳ ନେତା, ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଓ ପ୍ରଶାନ୍ତ ନନ୍ଦ ରାଷ୍ଟ୍ରମନ୍ତ୍ରୀ (ସ୍ୱତନ୍ତ୍ର ଦାୟିତ୍ୱ) ପଦରେ କାର୍ଯ୍ୟ କରିଥିଲେ । ୨୦୦୪ ନିର୍ବାଚନରେ ଜୟଯୁକ୍ତ ହୋଇ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ବିଧାନ ସଭାରେ ବିରୋଧୀ ଦଳ ନେତା ପଦ ଅଳଙ୍କୃତ କରିଛନ୍ତି ।

(ସୌଜନ୍ୟ - ସତ୍ୟବାଦୀ ବଳିଆର ସିଂହ,
ଖୋର୍ଦ୍ଧା ନିର୍ବାଚନ ଇତିହାସର ରଚୟିତା )

******

ଏହାଛଡା ଏଠାରୁ ପାର୍ଲ୍ୟାମେଣ୍ଟକୁ ଯାଇଥିବା ସଭ୍ୟମାନେ ହେଲେ -

୧. ନୃସିଂହ ଚରଣ ସାମନ୍ତ ସିଂହାର
୨. ପୂର୍ଣ୍ଣଚନ୍ଦ୍ର ଦେଓ ଭଞ୍ଜ
୩. ଚିନ୍ତାମଣି ପାଣିଗ୍ରାହୀ
୪. ଶିବାଜୀ ପଟ୍ଟନାୟକ
୫. ସୌମ୍ୟ ରଞ୍ଜନ ପଟ୍ଟନାୟକ
୬. ଡଃ. ପ୍ରସନ୍ନ କୁମାର ପାଟଶାଣୀ

ଏହି ସମସ୍ତ ଲୋକସଭା ସଭ୍ୟଙ୍କ ମଧ୍ୟରେ ଚିନ୍ତାମଣୀ ପାଣିଗ୍ରାହୀଙ୍କର ଲୋକସମ୍ପର୍କ ଅଧିକ ଥିଲା । ସେ ଡାକଘର ଖୋଲିବା, ଟେଲିଫୋନ ଏକ୍ସଚେଞ୍ଜ ପ୍ରତିଷ୍ଠା କରିବାରେ ମୁଖ୍ୟ ଭୂମିକା ନେଇଥିଲେ । ଶ୍ରୀ ଶିବାଜୀ ପଟ୍ଟନାୟକ ଏଠାରୁ ଲୋକସଭା ସଭ୍ୟ ଥିଲା ବେଳେ ତାଙ୍କ ଏମ.ପି. ଲ୍ୟାଡରୁ ବହୁ ଜନହିତକର କାର୍ଯ୍ୟ ହେବା ସଂଗେ ପରସେଣ୍ଟ ଦେବାର ପ୍ରଥା ଆଦୌ ଉଠୁନଥିଲା । ଶ୍ରୀ ସୌମ୍ୟରଞ୍ଜନ ପଟ୍ଟନାୟକଙ୍କର ଲୋକସଭା ସଭ୍ୟର ସ୍ୱଳ୍ପ ଅବଧି କାଳର ଏମ.ପି. ଲ୍ୟାଡ ବହୁ ଅନୁଷ୍ଠାନକୁ ସହାୟତା ମିଳିଥିଲା । ସୌମ୍ୟ ବାବୁଙ୍କର 'ଆମ ଓଡିଶା' ଏବଂ 'ସମ୍ବାଦ' ଖବର କାଗଜର କ୍ରମାଗତ ଜନସମ୍ପର୍କ ସ୍ଥାନୀୟ ଜନଜୀବନକୁ ବିଶେଷ ପ୍ରଭାବିତ କରିଥିଲା । ବିଶେଷ କରି ତାଙ୍କ ଦ୍ୱାରା ପ୍ରବର୍ତ୍ତନ ହୋଇଥିବା ଖୋଲାମଞ୍ଚ କାର୍ଯ୍ୟକ୍ରମ ଶାସନ କଳକୁ ଲୋକହିତକର କାର୍ଯ୍ୟରେ ଅଧିକ କ୍ରିୟାଶୀଳ କରିଥିଲା । ସବୁଠାରୁ ଭାଗ୍ୟବାନ ଏମ. ପି. ହେଉଛନ୍ତି ଡଃ. ପ୍ରସନ୍ନ କୁମାର ପାଟଶାଣୀ । ସେ ଯେଉଁଭଳି ଭାବରେ ୨୦୦୪ ସାଧାରଣ ନିର୍ବାଚନରେ ବିଜୟ ଲାଭ କଲେ ତାହା ସମସ୍ତଙ୍କୁ ଆଶ୍ଚର୍ଯ୍ୟ

କରିଦେଇଅଛି । ୨୦୦୪ ସାଧାରଣ ନିର୍ବାଚନରେ ପରାଜୟ ବରଣ ପରେ ଖୋର୍ଦ୍ଧା ଜିଲ୍ଲା ପରିଷଦର ଅଧକ୍ଷ ପ୍ରଶାନ୍ତ ଜଗଦେବ ଏହି ନିର୍ବାଚନ ମଣ୍ଡଳୀରେ ତାଙ୍କର ଦଳୀୟ ସଙ୍ଗଠନ ବୃଦ୍ଧି ପାଇଁ ବିଶେଷ ତତ୍ପରତା ପ୍ରକାଶ କରିବା ସହ ବୋଲଗଡ-ବେଗୁନିଆଁର କେନ୍ଦ୍ରସ୍ଥଳ ଟିକାତାଳ ଗ୍ରାମ ଖୋର୍ଦ୍ଧା-ନୟାଗଡ ମୁଖ୍ୟ ରାସ୍ତା ପାର୍ଶ୍ଵରେ ବିଜୁବାବୁଙ୍କ ନାମରେ ଏକ ବିରାଟ ଭବନ ନିର୍ମାଣ କରି ତାକୁ ଦଳୀୟ କାର୍ଯ୍ୟଳୟ କରିବାକୁ ପ୍ରୟାସ ଜାରିରଖିଛନ୍ତି ।



## ପାଞ୍ଚଗଡର ମଠ

ଉତ୍କଳୀୟ ବୈଷ୍ଣବ ପରମ୍ପରା ଶ୍ରୀଚୈତନ୍ୟଙ୍କ ଆଗମନ ପୂର୍ବରୁ ଓଡିଶାରେ ପ୍ରଚଳିତ ଥିଲା । ପଞ୍ଚସଖା ଏହାର ପୃଷ୍ଠପୋଷକ ଥିଲେ । ଏହି ପରମ୍ପରାରେ ଓଡିଶାର ଅନ୍ୟାନ୍ୟ ସ୍ଥାନପରି ପାଞ୍ଚଗଡ ଅଞ୍ଚଳରେ ବୋଲଗଡ, ଗର୍ଭଣୀପଡା, ସାନପଦର, କନ୍ତାଇଲୋ, ମାଳିସାହି, ମାଣିକାଗୋଡା, ଙ୍ଫୁର, ବାରଦାଣ୍ଡି, ଚୂଡା, ଫିରଫିରା, ଟାଙ୍ଗିସାହି, ଭୀମପଡା ପ୍ରଭୃତି ଗ୍ରାମରେ ପୁରାତନ ମଠ ମାନ ରହିଅଛି । ସେତେବେଳେ ସ୍ଥାନୀୟ ଜନଜୀବନ ଏହି ମଠ ମାନଙ୍କ ଦ୍ଵାରା ନିୟନ୍ତ୍ରିତ ହେଉଥିଲା ।

ଗର୍ଭଣୀପଡା ମଠ-

ଗର୍ଭଣୀପଡା ମଠର ଇତିହାସ ଅତିପୁରାତନ । 'ଓଡିଆ ଭାଗବତ'ର ରଚୟିତା ଅତିବଡି ଜଗନ୍ନାଥ ଦାସଙ୍କର ୩ୟ ଶିଷ୍ୟ ମାଧବାନନ୍ଦ ଗର୍ଭଣୀପଡା ମଠର ସ୍ଥାପୟିତା ଥିଲେ । ଏହାର ଇତିହାସ ବିଷୟରେ ଏକସୁନ୍ଦର ତଥ୍ୟ ବର୍ତ୍ତମାନ ପୁରୀ ବଡ ଓଡିଆ ମଠର ମଠାଧୀଶ ଅଧିକାରୀ ବଂଶୀଧର ଦାଶ ଗୋସ୍ଵାମୀଙ୍କ ଠାରୁ ଶୁଣିବାକୁ ମିଳିଛି । ଅତିବଡି ଜଗନ୍ନାଥଙ୍କ ପରମ୍ପରା କ୍ରମେ ଯେଉଁ ମାନେ ଏହି ମଠର ମହନ୍ତ ହେବେ ସେମାନେ ଏହି ପଦରେ ଆସୀନ ହେବା ପୂର୍ବରୁ ଘନ ଜଙ୍ଗଲରେ କଠୋର ଯୋଗ ସାଧନାରେ ରହିବାର ପ୍ରଥା ଅଛି । ୪୦୦ ବର୍ଷ ପୂର୍ବେ ଅତିବଡି ଜଗନ୍ନାଥ ଦାଶଙ୍କ ୩ୟ ଶିଷ୍ୟ ଅଧିକାରୀ ମାଧବବାନନ୍ଦ ଦାଶ ଗୋସ୍ଵାମୀ ଏଥି ପାଇଁ ପାଞ୍ଚଗଡ ଅଞ୍ଚଳ ବର୍ତ୍ତମାନର ବାଙ୍କୋଇଗଡ ଅଧିନସ୍ଥ ଗର୍ଭଣୀପଡା ଗ୍ରାମରେ ଥିବା ମଠ ସ୍ଥାନରେ ପୂର୍ବରେ ଘନଜଙ୍ଗଲ ମଧ୍ୟରେ ଥିବା ଏକ ବର ଗଛ ମୂଳେ ଧ୍ୟାନ ରତ

ଥିଲା ଅବସ୍ଥାରେ ଏକ ଗର୍ଭଧାରୀ ମୃଗୁଣୀ ଦୌଡି ଦୌଡି ଆସି କାକୁସ୍ଥ ହୋଇ ଛିଡା ହୋଇଗଲା । ତାକୁ ଶିକାର କରିବା ଉଦ୍ଦେଶ୍ୟରେ ତତ୍କାଳୀନ ପାଞ୍ଚଗଡ ରାଜା ଅନୁସରଣ କରୁଥିଲେ । ଧ୍ୟାନରତ ମାଧବାନନ୍ଦ ଧ୍ୟାନ ବଳରେ ମୃଗୁଣୀର ଅବସ୍ଥା ଜାଣିପାରି ତାକୁ ନିଜ ଆସନ ତଳକୁ ନେଇ ଆଶ୍ରୟ ଦେଲେ । କିଛି ସମୟ ପରେ ରାଜା ସେଠାରେ ପହଞ୍ଚିଲେ । ଏହା ଏକ ଚାରି ଛକ ରାସ୍ତା ଥିଲା । ସେଠାରେ ରାଜା ମୃଗୁଣୀର ପାଦଚିହ୍ନ ଦେଖି ଧ୍ୟାନରତ ସାଧୁଙ୍କୁ ମୃଗୁଣୀ ବିଷୟରେ ପଚାରିବାରୁ ସେ ଜଗନ୍ନାଥ ଦାଶଙ୍କ ଭାଗବତର ଏକ ପଂକ୍ତି ଉଦ୍ଧାର କରିଥିଲେ ।

"ନାରୀ ଗର୍ଭଣୀ ଶିଶୁ ବଧ
ପାପୀଙ୍କ ମଧ୍ୟେ ଏ ପ୍ରମାଦ"

ଏଣୁ ମୁଁ ଏହାର ସଂଧାନ ଦେଇ ପାପର ଭାଗିଦାର ହେବିନାହିଁ । ଯଦି ରାଜା ଏହାକୁ ବନ୍ଦ ନକରିବାକୁ ଶପଥ କରିବେ ତେବେ ସେ ମୃଗୁଣୀର ସନ୍ଧାନ ଦେବେ । ଏଥିରେ ରାଜା ସମ୍ମତି ପ୍ରଦାନ କରିବାରୁ ନିଜ ଆସନ ତଳୁ ମୃଗୁଣୀକୁ ବାହାର କଲେ । ରାଜା ଶପଥ କରି ସେ ମୃଗୁଣୀକୁ ନିଜର କନ୍ୟା ରୂପେ ପାଳନ କଲେ । ଏବଂ ତାଙ୍କ ଶିଷତ୍ୱ ଗ୍ରହଣ କରି ସେଠାରେ ଏକ ମଠ ପ୍ରତିଷ୍ଠା କଲେ । ଏଥିପାଇଁ ଜମି ଦାନ କଲେ । ସେହିଦିନଠାରୁ ଏହିଗର୍ଭଣୀପଡା ମଠ ପୁରୀ ବଡ ଓଡିଆ ମଠ ଅଧୀନରେ ରହିଲା ଏବଂ ଗ୍ରାମର ନା ଗର୍ଭଣୀପଡା ହେଲା । ୰ ଜଗନ୍ନାଥ ଦାଶଙ୍କର ୧୪ ତମ ଶିଷ୍ୟ ଅଧିକାରୀ ବଂଶୀଧର ଦାଶ ଗୋସ୍ୱାମୀ ବର୍ତ୍ତମାନ ଗର୍ଭଣୀ ପଡା ମଠର ତତ୍ତ୍ୱାବଧାରକ । ତାଙ୍କଠାରୁ ପ୍ରାପ୍ତ ଜଗନ୍ନାଥ ଦାଶଙ୍କର ସମସ୍ତ ପରବର୍ତ୍ତୀ ଅଧିକାରୀ ମାନଙ୍କର ନାମ ପାଠକ ମାନଙ୍କ ଅବଗତି ନିମନ୍ତେ ନିମ୍ନରେ ଦିଆ ଗଲା -

୧. ଅତିବଡି ୰ ଜଗନ୍ନାଥ ଦାଶ ଗୋସ୍ୱାମୀ
୨. ଅଧିକାରୀ ଗୋପୀନାଥ ଦାଶ ଗୋସ୍ୱାମୀ
୩. ଅଧିକାରୀ ମାଧବାନନ୍ଦ ଦାଶ ଗୋସ୍ୱାମୀ
୪. ଅଧିକାରୀ ମୁରାରୀ ଦାଶ ଗୋସ୍ୱାମୀ
୫. ଅଧିକାରୀ ରାମକୃଷ୍ଣ ଦାଶ ଗୋସ୍ୱାମୀ
୬. ଅଧିକାରୀ ପୁରନ୍ଦର ଦାଶ ଗୋସ୍ୱାମୀ
୭. ଅଧିକାରୀ ମୁକୁନ୍ଦ ଦାଶ ଗୋସ୍ୱାମୀ
୮. ଅଧିକାରୀ (୧ମ) ବଂଶୀଧର ଦାଶ ଗୋସ୍ୱାମୀ
୯. ଅଧିକାରୀ ନୀଳାଦ୍ରି ଦାଶ ଗୋସ୍ୱାମୀ
୧୦. ଅଧିକାରୀ ରାସ ବିହାରୀ ଦାଶ ଗୋସ୍ୱାମୀ

୧୧. ଅଧିକାରୀ ରାମକୃଷ୍ଣ ଦାଶ ଗୋସ୍ୱାମୀ
୧୨. ଅଧିକାରୀ ବୃନ୍ଦାବନ ଦାଶ ଗୋସ୍ୱାମୀ
୧୩. ଅଧିକାରୀ (୨ୟ) ଗୋପୀନାଥ ଦାଶ ଗୋସ୍ୱାମୀ
୧୪. ଅଧିକାରୀ (୩ୟ) ବଂଶୀଧର ଦାଶ ଗୋସ୍ୱାମୀ
(ବର୍ତ୍ତମାନର ଅଧିକାରୀ)

ବଂଶୀଧର ଦାଶ ଗୋସ୍ୱମୀ କହନ୍ତି ଗର୍ଭଣୀପଡା ମଠକୁ ମାଧବାନନ୍ଦଙ୍କ ପରେ ସମସ୍ତ ଗୋସ୍ୱାମୀ ମାନେ ସେମାନଙ୍କର ଜୀବଦ୍ଦଶାରେ ଆସିଛନ୍ତି ।

କନ୍ତାଇଲୋ ମଠ:-

ବାଙ୍କୋଇ ଗଡର ସିମାନ୍ତବର୍ତ୍ତୀ କନ୍ତାଇଲୋ ଗ୍ରାମରେ ୨ଟି ମଠ ବଡ ମଠ ଏବଂ ସାନ ମଠ ନାମରେ ରହିଅଛି । ଏହି ବଡ ମଠର ମାହାତ୍ମ୍ୟ ହେଲା ଏହି ମଠର ଆରାଧ୍ୟ ଦେବତା ବାଲାଜୀଙ୍କ ଅନୁଗ୍ରହରୁ ଶ୍ରୀରାମଲୀଳାର ଅମର କବି ବାଙ୍କୋଇଗଡ ନିବାସୀ ଅନଙ୍ଗ ନରେନ୍ଦ୍ର ଶ୍ରୀରାମଳୀଲା ରଚନା କରିଛନ୍ତି । ଏ ମଠ ବିଷୟରେ ବିଶଦ ଭାବରେ ପାଞ୍ଚଗଡର ସାହିତ୍ୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି । ଏଠାରେ ଉଭୟ ମଠର ମଠାଧୀଶଙ୍କ ନାମ କ୍ରମରେ ଦିଆଗଲା -

କନ୍ତେଇଲୋ ମଠାଧୀଶଙ୍କ ନାମ -

| ବାଲାଜୀ ମଠ | | ଗୋପାଳଜୀ ମଠ | |
|---|---|---|---|
| ୧. | ଗୋବିନ୍ଦ ଦାସ | ୧. | ରାମଲକ୍ଷ୍ମଣ ଦାସ |
| ୨. | ବଲ୍ଲଭାନନ୍ଦ ଦାସ | ୨. | ବୃନ୍ଦାବନ ଦାସ |
| ୩. | ସୀତାରାମ ଦାସ | ୩. | ରାମଚରଣ ଦାସ |
| ୪. | ଦେବାନନ୍ଦ ଦାସ | | |
| ୫. | ଆଯୋଧ୍ୟା ଦାସ | | |
| ୬. | ହନୁମାନ ଦାସ | | |
| ୭. | ନୃସିଂହ ଦାସ | | |
| ୮. | ଗୁରୁ ଚରଣ ଦାସ | | |

ଏହି ମଠର ସମ୍ପତ୍ତି ରକ୍ଷଣାବେକ୍ଷଣ ଅଭାବରୁ ଦିନେ ପାଞ୍ଚଗଡର ଶ୍ରୀବୃଦ୍ଧି କରୁଥିବା ଏହି କନ୍ତାଇଲୋ ମଠ ବର୍ତ୍ତମାନ ଶ୍ରୀହୀନ ହୋଇ ପଡିଅଛି । ଏହାର ଉଦ୍ଧାର ପାଇଁ ସ୍ଥାନୀୟ ଜନ ଚେତନା ଏବଂ ବିଭାଗୀୟ ଦୃଢ ପଦକ୍ଷେପ ଆବଶ୍ୟକ ।

ସାନପଦର ମଠ-

ମଥୁରା ମଙ୍ଗଳର ଅମର କବି ଭକ୍ତ ଚରଣଙ୍କର ଦ୍ୱାରା ପ୍ରତିଷ୍ଠିତ ସାନପଦର ମଠର ସୁଖ୍ୟାତି ରହିଅଛି । ଏହି ଗ୍ରାମରେ ଆଉ ଗୋଟିଏ ମଠ ମଧ ରହିଅଛି । ଏହି ମଠ ବିଷୟରେ ଭକ୍ତ ଚରଣଙ୍କ ଜୀବନୀ ପ୍ରସଙ୍ଗରେ ବିଶଦ ଆଲୋଚନା ହୋଇଅଛି । ବଡ ମଠ ଏବଂ ସାନ ମଠର ସମସ୍ତ ମହନ୍ତ ମହାରାଜାଙ୍କର ନାମ ନିମ୍ନରେ ଦିଆଗଲା -

<u>ବଡମଠ -</u>

| | | | |
|---|---|---|---|
| ୧. | ଶ୍ରୀ ଶ୍ରୀ ଗୋବର୍ଦ୍ଧନ ଦାସ | ୨. | ଗୌର ଚରଣ ଦାସ |
| ୩. | ଗୋପୀଚରଣ ଦାସ | ୪. | ଗଦାଧର ଦାସ |
| ୫. | ମାଧବ ଦାସ | ୬. | ଗୌରାଙ୍ଗ ଦାସ |
| ୭. | ସନାତନ ଦାସ | ୮. | କୃଷ୍ଣ ଦାସ |
| ୯. | ନାରଣ ଦାସ | ୧୦. | ଗୋବିନ୍ଦ ସରଣ ଦାସ |

<u>ସାନମଠ -</u>

| | | | |
|---|---|---|---|
| ୧. | କମଳାକାନ୍ତ ଦାସ | ୨. | ଶିଶିରକାନ୍ତ ଦାସ |
| ୩. | ଭକ୍ତଚରଣ ଦାସ | ୪. | ପ୍ରସନ୍ନ ଦାସ |
| ୫. | ସନାତନ ଦାସ | ୬. | ବ୍ରଜବନ୍ଧୁ ଦାସ |
| ୭. | ରଘୁବର ଦାସ | ୮. | ମୋହନ ଦାସ |
| ୯. | ଗୋପାଳ ଦାସ | | |

ମାଳିସାହି ବଡମଠ -

ଏହି ମଠର ପୂଜ୍ୟ ଦେବତା ଶ୍ରୀ ଗୋପାଳ ଦେବ ଅଟନ୍ତି । ଏହା ପୁରୀ ରାଧାକାନ୍ତ ମଠର ଶାଖା ଅଟେ ଏବଂ ୨୦୦ ବର୍ଷ ତଳର କୀର୍ତ୍ତି । ଏହି ମଠ ନୟାଗଡ ରାଜା ନାରଣ ସିଂହ ମାନ୍ଧାତାଙ୍କ ଅଧୀନରେ ପରିଚାଳିତ ହୋଇ ପରେ ତାଙ୍କର ଦେଓ୍ୱାନ ସୋମନାଥ ସିଂହଙ୍କ ପତ୍ନୀ କିଶୋରୀ ମାଳିଙ୍କ ନାମରେ ରେକର୍ଡଭୁକ୍ତ ହୋଇଥିଲା । ପରେ କିଶୋରି ମାଳିଙ୍କର ଜାମାତା ଗଞ୍ଜାମ ବଡଖେମୁଣ୍ଡି ରାଜା ସୀତାରାମ ଦେଓଙ୍କର କନିଷ୍ଠ ପୁତ୍ର ଏହି ମଠ ଦାୟିତ୍ୱରେ ରହିଲେ । ତାଙ୍କର ଅଭାବନୀୟ ପରିସ୍ଥିତିରୁ ସେ ଦିବ୍ୟସିଂହପୁର ଶାସନର ✓ ବଳରାମ ହୋତାଙ୍କୁ ଏହା ବିକ୍ରୀ କରିଦେଲେ । ପୁରୁଷାନୁକ୍ରମେ ତାଙ୍କ ବଂଶଧର ବିରୁପାକ୍ଷ ହୋତା ବର୍ତ୍ତମାନ ମଠର ମ୍ୟାନେଜିଙ୍ଗ ଟ୍ରଷ୍ଟି ଅଟନ୍ତି । ଏଠାରେ ଠାକୁରଙ୍କର ସମସ୍ତ ପର୍ବ ପର୍ବାଣୀ ପାଳନ କରାଯାଏ ।

ମାଳିସାହି ସାନମଠ -

ଏହି ମଠରେ ରଘୁନାଥ ଦେବ ପୂଜିତ । ମାଣିକାଗୋଡାର ହିନ୍ଦୁ ମୁସଲମାନ ସଂସ୍କୃତିର ମହାମିଳନ ଦଶହରା ପୂର୍ବର ଅନ୍ତିମ ଅପରାଜିତା ହୋମର ବ୍ୟବହୃତ ଦ୍ରବ୍ୟ ପରମ୍ପରା ଅନୁସାରେ ଏହି ମଠ ଦେଇଥାଏ । ଏହି ସାନ ମଠ ପୁରୀ ବଡଥାଖେଡା ମଠର ଶାଖା ମଠ ଅଟେ ।

ମଠାଧୀଶଙ୍କ ନାମ

୧. ମଧୁସୂଦନ ଦାସ
୨. ସରୋଜ ଦାସ
୩. ବଳରାମ ଦାସ
୪. ମଙ୍ଗୁଳି ଦାସ
୫. ବନମାଳୀ ଦାସ
୬. ମଦନମୋହନ ଦାସ
୭. ହନୁମନ୍ତ ଦାସ
୮. କୌଶଲ୍ୟା ଦାସ
୯. ମହନ୍ତ ରାମଚରଣ ଦାସ (ଅଦ୍ୟାବଧି)

ବର୍ତ୍ତମାନର ମଠ ମହନ୍ତଙ୍କ ଠାରୁ ଜଣାଯାଏ ଦିବ୍ୟସିଂହ ଦେବଙ୍କ ଶାସନ ବେଳେ ପାଞ୍ଚଗଡର ରାଜଧାନୀ ରୂପେ ମାଣିକାଗୋଡା ପରିଣତ ହେବା ସମୟରେ ଏହି ମଠ ସ୍ଥାପିତ ହୋଇଥିଲା ।

ବୋଲଗଡ ମଠ-

ବୋଲଗଡର ଐତିହାସିକ ଅଧ୍ୟାୟ ପାଞ୍ଚଗଡରେ ଖୋରଧା ଗଜପତି ମାନଙ୍କର ଅବସ୍ଥାନ ପ୍ରସଙ୍ଗରେ ବିଶଦ ଭାବରେ ଏହି ମଠ ବିଷୟରେ ବର୍ଣ୍ଣିତ ହୋଇଅଛି । ଏହି ମଠ ମହନ୍ତ ମାନଙ୍କର ନାମ ନିମ୍ନରେ ପ୍ରଦତ୍ତ ହେଲା :-

୧. ମହନ୍ତ ବିନୋଦରାମ ଦାସ
୨. ମହନ୍ତ ନନ୍ଦରାମ ଦାସ
୩. ମହନ୍ତ ପର୍ଶୁରାମ ଦାସ
୪. ମହନ୍ତ ଦୟାରାମ ଦାସ
୫. ମହନ୍ତ ରାମ ନାରାୟଣ ଦାସ
୬. ମହନ୍ତ ରାମଗୋପାଳ ଦାସ
୭. ମହନ୍ତ ରାମ ମୁରଲୀ ଦାସ (ବର୍ତ୍ତମାନର ମହନ୍ତ)

ମାଣିକାଗୋଡା ମଠ -

ଏହି ଗ୍ରାମରେ ୨ଟି ମଠ ରହିଅଛି । ସେଥିରୁ ଗୋଟିଏ ମଠ କୁମୁଟି ସାହି ମୌଜାରେ ରହିଅଛି । କୁମୁଟି ସାହି ମୌଜାରେ ଥିବା ମଠରେ ଶିକ୍ଷକ ଶ୍ରୀ ଚନ୍ଦ୍ର ଶେଖର ସାହୁଙ୍କ ମୁଖ୍ୟ ସହଯୋଗରେ ଗ୍ରାମର ସମସ୍ତ ଶିକ୍ଷିତ ଏବଂ ଧାର୍ମିକ ଲୋକମାନେ ଦିବ୍ୟଜୀବନ ସଂଘ ଶାଖା ଗଠନ କରି ସେହି ଧାରାରେ ନିଜକୁ ଅନୁପ୍ରାଣିତ କରିଛନ୍ତି । ଏ ସଂଘ ଗଠନ ପରେ ସ୍ଥାନୀୟ ମହିଷାଶୁଣୀ ଛକ ଠାରେ ଥିବା ଗୋପିନାଥ ମନ୍ଦିର ପ୍ରାଙ୍ଗଣରେ ପ୍ରତିବର୍ଷ ମହାସମାରୋହରେ ରାମଚରିତ ମାନସ ୯ ଦିନ ବ୍ୟାପି ପାଳନ କରାଯାଉଛି । ସ୍ଥାନୀୟ ଶିକ୍ଷକ ଶ୍ରୀ ବିପିନ ବିହାରୀ ସୁବୁଦ୍ଧି ଏବଂ ଏହି ଗ୍ରାମର ସୋମନାଥ ମହାପାତ୍ର ବିଶିଷ୍ଟ ପ୍ରବଚକ ଭାବରେ ସୁନାମ ଅର୍ଜନ କରିଛନ୍ତି ।

ସଂପୁର ମଠ -

ସଂପୁର ଗ୍ରାମରେ ୪ ଗୋଟି ମଠ ଅଛି । ବଡ ମଠ ପୁରୀ ରାଧାକାନ୍ତ ମଠର ଶାଖା । ୰ ହରିହର ମହାନ୍ତି ଏହା ବର୍ତ୍ତମାନ ପରିଚାଳନା କରୁଥିଲେ । ସାନ ମଠର ମୁଖ୍ୟ ବାବାଜୀ ବର୍ତ୍ତମାନ ପଶ୍ଚିମ ଓଡିଶାରେ ମଠ କରି ଏହି ମଠକୁ ସ୍ଥାନୀୟ ଶିକ୍ଷକ ଶ୍ରୀ ଗୋପାଳ ବେହେରାଙ୍କ ଦାୟିତ୍ୱରେ ଛାଡି ଦେଇଛନ୍ତି । ଏହା ଛଡା ହରିରାଜ ପୁର ସିଦ୍ଧେଶ୍ୱରୀ ପୀଠ ପାର୍ଶ୍ୱରେ ଗ୍ରାମର ସୁନାମ ଧନ୍ୟ ବ୍ୟକ୍ତି ୰ ଜଗବନ୍ଧୁ ଦେଓଙ୍କର ପୁତ୍ର ପଦ୍ମଚରଣ ଦେଓ ମହାପାତ୍ର ଏକ ମଠ ପ୍ରତିଷ୍ଠା କରିଥିଲା ବେଳେ ବଣିଆ ସାହିରେ ପୂର୍ବତନ ଏମ.ଭି.ଆଇ. ବାସୁଦେବ ସାହୁଙ୍କର ପୂର୍ବଜ ମାନେ ଏକ ମଠ ପ୍ରତିଷ୍ଠା କରିଛନ୍ତି ।

ବାରଦାଣ୍ଡି ମଠ-

ହଳଦୀପଦା ଏବଂ ଗୋଡିଆଳି ଗଡ ମଧରେ ବହୁ ପୂର୍ବରୁ ରଣପୁର ରାଜା ଏକ ମଠ ପ୍ରତିଷ୍ଠା କରି ନୃସିଂହ ମହାପ୍ରଭୁଙ୍କୁ ସ୍ଥାପନା କରିଥିଲେ । ଏହା ଏବେ ଟ୍ରଷ୍ଟିଙ୍କ ଦ୍ୱାରା ପରିଚାଳିତ ।

ଚୂଡା ମଠ -

ଅତୀତର ଚୂଡାମଣିପୁର ଶାସନ ବର୍ତ୍ତମାନର ଚୂଡା ଗ୍ରାମରେ ଏକ ପ୍ରାଚୀନ ମଠ ବହୁ ପୂର୍ବରୁ ରହିଅଛି । କାଳକ୍ରମେ ଏଠାରୁ ବ୍ରାହ୍ମଣମାନଙ୍କର ବଂଶର ପତନ ପରେ ଏହି ମଠ ବହୁ ବର୍ଷ ପୂର୍ବରୁ ନିକଟସ୍ଥ ରଣପୁର ଅନ୍ତର୍ଗତ ରମାବିଲ ମଠ ଅଧୀନରେ ରହିଅଛି ।

# ପ୍ରାଚୀନ ଲୋକ ସଂସ୍କୃତି

ପାରମ୍ପରିକ ଲୋକ ସଂସ୍କୃତିର ନିଦର୍ଶନ ଦଣ୍ଡନାଟ, ପାଲା, ରାମଲୀଳା, କୃଷ୍ଣଲୀଳା, ଦାଶକାଠିଆ, ଦୁଆରୀ ନାଟ, ଆଦିବାସୀଙ୍କର ଢଣକୋଇଲା ପାଞ୍ଚଗଡ ଅଞ୍ଚଳରେ ବହୁ ପୂର୍ବରୁ ପ୍ରଚଳନ ହେଉଅଛି । ସେ ସବୁ ନିମ୍ନରେ ଆଲୋଚନା କରାଯାଉଛି ।

ଢଣକୋଇଲା-

ଏହି ପର୍ବ ଆଶ୍ୱିନ ମାସ ପ୍ରତି ମଙ୍ଗଳବାରରେ ଆଦିବାସୀମାନେ ପାଳନ କରିଥାଆନ୍ତି । ପ୍ରତିଦିନ ସଂଧ୍ୟାରେ ଆଦିବାସୀ ମହିଳାମାନେ ଗୀତ ବୋଲିବା ସହ ଠାକୁରାଣୀ ପୀଠରେ ବାଦ୍ୟ ବଜା ହୁଏ । କାଳିସୀମାନେ ନୃତ୍ୟକରି ଶୁଳିଆ, ବାଇଧର କାଳିଆ ଷଣ୍ଢ ହନୁମାନ କାଠକୁଣ୍ଡିଆ, ବେଢାକାଳୀକା ମଙ୍ଗଳା ଆଦି ଠାକୁର ଠାକୁରାଣୀଙ୍କ ନାମରେ ସ୍ତ୍ରୀ ଏବଂ ପୁରୁଷ ଲୋକମାନେ ଉଭା ହୁଅନ୍ତି । ଏହି ସମସ୍ତ କାଳିସୀମାନେ ଉଭା ହୋଇ ନାଚିଲାବେଳେ ଗ୍ରାମ ମୁଖ୍ୟ ସେମାନଙ୍କ ଠାରେ କେଉଁ ଦେବତା ଆସିଛନ୍ତି ବୋଲି ପଚାରିବାରେ ସେମାନେ ଦେବତାଙ୍କ ନାମ କହନ୍ତି । ଶେଷରେ ହନୁମାନ ଖୁବ ଜୋରରେ ଡେଇଁ ଚାଳ ଉପରେ ଦୌଡି ଅନ୍ଧାର ରାତ୍ରିରେ ଅଦୃଶ୍ୟ ହୋଇ ଯାଇଥାଏ କିଛି ସମୟ ପରେ କଖାରୁ କିମ୍ବା କଦଳୀ କାନ୍ଧି ଟିଏ ଧରି ଚାଳଉପରେ ଦୌଡି ଦୌଡି ଆସି ଠାକୁରାଣୀ ପୀଠରେ ଉପସ୍ଥିତ ହୁଏ । ଏହି ପରି ସେ ୫ ଦିନ ଧରି ଆଣିଥିବା ସମସ୍ତ ପ୍ରକାର ପନି ପରିବା ଶେଷଦିନ ଅନୁଷ୍ଠିତ ଭୋଜିରେ ବ୍ୟବହାର ହୁଏ । ଏହି ପର୍ବ ସ୍ଥାନୀୟ ନନ୍ଦପଲ୍ଲୀ, ଶ୍ୟାମସୁନ୍ଦରପୁର, ହରିପୁର, ସଂପୁର ଏବଂ ମାଣିବନ୍ଧ ଇତ୍ୟାଦି ଗ୍ରାମରେ ୩୦ ବର୍ଷ ପୂର୍ବରୁ ପାଳିତ ହେଉଥିଲା । ବର୍ତ୍ତମାନ ହରିପୁର ଗ୍ରାମରେ ଏହି ପ୍ରଥା ରହିଅଛି ।

ଦଣ୍ଡନାଟ -

ଆର୍ଯ୍ୟ ଦ୍ରାବିଡ ସଂସ୍କୃତିର ସମନ୍ୱୟ ପର୍ବ ଦଣ୍ଡନାଟ ବୋଲଗଡ ଅଞ୍ଚଳରେ ବହୁ ପୁରାତନ । ଅଦ୍ୟାବଧି ବୋଲଗଡ ବ୍ଲକର ୫୦ଟି ଗ୍ରାମରେ ଦଣ୍ଡନାଟ ମେଳ ଅଛି । ଚଢେୟା, କେଳା, ଶବର, ଶିବ, ପାର୍ବତୀ ସୁଆଙ୍ଗ ଦଣ୍ଡନାଟର ମୁଖ୍ୟ ପ୍ରାଚୀନ ପ୍ରସଙ୍ଗ ଥିଲା ବେଳେ ସାମାଜିକ ପରିବର୍ତ୍ତନ ଅନୁସାରେ ନାବକେଳି, ଯୋଗୀ ସୁଆଙ୍ଗ, ଲକ୍ଷ୍ମୀପୂଜା, ବାବାଜୀ ସୁଆଙ୍ଗ ଆଦି ପ୍ରବେଶକରିବା ସଙ୍ଗେ ଇଂରେଜୀ ଶାସନ ସମୟର

ସାମାଜିକ ଅବସ୍ଥାର ଏହା ଉପରେ ପ୍ରଭାବ ପଡିଅଛି । ସାହେବ, ପୋଲିସ୍, ଚୌକିଦାର , ଦାରୁଗାର ଚରିତ୍ର କେତେକ ସ୍ଥଳରେ ପରିଲକ୍ଷିତ ହେଲା ପରେ ଗ୍ରାମ ପଞ୍ଚାୟତର କାର୍ଯ୍ୟାବଳୀର ପ୍ରବେଶ ଏହି ଦଣ୍ଡନାଟ ପରିସରକୁ ଆସିଅଛି । ଏହା ମୁଖ୍ୟତଃ ଶିବ ପାର୍ବତୀ ଏବଂ କାମନା ଦେବୀଙ୍କ ଉଦ୍ଦେଶ୍ୟରେ ୧୩ ଦିନ ଉପବାସ ରହି ଏହି ପର୍ବ ଚୈତ୍ର ମାସରେ ପାଳନ କରାଯାଇଥାଏ । ପଣା ସଂକ୍ରାନ୍ତି ଦିନ ଏହାର ଉଦ୍‌ଯାପନ କରାଯାଏ । କେତକ ସ୍ଥାନରେ ଝାମୁ ଗାତର ରଡ ନିଆଁରେ ଭଗତା ମାନେ ଚାଲିଥାଆନ୍ତି ଏବଂ ଦେହରେ କଣ୍ଟା ଫୋଡି ନିଜର ମନସ୍କାମନା ପୂର୍ଣ୍ଣ କରିଥାଅନ୍ତି । ଏହାକୁ ପାଟଫୋଡା କୁହାଯାଏ । ବର୍ତ୍ତମାନ ଏହି ପାଟଫୋଡା ବେଗୁନିଆ ଥାନାର ଡିଙ୍ଗର ଗ୍ରାମରେ ପଣାସଂକ୍ରାନ୍ତି ଦିନ ନିଆଁ ଗାଡ ସହ କରାଯାଏ । ଏହି ପୁରାତନ ପରମ୍ପରାକୁ ଉଲଂଘନ କରି ଏବେ ପଣା ସଂକ୍ରାନ୍ତି ପରେ ନିକଟସ୍ଥ ଇଟାମାଟି ଗ୍ରାମରେ ଉଦଣ୍ଡ ଦଣ୍ଡ ଯାତ୍ରା ପର୍ବ କରାଯାଉଛି । ଦଣ୍ଡ ଯାତ୍ରାର ବିଧି ବିଧାନ ବିଷୟରେ ଓଡିଶାର ସୁପ୍ରସିଦ୍ଧ ଜ୍ୟୋତିର୍ବିତ୍ ସାମନ୍ତ ଚନ୍ଦ୍ର ଶେଖର ମହାମହୋପଧ୍ୟାୟ (ପଠାଣୀ ସାମନ୍ତ)ଙ୍କ ଦ୍ୱାରା ରଚିତ ଏକ ଗୀତ ପ୍ରଶ୍ନୋତ୍ତର ଛଳରେ ମିଳି ଅଛି । ଏହା ଏକ ତାଳପତ୍ର ପୋଥି । ବର୍ତ୍ତମାନ ବୋଲଗଡର (ତୃତୀୟାପଡା) ଚୌଧୁରୀ ସାହିର ପାଲାକାର ତଥା ସଂକୀର୍ତ୍ତନ ଗାୟକ ଏବଂ ଦଣ୍ଡଯାତ୍ରାର ପୁରାତନ କଳାକାର ରାମ ଚନ୍ଦ୍ର ସାହୁଙ୍କ ପାଖରେ ରହିଅଛି । ଏହା ସେ ଗୁରୁ ୰ କହ୍ନେଇ ଦରଙ୍କ ଠାରୁ ସଂଗ୍ରହ କରିଛନ୍ତି ବୋଲି କହନ୍ତି ।

ଏହା ଛଡା ଦଣ୍ଡ ଯାତ୍ରାରେ ଚରିତ୍ର ମାନେ କେତେକ ଅଶ୍ଳୀଳ ଗୀତ ବୋଲିଥାନ୍ତି । ତେଣୁ ଏହାକୁ ଦଣ୍ଡ ଭଣ୍ଡ କୁହାଯାଏ । ଏ ସମ୍ପର୍କରେ ତୃତୀୟାପଡା ଦଣ୍ଡଯାତ୍ରାର ପୂର୍ବତନ ଗୁରୁ ୰ ହଟ ପରିଡାଙ୍କର ଏକ ଗୀତ ନିମ୍ନ ଦିଆଗଲା-

ଚୈତ୍ରେ ପରବ ଦଣ୍ଡ
ସେତ ଅଟେ ଶିବ ଭଣ୍ଡ
ବିଷ୍ଣୁ ଭଣ୍ଡ ରଥପରେ
ସାରଥି ସାରୁତୃଣଜା
ବଜା ନାଗର ବଜା
ଏଠାକୁ ଆସିବେ ହର
ସଙ୍ଗତେ ଘେନି ଗିରିଜା
ବଜା ନାଗରା ବଜା-----

ଏଠାରେ କବି ଦଣ୍ଡ ଯାତ୍ରାରେ ଏହାକୁ ଶିବ ଭଣ୍ଡ କହିଥିଲାବେଳେ ରଥ ଯାତ୍ରା ବେଳେ ରଥଉପରେ ଜଗନ୍ନାଥଙ୍କର ଡାହୁକ ଯେଉଁ ଅଶ୍ଳୀଳ ଗୀତ ବୋଲିଥାନ୍ତି ତାହାକୁ କବି ବିଷ୍ଣୁ ଭଣ୍ଡ ଭାବରେ ବର୍ଣ୍ଣନା କରୁଛନ୍ତି ।

ଦଣ୍ଡନାଟର ଗୀତ ସରଳ ଏବଂ ପରିମାର୍ଜିତ ଥିବା ସଙ୍ଗେ ସଙ୍ଗେ ଓଡିଆ ଲିଖିତ ସାହିତ୍ୟର ବହୁପୂର୍ବରୁ ଏହି ଦଣ୍ଡଯାତ୍ରାରେ ପ୍ରଚଳିତ ଗୀତ ଓଡିଆ ଭାଷା ଏବଂ ସାହିତ୍ୟର ମୂଳପିଣ୍ଡ କହିଲେ ଅତ୍ୟୁକ୍ତି ହେବନାହିଁ । ବୋଲଗଡର ୰ ଘନଶ୍ୟାମ ପଟ୍ଟନାୟକ, ୰ ହଟ ପରିଡା, ୰ ବିଦ୍ୟାଧର ଘଡେଇ, ଙ୍ଗପୁର ଗ୍ରାମର ୰ ତାରେଶ୍ୱର ଚଉଧୁରୀ, ୰ ହରି ମହାନ୍ତି, ମାଣିକାଗୋଡାର ୰ ରାମଚନ୍ଦ୍ର ଦାଶ, ୰ ନରସିଂହ ମହାରଣା, ସାନପଦର ଗ୍ରାମର ୰ ଅନନ୍ତ ପାତାଳସିଂହ, ବାଙ୍କୋଇ ଗ୍ରାମର ୰ ନରସିଂହ ହରିଚନ୍ଦନ ପ୍ରଭୃତି କବିମାନଙ୍କର ଗୀତ ଦଣ୍ଡ ନାଟରେ ବୋଲାଯାଏ । ବହୁଥର ସ୍ଥାନୀୟ ଦଣ୍ଡନାଟ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପ କଟକ ବାରବାଟୀ ଷ୍ଟାଡିୟମ ଏବଂ ଖୋରଧା ମହୋତ୍ସବରେ ପ୍ରଦର୍ଶିତ ହୋଇଅଛି । ୧୯୭୯ ମସିହାରେ ନନ୍ଦିଘୋଷ ଅନୁଷ୍ଠାନ ତରଫରୁ ଅନୁଷ୍ଠିତ ବ୍ଲକ ସ୍ତରୀୟ ଦଣ୍ଡ ନୃତ୍ୟ ସମାରୋହର କୃତୀ କଳାକାରମାନଙ୍କୁ ଗଜପତି ମହାରାଜା ଦିବ୍ୟସିଂହଦେବ ପୁରସ୍କୃତ କରିଛନ୍ତି ।

ରାମଲୀଳା -

ବାଙ୍କୋଇ ଗଡରେ ଅନଙ୍ଗ ନରେନ୍ଦ୍ରଙ୍କର 'ଶ୍ରୀରାମ ଲୀଳା' ନାଟ୍ୟରୂପ ନେବା ପରେ ଏହାର ବହୁଳ ପ୍ରସାର ବୋଲଗଡ ଅଞ୍ଚଳରେ ହୋଇଥିଲା । ବର୍ତ୍ତମାନ ଆଧୁନିକୀ କରଣ ଏଥିରେ ପ୍ରବେଶ କରିଥିଲେ ମଧ୍ୟ ମୂଳ ବିଧିବିଧାନ ବର୍ତ୍ତମାନ ସୁଦ୍ଧା ରହିଅଛି । ହାଟବସ୍ତ ଗ୍ରାମର ଶ୍ରୀ କାଶୀନାଥ ଖଟେଇ ଅନଙ୍ଗ ନରେନ୍ଦ୍ରଙ୍କର ଶ୍ରୀରାମଲୀଳାର ସମସ୍ତ ଛାନ୍ଦ ଏବଂ ସଂସ୍କୃତ ଶ୍ଳୋକକୁ ମୁଖସ୍ଥ କରି ଗାୟନ କରନ୍ତି । ଏଭଳି ପ୍ରତିଭା ସମଗ୍ର ଓଡିଶାରେ ବିରଳ । ବର୍ତ୍ତମାନ ଅନଙ୍ଗ ନରେନ୍ଦ୍ରଙ୍କର ରଚିତ 'ରାମଲୀଳା'ର ନାଟ୍ୟରୂପ ବୋଲଗଡ ଅଞ୍ଚଳର ବାଙ୍କୋଇ ଗଡ, ଆରିକମା, ଚମ୍ପାଇଲୋ, ଗୋପାଳିପଦା, ଅରଖପଲ୍ଲୀ, କପାସିଆ ଏବଂ ସାନପଦର ଗ୍ରାମରେ ପ୍ରତିବର୍ଷ ରାମନବମୀ ତିଥିରେ ପାଳିତ ହୋଇ ଆସୁଅଛି ।

କୃଷ୍ଣଲୀଳା -

ରାମଲୀଳା ପରେ କୃଷ୍ଣଲୀଳା ଏ ଅଞ୍ଚଳରେ ବହୁ ପୂର୍ବରୁ ପ୍ରଚଳିତ । ୰ ସାଧୁଚରଣ ଚୌଧୁରୀ ବୋଲଗଡ ଇତିହାସ ପାଣ୍ଡୁଲିପିରେ ବର୍ଣ୍ଣନା ଅଛି ଯେ ୧୦୦ ବର୍ଷ ପୂର୍ବେ ବୋଲଗଡର କୃଷ୍ଣଲୀଳା ୰ହଟ ସାମନ୍ତରାୟ ନେଇ ଖଣ୍ଡପଡା ରାଜବାଟୀରେ ପରିବେଷଣ କରିଥିଲେ । ନନ୍ଦପଲ୍ଲୀ ଏକ ଛୋଟ ଗ୍ରାମ ହେଲେ ମଧ୍ୟ ଚଷା ଏବଂ ଗଉଡ ଜାତିର ୨ ମେଳ କୃଷ୍ଣଲୀଳା ଥିଲା । ବେଣାଗାଡିଆ କୃଷ୍ଣଲୀଳା ୫୦ ବର୍ଷ ପୂର୍ବେ ଏ ଅଞ୍ଚଳରେ ବିଶେଷ ଖ୍ୟାତି ଲାଭ କରିଥିଲା । ସାନପଦର ଗ୍ରାମରେ ମଧ୍ୟ

କୃଷ୍ଣଲୀଳା ଅନୁଷ୍ଠିତ ହେଉଥିଲା । ବର୍ତ୍ତମାନ ଏହା ଲୁପ୍ତ ପ୍ରାୟ । ଶ୍ରୀକୃଷ୍ଣଲୀଳାର ଅମର କବି ଗୌରଚରଣ ଅଧିକାରୀ ବେଗୁନିଆ ବ୍ଲକର ଲେହଙ୍ଗ ଗ୍ରାମ ବାସିନ୍ଦା ଅଟନ୍ତି । ତାଙ୍କ ବିଷୟରେ ସାହିତ୍ୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇଅଛି ।

ପାଲା -

ବହୁ ପୂର୍ବରୁ କଳାଙ୍ଗ ଗ୍ରାମ ନିବାସୀ ୰ ତାରେଶ୍ୱର ମହାପାତ୍ର ଓଡିଶାର ଜଣେ ସର୍ବଶ୍ରେଷ୍ଠ ପାଲାକାର ଭାବେ ସ୍ୱୀକୃତୀ ଲାଭ କରିଥିଲେ । ଖଣ୍ଡପଡାର ସ୍ୱନାମଧନ୍ୟ ରାଜାକବି ଗଦାଧର ସିଂହ (ସାମନ୍ତ ଚନ୍ଦ୍ର ଶେଖରଙ୍କର ପୁତ୍ର) ତାରେଶ୍ୱର ମହାପାତ୍ରଙ୍କ ଗୁରୁ ସ୍ୱରୂପ ଥିଲେ । ଗିନି ବଜାଇବାରେ ସେ ସିଦ୍ଧହସ୍ତ ଥିଲେ । ସେତେବେଳେ ଉନବିଂଶ ଶତାବ୍ଦୀର ପ୍ରଥମ ପାଦରେ ବୋଲଗଡର ସ୍ୱର୍ଗତ ବାମନ ମହାପାତ୍ର ଚନ୍ଦନ ଯାତ୍ରା ପରେ ଏବଂ ରଜ ଯାତ୍ରା ପୂର୍ବରୁ ଓଡିଶାର ସେତେବେଳର ବହୁ ପ୍ରଖ୍ୟାତ ପାଲାକାରଙ୍କୁ ନେଇ ଦେଉଳ ଦୁଆରେ ପ୍ରତି ବର୍ଷ ବାଦପାଲା ଅନୁଷ୍ଠିତ କରୁଥିଲେ । ଏହି ବାଦପାଲାରେ କଳାଙ୍ଗର ସ୍ୱର୍ଗତ ୰ ତାରେଶ୍ୱର ମହାପାତ୍ର ଏବଂ ବାଙ୍କୀ ଅଞ୍ଚଳର ଜଗେଶ୍ୱର ମହାପାତ୍ରଙ୍କର ବାଦପାଲା ସର୍ବଜନ ପ୍ରଶଂସିତ ହେଉଥିଲା । ଲୋକ ମୁଖରେ ତାରେଶ୍ୱର ଗୀନି କମ୍ପାଏ ମେଦିନୀ ଅଦ୍ୟାବଧି ରହିଅଛି । ମାଳିସାହି ଗ୍ରାମର ପାଲାକାର ୰ ଗିରିଧାରୀ ବିଶ୍ୱାଳ ଦୀର୍ଘ ୪ ଦଶନ୍ଧି ଧରି ପାଲା ପରିବେଷଣ କରି ଲୋକ ପ୍ରିୟ ହୋଇପାରିଥିଲେ । ତାଙ୍କର ଡାହାଣ ପାଳିଆ ୰ ମାଧବ ବିଶ୍ୱାଳ ଏବଂ ହାସ୍ୟ କଳାକାର ଦଳେଇ ୰ହରିହର ସାହୁ ଏବଂ ଗୋପାଳ ମହାପାତ୍ରଙ୍କ ଅଭିନୟ ଜନମନ ହରଣ କରେ । ଏହି ପାଲା ଦଳର କଳାକାର ଶ୍ରୀ ଗୋପାଳ ମହାପାତ୍ର ବର୍ତ୍ତମାନ ଜୀବିତ । ବୋଲଗଡ ଅଞ୍ଚଳର ଏହି ଦୁଇବର ପୁତ୍ରଙ୍କ ବିଷୟରେ ନବଦୁର୍ଗ ପରିଚୟର କବି ଦେଇଥିବା ମନ୍ତବ୍ୟ ନିମ୍ନରେ ପ୍ରଦତ୍ତ ହେଲା ।

ନବଦୁର୍ଗ ଦର୍ପଣ

(ପୃ- ୪୦, ଲେଖକ- ଘନଶ୍ୟାମ ମହାପାତ୍ର)

ଏଦୁର୍ଗ (ନୟାଗଡ) ନିକଟ ଚଟରେ ଗିରିଧାରୀ ବିଶ୍ୱାଳ
ତାରେଶ୍ୱର ମହାପାତ୍ରଙ୍କ ନାମ ପଡେ ଚହଳ ।୫୦।
ଗାଉଥିବା ପାଲା ଚାମର ହଲା ଗିନି ନିନାଦ
ଥରେ ଯେ ଦେଖିଛି ତା ନେତ୍ର ପଥେ ନଚାଇ ଥିବ ।୫୧।

ତାରେଶ୍ୱର ମହାପାତ୍ରଙ୍କର ବାୟକ ଭାବରେ ୰ ବିଶ୍ୱମ୍ଭର ମହାପାତ୍ର ସୁଖ୍ୟାତି ଅର୍ଜନ କରିଥିଲେ । ଏବଂ ଗିରିଧାରୀ ବିଶ୍ୱାଳଙ୍କର ବହୁ ଦିନ ଧରି ଖଣ୍ଡପଡା

ଚୁଙ୍ଗୁଡିଗାଡିଆ ଗ୍ରାମର ଚିନ୍ତାମଣି ବାୟକ ଭାବରେ କାର୍ଯ୍ୟକରି ବିଶେଷ ସୁନାମ ଅର୍ଜନ କରିଥିଲେ ।

ଏହାଛଡା ବୋଲଗଡର ସ୍ୱର୍ଗତ ୰ ବାଳୀ ମହାପାତ୍ର ମଧ ଜଣେ ପାଲାକାର ଥିଲେ । ଏବେ ପାଲାର ସଂସ୍କୃତି ବହୁ ଭାବରେ ବଦଳି ଯାଇଛି । ସାନପଦର, ଘୋରଡିଆ, ଖଙ୍ଗୁରିଆ ଗ୍ରାମର କେତେକ କୁମାରୀ ପାଲାକାର ପାଲା ପରିବେଷଣ କରି ଖ୍ୟାତି ଅର୍ଜନ କରିଛନ୍ତି । ବୋଲଗଡ ସମୀପବର୍ତ୍ତୀ ରଣପୁର ରମ୍ଭାବିଲ ଗ୍ରାମର ୰ବିଶ୍ୱନାଥ ପଟ୍ଟଯୋଶୀ ଓଡିଆର ଲବ୍ଧ ପ୍ରତିଷ୍ଠିତ ପାଲାକାର ଥିଲେ ଏବଂ ପୁରୀ ଗଜପତିଙ୍କ ଦ୍ୱାର ଗାୟକ ସମ୍ରାଟ ଉପାଧି ପାଇବା ସହ ଓଡିଶାର ପୂର୍ବତନ ଲାଟସାହେବ୍ (ରାଜ୍ୟପାଳ) ଙ୍କ ସମେତ ଡଃ ହରେକୃଷ୍ଣ ମହତାବ, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରଭୃତି ମନୀଷୀ ମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ । ଏହାଛଡା ବର୍ତ୍ତମାନ ବୋଲଗଡ ଅଞ୍ଚଳରେ ଥିବା ପାଲା ଗାୟକ ମାନଙ୍କ ମଧରେ ଗେଡିଆପଲ୍ଲୀ ଗ୍ରାମର ଖଗେଶ୍ୱର ମାର୍ଥା, ସଂପୁର ଗ୍ରାମର ଗୋପୀନାଥ ବେହେରା, ହାଟବସ୍ତ ରାଧାଶ୍ୟାମ ଖଟେଇ, ଅନନ୍ତାପଲ୍ଲୀ ହାଡିବନ୍ଧୁ ରଥ, ବୋରିକ ନୂଆଗାଁ ଆନନ୍ଦ ବେହେରା, ମାଳିସାହି ଶରତ ବିଶ୍ୱାଳ ଏବଂ ବାମନ ମହାପାତ୍ରଙ୍କ ନାମ ଉଲ୍ଲେଖ ଯୋଗ୍ୟ । ପାଲା ପାଳିଆ ଓ ବାୟକ ଭାବରେ ଘୋରଡିଆ ଗ୍ରାମର ସବେଶ୍ୱର ମହାପାତ୍ର ଏବଂ ବୃଡା ଗ୍ରାମର ବସନ୍ତ କୁମାର ଦାସ ବିଶେଷ ନାମ କରିଛନ୍ତି । ପୂର୍ବରୁ ତାରେଶ୍ୱର ମହାପାତ୍ର ଏବଂ ବିଶ୍ୱନାଥ ପଟ୍ଟଯୋଶୀଙ୍କ ପାଳିଆ ଭାବେ ବୋଲଗଡର ୰ ପଦ୍ମଚରଣ ମହାପାତ୍ର ଏବଂ ତାଙ୍କ ପୁତ୍ର ୰ ଚକ୍ରଧର ମହାପାତ୍ର ବିଶେଷ ସୁନାମ ଅର୍ଜନ କରିଥିଲେ ।

ଦାସକାଠିଆ -

ଯୋଡାପଡା ଗ୍ରାମର ଭାଗବତ ସାହୁ ଏବଂ ତାଙ୍କ ପାଳିଆ ମୁକୁନ୍ଦ ନାୟକ ଏ ଅଞ୍ଚଳର ବିଶିଷ୍ଟ ଦାସକାଠିଆ କଳାକାର । ଏହାଛଡା ବଡକୁମାରୀ ଗ୍ରାମର ବୃନ୍ଦାବନ ପଣ୍ଡା ଏବଂ ଗର୍ଭଣୀପଡା ଗ୍ରାମର ବିଶ୍ୱନାଥ ମହାରଣା ମଧ ବିଶିଷ୍ଟ ଦାସକାଠିଆ କଳାକାର । ସେମାନେ ଏଥିପାଇଁ ରାଜ୍ୟ ସରକାର ଏବଂ କେନ୍ଦ୍ର ସରକାରଙ୍କ ଠାରୁ କଳାକାର ଭତ୍ତା ପାଉଛନ୍ତି ।

ଖଂଜଣୀ ଭଜନ -

ବୋଲଗଡ ଅଞ୍ଚଳର ଅଧିକାଂଶ ଗ୍ରାମରେ ପ୍ରାଚୀନ ଭଗବତ ଟୁଙ୍ଗୀରେ ଖଂଜଣୀ ଭଜନ ମେଳ ବହୁ କାଳରୁ ରହିଅଛି । ଏଥିରେ ଜଗନ୍ନାଥ ଦାସଙ୍କର ଭାଗବତ

ଅଧ୍ୟାୟ ପାଠ କରିବା ପରେ ସମସ୍ତ ବାୟକ ଏବଂ ପାଳିଆମାନେ ଖଂଜଣୀ ଏବଂ ଝଂକାଳ ଗିନି ବଜାଇ ବିଭିନ୍ନ ସ୍ୱରରେ ଭାଗବତ ଆବୃତ୍ତି କରିବା ସଂଗେ ଅନ୍ୟ ଭଜନ ମାନ ଗାନ କରିଥାନ୍ତି । ପ୍ରତ୍ୟେକ ରବିବାର ତ୍ରିନାଥ ମେଳା ଏବଂ ପରିବାରର ଶୁଭତିଥି ଏବଂ ମୃତାହ କାର୍ଯ୍ୟରେ ପ୍ରେତମୁକ୍ତି ପାଇଁ ଖଜଣୀ ମେଳା କରାଯାଇଥାଏ । ଏ ଅଞ୍ଚଳର ମଣ୍ଡଳସିଂହ, ଟାଙ୍ଗିସାହି, ବୋଲଗଡ, ବୁଡା, ସଂପୁର, ଗବଡିହ, ବାଙ୍କୋଇ, ଆରିକମା, ଗର୍ଭଣୀପଡା, ସାନପଦର, ଦେଉଳି ପ୍ରଭୃତି ଗ୍ରାମରେ ସୁପ୍ରସିଦ୍ଧ ଭଜନ ମଣ୍ଡଳୀ ରହିଅଛି । କିଛି ବର୍ଷ ପୂର୍ବରୁ ସ୍ଥାନୀୟ ସମସ୍ତ ଆଦିବାସୀ ଗ୍ରାମ ମାନଙ୍କରେ ସମୂହ ଖଜଣୀ ଭଜନ ମଣ୍ଡଳୀ ଆରମ୍ଭ ହୋଇ ଆଦିବାସୀଙ୍କ ମଧ୍ୟରେ ତାହା ଏକ ଗଣ ଅନୁଷ୍ଠାନରେ ପରିଣତ ହୋଇଅଛି ।

ଦୁଆରୀନାଚ :-

ଗଞ୍ଜାମରୁ ଆନୀତ ଦୁଆରୀ ନାଚ ବୋଲଗଡ ଅଞ୍ଚଳରେ ବିଗତ ୫୦ ରୁ ୭୦ ଦଶକ ମଧ୍ୟରେ ବିଶେଷ ଭାବରେ ପ୍ରଚଳିତ ହୋଇଥିଲା । ବଡ କୁମାରୀ ଗ୍ରାମର ବିଶିଷ୍ଟ ଦୁଆରୀ ନାଚର ମୁଖ୍ୟ କଳାକାର ଗୋବର୍ଦ୍ଧନ ଜେନା (ଚିଲ) ଏ କ୍ଷେତ୍ରରେ ଉଚ୍ଚ ପ୍ରସଂଶା ଲାଭକରିଅଛି । ସଂପୁର, ଖଣ୍ଡୁରିଆ ବଡକୁମାରୀ ଓ ବାୟାପଲ୍ଲୀ ଗ୍ରାମରେ ଦୁଆରୀ ନାଟମେଳ ରହିଅଛି । ଏହି ଦୁଆରୀ ନାଚର ମୁଖ୍ୟ ଚରିତ ମହାଭାରତର ଅର୍ଜୁନ ସହ ସୁଭଦ୍ରାଙ୍କ ପ୍ରେମାଳାପ ଏହାର ମାଧ୍ୟମ ଦୁଆରୀ (ଦ୍ୱାରପାଳ) ର ଏହି ନାଚରେ ଭୂମିକା ସମସ୍ତଙ୍କ ଉର୍ଦ୍ଧ୍ୱରେ । ଏଣୁ ଏହା ବିଶେଷ ସରସ ସୁନ୍ଦର ହୋଇଥାଏ ।

ପାଇକ ଆଖଡା :-

ପାଞ୍ଚଗଡର ପ୍ରାଚୀନ ସାମରିକ ପରମ୍ପରାର ନିଦର୍ଶନ ପାଇକ ଆଖଡା । ବର୍ତ୍ତମାନ ବୋଲଗଡ, ମାଣିକାଗୋଡା, ଖଣ୍ଡୁରିଆ, ସଂପୁର, ଅରଖପଲ୍ଲୀ, ସହଜପୁର ଜରିପଡା ଗୋଡିଆଳୀ, ଚମ୍ପାଇଲୋ, ସାନପଦର ବାଙ୍କୋଇ, ରାସୋଳ, ପୋଡାପାଟଣା, କଡବ, ଆରିକମା ଗ୍ରାମରେ ବହୁପୂର୍ବରୁ ରହିଅଛି । ୧୯୭୯ ମସିହାରେ ରାଉରକେଲା ଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀରେ ଏଠାକାର ବିଶିଷ୍ଟ ପାଇକ ଖେଳାଳୀ ମାନଙ୍କୁ ନେଇ ନନ୍ଦିଘୋଷ ଅନୁଷ୍ଠାନ ତରଫରୁ ଏକପାଇକ ଆଖଡା ଦଳ ସେଠାରେ ଯୋଗଦେଇ ଖ୍ୟାତି ଅର୍ଜନ କରିଥିଲା । ବିଚିତ୍ରାନନ୍ଦ ସାହୁ (ସଂପାଦକ, ଉତ୍କଳ ସମ୍ମୀଳନୀ) ସେତେବେଳେ ନିଜେ ବୋଲଗଡ ଆସି ନନ୍ଦିଘୋଷ କର୍ମକର୍ତ୍ତାମାନଙ୍କ ସହ ଆଲୋଚନା କରି ଏଠାରୁ ପାଇକ ଦଳଙ୍କୁ ନିମନ୍ତ୍ରଣ କରି ନେଇଥିଲେ । ଦୁଇବର୍ଷ ତଳେ ଭଦ୍ରକ ଜିଲ୍ଲାପାଳ ଶ୍ରୀକାନ୍ତ ପାଇକରାୟଙ୍କ ଅନୁରୋଧ

ରେ ସାନପଦର ପାଇକ ଆଖଡା ଦଳ ଭଦ୍ରକ ବୀରାଷ୍ଟମୀ ( ଦଶହରା ମହାଅଷ୍ଟମୀ ) ପାଇକ ଉତ୍ସବରେ ଯୋଗଦେଇ ବିଶେଷ ଖ୍ୟାତି ଅର୍ଜନ କରିଥିଲେ । ଏହାଛଡା ସମସ୍ତ ରାଜ୍ୟସ୍ତରୀୟ ପାଇକ ଆଖଡା ମହୋତ୍ସବରେ ଚମ୍ପାଇଲୋ, ବୋଲଗଡ, କଡବ, ସାନପଦର, ମାଣିକାଗୋଡା ପାଇକ ଆଖଡା ଦଳ ଯୋଗ ଦେଇଛନ୍ତି । ଏ ଅଞ୍ଚଳର ପାଇକ ଗୁରୁଙ୍କ ମଧ୍ୟରେ ୰ ଖଳି ବଳବନ୍ତରାୟ, ୰ ଉଦ୍ୟନାଥ ବଳବନ୍ତରାୟ ୰ ଭାଗବତ ଡିଆଁବାଘ ବୋଲଗଡ, ଲୋକନାଥ ଗଜେନ୍ଦ୍ର ସିଂହ ଖଣ୍ଡୁରିଆ, ୰ ରଘୁନାଥ ବେହେରା ସଂପୁର , ପଞ୍ଚୁ ଖାଁ ମାଣିକାଗୋଡା, ମୋଗଲ ଖାଁ ଅରଖପଲ୍ଲୀ ଏବଂ ରାସୋଳ ଗ୍ରାମର ୰ ମୋହନ ସୁନ୍ଦର ବଳିଆୟସିଂହ ପ୍ରମୁଖ ଅଟନ୍ତି । ମାଣିକାଗୋଡାର ଦଶହରା ପର୍ବରେ ପ୍ରତ୍ୟେକ ବର୍ଷ ପରମ୍ପରା କ୍ରମେ ପାଇକ ଆଖଡା ହୁଏ । ଦଶଦୋଳ ଶତବାର୍ଷିକୀ ମହୋତ୍ସବ ଏବଂ ଖଣ୍ଡାୟତ କ୍ଷତ୍ରିୟ ସମ୍ମିଳନୀରେ ବ୍ଲକ ସ୍ତରୀୟ ପାଇକ ଆଖଡା ପ୍ରଦର୍ଶନ ଅନୁଷ୍ଠିତ ହୋଇଥିଲା । ପାଇକ ପରମ୍ପରାର ଅମର କାବ୍ୟ 'ପାଇକ ଖେଦା'ର ତାଳପତ୍ର ପୋଥି ସର୍ବପ୍ରଥମେ ପୁରୀ ଶ୍ରୀମନ୍ଦିରର ଗବେଷକ ୰ ପଣ୍ଡିତ ସଦାଶିବ ରଥ ଶର୍ମା ବୋଳଗଡରୁ ସଂଗ୍ରହ କରିଥିଲେ ।

ଗୋପାଳ ଇଉଡି ଖେଳ (ଗଉଡବାଡି ଖେଳ) :-

ଏହାକୁ ଗଉଡବାଡି ଖେଳ ମଧ୍ୟ କହନ୍ତି । ବୋଲଗଡ ବ୍ଲକର ସଂପୁର, ମାଣିକାଗୋଡା, ଟିକାତାଳ ଗଉଡସାହି, ଗବଡିହପାଟଣା, ମାଳିସାହି, ବେଣାଗାଡିଆ, ନନ୍ଦପଲ୍ଲୀ, ମର୍ଦ୍ଦାବାଡି, ବ୍ରହ୍ମପୁରା, ମଣ୍ଡଳସିଂହ, କାଉତରା, ଜରିପଡା ଗ୍ରାମରେ ଅନୁଷ୍ଠିତ ହୁଏ । ପ୍ରତ୍ୟେକ ବର୍ଷ ଗୋପାଳ ଜାତିର ଲୋକମାନେ ଏହି ପାରମ୍ପରିକ ପ୍ରଥା ଦୋଳ ପୂର୍ଣ୍ଣମୀ ବେଳେ ପାଳନ କରିଅଛନ୍ତି । ଅଦ୍ୟାବଧି ଏହା ରହିଅଛି । ଖଉରୁଣୀର ଲକ୍ଷ୍ମୀଧର ବେହେରା (ବାଘ) ଏହାର ବର୍ତ୍ତମାନ ସଂଗଠକ ।

ଧୁଡୁକୀ-

ଧୁଡୁକୀ ନାଚ ବା ଘୁଡୁକୀ ନାଚ ଓଡିଶାର ପ୍ରାଚୀନ ଲୋକନୃତ୍ୟ । ଏହି ନାଚରେ ପୁରଷ ଏବଂ ସ୍ତ୍ରୀଙ୍କର ମିଳିତ ନାଚ ଏବଂ ଗାନ ହୁଏ । ଧୁଡିକୀ ଏହାର ମୁଖ୍ୟ ବାଦ୍ୟ ଯନ୍ତ୍ର । ପୁରଷ ଏହା ବଜାଇ ଗୀତ ବୋଲିବା ସଙ୍ଗେ ସ୍ତ୍ରୀଲୋକ କଳାକାରକୁ ନଚାଇଥାଏ । ପୁରାତନ ଧୁଡିକୀ ଆକାଶ ବାଣୀ କଳାକାର ଭାବରେ ଡାବରଧୁଆ ଗ୍ରାମର ହଜାରୀ ସେଠୀ ସୁପ୍ରସିଦ୍ଧ । ବର୍ତ୍ତମାନ ସଂପୁର ଗ୍ରାମର ଯୁବ କଳାକାର ସଦାଶିବ ମହାରଣା ଧୁଡିକୀ ପରିବେଷଣରେ ସାରା ରାଜ୍ୟରେ ସୁନାମ ଅର୍ଜନ କରିଛନ୍ତି । ସେ ଏକାଧାରରେ ରେଡିଓ, ଟିଭି ବିଭିନ୍ନ ବ୍ୟବସାୟିକ ଅଡିଓ କ୍ୟାସେଟ୍ କମ୍ପାନୀରେ ଧୁଡିକି

କଳାକାର ଭାବରେ ବିଶେଷ ପ୍ରତିଭା ଲାଭକରିଛନ୍ତି । ତାଙ୍କର ନାଚିବା ଶୈଳୀ ରେ ସ୍ୱତନ୍ତ୍ରତା ଅଛି ।

ଓଡିଶୀ ସଂକୀର୍ତ୍ତନ -

ମଧ୍ୟ ଯୁଗର ପଞ୍ଚସଖା ଯୁଗ ବିଶେଷ କରି ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ଓଡିଶା ଆଗମନପରେ ଓଡିଶାର ଗ୍ରାମାଞ୍ଚଳରେ ସଂକୀର୍ତ୍ତନର ପ୍ରଭାବ ବିସ୍ତାର ଲାଭ କଲା । ବର୍ତ୍ତମାନ ଓଡିଶାର ବୈଷ୍ଣବ ସାହିତ୍ୟ ଉପରେ ଗବେଷଣା ରତ ବିଶିଷ୍ଟ ଗବେଷକ ପ୍ରାଧ୍ୟାପକ ଶ୍ରୀ ନିମାଇଁ ଚରଣ ପଟ୍ଟନାୟକ ଏକ ନୂତନ ତଥ୍ୟ ପ୍ରଦାନ କରିଛନ୍ତି । ଏହି ତଥ୍ୟ ଅନୁସାରେ ମହାପ୍ରଭୁ ଚୈତନ୍ୟଦେବ ପୁରୀରେ ଅବସ୍ଥାନ କଲାବେଳେ ଥରେ ମାଣିକାଗୋଡା ଆସିଥିଲେ । ସେହି ଦିନ ଠାରୁ ମାଣିକାଗୋଡା ମଠରେ ଚୈତନ୍ୟଦେବ ପୂଜା ପାଉଛନ୍ତି । ଚୈତନ୍ୟଦେବଙ୍କ ଆଗମନ ପରେ ବୋଲଗଡ ଅଞ୍ଚଳରରେ ବହୁ ମଠ ପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ସେଠାରେ ଚୈତନ୍ୟଦେବଙ୍କର ମୂର୍ତ୍ତି ପୂଜା ପାଇ ଏ ଅଞ୍ଚଳରେ ଓଡିଶୀ ସଂକୀର୍ତ୍ତନର ପ୍ରସାର ଲାଭ କରିଥିଲା । ବୋଲଗଡ ମଠର ପୂର୍ବତନ ମହନ୍ତ ଦୟାରାମ ଦାସ ଏହି ସଂକୀର୍ତ୍ତନ ଗୁରୁ ଥିଲେ । ଏହି ପରମ୍ପରାର ଅଧିକାରୀ ପଶ୍ଚିମ ବୋଲଗଡରେ କଳାଙ୍ଗ ଗ୍ରାମରେ ୰ ସନାତନ ମହାପାତ୍ର ପରିବାର (ବ୍ରାହ୍ମଣ) ଅଦ୍ୟାବଧି ଅଛନ୍ତି । ବାଙ୍କୋଇ ଗଡକୁ କେନ୍ଦ୍ରକରି ୨୭ ମୌଜାର ସଂକୀର୍ତ୍ତନର ଅଧିକାରୀ ହାଟବସ୍ତ ଗ୍ରାମର ଗୁରୁଗୋସେଇଁ ଭାବରେ ପରିଚିତ ୰ ବାଞ୍ଛାନିଧି ଦାସଙ୍କ ପରିବାର ଅଟନ୍ତି । ପ୍ରତ୍ୟେକ ଗ୍ରାମରେ ବହୁବର୍ଷ ପୂର୍ବେ ସଂକୀର୍ତ୍ତନ ମଣ୍ଡଳୀ ଥିଲା । କେତେକ ଗ୍ରାମରେ ଏହା ସୀମିତ ଅଛି । କିଛି ବର୍ଷ ପୂର୍ବେ ସ୍ୱର୍ଗତ ସାଧୁଚରଣ ଚୌଧୁରୀଙ୍କ ଦ୍ୱାରା ନୀଳାଚଳ ଓଡିଶା ସଂକିର୍ତ୍ତନ ସଂଘ ଗଢା ଯାଇଥିଲା । ବୋଲଗଡ ନୟାଗଡ ଅଞ୍ଚଳର ସଂକୀର୍ତ୍ତନ ମଣ୍ଡଳୀ ମଧ୍ୟରେ ସମନ୍ୱୟ ରକ୍ଷା କରିବା ଏହାର ମୁଖ୍ୟ ଥିଲେ ମଧ୍ୟ ବସ୍ତୁତହ ଏହା ଅକାମି ହୋଇଯାଇଅଛି । ପ୍ରତ୍ୟେକ ଯାତ୍ରା ମେଳା ଏବଂ ଘରୋଇ ଶୁଭ କାର୍ଯ୍ୟତଥା ମୃତାହ କାର୍ଯ୍ୟରେ ଧାର୍ମିକ ଦୃଷ୍ଟିରୁ ଏହା ଅନୁଷ୍ଠିତ ହୁଏ । ବର୍ତ୍ତମାନ ବୋଲଗଡ ଗ୍ରାମର ଝାନସୀପାଟଣା ମୌଜା, ପଞ୍ଚୁକୋଟ, ବ୍ରହ୍ମପୁରା, ମୁଗମୁଣ୍ଡା, ଚମ୍ପାଇଲୋ, ଅସରଳା, ଘୋରଡିଆ (ଗ୍ରାମେଶ୍ୱର) ପ୍ରଭୃତି ଗ୍ରାମରେ ପ୍ରତ୍ୟେକ ବର୍ଷ ସମୂହ ସଂକୀର୍ତ୍ତନ ମେଳା ଅନୁଷ୍ଠିତ ହେଉଅଛି । ୰ ହଟ ପରିଡା, ୰ ନୀଳକଣ୍ଠ ପରିଡା ବୋଲଗଡ ଗ୍ରାମ ତୃତିୟାପଡା ମେଳର ପୂର୍ବତନ ଗାୟକ ଏବଂ ବାୟକ ଭାବରେ ସୁନାମ ଅର୍ଜନ କରିଥିଲେ । ଡାବରେଧୁଆ ଗ୍ରାମର ଗୌର ସନ୍ୟାସ କୀର୍ତ୍ତନର କବି ଗୁରୁ ସଦାନନ୍ଦ ସାହୁ ଗାୟକ ଭାବରେ ଏବଂ ଅରିକ୍ଷିତ ସାହୁ ବାୟକ ଭାବରେ ୧୦୦ ବର୍ଷ ତଳେ ସୁନାମ ଅର୍ଜନ କରିଥିଲେ । ଫିରିଫିରା ଗ୍ରାମର ଦଣ୍ଡଧର ମୁଦୁଲି, ନାଉପଡା ଗ୍ରାମର

ଅନନ୍ତ ସାହୁ, ପ୍ରସିଦ୍ଧ ଗାୟକ ଥିଲେ । ବର୍ତ୍ତମାନ ବହ୍ଲପୁରା ଗ୍ରାମର ମଗୁଲି ସୁବୁଦ୍ଧି ଓ ମଧୁସୂଦନ ସୁବୁଦ୍ଧି ସଂକୀର୍ତ୍ତନ କ୍ଷେତ୍ରରେ ବିଶେଷ ସୁନାମ ଅର୍ଜନ କରିଛନ୍ତି । ଇତି ମଧ୍ୟରେ ଏକ ରାଜ୍ୟ ସ୍ତରୀୟ ସଙ୍କୀର୍ତ୍ତନ ସଂଘ ରେଜେଷ୍ଟ୍ରିଭୁକ୍ତ ନିକଟସ୍ଥ ବ୍ରହ୍ମପୁରା ଗ୍ରାମରେ ଏହାର ମୁଖ୍ୟ କାର୍ଯ୍ୟାଳୟ ସ୍ଥାପନ ପାଇଁ ଉଦ୍ୟମ ହୋଇଅଛି । ଓଡିଶୀ ଶୈଳୀରେ ସଂକୀର୍ତ୍ତନ ଗାୟନ କ୍ଷେତ୍ରରେ ଗୁରୁ ହଟ ପରିଡାଙ୍କ ପୁତ୍ର ଶ୍ରୀ ସହଦେବ ପରିଡା ସମଗ୍ର ଖୋର୍ଦ୍ଧା ଏବଂ ନୟାଗଡ ଜିଲ୍ଲାରେ ସୁନାମ ଅର୍ଜନ କରିଛନ୍ତି ।

କେନ୍ଦରାଗୀତ :-

ଅସରଳା ଗ୍ରାମର କାଳେନ୍ଦୀ ଯୋଗୀ ଶ୍ରେଣୀର ଲୋକମାନେ କେନ୍ଦରା ବଜାଇ ଟୀକାଗୋବିନ୍ଦ ଚନ୍ଦ୍ର ଗୀତ ଏବଂ ବଉଳା ଗାଈ ଗୀତ ବୋଲି ଭିକ୍ଷା ବୃତ୍ତିକୁ ନିଜର ପେଷା ଭାବରେ ଗ୍ରହଣ କରିଛନ୍ତି । ପୂର୍ବରୁ ବେଣାଗାଡିଆ ଗ୍ରାମର ଯୋଗୀମାନେ ଏହି ପ୍ରଥା ଅବଲମ୍ବନ କରୁଥିଲେ ।

ଭାଟ-

ବୋଲଗଡ ଅଞ୍ଚଳର ଭାଟ ନଥିଲେ ମଧ୍ୟ ପ୍ରତ୍ୟେକ ବର୍ଷ ଦଶହରା ସମୟରେ ବଡମ୍ବା ରାଜ୍ୟରୁ ଭାଟ ଆସି ଏଅଞ୍ଚଳର ଧନୀ ଏବଂ ପ୍ରତିଷ୍ଠିତ ଘରର ଦ୍ୱାରେ ଭାଟ ଡାକ ଦିଅନ୍ତି । ହନୁ ଅର୍ଜୁନ କାଳୀ ଭାଟ ଗୀତର ମୁଖ୍ୟ ଗୀତ । ଏହାଛଡା ଜଗନ୍ନାଥ, ରାଜା ମହାରାଜାଙ୍କର ପ୍ରଶସ୍ତି ଗାନ ଏହି ଗୀତରେ ରହିଅଛି ।

କେଳା ନାଚ (ବାଉଁଶରାଣୀ)-

ସଂପୁରର କେଳା ନାଚ ବା ବାଉଁଶରାଣୀ ନାଚ ବହୁ ପୁରାକାଳରୁ ରହିଅଛି । ଏହି କାର୍ଯ୍ୟକ୍ରମ ଗୋଟିଏ ପରିବାରରେ ସୀମିତ । ଏମାନେ ପରିବାର ସହ ପୂର୍ବେ ବିଭିନ୍ନ ଗଡଜାତ ରାଜାଙ୍କ ଦରବାରରେ କେଳା ନୃତ୍ୟ ପ୍ରଦର୍ଶନ କରି ପ୍ରଶଂସିତ ହୋଇଛନ୍ତି । ୰ ଭାଲୁ ସିଂହ ସଂପୁର କେଳା ନାଚର ଜଣେ ପ୍ରଖ୍ୟାତ ବାଦ୍ୟକାର ଥିଲେ । ଖୁରୁଧା ଦର୍ପଣରେ ସଂପୁର କେଳାଙ୍କ ବିଷୟରେ ମଧ୍ୟ ବର୍ଣ୍ଣନା ରହିଅଛି ।

ମଙ୍ଗଳ ଚଣ୍ଡୀଆ-

ବିଶେଷ କରି ଆଶ୍ୱିନ ମାସ ଏବଂ ଚୈତ୍ର ମାସରେ ଦେବୀଙ୍କର ଶରତ କାଳୀନ ପୂଜା ଏବଂ ବସନ୍ତ କାଳୀନ ପୂଜା ବେଳେ ହରିଜନ ଶ୍ରେଣୀର ପାଣ, ତଆଁଳା ଜାତିର ଲୋକମାନେ ଏହି ପର୍ବ ପାଳନ କରି ଠାକୁରାଣୀଙ୍କ ଘଟ କଳସ ଗ୍ରାମ ପରିକ୍ରମାକରି

ଭିକ୍ଷା ସଂଗ୍ରହ କରନ୍ତି । ନିକଟସ୍ଥ ଖଣ୍ଡପଡା ଅଞ୍ଚଳର ଗୋପାଳ ପ୍ରସାଦ ଗ୍ରାମର ତଅଁଳା ଜାତିର ଲୋକମାନେ ଏକ ଛୋଟ ଭାରରେ ମଙ୍ଗଳାଙ୍କୁ ଧରି ଘଣ୍ଟ ବଜାଇ ପ୍ରତ୍ୟେକ ସାହିରେ ଭିକ୍ଷା ମାଗି ପ୍ରତିପୋଷଣ ହୋଇଥାନ୍ତି । ମାଳିସାହି, ପଙ୍କାଳ ସାହି, ଗୋପାଳିପଡା ଗ୍ରାମର ହରିଜନ ଶ୍ରେଣୀର ଲୋକମାନେ ଏହି ପ୍ରଥା ଆଶ୍ୱିନ ଏବଂ ଚୈତ୍ର ମାସରେ ପ୍ରଚଳନ କରି ବିଭିନ୍ନ ଗ୍ରାମ ପରିକ୍ରମା କରିଥାନ୍ତି । ଏହାଛଡା ବୋଇଗଡ ଅଞ୍ଚଳକୁ କାକଟପୁର ମଙ୍ଗଳାଙ୍କର କାଳିସୀ ବେଳେ ବେଳେ ଆସି ଗ୍ରାମ ପରିକ୍ରମା କରି ମଙ୍ଗଳାଙ୍କର ସନ୍ଦେଶ ପ୍ରଚାର କରିଥାଆନ୍ତି ।

ଜାନୁଘଣ୍ଟିଆ -

ଜାନୁଘଣ୍ଟ ପର୍ଶୁରାମ ବେଶ ସାଜି ବେଳେ ବେଳେ ଗ୍ରାମ ଦାଣ୍ଡରେ ରାମ ପର୍ଶୁରାମ ଭେଟ ହୋଇ ଭିକ୍ଷା ଗ୍ରହଣ କରିଥାନ୍ତି । ଏହା ଛଡା ଖଣ୍ଡପଡା ଅଞ୍ଚଳର ବାଇଗୁଣିଆ ଗ୍ରାମର ଜାନୁ ଘଣ୍ଟିଆ ବାବା ସବୁବେଳେ ସଂକ୍ରାନ୍ତି ପୂର୍ଣ୍ଣମୀ ତିଥିରେ ବୋଲଗଡ ଅଞ୍ଚଳକୁ ଆସି ପ୍ରଭୁ ଶ୍ରୀରାମଙ୍କର ଜୟଗାନ କରି ଭିକ୍ଷାବୃତ୍ତି କରି ଦାତାମାନଙ୍କୁ କଲ୍ୟାଣ କରିଥାଆନ୍ତି ।

ଏମାନେ ପର୍ଶୁରାମ ପନ୍ଥୀ ଭାବରେ ଜଣାଶୁଣା । ଏମାନେ ଜଂଘରେ ଏକ ପିତଳ ଘଣ୍ଟି ବାନ୍ଧି କ୍ଷୀପ୍ର ଗତିରେ ଦାଣ୍ଡରେ ଯିବା ଆସିବା କରିବା ସମୟରେ ଏହି ଘଣ୍ଟି ଶବ୍ଦ ପରିବାରରେ ଜାନୁଘଣ୍ଟିଆ ଆସିଥିବାର ଜଣାଯାଇଥାଏ

ଚକୁଳିଆ ପଣ୍ଡା -

ପ୍ରତ୍ୟେକ ସଂକ୍ରାନ୍ତିରେ ରାତି ପାହିଲା ପୂର୍ବରୁ ଚକୁଳିଆ ପଣ୍ଡାର ଗୀତ ସାହିରେ ଶୁଣାଯାଏ । ସେମାନେ ଏକ ତାଳ ଛତା ଏବଂ ଲାଉଡ଼ମ୍ବ ଧରି ଗୀତ ବୋଲି ପରିବାରର ମଙ୍ଗଳ କାମନା ସହ ଭିକ୍ଷା ଗ୍ରହଣ କରିଥାଆନ୍ତି । ଏହାକୁ ଲୋକ ପ୍ରଚାରର ଏକ ମାଧ୍ୟମ ଭାବରେ ଆଜିକାଲି ଦୂରଦର୍ଶନ ପରଦାରେ ଚକୁଳିଆ ପଣ୍ଡା ଚରିତ୍ରକୁ ଦିଆଯାଉଅଛି ।

ଉପରୋକ୍ତ ଲୋକସଂସ୍କୃତି ପୁନରୁଦ୍ଧାର ପାଇଁ ସର୍ବପ୍ରଥମେ ୧୯୭୮ ମସିହାରେ 'ନନ୍ଦିଘୋଷ' ସାଂସ୍କୃତିକ ଅନୁଷ୍ଠାନ ଗଠନ ପରେ ପ୍ରତିବର୍ଷ ଅକ୍ଷୟ ତୃତୀୟା ତିଥୀରୁ ବିଭିନ୍ନ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା । ବିଶେଷ କରି 'ଆଶା ମେମୋରିଆଲ ଟ୍ରଷ୍ଟ' ଭୁବନେଶ୍ୱର ଆନୁକୂଲ୍ୟରେ ୨୦୦୪ ଶେଷ ଭାଗରେ ଅନୁଷ୍ଠିତ

ବହୁ ପ୍ରତୀକ୍ଷିତ ବୋଲଗଡ ମହୋତ୍ସବ ଅବସରରେ ବୋଲଗଡ ବ୍ଲକ ଅଞ୍ଚଳରେ ବହୁ ପୂର୍ବରୁ ଥିବା ଉପରୋକ୍ତ ସମସ୍ତ ପ୍ରାଚୀନ ଲୋକସଂସ୍କୃତିର ପ୍ରଚାର ହଜାର ହଜାର ଲୋକଙ୍କୁ ବିମୁଗ୍ଧ କରିଅଛି ।



## ଜାନୀଯାତ୍ରା

ହିନ୍ଦୁ ସଂସ୍କୃତିରେ ବିବିଧ ପର୍ବପର୍ବାଣୀ ମେଳା, ମହୋତ୍ସବ, ଯାତ୍ରା, ପୂଜା ପାଠ, ହୋମ, ଯଜ୍ଞାଦି ସାଂସ୍କୃତିକ କାର୍ଯ୍ୟକ୍ରମକୁ ପରିପୁଷ୍ଟ ଏବଂ ବିକଶିତ କରେ । ସାମାଜିକ ଜୀବନର ଏହି ସବୁ ଅଂଶ ସ୍ୱରୂପ ଅଟନ୍ତି । ଏହା ଦ୍ୱାରା ଆମେ ସମାଜକୁ, ପରିବାରକୁ ଓ ଗ୍ରାମ୍ୟ ବ୍ୟବସ୍ଥାକୁ ଜାଣୁ ଏବଂ ଏଥିସହିତ ନିଜର ସମ୍ବନ୍ଧ ଯୋଡି ଥାଉ । ଯୁଗ ଯୁଗ ଧରି ଆମ ସାମାଜିକ ଜୀବନ ଏହି ପରମ୍ପରାକୁ ଆଧାର କରି ପରିଚାଳିତ ଏବଂ ନିୟନ୍ତ୍ରିତ ହୋଇଅଛି ।

ତିନିଦୋଳ -

ଏହି କ୍ରମରେ ବୋଲଗଡ ଅଞ୍ଚଳରେ ପଶ୍ଚିମ ବୋଲଗଡର ୬ ବିଶ୍ୱା ଅଞ୍ଚଳର ଇଷ୍ଟ ଦେବ ମାଳିସାହି ସୋମନାଥ ଦେବଙ୍କ ଅଧକ୍ଷତାରେ ବୋଲଗଡ ଅଞ୍ଚଳର ସର୍ବପୁରାତନ ଦୋଳ ମେଳନ ୧୮୭୨ ମସିହାରେ ଆରମ୍ଭ ହୋଇଥିବା କଥା ୰ ସାଧୁଚରଣ ଚୈଧୁରୀ ତାଙ୍କ ଦ୍ୱାରା ଲିଖିତ ବୋଲଗଡ ଇତିହାସ (ପାଣ୍ଡୁଲିପି)ରେ ଦର୍ଶାଇଛନ୍ତି । ଏହି ମେଳନର ପରିଚାଳନା କମିଟିରେ ହିନ୍ଦୁ ମୁସଲମାନ ସମ୍ପ୍ରଦାୟର ମୁଖ୍ୟ ମାନଙ୍କର ବହୁଦିନର ଯୋଗଦାନ ଏ ଅଞ୍ଚଳର ଭାଇଚାରା ଭାବର ଶ୍ରୀବୃଦ୍ଧି କରିଅଛି । ଶ୍ରୀ ସୋମନାଥ ଦେବ ଏହି ମେଳର ସ୍ଥାନାଧିପତି ଅଟନ୍ତି । ଏହି ମେଳନରେ ମାଳିସାହି, ଦିବ୍ୟସିଂହପୁର ଶାସନ, କଳାଙ୍ଗ, ଫିରିଫିରା, ଗୋଡଭଙ୍ଗା, ନାଉପଡା, ଗୋବର୍ଦ୍ଧନପୁର, ସଂପୁର, ଫାସିଓଦା, ଦିଘିରି, ବୃନ୍ଦାବନପୁର, କୋଟପଲ୍ଲୀ, କୁଶୁପଲ୍ଲୀ, ମଣ୍ଡଳସିଂହ, କାଉତରା ଏବଂ ପଞ୍ଚୁକୋଟ ପ୍ରଭୃତି ଗ୍ରାମରୁ ଠାକୁରମାନେ ସମାବେଶ ହୋଇଥାନ୍ତି ।

## ଦଶଦୋଳ - (ପନ୍ଦର ଦୋଳ)

ମାଣିବନ୍ଧ ଅଞ୍ଚଳର ପଞ୍ଚପଲ୍ଲୀର ଠାକୁରମାନେ ସ୍ଥାନାଧିପତି ମାଣିକ୍ୟଶ୍ୱରଙ୍କ ଅଧିନାୟକତ୍ୱରେ ଏକାଠି ହୋଇ ମାଣିବନ୍ଧ ଗ୍ରାମରେ ଦଳଦୋଳ ମେଳନ ଅନୁଷ୍ଠିତ ହୁଏ । ଏହାର ବିଶେଷତ୍ୱ ହେଲା - ଠାକୁର ଦିନବେଳେ ମେଳନ ହୁଅନ୍ତି ଏବଂ ଉପସ୍ଥିତ ହଜାର ହଜାର ଲୋକ ଫଗୁ ଖେଳି ଆନନ୍ଦ ଉପଭୋଗ କରିଥାନ୍ତି ।

ବୋଲଗଡ ୧୨ ପଲ୍ଲୀକୁ କେନ୍ଦ୍ରକରି ଅନୁଷ୍ଠିତ ଦଶ ଦୋଳ ଯାତ୍ରା ୧୦୦ ବର୍ଷର ପୂର୍ତ୍ତୀ ୨୦୦୩ ମସିହାରେ ପାଳନ କରିଅଛି । ଖଇରିଆ ଗ୍ରାମର ଅମୃତେଶ୍ୱର ଦେବ ଏହି ଯାତ୍ରାର ସ୍ଥାନାଧିପତି ଅଟନ୍ତି । ବୋଲଗଡ ର ପୂର୍ବତନ ମଠ ମହନ୍ତ ୰ ଦୟାରାମ ଦାସ ଏହି ଯାତ୍ରା ୧୨ ପଲ୍ଲୀ ଅଞ୍ଚଳର ମୁଖ୍ୟମାନଙ୍କ ସହଯୋଗରେ ୧୯୦୪ ମସିହାରେ ଆରମ୍ଭ କରିଥିଲେ । ତା ୨୯-୦୩-୨୦୦୩ ଦିନ ରାଜ୍ୟ ରାଜସ୍ୱ ମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ଏବଂ ବିଧାୟକ ପ୍ରଶାନ୍ତ ନନ୍ଦ ମହୋତ୍ସବର ୭ ଦିନ ବ୍ୟାପି ଉଦଘାଟନ ଉତ୍ସବରେ ଯୋଗଦାନ ସହ ଉଦଯାପନ ଦିବସରେ ରାଜ୍ୟ କ୍ରୀଡା ମନ୍ତ୍ରୀ ରଣେନ୍ଦ୍ର ପ୍ରତାପ ସ୍ୱାଇଁ ଏବଂ ପୂର୍ବତନ ବିଧାୟକ ସୁରେନ୍ଦ୍ର ମିଶ୍ର ଯୁବ ନେତା ସଂଜୀବ ପାଇକରାୟଙ୍କର ଯୋଗଦାନ ଏହି ମହୋତ୍ସବକୁ ସରସ ସୁନ୍ଦର କରିପାରିଅଛି । ସର୍ବଶ୍ରୀ ବ୍ରଜକିଶୋର ରାୟ, ସୀତାକାନ୍ତ ବିଧାର, ଦାଶରଥି ମହାପାତ୍ର, ପରମାନନ୍ଦ ସୁବୁଦ୍ଧି ମହାପାତ୍ର, ବାସୁଦେବ ପଟ୍ଟନାୟକ, କୃଷ୍ଣମୋହନ ପାଇଟାସିଂହ, ବୈକୁଣ୍ଠ ମହାପାତ୍ର, ବସନ୍ତ ଚୌଧୁରୀ, ଶତ୍ରୁଘ୍ନ ପ୍ରଧାନ, ଜୟକୃଷ୍ଣ ପରିଡାଙ୍କ ସହ ବାରପଲ୍ଲି ଭାଇମାନଙ୍କର ଅକୁଣ୍ଠ ସହଯୋଗ ଶତବାର୍ଷିକ ଉତ୍ସବର ସଫଳତାକୁ ସୁଦୃଢ କରିପାରିଅଛି । ଏହି ଶତବାର୍ଷିକ ଅମୃତ ମହୋତ୍ସବର ଅବସରରେ ପ୍ରକାଶ ପାଇଥିବା ସ୍ମରଣୀକାର ତଥ୍ୟ ନିମ୍ନରେ ଦିଆଗଲା । ୧୯୭୮ ମସିହାରୁ ଦଶଦୋଳ ପରିବର୍ତ୍ତନ କରାଯାଇ ପନ୍ଦରଦୋଳ ଯାତ୍ରା କରାଯାଇଅଛି ।

### ଦୋଳ ଉତ୍ସବ - (ଲେ.-ଶ୍ରୀ ରଘୁନାଥ ସେଠୀ )

ବୋଲଗଡରେ ଏହି ଦୋଳ ଉତ୍ସବ ୧୯୦୪ ରୁ ଆରମ୍ଭ ହୋଇଛି । ଏହା ପ୍ରଥମେ ଦଶ ଦୋଳ ରୂପେ ପାଳିତ ହେଉଥିଲା । ସ୍ଥାନୀୟ ସୁବିଧା ଅନୁସାରେ ଏହାକୁ ୧୫ ଦୋଳକୁ ଘୁଞ୍ଚାଇ ଦିଆ ଯାଇଅଛି । ବୋଲଗଡ ଅଞ୍ଚଳର ବାରପଲ୍ଲୀ ମୌଜାକୁ ନେଇ ଏହି ଯାତ୍ରା ଅନୁଷ୍ଠିତ ହୁଏ ଖଇରିଆ ମୌଜାରେ ବିଜେ ଶ୍ରୀ ଶ୍ରୀ ଅମୃତେଶ୍ୱର ଦେବ ଏହିଯାତ୍ରାର ଅଧିପତି ଅଟନ୍ତି । ଏହିଯାତ୍ରାକୁ ବୋଳଗଡର ସମସ୍ତ ଠାକୁର ଖଇରିଆ ଗ୍ରାମ, ଡାବରଧୁଆପାଟଣା, ବୁଡା, ରୋଳସିଂ, ମର୍ଦ୍ଦାବାଡି ଗ୍ରାମରୁ ଠାକୁରମାନେ ମହାସମାରୋହରେ ଦୋଳ ପଡିଆକୁ ବିଜେ କରନ୍ତି । ଠାକୁରମାନଙ୍କ

ମେଳଣ ହେବାପରେ ମହାସମାରୋହରେ ନିଜନିଜ ପୀଠକୁ ଫେରିଥାନ୍ତି । ଏହି ଦୋଳ ଉତ୍ସବ ବୋଲଗଡ ଅଞ୍ଚଳର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ହୁଏ । ବୋଲଗଡର ପଶ୍ଚିମରେ ମାଳିସାହି ଠାରେ ତିନି ଦୋଳ ହୁଏ । ଏଠାକୁ ମାଣିକାଗୋଡା, କଳାଙ୍ଗ, ଫୀଣୀଓଦା, ଭୀମପଡା, କଳାମାଟିଆ , କାଉତରା, ଦିଘିରି , ନାଉପଡା, ଗୋଡଭଙ୍ଗା , ଗୋବର୍ଦ୍ଧନ ପୁର ଗ୍ରାମର ଠାକୁରମାନଙ୍କୁ ନେଇ ଏହି ତିନିଦୋଳ ଅନୁଷ୍ଠିତ ହୋଇଥାଏ । ଏହିମେଳାର ଅଧିପତି ଦେବତା ଶ୍ରୀ ଶ୍ରୀ ସୋମନାଥ ଦେବ । ବୋଇଗଡର ପୂର୍ବରେ ପିଚୁକୁଳି ଠାରେ ପଞ୍ଚୁଦୋଳ ଅନୁଷ୍ଠିତ ହୁଏ । ଏଠାକୁ ସାନପଦର, କଡବ, ଗୋପାଳପୁର, ପିଚୁକୁଳି ଆଦି ଗ୍ରାମର ଠାକୁରମାନେ ଆସନ୍ତି । ଏହି ଯାତ୍ରାର ଅଧିପତି ହେଉଛନ୍ତି ନୀଳକଣ୍ଠେଶ୍ୱର ଦେବ । ମାଣିବନ୍ଧ ଠାରେ ଦଶଦୋଳ ଯାତ୍ରା ହୁଏ । ଏହାର ଅଧିପତି ହେଉଛନ୍ତି ମାଣିକେଶ୍ୱର ଦେବ । ଧଳାପଥର, ଗେଡିଆପଲ୍ଲୀ, ମାଣିବନ୍ଧ ଆଦି ଗ୍ରାମରୁ ଠାକୁରାଣୀ ଏଠାକୁ ବିଜେ କରନ୍ତି । ବାଙ୍କୋଇ ଠାରେ ପଞ୍ଚୁ ଦୋଳ ଅନୁଷ୍ଠିତ ହୁଏ । ଶ୍ରୀ ଶ୍ରୀ ତାରେଶ୍ୱର ଦେବ ଏହି ଯାତ୍ରାର ଅଧିପତି ଅଟନ୍ତି । ୨୭ ମୌଜାକୁ ନେଇ ଯାତ୍ରା ଅନୁଷ୍ଠିତ ହୁଏ । ଏଠାକୁ ବଡକୁମାରୀ ସାଗରଗୁଆଁ, ଅସରଳା, ଆରିକମା ଆଦି ଗ୍ରାମରୁ ଠାକୁରମାନେ ଆସନ୍ତି । ସାଗରଗୁଆଁ ଠାରେ ତିନି ଦୋଳ ହୁଏ । ଏହାର ଅଧିପତି ଠାକୁର ଶ୍ରୀ ଶ୍ରୀ ନୀଳକଣ୍ଠେଶ୍ୱର ଦେବ ଅଟନ୍ତି । ଏହି ଯାତ୍ରାକୁ ଗୋଡିଆଳି ବାଲସିଂହ,ଜରିପଡା , ପୋଡାପାଟଣା ଏବଂ ସହଜପୁରଗ୍ରାମରୁ ଠାକୁରମାନେ ଆସିଥାନ୍ତି । ରାଜସୁନାଖଳା ଠାରେ ଫୁଲଦୋଳ ଅନୁଷ୍ଠିତ ହୁଏ (ପୂର୍ଣ୍ଣମୀଦିନ ) ଏଠାକୁ ରାଜସୁନାଖଳା , କପାସିଆ, କାଉଁରିପାଟଣା, ସାନକୁମାରୀ, ବଡକୁମାରୀ ଆଦି ଗ୍ରାମରୁ ଠାକୁରମାନେ ବିଜେ କରନ୍ତି ।

ବୋଇଗଡ, ବେଗୁନିଆ, ଖୋର୍ଦ୍ଧା ଅଞ୍ଚଳରେ ପ୍ରତ୍ୟେକ ଗ୍ରାମ କୌଣସି ନା କୌଣସି ଯାତ୍ରାରେ ଠାକୁରମାନଙ୍କ ସହ ଗ୍ରାମବାସୀମାନେ ବହୁସଂଖ୍ୟାରେ ଯୋଗଦାନ କରିଥାନ୍ତି । ସେପରି ଖଣ୍ଡପଡା, ନୟାଗଡ ଅଞ୍ଚଳରେ ମଧ୍ୟ ଏହି ଦୋଳ ଉତ୍ସବ ପାଳିତ ହୋଇଥାଏ । ଏହି ଦୋଳ ଉତ୍ସବ ଏକ ସାର୍ବଜନୀନ ସାଂସ୍କୃତିକ ମିଳନ ପୀଠ ଅଟେ । ଏହି ଉତ୍ସବ ଆମକୁ ଏକତା, ସଂଗଠନ, ଧର୍ମରକ୍ଷା ଏବଂ ତ୍ୟାଗ ତପସ୍ୟା ଶିକ୍ଷା ଦେବା ସଙ୍ଗେ ସଙ୍ଗେ ଐତିହାସିକ ପରମ୍ପରାକୁ ସୁରକ୍ଷା ଦେବା ସହିତ ଧର୍ମ ଭାବନାକୁ ଜାଗ୍ରତ କରାଇଥାଏ । ଏହି ଉତ୍ସବ ସଂସ୍କୃତିର ପ୍ରାଣ ଅଟେ । ପ୍ରାଣ ରହିଲେ ଜୀବ ରହିବ । ସଂସ୍କୃତି ରହିଲେ ରାଷ୍ଟ୍ର ରହିବ । ସଂସ୍କୃତି ଗଲେ ରାଷ୍ଟ୍ର ନାଶ ହୋଇଯିବ । ଏଣୁ ଆସ ଆମେ ସମସ୍ତେ ମିଳିମିଶି ରାଷ୍ଟ୍ର ସମୃଦ୍ଧି ପଥରେ ଆଗେଇନେବା ପାଇଁ ଧର୍ମ ସଂସ୍କୃତିକୁ ରକ୍ଷା କରିବା । ଯାତ୍ରା ପାଳନ ପାଇଁ ତନ-ମନ-ଧନ ଅର୍ପଣ କରି ସମାଜକୁ ଧନ୍ୟ କରିବ । ଦୋଳ ଉତ୍ସବ ଛଡା ବାଙ୍କୋଇ ତାରେଶ୍ୱର ଦେବଙ୍କ ପୀଠରେ ଅନୁଷ୍ଠିତ ଜାଗର

ଯାତ୍ରା ଏ ଅଞ୍ଚଳର ଏକ ପ୍ରଧାନ ମେଳା । ଏହି ଯାତ୍ରାରେ ହଜାର ହଜାର ଲୋକ ଜାଗର ତିଥି ରାତିରେ ଜାଗର ଜାଳିବା ସହ ପରବର୍ତ୍ତି ୭ ଦିନ ଧରି ଏଠାରେ ପ୍ରବଳ ଜନଗହଳି ହୋଇଥାଏ ।

ଚନ୍ଦନ ଯାତ୍ରା -

ପୂର୍ବରୁ ବୋଲଗଡରେ ଅନୁଷ୍ଠିତ ଚନ୍ଦନ ଯାତ୍ରାକୁ କେନ୍ଦ୍ରକରି ହୋଇଥିବା ମାଲିମକଦ୍ଦମାର ଅବସାନ ପରେ ୧୯୧୦ ମସିହାରୁ ୰ ଦୟାନିଧି ମହାପାତ୍ର ଏବଂ ତାଙ୍କ ପୁତ୍ର ୰ ବାମନ ମହାପାତ୍ର କୁଞ୍ଜବିହାରୀ ଦେବଙ୍କ ଚନ୍ଦନ ଯାତ୍ରା ମହାସମାରୋହରେ ଆରମ୍ଭ କରିଥିଲେ । ଏହାକୁ ଭଉଁରୀ ଯାତ୍ରା ମଧ୍ୟ କୁହାଯାଏ । ବୋଲଗଡ ଭଉଁରୀ ଯାତ୍ରାର ପ୍ରସିଦ୍ଧି ନିକଟସ୍ଥ ନୟାଗଡ, ଖଣ୍ଡପଡା, ରଣପୁର, ଦଶପଲ୍ଲା, ବଡମ୍ବା, ନରସିଂହପୁର, ଖୋର୍ଦ୍ଧା, ଜଟଣୀ ଅଞ୍ଚଳକୁ ବ୍ୟାପି ଯାଇଥିଲା । ୨୧ ଦିନ ଧରି ଗୋଟିପୁଅ ନାଚ ଓଡିଶାର ସମସ୍ତ ପୁରାତନ ଅପେରା ଦଳର ନାଟକ ପ୍ରଦର୍ଶନ ସହ ବିଭିନ୍ନ ଆତସବାଜି ପ୍ରତିଯୋଗିତା ଏବଂ ସୁସଜ୍ଜିତ ମେଢ ପ୍ରସେଶନ ଯାତ୍ରାକୁ ସରସ ସୁନ୍ଦର କରୁଥିଲା । ବର୍ତ୍ତମାନ ଠାକୁରଙ୍କ ଜମିର ଆୟ କମିବା ସଂଗେ ସଂଗେ ସାମ୍ପ୍ରତିକ ସାମାଜିକ ପରିବର୍ତ୍ତିତ ପରିସ୍ଥିତି ପୂର୍ବ ଚନ୍ଦନ ଯାତ୍ରାର ଶ୍ରୀ ହରାଇ ଦେଇଅଛି ।

ରଜଯାତ୍ରା -

୧୯୧୪ ମସିହାରୁ ବୋଲଗଡରେ ଅନୁଷ୍ଠିତ ରାମଚଣ୍ଡୀ ଦେବୀଙ୍କର ରଜଯାତ୍ରା ଏକ ଗଣ ଯାତ୍ରା । ୪ ଦିନ ଧରି ସାଂସ୍କୃତିକ କାର୍ଯ୍ୟକ୍ରମ ସହ ଠାକୁରାଣୀଙ୍କ ବିଜେ ଏବଂ ବାହୁଡା ପ୍ରସେଶନରେ ଆବାଳ ବୃଦ୍ଧଙ୍କର ସହଯୋଗ ଏହାକୁ ସରସ ସୁନ୍ଦର କରିଥାଏ । ଏହାଛଡା ରାସୋଳ, ଆରିକିମା, ବେଣାଗାଡିଆ, ସଂପୁର ଗ୍ରାମରେ ମଧ୍ୟ ରଜଯାତ୍ରା ଅନୁଷ୍ଠିତ ହୁଏ ।

କାର୍ତ୍ତିକ ପୂର୍ଣ୍ଣମୀ ଯାତ୍ରା -

ପ୍ରତିବର୍ଷ ଏହି ତିଥିରେ ଡାବରଧୁଆ ପାଟଣା, ରୋଲସିଂହ, ମଣ୍ଡଳସିଂହ, ମାଣିକାଗୋଡା, ଯୋଡାପଡା, ଝିକିମିକି ଏବଂ ମୁଣ୍ଡିଆପଡା ସହ ଅରଖପଲ୍ଲୀ ଏବଂ ଜଖଲା ମହାବୀର ଆଶ୍ରମରେ କାର୍ତ୍ତିକ ପୂର୍ଣ୍ଣିମା ଯାତ୍ରା ଅନୁଷ୍ଠିତ ହୋଇଥାଏ । ରୋଲସିଂହ ଏବଂ ମଣ୍ଡଳସିଂହ ଗ୍ରାମରେ ଏହି ଯାତ୍ରାରେ ବିଶେଷ ଗହଳି ଦେଖାଯାଏ ।

ଧନୁଯାତ୍ରା -

ବୋଲଗଡର ବନଦୁର୍ଗା ଭୂୟାଁ ଠାକୁରାଣୀଙ୍କ ପୀଠରେ ୧୯୯୦ ମସିହାରୁ ସ୍ଥାନୀୟ ଯୁବକ ମାନଙ୍କ ସହଯୋଗରେ ଧନୁଯାତ୍ରା ଅନୁଷ୍ଠିତ ହେଉଛି । ଧାନକଟା ପରେ ଏହା ଏ ଅଞ୍ଚଳର ସର୍ବପ୍ରଥମ ଯାତ୍ରା ହୋଇଥିବାରୁ ଏଥିରେ ପ୍ରବଳ ଜନସମାଗମ ହୁଏ ।

ରଥଯାତ୍ରା -

୨୦୦୧ ମସିହାରୁ ବୋଲଗଡ ଅଞ୍ଚଳର ଜନସାଧାରଣଙ୍କ ସହଯୋଗରେ ସ୍ଥାନୀୟ ତୃତୀୟା ଦେବ (ଜଗନ୍ନାଥ) ଙ୍କର ରଥଯାତ୍ରା ଅନୁଷ୍ଠିତ ହେଉଅଛି । ଗୋଟିଏ ରଥରେ ୩ ଠାକୁର ବିଜେକରି ବୋଲଗଡ ମଧ୍ୟସ୍ଥଳ ଜଗନ୍ନାଥ ମନ୍ଦିରରୁ ବିରାଟ ଶୋଭାଯାତ୍ରାରେ ବସଷ୍ଟାଣ୍ଡ ନିକଟସ୍ଥ (ନନ୍ଦିଘୋଷ ଭବନ) ଗୁଣ୍ଡିଚା ଘରେ ୯ ଦିନପାଇଁ ଅବସ୍ଥାନ କରିନ୍ତି । ଏହାପୂର୍ବରୁ ପୁଆଣିଆ ଗ୍ରାମରେ ପୂର୍ବତନ ଶିକ୍ଷକ ପ୍ରଫୁଲ ପଟ୍ଟନାୟକଙ୍କ ପିତାଙ୍କ ଉଦ୍ୟମରେ ବହୁ ବର୍ଷ ଧରି ରଥଯାତ୍ରା ଅନୁଷ୍ଠିତ ହୋଇ ଆସୁଅଛି । ଏହାଛଡା ଏ ଅଞ୍ଚଳର ସାନପଦର, ବୋଲଗଡ, ମାଣିକାଗୋଡା ପ୍ରଭୃତି ଗ୍ରାମରେ ଦଶହରା ସମୟରେ ଦୁର୍ଗା ପୂଜୋତ୍ସବ ମହାସମାରୋହରେ ପାଳନ କରାଯାଇଥାଏ ।

ପଣା ସଂକ୍ରାନ୍ତି -

ଓଡିଆ ନବବର୍ଷ ପଣା ସଂକ୍ରାନ୍ତିରୁ ଆରମ୍ଭ ହୋଇଥାଏ । ଏହି ସଂକ୍ରାନ୍ତି ତିଥିରେ ସ୍ଥାନୀୟ ଦଣ୍ଡଯାତ୍ରା ହେଉଥିବା ଗ୍ରାମମାନଙ୍କରେ ଦଣ୍ଡଯାତ୍ରାର ଉଦ୍‌ଯାପନ ପର୍ବ ଥିବାରୁ ସେଠାରେ ପ୍ରବଳ ଗହଳି ଦେଖାଯାଏ । ଏହାଛଡା ବୋଲଗଡ ବ୍ଲକ ସନ୍ନିକଟ ବେଗୁନିଆ ବ୍ଲକର ଡିଙ୍ଗର ଗ୍ରାମର ପଣାଯାତ୍ରା ସମଗ୍ର ଖୋର୍ଦ୍ଧା ଜିଲ୍ଲାରେ ପ୍ରସିଦ୍ଧି ଲାଭ କରିଅଛି ।

ଗିରିଗୋବର୍ଦ୍ଧନ ଉତ୍ସବ -

ବୋଲଗଡ ବ୍ଲକର ଦେଉଳି ଗ୍ରାମବାସୀଙ୍କ ସହଯୋଗରେ ଗିରି ଗୋବର୍ଦ୍ଧନ ଉତ୍ସବ ମହାସମାରୋହରେ ତିନି ଦିନ ଧରି ପାଳନ କରାଯାଇଥାଏ । ଆକର୍ଷଣୀୟ ପ୍ରସେସନ ଏବଂ ସ୍ଥାନୀୟ ଯୁବକ ମାନଙ୍କ ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ ଉତ୍ସବକୁ ସରସ ସୁନ୍ଦର କରିଥାଏ ।

ଜାଗର ଯାତ୍ରା -

ବୋଲଗଡ ଅଞ୍ଚଳର ପ୍ରସିଦ୍ଧ ଶିବପୀଠ ବାଙ୍କୋଇ ତାରେଶ୍ୱର ଦେବଙ୍କ ପୀଠରେ ବହୁବର୍ଷ ପୂର୍ବରୁ ଜାଗର ଯାତ୍ରା ମହାସମାରୋହରେ ପାଳିତ ହୋଇଆସୁଅଛି । ସେହିଦିନ ଜାଗର ଜାଳିବା ସହ ଠାକୁରଙ୍କ ମହାଦୀପ ଦେଖିବାପାଇଁ ଭକ୍ତଙ୍କର ପ୍ରବଳ ଭୀଡ ହୋଇଥାଏ । ଏହି ଯାତ୍ରା ସାତ ଦିନ ଧରି ଚାଲେ ।

ଦଶହରା -

ବର୍ତ୍ତମାନ ଦଶହରା ଉତ୍ସବରେ ମୃଣ୍ମୟୀ ଦୁର୍ଗାଙ୍କର ପୂଜା ଗ୍ରାମାଞ୍ଚଳରେ ବଢ଼ିବାରେ ଲାଗିଛି । ଏହି କ୍ରମରେ ବୋଲଗଡ ଗ୍ରାମର ତିନିଗୋଟି ସ୍ଥାନରେ ଦୁର୍ଗା ପୂଜା ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଧରି ପାଳନ ହୋଇଆସୁଛି । ଏହାଛଡା ସାନପଦର ଗ୍ରାମରେ ଅନୁଷ୍ଠିତ ଦୁର୍ଗାପୂଜା ଏ ଅଞ୍ଚଳରେ ବିଶେଷ ପ୍ରସିଦ୍ଧି ଲାଭ କରିଅଛି । ମାଣିକାଗୋଡା, ବାଙ୍କୋଇ, ଆରିଙ୍ଗମା ପ୍ରଭୃତି ଗ୍ରାମରେ ମୃଣ୍ମୟୀ ମୂର୍ତ୍ତିଙ୍କର ପୂଜା ହୋଇଥାଏ ।



# କୃଷି

<u>ଧାନ ଫସଲ</u>

ପୂର୍ବରୁ କୁହାଯାଇଅଛି ଯେ ପାଣ୍ଡଗଡ ଅଞ୍ଚଳ ମରୁଡିର ଚିର ସହଚର । ବର୍ଷା ଉପରେ ସ୍ଥାନୀୟ କୃଷି ନିର୍ଭରଶୀଳ । ଚଳିତ ବର୍ଷ ଧାନ ଫସଲ ସେପ୍ଟେମ୍ବର ମାସର ଲଘୁଚାପ ବର୍ଷା ଯୋଗୁଁ ରକ୍ଷା ପାଇଗଲା । ଧାନ ପାଣ୍ଡଗଡର ମୁଖ୍ୟ ଫସଲ । ବର୍ତ୍ତମାନ ଅଧିକ ଅମଳ ଧାନ ଚାଷର ଆବଶ୍ୟକତା ଦୃଷ୍ଟିରୁ ଚାଷୀମାନେ ପୁରାତନ ଦେଶୀ ଧାନକୁ ବଦଳାଇ ଦେଉଛନ୍ତି । ୩୦ ରୁ ୪୦ ବର୍ଷ ପୂର୍ବେ ମହୀପାଳ, ବଡଓଷା, ମାଗୁରା, ଧୁତିଆ , ରଙ୍ଗବଉଦୁଆ, କଲମା, ନଡିଆଫୁଲ, କଳାଜିରୀ, କଳାକାର୍ତ୍ତିକିଆ, ଧୂଷୁରା, ବାଣପୁରୀ, ନାଲୀମୋଟା, କଲମା ଭୁତିଆ, ବାଇଗଣ ମଞ୍ଜିଆ ପ୍ରଭୃତି ଦେଶୀ ଧାନ ଲୁପ୍ତ ପ୍ରାୟ । ସର୍ବପ୍ରଥମେ ୫୦ ବର୍ଷ ପୂର୍ବେ ଗ୍ରୋମର ଫୁଡ ସରକାରୀ ସଂସ୍ଥା ୧୨୪୨ ଧାନ ଚାଷୀ ମଧ୍ୟରେ ପ୍ରଚଳନ କରିଥିଲା । ତାପରେ I.R.8 ଏବଂ ଜୟାଧାନ ୬୦ରୁ ୭୦ ଦଶକରେ ଅଧିକ ଅମଳକ୍ଷମ ଧାନ ଚାଷ ହୋଇଥିଲା । ବର୍ତ୍ତମାନ ସେହି ଧାନ

ବଦଳରେ ୧୦୦୯ ଏବଂ ସ୍ୱର୍ଣ୍ଣ ମସୁରୀଧାନର ସର୍ବାଧିକ ପ୍ରଚଳନ ଦେଖାଯାଉଅଛି । ନାଲିଜଗନ୍ନାଥ ଏବଂ ବାସୁମତି ଧାନର ମଧଚାଷ ହେଉଅଛି । ଦେଶୀ ଧାନ ଭଲ ଜମିରେ ମାଣକୁ ୬ବସ୍ତା (ଏକବସ୍ତା ୭୫କି.ଗ୍ରା.) ହେଉଥିଲା । ବର୍ତ୍ତମାନ ଅଧିକ ଅମଳକ୍ଷମ ଧାନ ମାଣପ୍ରତି ସାଧାରଣ ଚାଷରେ ୮ରୁ ୧୦ବସ୍ତା ଦେଉଅଛି । ଚାଷ ଖର୍ଚ୍ଚ ତୁଳନାରେ ଆୟ କମିବାରୁ ସାଧାରଣ ଚାଷୀମାନେ ଜମିଭାଗଦେବାକୁ ବାଧ ହେଉଛନ୍ତି । ଶଗଡ ହଳ ବଳଦ କମିଗଲେଣି । ଏହା ବଦଳରେ ଟ୍ରାକ୍ଟର ଟ୍ରଲୀର ପ୍ରଚଳନ ଅଧିକ ହେଉଅଛି ।

## ରବିଫସଲ

ରବିଫସଲ ମଧ୍ୟରେ ମୁଗ ପାଞ୍ଚଗଡର ପ୍ରଧାନ ଫସଲ । ମଣ୍ଡଳସିଂହ(କଳାମାଟିଆ) ଏବଂ ଯୋଡାପଡା ଗବଡିହପଟଣାର ମୁଗର ପ୍ରସିଦ୍ଧି ରହିଅଛି । ଏହି ମୁଗରେ ଡାଲି ଅତ୍ୟନ୍ତ ସୁସ୍ୱାଦୁ । ଚଣା, ହରଡ,ମଶୁର, କୋଳଥ, ସୋରିଷ ମଧ ଚାଷ ହୁଏ । ବୋଲଗଡ ବ୍ଲକର ପଶ୍ଚିମ ଅଞ୍ଚଳରେ ପ୍ରଚୁର ପରିମାଣରେ ମୁଗ,ଚଣା ଅନ୍ୟାନ୍ୟ ରବି ଫସଲ କରାଯାଇଥାଏ । ଏହାଛଡା ଆରିକମା, ସାଗରଗାଁ ବାଙ୍କୋଇ ଗ୍ରା.ପ.ର ନଦୀ କୂଳ ଅଞ୍ଚଳରେ ପ୍ରଚୁର ପରିମାଣରେ ମୁଗ ଚାଷ ମଧ ହୁଏ ।

## ଆଖୁ ଚାଷ

ଏହି ବ୍ଲକର ଆରିକମା ସହଜପୁର, କୁସୁପଲ୍ଲୀ, କପାସିଆ, ଗୋପାଳୀପଡା, ରୋଳସିଂହ, କୋଟପଲ୍ଲୀ, କାଉଚରା, ବୋଲଗଡ, ସଂପୁର, ମର୍ଦ୍ଦାବାଡି, ମୁଗମଣ୍ଡା, ନାରାୟଣୀପଡା, ଅସରଳା, ପଞ୍ଚୁକୋଟ, ବ୍ରହ୍ମପୁରା, ମାଗୁରା, ପୁଆଣିଆ, ଆରିକମା, ବିଧାରପୁର ଗ୍ରାମରେ ଆଖୁଚାଷ ହେଉଅଛି । ନୟାଗଡରେ ଚିନିକଳ ସ୍ଥାପିତ ହେଲାପରେ ଏଠାରେ ଆଖୁଚାଷ ବୃଦ୍ଧି ପାଇଥିଲା । ମାତ୍ର କେତେବର୍ଷ ହେଲା ଏହା ମରୁଡି ଅଞ୍ଚଳ ହେବାରୁ ଏଠାରେ ଆଖୁଚାଷ ମଧ କମିଯାଇଥିଲା । ଚଳିତ ବର୍ଷ ନୟାଗଡ ଚିନିକଳ କାର୍ଯ୍ୟକ୍ଷମ ହେବାରେ ଭବିଷ୍ୟତରେ ଏ ଅଞ୍ଚଳରେ ଅଧିକ ଆଖୁଚାଷ ହେବାର ସମ୍ଭାବନା ଅଛି ।

## ବିରି

ସାଗରଗାଁ ଏବଂ ହଳଦୀପଦା ଅଞ୍ଚଳରେ ପ୍ରଚୁର ବିରି ଚାଷ କରାଯାଇଥାଏ । ସ୍ଥାନୀୟ ଚାଷ ବର୍ଷା ଜଳ ଉପରେ ଅଧିକ ନିର୍ଭରଶୀଳ ଥିବାରୁ ଚାଷ

କାମପରେ ବହୁଲୋକ  କାମ କରିବାକୁ  ବାହାରକୁ ଚାଲି ଯାଆନ୍ତି । ଭୂତଳ ଜଳ ବିନିଯୋଗର ବହୁ କାର୍ଯ୍ୟକ୍ରମ ନିଆଯାଉଥିଲେ ମଧ୍ୟ ଖର୍ଚ୍ଚ ତୁଳନାରେ ତାହା ଲାଭଜନକ ହେଉନାହିଁ । ବର୍ତ୍ତମାନ ୯୦% ଜମି ଗରିବ ଚାଷୀଙ୍କ ପାଖରେ ରହିଅଛି । କେତେକ ଜାଗାରେ ଚାଷ ଖର୍ଚ୍ଚ ଅଧିକ ଯୋଗୁଁ ଜମି ପଡିଆ  ପଡୁଅଛି ।

<u>ପନିପରିବା</u>

ରାଜ୍ୟ ରାଜପଥର ରାଜସୁନାଖଳା ତଳବଜାର (କୁମ୍ଭାରୀ ଛକ) ପରିବା ବ୍ୟବସାୟର ମୁଖ୍ୟ  କେନ୍ଦ୍ର । ପ୍ରତିଦିନ ସକାଳୁ  ବର୍ଷସାରା ବିଭିନ୍ନ କିସମର କଞ୍ଚାପରିବା ସ୍ଥାନୀୟ ବିଲ ଖଉରୁଣୀ, ଡିହ ଖଉରୁଣୀ,  ବଡ କୁମାରୀ, ସାନ କୁମାରୀ, କପାସିଆ, ଅସନପଲ୍ଲୀ, ହାଟବେଡ଼ା ଏବଂ ଖଲିକୋଟର ଚାଷୀମାନେ ଆଣି ବିକ୍ରୟ କରନ୍ତି । ଏଠାରୁ ବୋଲଗଡ ବ୍ଲକ ଅଞ୍ଚଳର ଅଧିକାଂଶ ସ୍ଥାନ ସହ ରାଜସୁନାଖଳା, ନୟାଗଡ, ରଣପୁର, ବେଗୁନିଆ, ଖୋର୍ଦ୍ଧା, ଭୁବନେଶ୍ୱର କୁ ଏହି ପରିବା ଚାଲାଣ ହୋଇଥାଏ । ଚାଷୀ ମାନଙ୍କର ସୁବିଧା ପାଇଁ ସ୍ଥାନୀୟ ଜିଲ୍ଲା ପରିଷଦ ସଭ୍ୟ ଅଶୋକ କୁମାର ରାଉତ ଏବଂ ବଡକୁମାରୀ ଗ୍ରାମପଞ୍ଚାୟତ ସରପଞ୍ଚ ପ୍ରଫୁଲ୍ଲ କୁମାର ପ୍ରଧାନଙ୍କ ପ୍ରଚେଷ୍ଟାରେ କୁମ୍ଭାରୀ ଛକ ନିକଟରେ ଏକ କୃଷକ ବଜାର ନିମନ୍ତେ ବିଶାଳ ପକ୍କାଗୃହ ଏବଂ ସିମେଣ୍ଟ ପିଣ୍ଡି ନିର୍ମିତ ହୋଇଅଛି । ଏହାଛଡା ଆରିକମା ଏବଂ ପାଟପୁର ଶାସନ ଗ୍ରାମପଞ୍ଚାୟତର ଚାଷୀମାନେ ସେମାନଙ୍କର ଉତ୍ପନ୍ନ ପନିପରିବା କଳାପଥର ହାଟରେ ବିକ୍ରି କରିଥାଆନ୍ତି । ଏହାଛଡା କପାସିଆ, ଅସନପଲ୍ଲୀ, ଖଲିକୋଟ, ଟାଙ୍ଗିସାହି, ହାଟବେଡ଼ା, ବିଧାରପୁର, ମୁଗମଣ୍ଡା ଓ ନାରୟଣୀପଡା ଗ୍ରାମରେ ପରିବା ଚାଷ ହୋଇଥାଏ ।



## ବାଣିଜ୍ୟ ବ୍ୟବସାୟ

ବୋଲଗଡ ଅଞ୍ଚଳର ପ୍ରାଚୀନ  ବ୍ୟବସାୟ ସଂମ୍ପର୍କରେ ଲେଖକ ଏକ ନୂତନ ତଥ୍ୟ ଗତବର୍ଷ ବୌଦ୍ଧ ମନମୁଣ୍ଡା ଯିବା ଅବସରରେ ସଂଗ୍ରହ କରିବାକୁ ସକ୍ଷମ ହୋଇଥିଲା ପାଠକମାନଙ୍କ ଅବଗତି  ନିମନ୍ତେ ତାହା  ବର୍ଣ୍ଣନା କରାଗଲା । ଲେଖକ ମନମୁଣ୍ଡା ଠାରେ ବିନାୟକ ରଥ ନାମରେ ଜଣେ ବୃଦ୍ଧ  ବ୍ରାହ୍ମଣ ପଣ୍ଡିତଙ୍କୁ ଭେଟି ଥିଲା ୯୦ ବର୍ଷ ବୟସ ତାଙ୍କ ପୂର୍ବପୁରୁଷ କଣ୍ଟିଲୋରୁ ସେଠାକୁ ଯାଇ ବସବାସ କରିଛନ୍ତି ।

ତାଙ୍କ କଥିତ ତଥ୍ୟ ଅନୁସାରେ ନେଉଳୀ ନାମଧରୀ ଜଣେ ତେଲି ମହାଜନ ପୁରାତନ ସୋନପୁର ରାଜ୍ୟର ସ୍ରଷ୍ଟା ଅଟନ୍ତି । ଏ ବିଷୟରେ ଥିବା ସେଠାରେ ଜନଶୃତି ଅନୁସାରେ ପୂର୍ବକାଳରେ ଥୋଡିଆ ବଳଦ ସାହାଯ୍ୟରେ ବାଣିଜ୍ୟ କାରବାର ଚାଲୁଥିଲା । ନେଉଳୀ ମହାଜନ ଥୋଡିଆ ବଳଦ ଗୋଠ ନେଇ ବ୍ୟବସାୟ ପାଇଁ ବୋଲଗଡରୁ ଯାଇ ମନମୁଣ୍ଡାଠାରେ ମହାନଦୀ କୂଳରେ ଏକ ଆମ୍ବ ତୋଟାରେ ରାତ୍ରିରେ ଆଶ୍ରୟ ନେଇଥିଲେ । ତାଙ୍କୁ ରାତ୍ରିରେ ସ୍ୱପ୍ନାଦେଶ ହେଲା ଯେ ସେ ନଦୀ କୂଳ ଘାଟରେ ଏକ ଶିବ ଲିଙ୍ଗ ମୂର୍ତ୍ତିକୁ ସକାଳୁ ସ୍ନାନସାରି ମହନଦୀର ଆରପାରିକୁ ନେଇ ଯିବାପାଇଁ । ସକାଳୁ ନେଉଳୀ ମହାଜନ ସ୍ୱପ୍ନାଦେଶ ଅନୁସାରେ ନଦୀଘାଟରେ ସ୍ନାନ ସାରି ସ୍ୱର୍ଣ୍ଣରେ ଖଚିତ ସେହି କଳାରଙ୍ଗର ଲିଙ୍ଗକୃତ ପଥରକୁ ପ୍ରଣାମ କରି ଛୁଇଁବା ମାତ୍ରେ ସେହି ଲିଙ୍ଗମୂର୍ତ୍ତି ଆପେ ଆପେ ନଦୀ ଜଳରେ ଭାସି ଆର କୂଳରେ ଲାଗିଲେ । ସେ ପାରିରେ ଲାଗିବା ମାତ୍ରେ ଆକାଶରୁ ସ୍ୱର୍ଣ୍ଣ ରେଣୁ ସ୍ୱଳ୍ପ ସମୟ ପାଇଁ ବର୍ଷା ହେଲା । ଏ ଖବର ନେଉଳୀ ମହାଜନ ସ୍ଥାନୀୟ ତତ୍‌କାଳୀନ ମୁଖ୍ୟକୁ ଦେବାରେ କାଳକ୍ରମେ ସେଠାରେ ମନ୍ଦିର ନିର୍ମାଣ ହେଲା । ଶିବଙ୍କ ନାମ ହେଲା ସୁବର୍ଣ୍ଣ ମହାମେରୁ ମହାଦେବ ଏବଂ ତାଙ୍କ ନାମ ଅନୁସାରେ ସୋନପୁର (ସୁବର୍ଣ୍ଣପୁର) ରାଜ୍ୟର ନାମ କରଣ ହେଲା । ଏହି ପୁରାତନ ତଥ୍ୟ ସୋନପୁରର ସ୍ଥାନୀୟ 'ସ୍ୱର୍ଣ୍ଣରେଣୁ' ପତ୍ରିକାରେ ପ୍ରକାଶିତ ହୋଇଥିବାର ରଥ ମହାଶୟ କହିଥିଲେ । ନେଉଳୀ ମହାଜନ ବୋଲଗଡର ବୋଲି ସେଥିରେ ଉଲ୍ଲେଖ ହୋଇଅଛି । ନେଉଳି ମହାଜନଙ୍କ ସମ୍ପର୍କରେ ସ୍ଥାନୀୟ ବହୁ ତୈଳିକ ବୈଶ୍ୟ ଜାତିର ପୁରାତନ ଲୋକଙ୍କ ସହ ଆଲୋଚନା କରିବା ପରେ କୌଣସି ସଠିକ ଖବର ମିଳି ନଥିଲା । ନିକଟରେ ଘୋରଡିଆ ଗ୍ରାମର ପୂର୍ବତନ ଶିକ୍ଷକ ଅର୍ଜ୍ଜୁନ ସାହୁଙ୍କର ପୂର୍ବଜ ମାନେ ଥୋଡିଆ ବଳଦ ନେଇ ବୌଦ୍ଧ, ସୋନପୁର, ସମ୍ବଲପୁର ଅଞ୍ଚଳକୁ ବ୍ୟବସାୟ କରିବାକୁ ଯାଉଥିବାର ସେ ଶୁଣିଥିବା କଥା ପ୍ରକାଶ କରିଥିଲେ ଏବଂ ତାଙ୍କ ପୂର୍ବ ପୁରୁଷରେ ନିଳାଦ୍ରୀ ସାହୁ (ନୀଳ ମହାଜନ) ନାମଧେୟ ବ୍ୟକ୍ତି ଥିବାର ସେ ଜଣାଇଥିଲେ । ତାଙ୍କର ସେତେବେଳେ ୧୨୦ ଗୋଟି ଥୋଡିଆ ବଳଦ ଏହି ବ୍ୟବସାୟରେ ଲାଗିଥିଲେ । ପ୍ରଥମ ବଳଦର ଘଣ୍ଟି, ଘାଗୁଡୀ, ପଘା, କଉଡି ମାଳ, ପାଟକନା ବହୁ ବର୍ଷ ପର୍ଯ୍ୟନ୍ତ ତାଙ୍କ ଘରେ ପୂଜା ପାଇବା ସଂଗେ ଦଶହରା ଦିନ ସଜ ବସୁଥିଲା । ନୀଳ ମହାଜନ ସେହି ନେଉଳୀ ମହାଜନ ହୋଇଥିବେ ବୋଲି ଅନୁମିତ ହେଉଅଛି । ତାଙ୍କର ବଂଶଧରଙ୍କ ମଧ୍ୟରେ ବର୍ତ୍ତମାନ ଅର୍ଜ୍ଜୁନ ସାହୁଙ୍କ ଛଡା ବୋଲଗଡର ତାଙ୍କ ବଡ ଭାଇ ଅଦ୍ଵୈତାନନ୍ଦ ସାହୁ ବିଶିଷ୍ଟ ବ୍ୟବସାୟୀ ୰ ଶଙ୍କର ସାହୁ, ବିଶିଷ୍ଟ ଠିକାଦାର ଶ୍ରୀ ଗୋବିନ୍ଦ ସାହୁ ଏବଂ ତାଙ୍କର ଭାଇ ଚକ୍ରଧର ସାହୁ ଅଟନ୍ତି । ଏ ବିଷୟରେ ଅଧିକ ଗବେଷଣା ଆବଶ୍ୟକ ।

ସୋନପୁର ରାଜ୍ୟର ପ୍ରାଚୀନ କିମ୍ବଦନ୍ତୀ ବୋଲଗଡର ଗୌରବକୁ ବୃଦ୍ଧି କରିଅଛି । ବୋଲଗଡ ଅଞ୍ଚଳରେ ବହୁ ତେଲି ଜାତିର ଲୋକ ବାସ କରନ୍ତି । ବ୍ୟବସାୟ ସେମାନଙ୍କର ମୁଖ୍ୟ ଜୀବୀକା ହେଲେ ମଧ୍ଯ ମନ୍ଦିର, ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ପରବର୍ତ୍ତୀ କାଳରେ ସେମାନଙ୍କର ସାମାଜିକ ପ୍ରତିଷ୍ଠା ବୃଦ୍ଧି କରିଅଛି । ମାଣିକାଗୋଡାର ସମସ୍ତ ମହାପାତ୍ର ପରିବାର, ପୃଷ୍ଟି ପରିବାର, ବୋଲଗଡ, ଘୋରଡିଆ, ଡାବରଧୂଆ ଗ୍ରାମର ମହାପାତ୍ର ପରିବାର, ଗବଡିହ ପାଟଣା, ଫିରିଫିରା, ବୋଲଗଡ, ହାଟବନ୍ଧ ର ପ୍ରସିଦ୍ଧ ସାହୁ ପରିବାର ବହୁ ପୂର୍ବକାଳରୁ ଏଅଞ୍ଚଳର ବିଶିଷ୍ଟ ବ୍ୟବସାୟୀ ଭାବରେ ପରିଗଣିତ । ଏହାଛଡା ପଶ୍ଚିମ ବୋଲଗଡ ଅଞ୍ଚଳର କଳାଙ୍ଗ , ଟାଙ୍ଗିସାହି, ମାଳିସାହି, ଫିରିଫିରା ଗ୍ରାମରେ ବହୁ ପ୍ରତିଷ୍ଠିତ ଥୋଡିଆ ଜାତିର ବ୍ୟବସାୟୀ ଜାତି ବହୁ କାଳରୁ ରହି ଅଛନ୍ତି । କଳାଙ୍ଗ ୰ଶେଷଦେବ ସାମନ୍ତରାୟଙ୍କର ପୂର୍ବଜ ଗ୍ରାମର ପାରମ୍ପରିକ ମୁଖ୍ୟ ଅଟନ୍ତି । ଦଶହରା ପର୍ବବେଳେ ମାଣିକଭୂୟାଁ ତାଙ୍କ ଦୁଆରେ ପୂଜାପାଇଥାନ୍ତି । ଟାଙ୍ଗିସାହି ଗ୍ରାମର ୰ରଘୁନାଥ ବେହେରା ଜଣେ ବିଶିଷ୍ଟ ଚାଷୀ ଏବଂ ଦାନଶୀଳ ବ୍ୟକ୍ତି ଥିଲେ । ସେ ଫାସିଓଦା ଗ୍ରା.ପ. ସରପଞ୍ଚ ଥିଲେ । ଟାଙ୍ଗିସାହି ରଘୁନାଥ ହାଇସ୍କୁଲର ପ୍ରତିଷ୍ଠାତା ଅଟନ୍ତି । ବର୍ତ୍ତମାନ ବୋଲଗଡ ଅଞ୍ଚଳର ବହୁ ଯୁବକ ଫୁଲବାଣୀ ଏବଂ ଭୁବନେଶ୍ୱରରେ ବିଭିନ୍ନ ପ୍ରକାର ବ୍ୟବସାୟକରି ନିଜ ପାଇଁ କର୍ମ ସଂସ୍ଥାନ ସୃଷ୍ଟି କରିଅଛନ୍ତି । ବର୍ତ୍ତମାନ ଏହି ବ୍ଲକର ପାନନଗର ଗ୍ରାମର ରାଧାକୃଷ୍ଣ ମାର୍ଥା ଏବଂ କାଉଁରୀପାଟଣା ଗ୍ରାମର ରାମଚନ୍ଦ୍ର ସୁବୁଦ୍ଧି, ବୋଲଗଡ ଗ୍ରାମର ବାଳକୃଷ୍ଣ ସାହୁ ବିଶିଷ୍ଟ ବ୍ୟବସାୟୀ ଭାବରେ ଖ୍ୟାତି ଲାଭ କରିଛନ୍ତି । ବଡକୁମାରୀ ଗ୍ରାମପଞ୍ଚାୟତର ପୂର୍ବତନ ସରପଞ୍ଚ ପ୍ରଫୁଲ୍ଲ କୁମାର ପ୍ରଧାନଙ୍କ ଉଦ୍ୟମରେ ପାନନଗର ମୌଜାରେ ନୂତନ ଘରୋଇ ବସଷ୍ଟାଣ୍ଡ ନିର୍ମାଣ ହୋଇଅଛି । ଏହା ରାଜସୁନାଖଳାର ବ୍ୟବସାୟ ଶ୍ରୀବୃଦ୍ଧି କରିବାରେ ସହାୟକ ହୋଇଅଛି ।

<u>ବସ୍ତ୍ର ଶିଳ୍ପ</u>

ଏକଦା ବୟନ ଶିଳ୍ପରେ ବୋଲଗଡ ଅଞ୍ଚଳ ପ୍ରସିଦ୍ଧି ଲାଭ କରିଥିଲା । ସ୍ଥାନୀୟ ତନ୍ତୁବାୟ ଶ୍ରେଣୀ ଭୁକ୍ତ (ତନ୍ତି,ରଙ୍ଗଣୀ,ପାଟରା) ଜାତିର ଲୋକ ମାନେ ଲୁଗା ବୁଣାକୁ ସେମାନଙ୍କର ମୁଖ୍ୟ ଜୀବୀକା ଭାବରେ ଗ୍ରହଣ କରୁଥିଲେ । ଉତ୍କଳ ଇତିହାସ, ପ୍ରାଚୀନ ଉତ୍କଳ ଏବଂ ଖୁରୁଧା ଦର୍ପଣ ପ୍ରଭୃତି ଇତହାସ ପୁସ୍ତକ ଅଧ୍ୟୟନରୁ ଜଣାଯାଇଛି ଯେ ମଠା, ପାଟ, ସୂତା ଲୁଗା ଏବଂ ଖଦୀ ପାଇଁ ବୋଲଗଡ ଅଞ୍ଚଳ ବିଶେଷ ପ୍ରସିଦ୍ଧି ଲାଭ କରିଥିଲା । ସଂପୁର, ଧଳାପଥର, ଫିରିଫିରା ସାନପଦର ଅସରଳା, ଖଉରଣୀ,ରାସୋଳ, କଳାଙ୍ଗ, ମାଣିକାଗୋଡା, ବୋଲଗଡ, ପିତୁକୁଳି, ଦେଉଳି

ପ୍ରଭୃତି ଗ୍ରାମର ବୟନ ଶଙ୍ଖ କାରିଗରମାନେ ବସ୍ତ୍ର ଉତ୍ପାଦନରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ପାଟବନ୍ଧ ଗ୍ରାମର ସଂଭ୍ରାନ୍ତ କରଣ ବଂଶର ପୂର୍ବଜମାନେ ମଠା ପାଟ ବ୍ୟବସାୟୀ ଥିଲେ । ତାଙ୍କର ଏଥିପାଇଁ ମହାନଦୀରେ ଡଙ୍ଗା ଚାଲୁଥିଲା । ଏଥିପାଇଁ ଏହିଗ୍ରାମର ନାମ ପାଟବନ୍ଧ ରହିଥିଲା ବୋଲି ସ୍ଥାନୀୟ ପୁରାତନ ଲୋକମାନେ କହନ୍ତି । ଧଳାପଥର ପର୍ଦ୍ଦା (Door Screen) ପାଇଁ, ସଂପୁର ବାନ୍ଧ ଶାଢୀ ଗାମୁଛା ପାଇଁ, ରାସୋଳ, ସାନପଦର, ଦେଉଳି ପାଟ, ମଠା ଓ ଉତ୍କୃଷ୍ଟ ଶାଢୀ ପାଇଁ ବିଶେଷ ନାମ କରିଥିଲା । ସ୍ଥାନୀୟ ଖଦୀ ତୁରିବୁର କଂଗ୍ରେସରେ ପ୍ରଶଂସିତ ହୋଇଥିଲା । ବୌଦ୍ଧ ଯୁଗରେ କଳାଙ୍ଗ ଗ୍ରାମର ସୂକ୍ଷ୍ମ ବସ୍ତ୍ରକୁ ଚୀନ୍ ପରିବ୍ରାଜକ ହୋଏନ୍‌ସାଂଙ୍କୁ ଦିଆଯାଇଥିବା ସାଧୁଚରଣ ଚଉଧୁରୀ ପୁରାତନ ବୌଦ୍ଧ ତ୍ରିପିଟକ ଗନ୍ଥରୁ ଅନୁଧାନ କରିଥିବାର କହନ୍ତି । ଏଥିପାଇଁ ଏହି ଗ୍ରାମ ନାମ କଳାଙ୍ଗ ଥିଲା ।

ଖଦୀ ଲୁଗା ଉତ୍ପାଦନରେ ଏହା ଓଡିଶାର ସର୍ବବୃହତ୍ତମ ଖଦୀ ଉତ୍ପାଦନ କେନ୍ଦ୍ର ଭାବରେ ସ୍ୱୀକୃତି ଲାଭ କରିଥିଲା । କବି ଯଦୁମଣି ବୋଲଗଡ ତନ୍ତୀଙ୍କଠାରୁ ଏକ ପାଟ ନେଇ ନୟାଗଡ ରାଜାଙ୍କୁ ଉପହାର ଦେଇଥିଲେ । ରାଜା ଏଥିରେ ପ୍ରୀତହୋଇ ତାର ଦାମ ଦେବାକୁ ମନ୍ତ୍ରୀଙ୍କୁ ଆଦେଶ ଦେଇଥିଲେ । ମାତ୍ର ଯଦୁମଣିଙ୍କର ମନ୍ତ୍ରୀଙ୍କ ସହ ତିକ୍ତତା ଥିବାରୁ ମନ୍ତ୍ରୀ ଉକ୍ତ ପାଟର ଦାମ ମାତ୍ର ଆଠ ଅଣା ଦେଇନଥିଲେ । ବାରମ୍ବାର ଏହି ପଇସା ଆଣିବାକୁ ତନ୍ତୀ ଯଦୁମଣିଙ୍କ ପାଖକୁ ଦୌଡିବାରୁ ବାଧହୋଇ ଯଦୁମଣି ଜମି ଖଣ୍ଡିଏ ବିକ୍ରୀକରି ତନ୍ତୀକୁ ପାଟର ଦାମ ଦେଇଥିଲେ । କେତେଦିନ ପରେ ଯଦୁମଣିଙ୍କର ନୟାଗଡ ରାଜାଙ୍କର ସାକ୍ଷାତ ହେବାରେ ସେ ପାଟ ଦାମ ପାଇବା ବିଷୟରେ ପଚାରିବାରେ ଯଦୁମଣି ଏକ ବ୍ୟଙ୍ଗ କବିତା ପଢି ସେ କିପରି ମନ୍ତ୍ରୀଙ୍କ ଦ୍ୱାରା ଏଥିପାଇଁ ହଇରାଣ ହୋଇ ଶେଷରେ ପୈତୃକ ଜମି ବିକ୍ରୀକରି ତାହା ପରିଶୋଧ କରିଥିବାର ବର୍ଣ୍ଣନାକରିଥିଲେ । ଏହି ବ୍ୟଙ୍ଗ କବିତା ଡଃ ମାୟାଧର ମାନସିଂହ ତାଙ୍କ ଓଡିଆ ସାହିତ୍ୟ ଇତିହାସରେ ବର୍ଣ୍ଣନା କରିଅଛନ୍ତି । ଏଥିରୁ ବୋଲଗଡରେ ସେତେବେଳେ ପାଟ ଲୁଗା ବୁଣା ହେଉ ଥିବାର ସୂଚୀତ ହେଉଅଛି ।

**କାଠ ଶିଳ୍ପ**

ବୁଡା, ପାନନଗର କାଉଁରୀପାଟଣା,ମାଣିକାଗୋଡା, ସଂପୁର ଗ୍ରାମର କୁଶଳୀ କାରିଗରମାନେ ପୁରୁଷାନୁକ୍ରମରେ କାଠ ଶଗଡ ତିଆରି କରି ଅବିଭକ୍ତ ପୁରୀ ଜିଲ୍ଲାର କାକଟପୁର, ନିମାପଡା,କଣାସ, ସାକ୍ଷୀଗୋପାଳ ଦେଶ ଅଞ୍ଚଳକୁ ପଠାଇବିକ୍ରୀ କରୁଥିଲେ । ଶାଳ କାଠ ଏବଂ ବାନ୍ଧଣ କାଠରେ ଭଲ ଶଗଡ ତିଆରି ହୁଏ । ବର୍ତ୍ତମାନ

ଶାଳ ଶଗଡ ପ୍ରତି ୬ ହଜାର ଏବଂ ବାନ୍ଧଣ ଶଗଡ ଗୋଟିକ ୮ ହଜାର ଦାମ ଥିବାରୁ ଏହାର ଚାହିଦା ସମ୍ପୂର୍ଣ୍ଣ କମିଯାଇଅଛି । ଏତଦ୍‌ବ୍ୟତୀତ ସ୍ଥାନୀୟ ବଢେଇ ଜାତିର କାରୀଗରମାନେ ସମସ୍ତ ଗୃହ ଉପକରଣ ଏବଂ ଗୃହ ନିର୍ମାଣ ବେଳେ ବ୍ୟବହୃତ କାଠ ଦ୍ରବ୍ୟ ନିର୍ମାଣ କରିଥାନ୍ତି ।

ଲୌହ ଶିଳ୍ପ

ମାଣିକାଗୋଡା, ହାଟବସ୍ତ, ଫଂପୁର, ବୋଲଗଡ ଏବଂ ଭୀମପଡା ଗ୍ରାମର କମାର ଶ୍ରେଣୀର ଲୋକ ମାନେ ବିଭିନ୍ନ ଲୌହ ନିର୍ମିତ ଗୃହ ଉପକରଣ ଓ କୃଷି ଉପକରଣ ତିଆରି କରି ବିକ୍ରୀ କରିଥାନ୍ତି । ଦାଆ, କଟୁରୀ, ଟାଙ୍ଗିଆ, ପନିକୀ, ସାବଳ ଚାଷ ଲଙ୍ଗଳ ଲୁହା ଗୁଆକାତି, ତାଲା, ହାତକୋଡି ଏମାନଙ୍କ ମଧରେ ପ୍ରଧାନ ।

କୁମ୍ଭାର ଶିଳ୍ପ -

ପୁରାତନ କାଳରୁ ଏହି ଅଞ୍ଚଳର ଭୀମପଡା, ଫିରିଫିରା, ବାରଦାଣ୍ଡି, ରୋଳସିଂହ, ରାସୋଳ, କୋଦୁଅବେରଣୀ ପ୍ରଭୃତି ଗ୍ରାମରେ କୁମ୍ଭାର ଜାତିର ଲୋକମାନେ ମାଟିରେ ବିଭିନ୍ନ ପ୍ରକାର ପାତ୍ର ପ୍ରସ୍ତୁତ କରି ଜୀବୀକା ନିର୍ବାହ କରନ୍ତି । ପୂଜା ପର୍ବରେ ଏଥିପାଇଁ ମାଟିରେ ବ୍ୟବହୃତ ବିଭିନ୍ନ ସାମଗ୍ରୀ ସେମାନେ ଯୋଗଇଥାନ୍ତି । ଆଜିକାଲି ଆଲୁମିନିୟମ ର ବହୁଳ ବ୍ୟବହାର ଫଳରେ ହାଣ୍ଡି ଆଟିକା, ମାଠିଆ ର ବ୍ୟବହାର କମିଗଲାଣି । ସେମାନଙ୍କର ପୂର୍ବ ବ୍ୟବସାୟ ଆଉ ନାହିଁ । ତଥାପି କେତେକ କାରୀଗର ଏହି କୌଳିକ ପ୍ରଥାକୁ ବଜାୟ ରଖିଛନ୍ତି ।

ଗୋରୁବ୍ୟବସାୟ

ସ୍ଥାନୀୟ ବାଙ୍କୋଇ, ଆରିକମା, ସହଜପୁର, ଅସରଳା, କନ୍ତେଇଲୋ, କଅଁରପୁର ଓ ବେଗୁନିଆଁମୁଳ ଲୋକ ଖରା ଚାରିମାସ ଗୋରୁ ବ୍ୟବସ୍ଥାୟ କରି ବିଶେଷ ଲାଭବାନ ହୋଇଥାନ୍ତି । ସେମାନେ ନୟାଗଡ ବାହାଡାଝୋଲା ଏବଂ ଗଞ୍ଜାମର ହିଂଜଳିକାଟୁ ଗୋରୁ ହାଟରୁ ନିୟମିତ ଗୋରୁଆଣି ବେଗୁନିଆଁ, ଧଳାପଥର ହାଟରେ ବିକ୍ରୀ କରନ୍ତି ଏବଂ ଜଟଣୀ ହରିରାଜ ପୁର ମେଳଣ ଗୋରୁ ବିକ୍ରୀର ଏକ ପ୍ରମୁଖ କ୍ଷେତ୍ର ଥାଏ । ମଣ୍ଡଳସିଂହ ଫଂପୁର ଏବଂ ମାଣିକାଗୋଡା ଗ୍ରାମର ଚାଷୀମାନେ ପୋଢୁଅ ବିଭିନ୍ନ ଦୂର ହାଟମାନଙ୍କରୁ ଆଣି କଳାପଥର ହାଟରେ ବିକ୍ରୀ କରି ଲାଭବାନ ହୋଇଥାନ୍ତି । ଏହାଛଡା ନୟାଗଡ ଏବଂ ବେଗୁନିଆଁ ହାଟରେ ସ୍ଥାନୀୟ ମୁସଲମାନ

ବ୍ୟବସାୟୀ ମାନେ ଛେଳି, ମେଣ୍ଢା ଏ ଅଞ୍ଚଳରୁ କିଣି ବିକ୍ରୀ କରିଥାନ୍ତି । ବେଗୁନିଆଁ ଏବଂ କଳାପଥର ଏ ଅଞ୍ଚଳର ମୁଖ୍ୟ ଗୋରୁହାଟ ଅଟେ ।

## ମାଛ ଶୁଖୁଆ

ବୋଇଗଡ ବ୍ଲକର ବଡ କୁମାରୀ ଗ୍ରା.ପ.ର ଅନ୍ତର୍ଗତ (ରାଜସୁନାଖଳା ଚଳ ବଜାର ) ରାଜ୍ୟର ବୃହତ୍ତମ ଶୁଖୁଆ ବ୍ୟବସାୟ କେନ୍ଦ୍ର ଅଟେ । ସମସ୍ତ କିସମର ଶୁଖୁଆ ଏଠାରେ ବିକ୍ରୀ ହୋଇଥାଏ । ଏହି ରାସ୍ତାରେ ବସରେ ଯାତ୍ରା କଲାବେଳେ ଶୁଖୁଆ ଗନ୍ଧ ଯୋଗୁଁ ରାଜସୁନାଖଳାବଜାର ଆସିଗଲା ବୋଲି ଯାତ୍ରୀ ମାନେ ସ୍ୱତଃ ଜାଣିପାରନ୍ତି । ଏହା ଛଡା ସ୍ଥାନୀୟ ପୋଖରୀ ମାଛ ଛଡା ପ୍ରତିଦିନ ପ୍ରଚୁର ଚିଲିକା ମାଛ ଓ ଆନ୍ଧ୍ର ମାଛ ଏ ଅଞ୍ଚଳକୁ ଆସିଥାଏ ।

## ପଥର ଶିଳ୍ପ

ବର୍ତ୍ତମାନ ଗ୍ରାମାଞ୍ଚଳରେ ପକ୍କା ଗୃହର ନିର୍ମାଣ ପ୍ରବଳ ଭାବରେ ବଢିଯାଇଅଛି । ଚିପସ୍ ପଥର ଚାହିଦା ଯୋଗୁଁ ସାନପଦର ପିଚୁକୁଳି ଗବହିଡ ଖଲିକୋଟ ବ୍ରହ୍ମପୁରା, ପଞ୍ଚୁକୋଟ, ମର୍ଦ୍ଦାବାଡି, ଟାଙ୍ଗିସାହି, ରାସୋଳ, ଚଟୁଆ ଗ୍ରାମରେ ଆଦିବାସୀ ଏବଂ ଗରିବ ଲୋକମାନେ ଚିପସ୍ ବାଡେଇ ରୋଜଗାର କ୍ଷମ ହୋଇଛନ୍ତି । ଦୈନିକ ବହୁ ଟ୍ରକ ନିକଟସ୍ଥ ରଣପୁର ଅଞ୍ଚଳରୁ ମାଙ୍କଡା ପଥର ଆଣି ଯୋଗାଇଥାନ୍ତି । ବୋଲଗଡ ଅଞ୍ଚଳରେ ଏହି ଗୃହ ନିର୍ମାଣ ଯୋଗୁଁ ବହୁ ରାଜମିସ୍ତ୍ରୀ ଏବଂ ସାହାଯ୍ୟକାରୀ ଭାବରେ ମଜୁରୀଆମାନେ ଦୈନିକ କର୍ମ ସଂସ୍ଥାନ ପାଇବାରେ ବିଶେଷ ସକ୍ଷମ ହୋଇଛନ୍ତି । ନିକଟରେ ବୋଲଗଡର ଯୁବ କାଷ୍ଠ ଶିଳ୍ପୀ ଜଗଦୀଶ ମହାରଣା ବୋଲଗଡ ମହତ୍ସୋବରେ ବାଲୁକା ଶିଳ୍ପର ପରାକାଷ୍ଠା ପ୍ରଦର୍ଶନ କରି ସମସ୍ତଙ୍କୁ ଆର୍ଶ୍ଚର୍ଯ୍ୟାନ୍ୱିତ କରାଇଛନ୍ତି ।

## କ୍ଷୀର ଛେନା ବ୍ୟବସାୟ

ସ୍ଥାନୀୟ ଗୋପାଳ ଜାତିର ଲୋକମାନେ ପୂର୍ବରୁ କ୍ଷୀର ଛେନା ବିକ୍ରୀକରି ଚଳୁଥିଲେ । କିଛି ବର୍ଷ ପୂର୍ବରୁ କାଉତରା ଗ୍ରାମର ଗୋପାଳମାନେ ଛେନାରେ ବିଭିନ୍ନ ପ୍ରକାର ମିଠା (ଛେନାପୋଡ, ଛେନାଗଜା, ରସଗୋଲା, ଗୋଲପଜାମୁ) ଇତ୍ୟାଦି ପ୍ରସ୍ତୁତ କରି ସମଗ୍ର ପଶ୍ଚିମ ଓଡିଶା ସହ କୋରାପୁଟ ବ୍ରହ୍ମପୁର, ରାଉରକେଲାକୁ ବସ୍ ଯୋଗେ ପଠାଇଥାନ୍ତି । ପୂର୍ବରୁ ବୋଲଗଡ ଚଟି ସାହୁର ରସଗୋଲା ଓଡିଶାରେ ବିଶେଷ ଖ୍ୟାତି ଲାଭ କରିଥିଲା । ବୋଲଗଡ, ଦିଘିରି, ମଣ୍ଡଳସିଂହ, ପିଚୁକୁଳି

ଠାରେ କ୍ଷୀର ଉତ୍ପାଦନ ସମବାୟ ସମିତି ଗଠନ ହୋଇ ଉନ୍ନତ ଧରଣର ଗୋପାଳନ ବ୍ୟବସ୍ଥା ହୋଇ ପ୍ରଚୁର କ୍ଷୀର ଓମଫେଡ୍, ସଂସ୍ଥାକୁ ଦିଆଯାଉଛି ।

<u>ଷ୍ଟୋନ କ୍ରସର</u> -

କ୍ରମେ ସ୍ଥାନୀୟ ଜଙ୍ଗଲରୁ କାଠ ଶେଷ ହୋଇଯିବା ପରେ ଏବଂ ବୋଲଗଡ ଅଞ୍ଚଳରେ ରାସ୍ତା ଘାଟ ଏବଂ ଘର ତିଆରି ପାଇଁ ମେଟାଲ, ଚିପ୍ସ ବହୁଳ ପରିମାଣରେ ଦରକାର ପଡିବାରୁ ସ୍ଥାନୀୟ ଆଦିବାସୀମାନେ କାଠ ବିକ୍ରୀ ବଦଳରେ ପଥରରୁ ଚିପ୍‌ସ, ମେଟାଲ ଭାଙ୍ଗି ଜୀବିକା ନିର୍ବାହ କରୁଥିଲେ । ପୂର୍ବେ ଯେପରି ପ୍ରତ୍ୟେକ ଘରେ ଢିଙ୍କି ସାହାଯ୍ୟରେ ଲୋକମାନେ ଧାନରୁ ଚାଉଳ ବାହାର କରୁଥିଲେ, ପରେ ଏ ଅଞ୍ଚଳରେ ଧାନ ମିଲ୍ ବସିବା ପରେ ଢିଙ୍କି ଲୋପ ପାଇଲା ସେହିଭଳି ବର୍ତ୍ତମାନ ପ୍ରଚୁର ପରିମାଣରେ ଚିପସ ଦରକାର ହେଉଥିବାରୁ ଏ ଅଞ୍ଚଳରେ କେତେକ ଷ୍ଟୋନ କ୍ରସର ବସି ସେଥିରୁ ପ୍ରଚୁର ପରିମାଣରେ ଚିପସ ଏବଂ ମେଟାଲ ବାହାରୁ ଅଛି । ଫଳରେ ଆଦିବାସୀମାନଙ୍କର ହାତଭଙ୍ଗା ମେଟାଲ ଏବଂ ଚିପସ ପ୍ରସ୍ତୁତି ଲୋପ ପାଇବାକୁ ବସିଲାଣି ।



## ସାଂସ୍କୃତିକ ଅନୁଷ୍ଠାନ

୧୯୩୮ ମସିହାରେ ବୋଲଗଡରେ "ବାସନ୍ତୀ କ୍ଲବ" ନାମରେ ସର୍ବପ୍ରଥମେ ପ୍ରାକ୍ତନ ଶିକ୍ଷକ ଶ୍ରୀ ବିଦ୍ୟାଧର ଚଉଧୁରୀଙ୍କ ପ୍ରଚେଷ୍ଟାରେ ଗଠନ ହୋଇ ଥିଲା । ନାଟକ ମଞ୍ଚସ୍ଥ ଏହି କ୍ଲବର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଶ୍ରୀ କାହ୍ନୁ ଚରଣ ଯତି, ରଘୁନାଥ ସେଠୀ, ସାଧୁ ଚରଣ ଚଉଧୁରୀଙ୍କ ଉଦ୍ୟମରେ ସର୍ବପ୍ରଥମେ ୧୯୪୮ ମସିହାରେ ବାପୁଜୀ ପାଠାଗାର ବୋଲଗଡ ଠାରେ ଗଠନ କରାଯାଇଥିଲା । ତାପରେ ରାମଚଣ୍ଡୀ ପାଠାଗାର ସର୍ବଶ୍ରୀ ତ୍ରିନାଥ ବଳିଆରସିଂହ, ଯୋଗେନ୍ଦ୍ରନାଥ ପାଟଶାଣୀ ଗଠନ କରିଥିଲେ । ପରେ ପରେ କନକଦୁର୍ଗା ପାଠାଗାର ବ୍ରଜ କିଶୋର ପଟ୍ଟନାୟକ, ତାରା ପ୍ରସନ୍ନ ରଥ ଏବଂ ସଦାନନ୍ଦ ସୁବୁଦ୍ଧି ଗଠନ କରିଥିଲେ । ଦିବ୍ୟସିଂହପୁର ଶାସନରେ ଡଃ. ବୈଦ୍ୟନାଥ ମିଶ୍ରଙ୍କ ପ୍ରଚେଷ୍ଟାରେ ପ୍ରାକ ସ୍ୱାଧୀନତା କାଳରେ ଗଢିଉଠିଥିବା

'ଗୋପବନ୍ଧୁ ପାଠାଗାର' ଏ ଅଞ୍ଚଳର ଅନ୍ୟତମ ପୁରାତନ ସାଂସ୍କୃତିକ ଅନୁଷ୍ଠାନ । ୧୯୫୦ ଦଶକରେ ବେଗୁନିଆ ବ୍ଲକ ଚକାପଦା ନିବାସୀ ଶିକ୍ଷାବିତ କାହ୍ନୁଚରଣ ପଣ୍ଡା ତତକାଳୀନ ସମସ୍ତ ପାଠାଗାର ସମୂହର ଏକ ସମ୍ମିଳନୀ କରି ଗ୍ରାମାଞ୍ଚଳରେ ପାଠାଗାର ଆନ୍ଦୋଳନକୁ ଦୃଢ଼ୀଭୁତ କରିବା ପାଇଁ ବିଶେଷ ଉଦ୍ୟମ ଆରମ୍ଭ କରିଥିଲେ ।

ଏହାପରେ ୧୯୬୦ ଅଗଷ୍ଟ୧୫ ସ୍ୱାଧୀନତା ଦିବସରେ ବୋଲଗଡର ସାମୂହିକ କ୍ଲବ 'ଜନତା କ୍ଲବ' ଗଠନ କରାଗଲା । ୰ ହୃଷିକେଶ ପଟ୍ଟନାୟକ ଏହାର ସଭାପତି ଏବଂ ଡଃ କାଳୀ ଚରଣ ମିତ୍ର ଏହାର ସଂପାଦକ ରହିଲେ । ଗ୍ରାମ୍ୟ ଦଳୀୟ ରାଜନୀତି ଏହାର ପ୍ରଗତିର ମୁଖ୍ୟ ଅନ୍ତରାୟ ହେଲା । ୧୯୭୧ରେ ପୁର୍ନବାର ଲେଖକ ସରପଞ୍ଚ ଏବଂ ବ୍ଲକ ଉପାଧକ୍ଷ ଥିଲା ବେଳେ ବ୍ଲକରୁ ୧୫୦୦ ଅନୁଦାନରେ ବର୍ତ୍ତମାନ ଦୃଶ୍ୟମାନ ଗ୍ରାମପଞ୍ଚାୟତ ପ୍ରାଙ୍ଗଣ ପରିସରରେ ଟାଉନ କ୍ଲବ ପୂର୍ବର ଜନତା କ୍ଲବର ବିଶାଳ ରଙ୍ଗମଞ୍ଚ ଗଠନ ହେଲା । ଶ୍ରୀକୃଷ୍ଣ ମୋହନ ପାଲଟାସିଂହ, କାହ୍ନୁ ଚରଣ ଯତି, ସୁଦାମ ଚୌଧୁରୀ, ମାଧବ ଚନ୍ଦ୍ର ଦାସ, ହରିବନ୍ଧୁ ସାହୁ , ଶତୃଘ୍ନ ପ୍ରଧାନ ଏହାର ମୁଖ୍ୟ ସହଯୋଗୀ ଥିଲେ । ସେତେବେଳେ ବାମନ ହାଇସ୍କୁଲରେ ପ୍ରଧାନ ଶିକ୍ଷକ ଥିବା ୰ ବାସୁଦେବ ପ୍ରଧାନ ଏଥିପାଇଁ ଆର୍ଥିକ ସହାୟତା କରିଥିଲେ । ତାପରେ ଗ୍ରାମ୍ୟ ରାଜନୀତି ଏହାକୁ ଆଗେଇ ନେବାରେ ମଧ ଅନ୍ତରାୟ ସୃଷ୍ଟି କଲା ।

୧୯୯୦ ମସିହାରେ ସୁରେନ୍ଦ୍ର ମିଶ୍ର ବିଧାୟକ ହେବା ପରେ ଶ୍ରୀ ରାମଚନ୍ଦ୍ର ମାର୍ଥାଙ୍କ ଉଦ୍ୟମରେ ସରକାରୀ ଅନୁଦାନରେ ବର୍ତ୍ତମାନ ଏହି ଜନତା କ୍ଲବର ଭଗ୍ନ ଗୃହକୁ ପରିବର୍ତ୍ତନ କରାଯାଇ ନୂତନ ପକ୍କା ଗୃହ ନିର୍ମାଣ କରାଗଲା । ଏହାର ନାମ ଟାଉନ କ୍ଲବ ରହିଲା । ଏଠାରେ ବୋଲଗଡର ଅଗ୍ରଗାମୀ ସ୍ୱେଚ୍ଛାସେବୀ ସଂସ୍ଥା 'ନାରୟଣ ସେବା ସଂଘ'ର ମୁଖ୍ୟ କାର୍ଯ୍ୟାଳୟ ରହିଅଛି । ଗ୍ରାମର ସମସ୍ତ ସଭା ସମିତି ଏବଂ ବୈଠକ ଏଠାରେ ହେଉଅଛି ।

ନନ୍ଦିଘୋଷ -

୧୯୭୮ ମସିହାରେ ଡଃ. ବୈଦ୍ୟନାଥ ମିଶ୍ରଙ୍କ ଅଧ୍ୟକ୍ଷତାରେ ରାଜ୍ୟସ୍ତରୀୟ ସାଂସ୍କୃତିକ ଏବଂ ସ୍ୱେଚ୍ଛାସେବୀ ଅନୁଷ୍ଠାନ "ନନ୍ଦିଘୋଷ" ଜନ୍ମ ନେଲା । ଦୀର୍ଘ ୨୫ ବର୍ଷ ଧରି ଏ ଅଞ୍ଚଳର ସାଂସ୍କୃତିକ ସାହିତ୍ୟ ସେବା ଏବଂ ବିଭିନ୍ନ ଜନହିତକର କାର୍ଯ୍ୟରେ ଅଗ୍ରଣୀ ଭୂମିକା ଗ୍ରହଣ କରି ରାଜ୍ୟର ବରପୁତ୍ର ମାନଙ୍କୁ ନନ୍ଦିଘୋଷ ପୁରସ୍କାର ପ୍ରଦାନ କରିବା ସଂଗେ ସଂଗେ ବିଭିନ୍ନ ଖ୍ୟାତି ଅର୍ଜନ କରିଥିବା କୃତୀ ସନ୍ତାନ ଏବଂ ଛାତ୍ର ଛାତ୍ରୀଙ୍କୁ ସମ୍ମାନୀତ କରିଆସୁଅଛି । ଏହି ଅନୁଷ୍ଠାନ ଯୋଗୁଁ ବୋଲଗଡରେ ମହାବିଦ୍ୟାଳୟର ସମ୍ଭବ ହୋଇଥିଲା । ଏ ସମ୍ପର୍କରେ ଡଃ. ବୈଦ୍ୟନାଥ ମିଶ୍ର ତାଙ୍କର ଜୀବନୀ "ସ୍ମୃତି

ତୀର୍ଥର" ପୃ-୨୦୯ ରୁ ୨୧୫ ରେ ଦେଇଥିବା ତଥ୍ୟ ନିମ୍ନରେ ଦିଆଗଲା ।

## ସ୍ମୃତି-ତୀର୍ଥ

- ଡକ୍ଟର ବୈଦ୍ୟନାଥ ମିଶ୍ର

ବାଣୀବିହାରରେ ପ୍ରଫେସର ଥିଲାବେଳେ ମୋର ବ୍ୟକ୍ତିଗତ ଜୀବନରେ ମଧ୍ୟ କିଛି ପରିବର୍ତ୍ତନ ହେଲା । ମୁଁ ଏମ୍.ଏ. ପଢିସାରି ଆସି ଯେତେବେଳେ ରାଜନୈତିକ କ୍ଷେତ୍ରରେ ପ୍ରବେଶ କଲି, ସେତେବେଳେ ବୋଲଗଡ ଯାଇ କିଛି ସଂଗଠନ ମୂଳକ କାମ କରିବାକୁ ଚେଷ୍ଟା କରିଥିଲି । ବୋଲଗଡ ହେଉଛି ମୋ ଅଞ୍ଚଳ । କାରଣ ଆମ ଗ୍ରାମ ସେଠାରୁ ମୋଟେ ତିନି କିଲୋମିଟର ଦୂର । କିନ୍ତୁ ଏହି ସଂଗଠନ କାମକୁ ସ୍ଥାନୀୟ କେତେକ କଂଗ୍ରେସ ଲୋକ ଭୁଲ ବୁଝି ମୋର ବିରୋଧ କଲେ । ସେମାନେ ଭାବିଲେ ଯେ ସେହି ସଂଗଠନ କାମରେ ମୋର ରାଜନୈତିକ ଉଦ୍ଦେଶ୍ୟ ଅଛି, ମୁଁ ବୋଲଗଡ ଅଞ୍ଚଳରୁ ଏମ୍.ଏଲ.ଏ. ହେବାକୁ ଉଦ୍ୟମ କରୁଛି । ମୁଁ ସେତେବେଳେ ଏମ୍.ଏଲ.ଏ. କଥା ଆଦୌ ଚିନ୍ତା କରି ନଥିଲି । ଆମେ ସେହି ସମୟରେ ଚାରିଆଡେ ବୁଲି ସଭା କରୁଥିଲୁ । ବୋଲଗଡର ଗୋଟିଏ ସଭାରେ ମୁଁ କହିସାରିବା ପରେ ମୋ ଉପରେ ତୀବ୍ର ଆକ୍ରମଣ ହେଲା- ଆକ୍ରମଣ ଅର୍ଥ ଘୋର ପ୍ରତିବାଦ । ସେତେବେଳକୁ ରାଜନୈତିକ ସଭାରେ ଠେଙ୍ଗା, ବାଡି , ଢେଲା କି ବୋମାର ପ୍ରଚଳନ ହୋଇ ନଥିଲା । ସେହି ସଭାରେ ବନମାଳୀବାବୁ ଓ ଜାନକୀବାବୁ ମଧ୍ୟ ଉପସ୍ଥିତ ଥିଲେ । ସେମାନେ ଏହି ଆକ୍ରମଣ ବିରୋଧରେ ଦୃଢ ମତ ପ୍ରକାଶ କଲେ । କିନ୍ତୁ ମୋର ମନେହେଲା ଯେ ଏହିସବୁ ଆକ୍ରମଣ କ୍ଷୁଦ୍ର ସ୍ୱାର୍ଥ ପାଇଁ ହେଉଛି-ତେଣୁ ଯେତିକି ଦିନ ସେତେବେଳେ ରାଜନୀତି ଭିତରେ ରହିଲି, ବୋଲଗଡକୁ ମୋର କର୍ମକ୍ଷେତ୍ର କରିବାକୁ ଚାହିଁଲି ନାହିଁ । ଚାକିରି ଜୀବନରେ ଆଭିମୁଖ୍ୟ ପୂରାପୂରି ବଦଳିଗଲା, ବୋଲଗଡ ମୋର ମନରୁ ଲିଭିଗଲା ।

ତେବେ ବାଣୀବିହାରରେ ପ୍ରଫେସର ଥିଲାବେଳେ ବୋଲଗଡର କେତେକ ସ୍ଥାନୀୟ ମୁରବୀ ଲୋକ ମତେ ଆସି ଦେଖାକରି ବୋଲଗଡରେ ଗୋଟିଏ ସ୍ୱେଚ୍ଛାସେବୀ କ୍ଲବ ପ୍ରତିଷ୍ଠା କରିବାକୁ ଚାହିଁଲେ । ଶହୀଦନଗରର ଆମ ଘରେ ୧୯୭୭ ମସିହା ଅକ୍ଷୟ ତୃତୀୟା ଦିନ ଏହି ବୈଠକ ବସିଥିଲା । ସେଥିରେ ସର୍ବଶ୍ରୀ ଭାସ୍କର ମହାପାତ୍ର, ଅକ୍ଷୟ ପଟ୍ଟନାୟକ, ରବୀନ୍ଦ୍ର କୁମାର ପରିଡା, ବାସୁଦେବ ପଟ୍ଟନାୟକ, ହରିବନ୍ଧୁ ସାହୁ ଓ ଗୁଣନିଧି ହୋତା ଯୋଗ ଦେଇଥିଲେ । ସେହି ବୈଠକରେ ଠିକ୍ ହେଲା ଯେ କ୍ଲବ ନାମ "ନନ୍ଦିଘୋଷ' ହେବ ଏବଂ ଏହା ପୂରାପୂରି ଅଣ-ରାଜନୀତକ ଅନୁଷ୍ଠାନ ହିସାବରେ ବୋଲଗଡ ଅଞ୍ଚଳର ସାଂସ୍କୃତିକ ଓ ସାମାଜିକ ଉନ୍ନତି ପାଇଁ କାମ କରିବ । ସେମାନଙ୍କ

ଅନୁରୋଧରେ ମୁଁ  ସଭାପତି ହେଲି ଓ  ଶ୍ରୀ ହରିବନ୍ଧୁ ସାହୁ ପ୍ରଥମ ସେକ୍ରେଟେରୀ ହେଲେ । ୧୯୭୮-୭୯ ଠାରୁ ସେହି 'ନନ୍ଦିଘୋଷ' ଭିନ୍ନ ଭିନ୍ନ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟ କରିବାରେ ବ୍ୟସ୍ତ ରହିଛି । ହରିବନ୍ଧୁଙ୍କ ପରେ ଶ୍ରୀ ବାସୁଦେବ ପଟ୍ଟନାୟକ ଏହାର ସେକ୍ରେଟେରୀ ହିସାବରେ କାମ କରୁଛନ୍ତି । ମୁଁ ଯେ ଏହି  ଅନୁଷ୍ଠାନରେ ବେଶି କାମ କରୁଛି, ତାହା ନୁହେଁ, ଉପରୋକ୍ତ ଉଦ୍ୟୋକ୍ତାମାନେ  କାମ କରୁଛନ୍ତି, ମୁଁ ସେମାନଙ୍କୁ କେବଳ ସାହାଯ୍ୟ କରୁଛି ।

ନନ୍ଦିଘୋଷ ବିଷୟରେ କିଛି ଲେଖିବା ଉଚିତ ବୋଲି ମନେ କରୁଛି ।  କାରଣ ଗୋଟିଏ ସାଂସ୍କୃତିକ ଅନୁଷ୍ଠାନ ଗୋଟିଏ  ଅଞ୍ଚଳରେ କିପରି ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ଆଣିପାରେ ତାହା ଏହି ଅନୁଷ୍ଠାନର କାର୍ଯ୍ୟକଳାପରୁ ଜାଣିହେବ ।  ଏଥିରେ ବେଶି କିଛି ପୁଞ୍ଜି ନାହିଁ, କିନ୍ତୁ କେତେକଜଣଙ୍କର ନିଃସ୍ୱାର୍ଥପର ନିଷ୍ଠା ରହିଛି । ମୋର ବେଶି କିଛି କୃତିତ୍ୱ ନାହିଁ, କେବଳ ସହଯୋଗ ଅଛି ।  ତେଣୁ ନନ୍ଦିଘୋଷ କଥା ଲେଖି କିଛି ସମ୍ମାନ ହାସଲ କରିବା ମୋ ଲେଖାର ଉଦ୍ଦେଶ୍ୟ ନୁହେଁ ।  ଗତ  ୧୭/ ୧୮ ବର୍ଷ ଭିତରେ ନନ୍ଦିଘୋଷ ଚାରି ପାଞ୍ଚୋଟି ଉଲ୍ଲେଖନୀୟ କାମ କରିଛି, ଯେଉଁଥିପାଇଁ ଅନେକ ବିଶିଷ୍ଟ  ଲୋକଙ୍କଠାରୁ ସମର୍ଥନ ଲାଭ କରିପାରିଛି । ପ୍ରଥମ କାମ ହେଉଛି  ପ୍ରତ୍ୟେକ ବର୍ଷ ୩/ ୪ଦିନ ଧରି ଏକ ସାଂସ୍କୃତିକ ସମାରୋହ ବୋଲଗଡରେ ଅନୁଷ୍ଠିତ ହେଉଛି । ଅନେକ ଲେଖକ, ସାହିତ୍ୟିକ, କବି, ସମାଜସେବୀ ଏହି ସମାରୋହରେ  ଯୋଗଦେଇ ଉଦବୋଧନ ଦେଉଛନ୍ତି । ଏହି ସବୁ  ସମାରୋହକୁ ରାଜ୍ୟପାଳ ଯାଇଛନ୍ତି, ମୁଖ୍ୟମନ୍ତ୍ରୀ ଯାଇଛନ୍ତି, କୁଳପତି ଯାଇଛନ୍ତି । ସେମାନେ ଜନସାଧାରଣଙ୍କର ଉତ୍ସାହ ଦେଖି ଅଭିଭୂତ ହୋଇଛନ୍ତି । ଏହି ସମାରୋହ ସମୟରେ ସ୍ଥାନୀୟ ଯାତ୍ରା ପାର୍ଟି, ପାଲାବାଲା, ପାଇକ ଆଖଡାବାଲା,  ଦଣ୍ଡଯାତ୍ରାବାଲା- ଏମାନେ ସମସ୍ତେ ସେମାନଙ୍କର କଳା ପ୍ରଦର୍ଶନ କରିଛନ୍ତି । ପ୍ରଥମ ଅବସ୍ଥାରେ ଏହି ସାଂସ୍କୃତିକ କାର୍ଯ୍ୟକ୍ରମ  କ୍ରମାନ୍ୱୟରେ ୬/ ୭ ଦିନ ଧରି ଚାଲିଛି  ।  ପରେ ଅର୍ଥର ଯେତେବେଳେ ଅଭାବ ପଡିଛି, ତାକୁ ୩/ ୪ ଦିନରେ ସୀମିତ ରଖାଯାଇଛି । ଏହି ସାଂସ୍କୃତିକ କାର୍ଯ୍ୟକ୍ରମ ବୋଲଗଡ ଅଞ୍ଚଳରେ ଏକ ନୂତନ ଆଲୋଡନ ସୃଷ୍ଟି କରିବାରେ ସମର୍ଥ ହୋଇଛି ।

ପ୍ରତ୍ୟେକ ବର୍ଷ ଏହାର  ବାର୍ଷିକ ଅଧିବେଶନରେ କେତେକ କୃତୀ ନାଗରିକଙ୍କୁ ଉପାୟନ ପ୍ରଦାନ କରାଯାଇଛି । ସେଥିରେ  ଶିକ୍ଷାବିତ୍, ସଂଗୀତଜ୍ଞ, ଖେଳୁଆଡ, ଚାଷୀ, ବୈଜ୍ଞାନିକ, ଲେଖକ, କବି, ସାହିତ୍ୟିକ ଅନ୍ତର୍ଭୁକ୍ତ ହୋଇଛନ୍ତି । ସେମାନେ ନିଜ ନିଜ କ୍ଷେତ୍ରରେ ବୈଶିଷ୍ଟ୍ୟ ଅର୍ଜନ କରି ସମାଜରେ ପ୍ରଶଂସିତ ହୋଇଛନ୍ତି । ଗତ ୧୭/ ୧୮ ବର୍ଷ ଭିତରେ ବୋଧହୁଏ ୭୦ ଜଣ ବିଶିଷ୍ଟ ବ୍ୟକ୍ତିଙ୍କୁ  ଉପାୟନ ପ୍ରଦାନ କରାଯାଇଛି । ୧୯୮୬ ମସିହା ଠାରୁ ଏକ ସ୍ୱତନ୍ତ୍ର ପୁରସ୍କାରର ବ୍ୟବସ୍ଥା ଆରମ୍ଭ କରାଯାଇଛି । ଏ

ପର୍ଯ୍ୟନ୍ତ ଏହି ପୁରସ୍କାର ୰ ବିନୋଦ କାନୁନଗୋ, ଶ୍ରୀ ରାଧାମୋହନ ଗଡ଼ନାୟକ, ଶ୍ରୀ ଭୁବନେଶ୍ୱର ବେହେରା, ଡକ୍ଟର ସଦାଶିବ ମିଶ୍ର, ଶ୍ରୀ ରଙ୍ଗନାଥ ମିଶ୍ର ଓ ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା ଓ ବାଙ୍କ ବିହାରୀ ଦାସଙ୍କୁ ଦିଆଯାଉଛି । ଏହି ପୁରସ୍କାରକୁ ସମସ୍ତେ ପ୍ରଶଂସା କରିଛନ୍ତି, କାରଣ ସେମାନଙ୍କ ଭିତରେ କେହି ବିବଦମାନ ଲୋକ ନାହାନ୍ତି । ସାରା ଓଡ଼ିଶାରେ ସେମାନଙ୍କର ମର୍ଯ୍ୟାଦା ଅକ୍ଷୁଣ୍ଣ ହୋଇ ରହିଛି । ସେମାନେ ନିଜ ନିଜ କ୍ଷେତ୍ରରେ ଯେଉଁ ସଫଳତା ହାସଲ କରିଛନ୍ତି, ସେଥିପାଇଁ ଓଡ଼ିଶାର ଗର୍ବ ଓ ସମ୍ମାନର ପାତ୍ର ହୋଇଛନ୍ତି ।

ଏହା ବ୍ୟତୀତ ନନ୍ଦିଘୋଷ ତରଫରୁ ଅନେକ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟ ମଧ୍ୟ ଧାରାବାହିକ ଭାବରେ ପ୍ରତ୍ୟେକ ବର୍ଷ ସେହି ବୋଲଗଡ ଅଞ୍ଚଳରେ ଅନୁଷ୍ଠିତ ହେଉଛି । ଭିନ୍ନ ଭିନ୍ନ ବିଷୟରେ ଆଲୋଚନା ଚକ୍ର, କବିତା ପାଠୋତ୍ସବ, ପରିବେଶ ଉନ୍ନତି ପାଇଁ ବୃକ୍ଷରୋପଣ, ପାଇଖାନା ଯୋଗାଣ, ଛୋଟ ପିଲାମାନଙ୍କ ପାଇଁ ଶିଶୁ ପରିଚର୍ଯ୍ୟା କେନ୍ଦ୍ର ଓ ବେକାରୀ ସମସ୍ୟାର ସମାଧାନ ପାଇଁ ସାଇକେଲ ମରାମତି, ସିଲେଇ ଓ ବେତ ବାଉଁଶରେ ନିର୍ମିତ ଉପକରଣ ଶିକ୍ଷା, ସଂକ୍ଷିପ୍ତ ମାଟ୍ରିକ ଶିକ୍ଷା ପାଠ୍ୟକ୍ରମ, ପ୍ରୌଢ଼ଶିକ୍ଷା କେନ୍ଦ୍ର ସ୍ଥାପନ, ସ୍ୱାସ୍ଥ୍ୟର ଉନ୍ନତି ପାଇଁ ଚକ୍ଷୁ ଚିକିତ୍ସା ଶିବିର, ଦନ୍ତଚିକିତ୍ସା ଶିବିର, ନାସା କର୍ଣ୍ଣ ଗଳା ଶିବିର, ପ୍ରାକୃତିକ ବିପତ୍ତି ସମୟରେ ରିଲିଫ କାର୍ଯ୍ୟ- ଏହିସବୁ ଭିନ୍ନ ଭିନ୍ନ କାର୍ଯ୍ୟ ହାତକୁ ନେଇ ନନ୍ଦିଘୋଷ କେବଳ ବୋଲଗଡରେ ନୁହେଁ, ସାରା ଓଡ଼ିଶାରେ ମଧ୍ୟ କିଛି ପ୍ରତିଷ୍ଠା ଅର୍ଜନ କରିପାରିଛି । ନନ୍ଦିଘୋଷ କ୍ଲବ ଭିତରେ ଗୋଟିଏ ଲାଇବ୍ରେରୀ ଅଛି । ସ୍ଥାନୀୟ ଲୋକମାନେ ଏହି କ୍ଲବକୁ ଆସି ପ୍ରତ୍ୟେକ ଦିନ ସମ୍ବାଦପତ୍ର ଓ ଭିନ୍ନ ଭିନ୍ନ ପୁସ୍ତକ ପଢ଼ିବାର ସୁଯୋଗ ପାଉଛନ୍ତି । ଛାତ୍ରମାନଙ୍କ ଭିତରେ ଉତ୍ସାହ ସୃଷ୍ଟି କରିବା ପାଇଁ ସେମାନଙ୍କ ଭିତରେ ଭିନ୍ନ ଭିନ୍ନ ପ୍ରତିଯୋଗିତା କରାଯାଉଛି । ଖେଳ, କସରତ, ପ୍ରବନ୍ଧ, କବିତା ଓ ତର୍କ ବିତର୍କରେ ଆଖପାଖ ଅଞ୍ଚଳର ହାଇସ୍କୁଲ ଛାତ୍ରମାନେ ଯୋଗ ଦେଇଛନ୍ତି । ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷାରେ ପ୍ରତ୍ୟେକ ବର୍ଷ ଜିଲ୍ଲାସ୍ତରରେ ଯେଉଁ ଛାତ୍ର ସର୍ବୋଚ୍ଚ ନମ୍ବର ରଖୁଛି, ସେହି ଛାତ୍ରକୁ "ଉତ୍କଳମଣି ମେଧାବୀ ପୁରସ୍କାର' ପ୍ରଦାନ କରାଯାଉଛି । ଭାରତର ଓ ଓଡ଼ିଶାର ପବିତ୍ର ଦିବସମାନଙ୍କରେ ବିଭିନ୍ନ ପ୍ରକାର ପ୍ରତିଯୋଗିତା କରାଯାଇ ସେମାନଙ୍କୁ ଦେଶର ଐତିହ୍ୟ ବିଷୟରେ ସଚେତନା କରିବାକୁ ଚେଷ୍ଟା କରାଯାଉଛି । ଏହା କେବଳ ଛାତ୍ର ବା ଶିକ୍ଷିତ ଲୋକଙ୍କର ଅନୁଷ୍ଠାନ ହୋଇ ରହିନାହିଁ- ଶିକ୍ଷିତ ଓ ଅଶିକ୍ଷିତ ସମସ୍ତ ଏହି ଅନୁଷ୍ଠାନର ଭିନ୍ନ ଭିନ୍ନ ସାଂସ୍କୃତିକ ଓ ସାମାଜିକ କାର୍ଯ୍ୟରେ ଭାଗ ନେବାକୁ ସୁଯୋଗ ପାଉଛନ୍ତି । ଏହି ଅନୁଷ୍ଠାନ ସାହାଯ୍ୟରେ ବୋଲଗଡ ଅଞ୍ଚଳର ପୁରାତନ ସାହିତ୍ୟ, ସଂସ୍କୃତି ଓ ଐତିହ୍ୟର ପୁନରୁଦ୍ଧାର କରିବାକୁ ଚେଷ୍ଟା କରାଯାଉଛି । ସେଥିପାଇଁ ଓଡ଼ିଶାର

ଭଳି ପ୍ରତିଷ୍ଠ ଲେଖକ, କଳାକାର, ନାଟ୍ୟକାର ଓ ବୁଦ୍ଧିଜୀବୀମାନେ ଏହି ସଂସ୍ଥା ସହିତ ଯେପରି ସଂପୃକ୍ତ, ସ୍ଥାନୀୟ ସଂକୀର୍ତ୍ତନ ଦଳ, ପାଲାଗାୟକ, ଦୁଆରୀ ଓ ଗୀତିନାଟ୍ୟ, ଶ୍ରୀରାମଲୀଳା, ଅପେରା, ଯାତ୍ରାଦଳ ମଧ୍ୟ ସେହିପରି ସଂପୃକ୍ତ । ମୁଁ କହୁନାହିଁ ଯେ ଏହି ସାଂସ୍କୃତିକ ଅନୁଷ୍ଠାନ ଯାହା କିଛି କରିବା କଥା ସବୁ କରିପାରୁଛି । ଅନେକ କାମ ବାକି ଅଛି । ତଥାପି ଓଡିଶାର କଳା, ସାହିତ୍ୟ, ସଂସ୍କୃତି, ଶିକ୍ଷା, ସ୍ୱାସ୍ଥ୍ୟ, ସମାଜସେବା, କ୍ରୀଡା, ପରିବେଶ ଓ କର୍ମଯୋଗାଣ କ୍ଷେତ୍ରରେ ଯାହା କିଛି କାର୍ଯ୍ୟ କରିଛି ବା କରୁଛି, ତାହା ଖୁବ୍ ସାମାନ୍ୟ ବୋଲି କହି ହେବ ନାହିଁ ।

ବୋଲଗଡ ପାଇଁ 'ନନ୍ଦିଘୋଷ'ର ଅନ୍ୟ ଏକ ଦାନ ଅଛି- ସେ ହେଉଛି ପରମାନନ୍ଦ ମହାବିଦ୍ୟାଳୟ । ନନ୍ଦିଘୋଷ ସ୍ୱେଚ୍ଛାସେବୀ ଅନୁଷ୍ଠାନ ପ୍ରତିଷ୍ଠିତ ହେବା ପୂର୍ବରୁ ଅବଶ୍ୟ କେତେକ ବିଶିଷ୍ଟ ଲୋକ ବୋଲଗଡରେ ଗୋଟିଏ କଲେଜ ପ୍ରତିଷ୍ଠା କରିବାକୁ ଉଦ୍ୟମ କରିଥିଲେ; କିନ୍ତୁ ସେ ଉଦ୍ୟମ ସଫଳ ହୋଇପାରିଲାନାହିଁ । ନନ୍ଦିଘୋଷ ପ୍ରତିଷ୍ଠା ହେଲା ପରେ ସେହି ଉଦ୍ୟୋକ୍ତାମାନଙ୍କ ଭିତରୁ କେତେଜଣ ମତେ ସାକ୍ଷାତ୍ କରି କଲେଜ ପ୍ରତିଷ୍ଠା କରିବା ପାଇଁ ଅନୁରୋଧ କଲେ । ମୁଁ ଏକ ସାଧାରଣ କଲେଜ ପ୍ରତିଷ୍ଠା କରିବା ସପକ୍ଷରେ ନଥିଲି । କିନ୍ତୁ ଏକ ବିଜ୍ଞାନ କଲେଜ ପ୍ରତିଷ୍ଠା କରିବା ପାଇଁ ଯେତେ ଅର୍ଥ ଦରକାର ସେତେ ଅର୍ଥ କେଉଁଠୁ ମିଳିବ ବୋଲି ଆଶା ଦେଖାଯାଉ ନଥିଲା । ୧୯୮୦ ରେ ନନ୍ଦିଘୋଷର ଦ୍ୱିତୀୟ ସାମ୍ବତ୍ସରିକ ଉପାୟନ ଉତ୍ସବ ପରେ ସ୍ଥିର କରାଗଲା ଯେ ନିର୍ବାଚନ ପରେ କଲେଜ ପ୍ରତିଷ୍ଠା କରିବା ପାଇଁ ଚେଷ୍ଟା କରାଯିବ । ନିର୍ବାଚନ ସରିଲା । ବହୁସଂଖ୍ୟାରେ କଂଗ୍ରେସ ପ୍ରାର୍ଥୀମାନେ ଜିଣି ସରକାର ଗଠନ କରିବାକୁ ସମର୍ଥ ହେଲେ । ସ୍ଥାନୀୟ ମୁରବୀ ଲୋକମାନଙ୍କ ଭିତରେ କଲେଜ ପ୍ରତିଷ୍ଠା କରିବାର ଆଶା ଉଜ୍ଜ୍ୱଳ ହୋଇ ଉଠିଲା । ସ୍ଥାନୀୟ ଏମ.ପି. ଓ ଏମ୍.ଏଲ୍.ଏ. ଉଭୟେ କଂଗ୍ରେସ ଲୋକ ଥିଲେ- ତେଣୁ ସେମାନଙ୍କର ଏଥିରେ ସମର୍ଥନ ମିଳିବ ବୋଲି ଆଶା କରିବା ସ୍ୱାଭାବିକ ଥିଲା ।

ଉଦ୍ୟୋକ୍ତାମାନଙ୍କ ଭିତରୁ ବୋଧହୁଏ ବାମନ ହାଇସ୍କୁଲର ଶିକ୍ଷକ ଶ୍ରୀ ଗଦାଧର ଷଡଙ୍ଗୀ ଓ ସ୍ଥାନୀୟ ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ ପ୍ରସ୍ତାବ ଦେଲେ ସାଧାରଣ କଲେଜ ନ କରି ଯଦି ଏକ ପ୍ରଶିକ୍ଷଣ ମହାବିଦ୍ୟାଳୟ ସ୍ଥାପନ କରାଯାଏ, ତାହାହେଲେ ଶିକ୍ଷାର ଆଭିମୁଖ୍ୟରେ ଏକ ନୂତନ ଦିଗ ପ୍ରତିଷ୍ଠିତ ହେବ । ଏହାକୁ ସମସ୍ତେ ଅନୁମୋଦନ କଲେ ଏବଂ ଶ୍ରୀ ଭାସ୍କର ମହାପାତ୍ର ସେଥିପାଇଁ ଏକଲକ୍ଷ ଟଙ୍କା ଦେବେ ବୋଲି ପ୍ରତିଶ୍ରୁତି ଦେଲେ । ସେହି ଅନୁସାରେ ଠିକ୍ କରାଗଲା କଲେଜର ନାମ ଭାସ୍କର ବାବୁଙ୍କର ପିତା ପରମାନନ୍ଦଙ୍କ ନାମରେ ନାମିତ ହେବ । ଯେଉଁମାନେ କଲେଜ ପ୍ରତିଷ୍ଠାରେ ସକ୍ରିୟ ଭାଗ ନେଇଥିଲେ ସେମାନେ ହେଲେ ସର୍ବଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ, ଭାସ୍କର

ଚନ୍ଦ୍ର ମହାପାତ୍ର, ରବୀନ୍ଦ୍ର କୁମାର ପରିଡା, ବାସୁଦେବ ପଟ୍ଟନାୟକ, କୈଳାସ ମହାପାତ୍ର ଏମ.ଏଲ.ଏ, ଗଦାଧର ଷଡଙ୍ଗୀ, ଉପେନ୍ଦ୍ର ସିଂହ ପ୍ରଭୃତି । ସେମାନେ ସବୁ ଏହି ପ୍ରସ୍ତାବ ନେଇ ଶିକ୍ଷାମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କୁ ଭେଟିଲେ । ଗଙ୍ଗାଧରବାବୁ ଏସବୁ ବିଷୟରେ ଖୁବ୍ ସାହାଯ୍ୟକାରୀ । ତାଙ୍କର କିଛି ଆପତ୍ତି ନଥିଲା । କିନ୍ତୁ ଶିକ୍ଷା ସଚିବ କହିଲେ ଘରୋଇ ଭାବରେ ପ୍ରଶିକ୍ଷଣ ମହାବିଦ୍ୟାଳୟ ଏ ପର୍ଯ୍ୟନ୍ତ ଓଡିଶାରେ କେଉଁଠି ପ୍ରତିଷ୍ଠା ହୋଇନାହିଁ । ଏଣୁ ଏହାକୁ କ୍ୟାବିନେଟ୍ ମଞ୍ଜୁର ନ କଲେ ଘରୋଇ ଭାବରେ ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇପାରିବ ନାହିଁ । ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ପାଖକୁ ଫାଇଲ ଗଲା । ସେ ମତେ ଡାକି କେତେକ ପ୍ରତିଶ୍ରୁତି ଚାହିଁଲେ । ମୁଁ ସବୁଥିରେ ରାଜି ହୋଇଗଲି ଯଦିଓ ଜାଣିଥିଲି ଏହି ପ୍ରତିଶ୍ରୁତି ପୂରଣ କରିହେବ ନାହିଁ । ମୁଖ୍ୟମନ୍ତ୍ରୀ ଅନୁମତି ଦେଇଦେଲେ । ଓଡିଶାରେ ପ୍ରଥମ କରି ଏକ ଘରୋଇ ପ୍ରଶିକ୍ଷଣ ମହାବିଦ୍ୟାଳୟ ପ୍ରତିଷ୍ଠିତ ହେଲା, ମୁଁ ହେଲି ତାର ସଭାପତି, ଶ୍ରୀ ଭାସ୍କର ମହାପାତ୍ର ସେକ୍ରେଟେରୀ ଓ ଶ୍ରୀ ଅକ୍ଷୟ ପଟ୍ଟନାୟକ ଟ୍ରେଜରର । ଶ୍ରୀ ଶତ୍ରୁଘ୍ନ ନାଥ ଅଧକ୍ଷ ହୋଇ କଲେଜରେ ଯୋଗ ଦେଲେ । ସେ ଯୋଗ ଦେବା ଫଳରେ କଲେଜର ପ୍ରତିଷ୍ଠା ଅନେକ ବଢିଗଲା ।

ମୁଁ କଲେଜର ସଭାପତି ହିସାବରେ ଦୁଇଟି ସର୍ତ୍ତ ରଖିଥିଲି । ପ୍ରଥମ ହେଉଛି ଯେ ଯେଉଁ ଅଧ୍ୟାପକମାନେ କଲେଜରେ ଯୋଗଦେବେ, ସେମାନଙ୍କୁ ଏକ ସିଲେକ୍ଟ କମିଟି ଅନୁସାରେ ସିଲେକ୍ଟ କରାଯିବ । ଏଇ ସିଲେକ୍ଟ କମିଟିରେ ବିଶେଷଜ୍ଞମାନେ ରହିବେ ।

ଦ୍ୱିତୀୟରେ କୈଣସି ଅଧ୍ୟାପକମାନଙ୍କଠାରୁ ଡୋନେସନ୍ ନିଆଯିବ ନାହିଁ । ପରିଚାଳନା କମିଟି ତାକୁ ମାନିନେଲେ । କଲେଜ ଚାଲିଲା । ଭାସ୍କରବାବୁଙ୍କ ଉଦ୍ୟମ, ଅକ୍ଷୟବାବୁଙ୍କର ଉତ୍ସାହ ଓ ରବୀନ୍ଦ୍ର ବାବୁଙ୍କର ପରାମର୍ଶ ଅନୁସାରେ କଲେଜର ଅନେକ କିଛି ଉନ୍ନତି ହେଲା । ପ୍ରଶିକ୍ଷଣ ମହାବିଦ୍ୟାଳୟ ଛାତ୍ରମାନଙ୍କଠାରୁ ଯେଉଁ ଚାନ୍ଦା ସଂଗ୍ରହ କରାଗଲା, ସେଥିରେ ଏକ ବିରାଟ କୋଠାଘର ତିଆରି କରାଗଲା । ମୁଖ୍ୟମନ୍ତ୍ରୀ ଏହି କଲେଜକୁ ପ୍ରଥମେ ଉଦ୍‌ଘାଟନ କଲେ ଓ ଶିକ୍ଷାମନ୍ତ୍ରୀ ସରକାରୀ କଳର ସମସ୍ତ କଟକଣାକୁ କୋହଳ କରି କଲେଜକୁ ମଞ୍ଜୁରୀ ଦେଲେ । ସେକ୍ରେଟାରୀ ହିସାବରେ ଭାସ୍କରବାବୁ ଅକ୍ଳାନ୍ତ ପରିଶ୍ରମ କରି କୋଠାଘର ତିଆରି କରିବାଠାରୁ ଉପକରଣ ଖରିଦ କରିବା ପର୍ଯ୍ୟନ୍ତ ସବୁ କାମ ନିଜେ ଦାୟିତ୍ୱ ନେଇ ତୁଲେଇବାକୁ ଚେଷ୍ଟା କଲେ । ମୁଁ ଦେଖିଛି ଦିନେ ଦିନେ ଦୁଇଟା-ତିନିଟା ପର୍ଯ୍ୟନ୍ତ ନ ଖାଇ, ନପିଇ ଖରାରେ ଠିଆହୋଇ ସେ କଲେଜ ଘର ତିଆରି କରିବାରେ ମଜୁରିଆମାନଙ୍କୁ ସାହାଯ୍ୟ କରିଛନ୍ତି । ସୁଖର

କଥା ସେତେବେଳେ ଏହି ତିନିଜଣଙ୍କ ଭିତରେ ଖୁବ୍ ମେଳ ଥିଲା । ତେଣୁ ପ୍ରତ୍ୟେକ ପରସ୍ପରକୁ ସାହାଯ୍ୟ କରିବାକୁ ଚେଷ୍ଟା କରୁଥିଲେ । ଛାତ୍ରମାନଙ୍କ ଠାରୁ ଯେଉଁ ଚାନ୍ଦା ସଂଗ୍ରହ କରାଯାଉଥିଲା, ସେଥିରେ ମଧ୍ୟ ଏକ ସୀମା ନିର୍ଦ୍ଧାରଣ କରାଯାଇଥିଲା । ବୋଧହୁଏ ଏହି ଚାନ୍ଦା ସଂଗୃହୀତ ନହୋଇଥିଲେ କଲେଜ ଘର କି କଲେଜ ପାଇଁ ଉପକରଣ ଖରିଦ ହୋଇପାରି ନଥାନ୍ତା ।

କିନ୍ତୁ ଶେଷରେ ଛତୁ ଫୁଟିଲା ପରି ଅନେକ ଘରୋଇ ପ୍ରଶିକ୍ଷଣ ମହାବିଦ୍ୟାଳୟ ଭିନ୍ନ ଭିନ୍ନ ଜାଗାରେ ପ୍ରତିଷ୍ଠିତ ହେଲା । ଏହାକୁ କେତେକ ବ୍ୟବସାୟ ହିସାବରେ ଧରିନେଇ ଅର୍ଥ ଉପାର୍ଜନ କରିବାକୁ ଲାଗିଲେ । ତେଣୁ ସରକାର ବାଧବୋଇ ସ୍ଥିର କଲେ ଯେ ପ୍ରତ୍ୟକ ଜିଲ୍ଲାରେ ଗୋଟିଏ ଲେଖାଏଁ ପ୍ରଶିକ୍ଷଣ ମହାବିଦ୍ୟାଳୟକୁ ମଞ୍ଜୁର ଦିଆଯିବ । ବୋଲଗଡରେ ଯଦିଓ ଏହି ଘରୋଇ ମହାବିଦ୍ୟାଳୟ ପ୍ରଥମରୁ ଆରମ୍ଭ ହୋଇଥିଲା, ଏହା ମଞ୍ଜୁର ପାଇ ପାରିଲା ନାହିଁ । ସେଥିପାଇଁ କିଛି ଧରାଧରି କରିବା ଦରକାର ପଡ଼ିଲା । ଧରାଧରି ଖାଲି ଅନୁରୋଧରେ ସରିଯାଏ ନାହିଁ, ସେଥିପାଇଁ ବହୁତ ଅର୍ଥର ପ୍ରୟୋଜନ ହୁଏ । ବୋଲଗଡ ସେହି କାମଟି କରିପାରିଲା ନାହିଁ । ତେଣୁ ପ୍ରଶିକ୍ଷଣ ଶିକ୍ଷା ବନ୍ଦ ହୋଇଗଲା । କିନ୍ତୁ ଏହା ବନ୍ଦ ହେବା ପୂର୍ବରୁ କଲେଜର ମ୍ୟାନେଜିଙ୍ଗ କମିଟି କଳା ଓ ବିଜ୍ଞାନରେ +୨ ବିଭାଗ ସେହି କଲେଜରେ ଖୋଲି ସାରିଥିଲେ । ତେଣୁ କଲେଜ ବନ୍ଦ ହେଲାନାହିଁ, ପ୍ରଶିକ୍ଷଣ ମହାବିଦ୍ୟାଳୟ ଏକ କଳା ଓ ବିଜ୍ଞାନ କଲେଜ ହିସାବରେ ନାମିତ ହେଲା ଓ ସମୟକ୍ରମେ ସରକାରୀ ମଞ୍ଜୁରୀ ମଧ୍ୟ ପାଇଲା । ଜନତା ସରକାର ଆସିଲା ପରେ ମ୍ୟାନେଜିଙ୍ଗ କମିଟିର ଗଠନ ନେଇ କେତେକ ସର୍ତ୍ତ ନିରୂପଣ କଲେ । ମ୍ୟାନେଜିଙ୍ଗ କମିଟିର ସଭ୍ୟମାନଙ୍କ ଭିତରେ ମଧ୍ୟ କିଛି ମନୋମାଳିନ୍ୟ ଦେଖିବାକୁ ମିଳିଲା । ଏକାଠି ସବୁ ସଭ୍ୟ ମିଶି ସହଜରେ ଗୋଟିଏ କାମ ବେଶିଦିନ କରିପାରନ୍ତି ନାହିଁ । ଓଡିଆମାନଙ୍କ ଭିତରେ ପରସ୍ପର ଗୋଡ ଟାଣିବାର ଗୋଟିଏ ଅଭ୍ୟାସ ଅଛି ବୋଲି ଅନେକ କହନ୍ତି । ମୁଁ ଦେଖିଲି ଯେତେବେଳେ କଲେଜ ସ୍ଥାୟୀ ହୋଇ ସରକାରୀ ଗ୍ରାଣ୍ଟ ପାଇଲାଣି, ମୋର ସେଥିରେ ରହିବାର କୌଣସି କାରଣ ନାହିଁ । ସେଥିପାଇଁ ମୁଁ ଇସ୍ତଫା ଦେଲି । ମୋର ଅବଶ୍ୟ ଇସ୍ତଫା ଏ ପର୍ଯ୍ୟନ୍ତ ଗ୍ରହଣ କରାଯାଇନାହିଁ । ତେବେ ମୁଁ ଗତ ୩ବର୍ଷ ହେଲା କଲେଜ କାମ କିଛି କରୁନାହିଁ । କାହିଁକି ମୋ ଇସ୍ତଫା ଗୃହୀତ ହୋଇନାହିଁ, ସେ ଏକ ବିରାଟ ଇତିହାସ । ସେ କଥା ଲେଖି କିଛି ଲାଭ ନାହିଁ । ଏହି କଲେଜ କଥା ଲେଖିବାର ଏକମାତ୍ର ଉଦ୍ଦେଶ୍ୟ ହେଉଛି ଯେ, ନନ୍ଦିଘୋଷ ଯୋଗୁଁ ଏହି କଲେଜର ଉତ୍ପତ୍ତି ହୋଇଛି ।

ଇଷ୍ଟର୍ଣ୍ଣ କଲଚୁରାଲ ଆସୋସିଏସନ -

ନନ୍ଦିଘୋଷ ଅନୁଷ୍ଠାନର ଗଠନ ପରେ ମାଣିକାଗୋଡାର ଶ୍ରୀ ରାଜକିଶୋର ପଟ୍ଟନାୟକଙ୍କର ପୃଷ୍ଠପୋଷକତାରେ ବୋଲଗଡ ଏବଂ ଆଖପାଖ ଗ୍ରାମର କେତେକ ଶିକ୍ଷିତ ଯୁବକ ଏବଂ ଶିକ୍ଷକଙ୍କୁ ନେଇ ଉପରୋକ୍ତ ଅନୁଷ୍ଠାନ ଗଠନ କରାଯାଇଥିଲା । ଏହି ଅନୁଷ୍ଠାନ କିଛି ଭଲ କାର୍ଯ୍ୟ କରିବା ସହ ୧୯୮୪ ମସିହାରେ ସମାଜ ଅଫିସ ସହ ଯୋଗାଯୋଗ କରି ଗୋପବନ୍ଧୁ ଛକରେ ଡଃ. ରାଧାନାଥ ରଥଙ୍କ ସହାୟତାରେ ଗୋପବନ୍ଧୁଙ୍କର ଏକ ପ୍ରତିମୂର୍ତ୍ତି ସ୍ଥାପନ କରିଥିଲେ । ଶ୍ରୀ ଗଦାଧର ଷଡଙ୍ଗୀ ଅନୁଷ୍ଠାନର ସଭାପତି ଥିଲା ବେଳେ ସର୍ବଶ୍ରୀ ପ୍ୟାରିମୋହନ ଦାସ, ଅଶୋକ ଦର, ପ୍ରଫୁଲ୍ଲ ସେନାପତି ପ୍ରମୁଖ ଏହାର ମୁଖ୍ୟ ସହଯୋଗୀ ଥିଲେ ।

ବାପୁଜୀ ଯୁବ ସଂଘ -

ପୁରାତନ 'ବାପୁଜୀ ପାଠାଗାର'ର ନବୀକରଣ 'ବାପୁଜୀ ଯୁବସଂଘ'ର ୩୦ ବର୍ଷ ପୂର୍ବେ ଏ ଅଞ୍ଚଳର ଅଗ୍ରଗାମୀ ଯୁବକ ସଂଘ ରୂପେ ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟରେ ଆଗୁସାର ହୋଇଥିଲା । ଦୁର୍ଗାପୂଜା ବେଳେ ଏହାର ମୁଖ୍ୟ ସାଂସ୍କୃତିକ କାର୍ଯ୍ୟକ୍ରମ ଅନୁଷ୍ଠିତ ହୁଏ । କିଛି ବର୍ଷଧରି ସଭ୍ୟମାନଙ୍କ ମଧ୍ୟରେ ମତାନ୍ତର ଯୋଗୁଁ ଏହି ଅନୁଷ୍ଠାନର କାର୍ଯ୍ୟକ୍ରମ ଧିମେଇ ଯିବାପରେ ନିକଟରେ ପୁର୍ନବାର ସଭ୍ୟମାନଙ୍କର ଉତ୍ସାହରେ ଏହି ଅନୁଷ୍ଠାନ ନୂତନ ରୂପ ନେବା ସଂଗେ ସଂଗେ ଦୁର୍ଗାପୂଜାର ୫୦ ତମ ପୂର୍ତ୍ତୀ ଉତ୍ସବ ସୁବର୍ଣ୍ଣ ଜୟନ୍ତୀ ପାଳନ କରିଅଛି । ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଡଃ ଗିରିଧର ଗମାଙ୍ଗ ଏହି ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗଦେଇ ତାଙ୍କୁ ବାଦନ କରିଥିଲେ । ଏଥିରେ ସୌରାଂଶୁ ପରିଡା (ମୁନା)ଙ୍କ ଉଦ୍ୟମ ସର୍ବାଗ୍ରେ ପ୍ରଂଶସନୀୟ ।

ନାରୟଣ ସେବା ସଂଘ -

ବର୍ତ୍ତମାନ ବୋଲଗଡ ନାରାୟଣ ସେବା ସଂଘ ଖୋର୍ଦ୍ଧା ଜିଲ୍ଲାର ଏକ ଅଗ୍ରଗାମୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଭାବରେ ପ୍ରତିଷ୍ଠା ଲାଭ କରି ବହୁ ପ୍ରକାର ଯୋଜନା ମୂଳକ ସରକାରୀ କାର୍ଯ୍ୟକ୍ରମ ହାତକୁ ନେଇ ତାହାର ସଫଳ ରୂପାୟନ କରିଅଛି । ବିଶେଷ କରି ମହିଳା ମାନଙ୍କର ପ୍ରଗତି ପାଇଁ ଏବଂ ସ୍ୱାସ୍ଥ୍ୟସେବା ପରିମଳ କାର୍ଯ୍ୟକ୍ରମରେ ଏହାର ଭୂମିକା ସର୍ବାଜନାଦୃତ ହୋଇଅଛି । ଗୌରାଙ୍ଗ ଚମ୍ପତି, ଦେବପ୍ରସାଦ ସାହୁ, ସଞ୍ଜୟ କୁମାର ପଟ୍ଟନାୟକ ଏବଂ ୰ ଭୀମଭାଇ ରାମଙ୍କର ଭୂମୀକା ବିଶେଷ ପ୍ରଂଶସନୀୟ ।

ପଲ୍ଲୀମଙ୍ଗଳ ଯୁବକ ସଂଘ -

ଏହି ବ୍ଲକର ଗୋପାଳପୁର ଗ୍ରାମପଞ୍ଚାୟତର ନୟାପଲ୍ଲୀ ଗ୍ରାମରେ ଗଠିତ । ଏହି କ୍ଲବ ବ୍ଲକର ଏକ ଅଗ୍ରଣୀ ଅନୁଷ୍ଠାନ ଭାବରେ ଶିକ୍ଷା କ୍ଷେତ୍ରରେ ବହୁ କାର୍ଯ୍ୟକ୍ରମ ସଫଳତାର ସହିତ କାର୍ଯ୍ୟକରିଅଛି । ପ୍ରତିବର୍ଷ ଏହାର ବାର୍ଷିକ ଉତ୍ସବରେ ସପ୍ତାହ ବ୍ୟାପି ବାଦୀପାଲା ଅନୁଷ୍ଠାନ ସ୍ଥାନୀୟ ସାଂସ୍କୃତିକ ଜୀବନକୁ ସରସ ସୁନ୍ଦର କରିଅଛି । ଶ୍ରୀ ପଣ୍ଡିମେଶ୍ୱର ନାୟକ ଏହାର ସ୍ଥାୟୀ ସଭାପତି ଅଛନ୍ତି ।

ଆଶା ମେମୋରିଆଲ ଟ୍ରଷ୍ଟ -

ଖଲ୍ଲୁରିଆ ନିବାସୀ ଜାନକୀ ବଲ୍ଲଭ ପାଢୀ ୧୯୯୪ରେ ଭୁବନେଶ୍ୱର ଠାରେ ରାଜ୍ୟର ଘରୋଇ ସ୍ତରରେ Padhee Tutorial Pvt. Ltd. ଆରମ୍ଭ କରି ଶିକ୍ଷା କ୍ଷେତ୍ରରେ ବହୁ ଉଦୀୟମାନ ପ୍ରତିଭାଙ୍କୁ ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଷ୍ଠା କରିବାରେ ସହାୟକ ହୋଇଅଛି । ତାଙ୍କ ଦ୍ୱାରା ଏହି ସଂସ୍ଥା ଗଠନ କରାଯାଇ ରାଜ୍ୟର ବିଭିନ୍ନ ସ୍ଥାନ ସହ ବୋଲଗଡ ବେଗୁନିଆ ଅଞ୍ଚଳରେ ବହୁ ଜନହିତକର କାର୍ଯ୍ୟ ହାତକୁ ନିଆଯାଇଅଛି । ସବୁଠାରୁ ମହତ୍ୱପୂର୍ଣ୍ଣ ବିଷୟ ତାଙ୍କର ଧର୍ମପତ୍ନୀ ଶ୍ରୀମତୀ ଲୁସି ମହାପାତ୍ରଙ୍କ ଅଧ୍ୟକ୍ଷତାରେ ରୋଟାରୀ କ୍ଲବ ସହଯୋଗରେ ଗଠିତ ରୋଟ୍ରାକ୍ଟ କଳିଙ୍ଗ (Rotract Kalinga) ଅନୁଷ୍ଠାନ ସାରା ବିଶ୍ୱରେ ଦ୍ୱିତୀୟ ଏବଂ ଏସିଆ ମହାଦେଶରେ ପ୍ରଥମ ସ୍ଥାନ ଅଧିକାର କରିବାର ଗୌରବ ଅର୍ଜନ କରିଅଛି । "୨୦୦୪ ବୋଲଗଡ ମହୋତ୍ସବ" ଏହି ଅନୁଷ୍ଠାନର ବୋଲଗଡ ବ୍ଲକର ସର୍ବାଙ୍ଗୀନ ଉନ୍ନତି ପାଇଁ ଏକ ବଳିଷ୍ଠ ପଦକ୍ଷେପ ।

ସାପିଡ୍ - ଏହି ସ୍ୱେଚ୍ଛାସେବୀ ଅନୁଷ୍ଠାନ ଜରୀଆରେ ବୋଲଗଡ ବ୍ଲକରେ ପରିମଳ ସହ ବିଭିନ୍ନ ଜନହିତକର କାର୍ଯ୍ୟ କରାଯାଉଅଛି । ଏହାର ସଭାପତି ଅଧ୍ୟାପକ କେଶବ ଚନ୍ଦ୍ର ବଳିଆରସିଂହ ଏବଂ ସଂପାଦକ ଅଭୟ ଜୟସିଂହ ଅଛନ୍ତି ।

ଏହାଛଡା ସାନପଦର ବିବେକାନନ୍ଦ କ୍ଲବ ବୋଲଗଡ ବ୍ଲକର ଏକ ଅଗ୍ରଣୀ ସ୍ୱେଚ୍ଛାସେବୀ ଅନୁଷ୍ଠାନ । ବର୍ତ୍ତମାନ ବୋଲଗଡ ଅଞ୍ଚଳରେ ନୀଳଚକ୍ର ସାଂସ୍କୃତିକ ଅନୁଷ୍ଠାନ, ସିଂହ ବାହିନୀ ଯୁବକ ସଂଘ, ସହୀଦ ଯୁବକ ସଂଘ, ସ୍ୱୀକୃତି, ଜନମଙ୍ଗଳ ସେବାଶ୍ରମ, ମାଣିକସାହିତ୍ୟ ସଂସଦ, ସତ୍ୟଭାମା ବଳିଆର ସିଂହ ସ୍ମୃତି ସଂସଦ, ଠଣାପଲ୍ଲୀ ମିଳିତ ଯୁବକ ସଂଘ ଏବଂ ମୁଖଶାଳା ପ୍ରଭୃତି ଅନୁଷ୍ଠାନ ମାନେ କର୍ମନିଯୁକ୍ତି, କ୍ରୀଡା, ନାଟକ ପ୍ରତିଯୋଗିତା ଏବଂ ରାଜ୍ୟସ୍ତରୀୟ ସାଂସ୍କୃତିକ କାର୍ଯ୍ୟକ୍ରମ କରିବାରେ

ଜନାଦୃତ ହୋଇଅଛି । ଏହାଛଡ଼ା ବୋଲଗଡ ମହୋତ୍ସବ ୨୦୦୪ ଅବସରରେ ବ୍ଲକ ଅଞ୍ଚଳରେ ଅନ୍ୟୂନ ୧୦୦ଟି ସ୍ୱେଚ୍ଛାସେବୀ ଅନୁଷ୍ଠାନର ପଞ୍ଜୀକରଣ ହୋଇଥିବା କଥା ଜଣାଯାଇଅଛି ।



## ବ୍ୟବସାୟ କେନ୍ଦ୍ର ଏବଂ ବଜାର

ବୋଲଗଡ ଅଞ୍ଚଳରେ ରାଜସୁନାଖଳା ଓ କଳାପଥର ମୁଖ୍ୟ ବ୍ୟବସାୟ କେନ୍ଦ୍ର ଅଟେ । ଏହି ଦୁଇଟି କେନ୍ଦ୍ର ବୋଲଗଡର ସମୀପବର୍ତ୍ତୀ ଅଞ୍ଚଳ ହୋଇଥିବାରୁ ବୋଲଗଡ ବ୍ଲକ ଅଞ୍ଚଳର ଲୋକ ଏହା ଉପରେ ବେଶୀ ନିର୍ଭରଶୀଳ । ବୋଲଗଡରେ ପୁରାତନ ବଜାର ଥିଲେ ମଧ୍ୟ ସ୍ଥାନୀୟ ଭୌଗୋଳିକ ପରିସ୍ଥିତି ଏହାର ଉନ୍ନତିରେ ପ୍ରତିବନ୍ଧକ ସୃଷ୍ଟି କରିଅଛି । ବୋଲଗଡର ଉତ୍ତର ଏବଂ ଦକ୍ଷିଣ ପାର୍ଶ୍ୱରେ ଲମ୍ୱା ପାହାଡ ଶ୍ରେଣୀ ଥିବାରୁ ଦକ୍ଷିଣ ଦିଗର ରଣପୁର ନଅପଲ୍ଲୀ ଅଞ୍ଚଳର ଲୋକମାନେ ପୂର୍ବରେ ରାଜସୁନାଖଳା ଏବଂ ପଶ୍ଚିମରେ ଇଟାମାଟି ବ୍ୟବସାୟ କେନ୍ଦ୍ରରେ ଯୋଡି ହୋଇ ଯାଇଛନ୍ତି । ସେହିପରି ଉତ୍ତର ଦିଗରେ ପାହାଡର ଅବସ୍ଥିତି ଯୋଗୁଁ ମଧ୍ୟ ଉତ୍ତର-ପୂର୍ବ ବୋଲଗଡ ଏବଂ ପୂର୍ବ ବୋଲଗଡ ଅଞ୍ଚଳର ଲୋକ ରାଜସୁନାଖଳା, କଳାପଥର ଏବଂ ବେଗୁନିଆଁ ବଜାର ଉପରେ ନିର୍ଭରଶୀଳ । ଏଥିପାଇଁ କାଳୁପଡା ଘାଟଠାରୁ ଆସିଥିବା ରାସ୍ତା ରାଜସୁନାଖଳା ଠାରେ ମହାନଦୀ କୂଳକୁ ବାଙ୍କୋଇ ଗ୍ରାମ ଠାରେ ୨ ଭାଗ ହୋଇଅଛି । ଗୋଟିଏ ସାଗରଗାଁ ଦେଇ ଖଣ୍ଡପଡା ଅଞ୍ଚଳକୁ ଯାଇଥିଲା ବେଳେ ଅନ୍ୟଟି ଆରିକମା ଦେଇ କଳାପଥରକୁ ସଂଯୋଗ କରିଅଛି । ଏହି ଗମନାଗମନ ପଥ ସ୍ଥାନୀୟ ବ୍ୟବସାୟ ଉନ୍ନତିରେ ବିଶେଷ ସହାୟକ ହୋଇଅଛି । କିଛି ବର୍ଷ ହେଲା ଭୀମପଡା ଏବଂ ପିତୁକୁଳୀ ବଜାର ପୂର୍ବ ବୋଲଗଡ ଏବଂ ପଶ୍ଚିମ ବୋଲଗଡ ଅଞ୍ଚଳରେ ମୁଖ୍ୟ ବ୍ୟବସାୟ ପେଣ୍ଠ ରୂପେ ମାନ୍ୟତା ଲାଭ କରିଅଛି । ବର୍ତ୍ତମାନ ଦେଉଳି, ବାଙ୍କୋଇ, ମାଣିକାଗୋଡା, ସଂପୁର, ଆରିକମା, ଗେଡିଆପଲ୍ଲୀ, ବ୍ରହ୍ମପୁରାଛକ, ତାଳତୁମ୍ବ, ଚଟୁଆ ଛକ, ସାଗରଗାଁ ଏବଂ ଚଟୁଆ ଛକ ପ୍ରଭୃତି ସ୍ଥାନ ମାନଙ୍କରେ ନୂତନ ବଜାର ଗଢିଉଠୁଅଛି । ମାଣିକାଗୋଡା ଗ୍ରାମରେ ଏକାଧିକ ଡାଲି ଏବଂ ତେଲ

ମିଲ୍ ରହିଅଛି । ପିତୁକୁଳିରେ ମଧ୍ୟ ଏକ ତେଲ ମିଲ୍ ରହିଅଛି । ଏହାଛଡା ଏ ଅଞ୍ଚଳରେ ବହୁ ଧାନ ଏବଂ ଚୁଡା ମିଲ୍ ରହିଅଛି । ପୂର୍ବ ବୋଲଗଡରେ ଆଦିବାସୀମାନେ ବର୍ଷାଦିନେ ସ୍ଥାନୀୟ ଟାଙ୍ଗର ଭୂମିରେ ହେଉଥିବା ଖଡିକା ଗଛରୁ ଖଡିକା ସଂଗ୍ରହ କରି ତାକୁ ବିକ୍ରୀକରି ଭଲ ରୋଜଗାର କରି ଥାଆନ୍ତି ।

ଏ ଅଞ୍ଚଳର ନାମକରା ସୁସ୍ୱାଦୁ ଦ୍ରବ୍ୟ -

ସଂପୁରର ଡାହୁକ ସାହୁ ଏବଂ ଗୋବିନ୍ଦ ଭାଇନାଙ୍କ ତିଆରି କାକରା, ଅରଖପଲ୍ଲୀ ହରି ମହାପାତ୍ରଙ୍କ ମୁଆଁ ବୋଲଗଡ, ଚଟି ସାହୁଙ୍କ ରସଗୋଲା ଏବଂ ଚୈତନ୍ୟ ସାହୁଙ୍କ ବରା, ଚୁଡା ଗ୍ରାମରେ ପ୍ରସ୍ତୁତ ଦୋପାଗୀ ଉଖୁଡାର ଚାହିଦା ପୂର୍ବରୁ ଥିଲେ ମଧ୍ୟ ଭୀମପଡା ବଜାର ପ୍ରସ୍ତୁତ କାକରା ବିଶେଷ ନାମ କରିଅଛି ।



## ସ୍ୱାସ୍ଥ୍ୟସେବା

ଇଂରେଜ ଭାଷାରେ ଭାରତୀୟ ମାନଙ୍କ ବିଷୟରେ ଗୋଟିଏ ସୁନ୍ଦର Proverb - Every Indian is a Doctor and also a Teacher ଅର୍ଥାତ - ଯେ କୌଣସି ଭାରତୀୟଙ୍କୁ କୌଣସି ରୋଗର ନିରାକରଣ କଥା ପଚାରିଲେ ସେ କୌଣସି ନା କୌଣସି ଗଛର ପତ୍ର ଚେର ମୂଳ ଏବଂ ତାହର ରସ ବ୍ୟବହାର କଲେ ସେହି ରୋଗ ଭଲ ହୋଇ ଯିବା କଥା ପରାମର୍ଶ ଦେଇଥାନ୍ତି । ସେହିପରି କୌଣସି ଲୋକ କୌଣସି ପ୍ରକାର ଅବାଟରେ ଗଲାକ୍ଷଣି ସେଥିରୁ ନିବୃତ୍ତ ହେବାକୁ ତାକୁ (ଶିକ୍ଷା) ପରାମର୍ଶ ଦେଇଥାନ୍ତି ।

ଏଣୁ ପ୍ରାଚୀନ କାଳରୁ ସମସ୍ତ ଗଛର ଔଷଧୀୟ ଗୁଣକୁ ଆହରଣ କରି ଶରୀର ଆରୋଗ୍ୟ ପାଇଁ ବ୍ୟବହାର କରାଯିବାର ପରମ୍ପରା ଅଛି । ଆଧୁନିକ ଚିକିତ୍ସା ପଦ୍ଧତିର ପ୍ରଚଳନ ପୂର୍ବରୁ ପ୍ରତ୍ୟେକ ଗ୍ରାମରେ ଝଡା ଫୁଙ୍କା ଠାକୁର ଠାକୁରାଣୀଙ୍କ ଆଜ୍ଞା ଔଷଧ ସେବନ ଦ୍ୱାରା ରୋଗ ଆରୋଗ୍ୟ ଲାଭର ବିଶ୍ୱାସ ଜନସମାଜ ରେ ଥିଲା । ତାହା ଅନ୍ଧ ବିଶ୍ୱାସରେ ପରିଣତ ହେଲେ ମଧ୍ୟ ଅଦ୍ୟାବଧି କେତେକ କ୍ଷେତ୍ରରେ ତାହା

ଅନୁସୃତହେଉ ଅଛି । ପ୍ରାଚୀନ ପଦ୍ଧତିକୁ ଅନୁସରଣ କରି ବୋଲଗଡ ଅଞ୍ଚଳରେ ଡାକ୍ତରଖାନା ନଥିଲାବେଳେ ଦିବ୍ୟସିଂହପୁର ଶାସନର ବିଶିଷ୍ଟ ବୈଦ୍ୟ ୰ ଦୀନବନ୍ଧୁ ଷଡଙ୍ଗୀ, ବୋଲଗଡ ଗ୍ରାମର ୰ଘନଶ୍ୟାମ ପଟ୍ଟନାୟକ, କଳାଙ୍ଗ ଗ୍ରାମର ୰ବୈରାଗୀ ହୋତା, ପଙ୍କାଳସାହିର ୰ଭୁବନେଶ୍ୱର ସିଂହ, ବୋଲଗଡର ୰ ବାଙ୍କନିଧି ସାହୁ, ହାଟବସ୍ତ ଗ୍ରାମର ଜଗଦାନନ୍ଦ ସାହୁ, ହରିପୁର ପାଟଣା ଗ୍ରାମର ୰ ସଦାନନ୍ଦ ସୁବୁଦ୍ଧି, ପାଟପୁର ଶାସନ ଗ୍ରାମର ୰ ମିଶ୍ର ପରିବାର, ସଂପୁର ଗ୍ରାମର ୰ ତାରେଶ୍ୱର ଚଉଧୁରୀ, ବୋରିକ ଗ୍ରାମର ଚିନ୍ତାମଣି ରଥ ଆୟୁର୍ବେଦିକ ଚିକିତ୍ସକ ଥିଲେ । ଏମାନଙ୍କ ବ୍ୟତୀତ ବୋଲଗଡ ଅଞ୍ଚଳର ଅନ୍ୟାନ୍ୟ ଗ୍ରାମରେ ବୈଦ୍ୟ ମାନେ ସ୍ଥାନୀୟ ଲୋକଙ୍କୁ ଚିକିତ୍ସା କରୁଥିଲେ । ବର୍ତ୍ତମାନ ଆୟୁର୍ବେଦିକ ଚିକିତ୍ସା କ୍ଷେତ୍ରରେ ଡାକ୍ତର ଦିଲିପ କୁମାର ସିଂହ ବିଶେଷ ଖ୍ୟାତି ଅର୍ଜନ କରିଛନ୍ତି ।

ଆଧୁନିକ ଚିକିତ୍ସା ପ୍ରଣାଳୀ ଅନୁସୃତହେଲେ ମଧ ପରମ୍ପରା କ୍ରମେ ସେମାନଙ୍କ ବଂଶଧର ମାନେ ସେମାନଙ୍କର ପୂର୍ବପୁରଷମାନଙ୍କର ଏହି ବୃତ୍ତିକୁ ଅବଲମ୍ବନ କରି ରଖିଛନ୍ତି । ବୋଲଗଡରେ ସ୍ଥାପିତ ଭର୍ଣ୍ଣାକୁଲର ସ୍କୁଲରେ ସେତେବେଳେ ସମଗ୍ର ଦଶପଲ୍ଲାଠାରୁ ଖଣ୍ଡପଡା ନୟାଗଡ ଏବଂ ରଣପୁର ଅଞ୍ଚଳରେ ପ୍ରାୟ ୩୦୦ ପିଲା ପାଠ ପଢୁଥିବାରୁ ସେମାନଙ୍କ ସ୍ୱାସ୍ଥ୍ୟ ସେବାକୁ ଲକ୍ଷରଖି ଜିଲ୍ଲା ବୋର୍ଡ ତରଫରୁ ଏକ ସରକାରୀ ଡାକ୍ତରଖାନା ସ୍ଥାପିତ ହୋଇଥିବା କଥା ୰ସାଧୁ ଚରଣ ଚଉଧୁରୀ ତାଙ୍କ ଦ୍ୱାରା ଲିଖିତ ବୋଲଗଡ ଇତିହାସ ପାଣ୍ଡୁଲିପିରେ ପୃଷ୍ଠାରେ ଉଲ୍ଲେଖ କରିଛନ୍ତି । ବିଗତ ୫୦ରୁ ୬୦ ଦଶକ ପର୍ଯ୍ୟନ୍ତ ବିଶେଷ କରି ପଶ୍ଚିମ ବୋଲଗଡର ଲୋକମାନେ ମାଣିକାଗୋଡା ଗ୍ରାମର ଡାକ୍ତର ଆଦାମ ଅଲ୍ଲୀ ବେଗ୍‌ଙ୍କ ନୟାଗଡ ସ୍ଥିତ ଘରୋଇ ଡାକ୍ତରଖାନାରେ ଉପରେ ନିର୍ଭରଶୀଳ ଥିଲେ । ବୋଲଗଡ ସରକାରୀ ଡାକ୍ତରଖାନା ବୋଲଗଡ ଅଞ୍ଚଳର ସ୍ୱାସ୍ଥ୍ୟସେବାର ମୁଖ୍ୟ କେନ୍ଦ୍ରସ୍ଥଳ ଥିଲା । ଶଲ୍ୟ ଚିକିତ୍ସା ଏବଂ ଗୁରୁତର ବେମାର ପାଇଁ ପୁରୀ, ନୟାଗଡ, ଖୋର୍ଦ୍ଧା ଏବଂ କଟକ ଡାକ୍ତରଖାନା ଉପରେ ଏ ଅଞ୍ଚଳର ଲୋକମାନେ ନିର୍ଭର କରୁଥିଲେ । ବ୍ଲକ ଗଠନ ପରେ ସରକାରଙ୍କ ସ୍ୱାସ୍ଥ୍ୟ ନୀତି ଅନୁସାରେ ପ୍ରତ୍ୟେକ ବ୍ଲକରେ ଗୋଟିଏ ଲେଖାଏଁ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପିତ ହେଲା । ବୋଲଗଡ ବ୍ଲକପାଇଁ ବାଙ୍କୋଇ ଗ୍ରାମ ଠାରେ ଏହି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ସ୍ଥାପିତ ହୋଇଥିଲା । ୰ ଚିନ୍ତାମଣି ପାଣିଗ୍ରାହୀ ଏଠାରେ ବିଧାୟକ ହୋଇ ରାଜ୍ୟ ବିରୋଧୀ ଦଳ ନେତାଥିଲା ବେଳେ ୧୯୭୭ ଜନତା ପାର୍ଟି ସରକାର ବୋଲଗଡ ଡାକ୍ତରଖାନାକୁ ୬ଷ୍ଠ ଶଯ୍ୟା ବିଶିଷ୍ଟ ଡାକ୍ତରଖାନା ଭାବରେ ଘୋଷଣା କରିଥିଲେ । ୧୯୯୦ରେ ପୁନର୍ବାର ଜନତା ସରକାର ୰ ବିଜୁବାବୁଙ୍କ ନେତୃତ୍ୱରେ ଗଠନ ହେଲା ପରେ ବୋଲଗଡ ସରକାରୀ ଡାକ୍ତରଖାନା Up-Gradation ପାଇଁ ଘୋଷଣା ହୋଇ

ଥିଲା । ୧୯୯୫ରେ ଜାନକୀ ବାବୁ ମୁଖ୍ୟମନ୍ତ୍ରୀ ଥାଇ ଏଠାରୁ ବିଧାୟକ ହେଲାପରେ ସ୍ଥାନୀୟ ଜନସାଧାରଣଙ୍କ ଦାବୀକୁ ଗ୍ରହଣ କରି ୩୦।୭।୧୯୯୫ତାରିଖରେ ବୋଲଗଡ ଡାକ୍ତରଖାନାକୁ ଆଞ୍ଚଳିକ ୩୦ ଶଯ୍ୟା ବିଶିଷ୍ଟ ଡାକ୍ତରଖାନାର ଭିତ୍ତିପ୍ରସ୍ତର ପକାଇଥିଲେ । ଏହାର ସମସ୍ତ କୋଠାଘର ପରବର୍ତ୍ତୀ ଅବସ୍ଥାରେ ନିର୍ମାଣ ହୋଇ ସମ୍ପୂର୍ଣ୍ଣ କାର୍ଯ୍ୟକ୍ଷମ ହେବାକୁ ୧୦ ବର୍ଷ ସମୟ ଲାଗିଯାଇଥିଲା । ବୋଲଗଡ ବ୍ୟତୀତ ଏହି ବ୍ଲକର ପିତୁକୁଳି, ମାଣିକାଗୋଡା, ଗଡଡ ନୁଆଗାଁ, ଦେଉଳି, ତାଲତୁମ୍ବ ଏବଂ ମାଣିବନ୍ଧ ଠାରେ ସରକାରୀ ଡାକ୍ତରଖାନା ଖୋଲା ଯାଇଅଛି । ସରକାରୀ ଅବହେଳାରୁ ଏହା ସମ୍ପୂର୍ଣ୍ଣ କାର୍ଯ୍ୟକାରୀ ହୋଇପାରୁ ନଥିବାରୁ ସ୍ଥାନୀୟ ଜନସାଧାରଣ ସଦାସର୍ବଦା ସ୍ୱାସ୍ଥ୍ୟ ସେବାରୁ ବଞ୍ଚିତ ହେଉଛନ୍ତି । କଡବ ଏବଂ ଡାବରଧୂଆ ପାଟଣା ଠାରେ ସରକାରୀ ଆୟୁର୍ବେଦିକ ଡାକ୍ତରଖାନା ସହ, ଆରିକମା ଏବଂ ଭୀମପଡାଠାରେ ସରକାରୀ ହୋମିଓପାଥିକ ଚିକିତ୍ସାଳୟ ସ୍ଥାପିତ ହୋଇ ଅଛି । ଏ ସବୁ ସତ୍ତ୍ୱେ ଘରୋଇ ଗ୍ରାମାଞ୍ଚଳରେ ବହୁ ଘରୋଇ ଚିକିତ୍ସକ ସେମାନଙ୍କର କାର୍ଯ୍ୟକଳାପ ଜାରୀ ରଖିଛନ୍ତି । ମୋଟା ମୋଟି ଭାବରେ ସରକାରୀ ସ୍ୱାସ୍ଥ୍ୟ ସେବାର ଅବହେଳା ଜନିତ ପରିସ୍ଥିତି ଯୋଗୁଁ ସ୍ଥାନୀୟ ଲୋକମାନେ ହନ୍ତସନ୍ତ ହେବା ସଙ୍ଗେ ସଙ୍ଗେ ଏଥିପାଇଁ ସମସ୍ତ ଦଳର ସ୍ଥାନୀୟ ରାଜନୈତିକ ନେତା ଏବଂ ସମସ୍ତ ଜନପ୍ରତିନିଧିଙ୍କ ଉପରୁ ଜନ ସାଧାରଣଙ୍କ ଆସ୍ଥା ତୁଟି ଯାଇଅଛି ।

କେବଳ ଏଠାରେ ନୁହେଁ ସମଗ୍ର ଓଡିଶାରେ ସ୍ୱାସ୍ଥ୍ୟ ସେବାରେ ଅବହେଳା ଜନିତ ସମ୍ବାଦ ବିଭିନ୍ନ ସମ୍ବାଦ ପତ୍ର ଏବଂ ଟି.ଭି. ରେ ପ୍ରତିଦିନ ପ୍ରକାଶ ପାଉଛି ।



# ଡକାୟତ ଅପରେସନ

୧୯୬୦ ରୁ ୭୦ ଦଶକ ମଧ୍ୟ ଭାଗରେ ବୋଲଗଡ ଅଞ୍ଚଳରେ ଡକାୟତଙ୍କ ପ୍ରାଦୁର୍ଭାବ ଯୋଗୁଁ ଆତଙ୍କ ଖେଳି ଯାଇଥିଲା । ବିଶେଷ କରି ବହୁ ପୂର୍ବରୁ ଗୋଡଭଙ୍ଗା, କନ୍ତାଇଲୋ ଏବଂ ଖାରଡପଲ୍ଲୀରେ ବସବାସ କରୁଥିବା ପାଣ ଜାତିର ଲୋକମାନେ ଚୋରୀ କରୁଥିବାରୁ ବୋଲଗଡ ଥାନାରୁ ସବୁ ବେଳେ ଏହି ସବୁ ଗ୍ରାମକୁ ଦାଗୀ ଚେକିଙ୍ଗ୍ କରିବାକୁ ପୋଲିସ ଯାଇଥାନ୍ତି । ପୂର୍ବରୁ ବେଗୁନିଆଁ ଥାନା (ବର୍ତ୍ତମାନ ଜଙ୍କିଆ ଥାନା) ଅନ୍ତର୍ଗତ ଶଗଡଭଙ୍ଗା ଗ୍ରାମରେ ଡାକୁ ଗୋପ ନାୟକର ଘର । ସେତେବେଳେ ସେ ଏକ କୁଖ୍ୟାତ ଡାକୁ ଥିଲା । ତାର ସାନ ଭାଇ ଅଧିକାରୀ ନାୟକ ବେଗୁନିଆଁ ଥାନା ହତାରେ ପ୍ରବେଶ କରି କ୍ୱାଟରରେ ଶୋଇଥିବା ଅବସ୍ଥାରେ ଝରକାବାଟେ ଏକ ଏସ.ଆଇ. ଦିବାକର ସିଂହଙ୍କୁ ଗୁଳିକରି ହତ୍ୟାକରିଥିଲା । ଏହି ଅବସ୍ଥା ସେତେବେଳେ ସମଗ୍ର ବେଗୁନିଆଁ ଏବଂ ବୋଲଗଡ ଅଞ୍ଚଳରେ ଚହଳ ପକାଇବା ସଙ୍ଗେ ସଙ୍ଗେ ଏଠାରେ ଧନ ଜୀବନ ଆଦି ନିରାପଦ ନଥିବାକଥା ଲୋକମାନେ ଧରି ନେଇ ଥିଲେ । ଏ ପ୍ରକାର ମାନସିକ ସନ୍ତୁଳନ ଅବସ୍ଥାରେ ବୋଲଗଡ ଅଞ୍ଚଳର ଜନ ସାଧାରଣ ଭୟଭୀତହୋଇ ଯାଇଥିଲେ । ତାପରେ ୧୯୭୧ ମସିହାରେ ନୟାଗଡ ଜେଲ ପାଚେରୀ ଡେଇ ମାଣିକାଗୋଡା ଗ୍ରାମର ଭୀମ ପାଇକରାୟ ଏବଂ ପଣ୍ଡୁସର ଗ୍ରାମର କବିରାଜ ମହାପାତ୍ର ଖସି ପକାଇ ଆସିଥିଲେ । ସେମାନେ ମଣିକାଗୋଡା ପାହାଡରେ ଲୁଚି ରହିଲେ ପଞ୍ଚୁକୋଟ ଗୋବିନ୍ଦ ପ୍ରଧାନ ମଧ୍ୟ ଏକ ନୂତନ ଦଳ ତିଆରିକଲେ । ପାଞ୍ଚଗଡ ଖଣ୍ଡପଡା, ନୟାଗଡ, ଦଶପଲ୍ଲା, ବୋଲଗଡ, ବେଗୁନିଆଁ , ଖୋରଧା ଏବଂ ଜଟଣୀ ଅଞ୍ଚଳ ଥରହର ହେଲା । ବହୁ ଚେଷ୍ଟା ପରେ ନୟାଗଡ ଶୁକର ମଲ୍ଲ ପାହାଡରେ ଡକାୟତ କବିରାଜ ମହାପାତ୍ର ପୋଲିସ ଗୁଳିରେ ପ୍ରାଣ ତ୍ୟାଗ କଲା । ଭୀମ ପାଇକରାୟକୁ ମୃତ କିମ୍ବା ଜୀବିତ ଅବସ୍ଥାରେ ଧରି ଦେଲେ ପୁଲିସ ପକ୍ଷରୁ ୫୦ ହଜାର ଟଙ୍କା ପୁରସ୍କାର ଘୋଷଣା କରାଗଲା ।

୧୯୮୨ ମସିହାରେ ଭୀଷଣ ମରୁଡି ପଡିଥିଲା । ଗୋବର୍ଦ୍ଧନପୁର ଗ୍ରାମରେ ପୋଖରୀରୁ ପାଣି ମଡାଇବାକୁ ଦିନ ୪ ଘଣ୍ଟା ବେଳେ ବୈଠକ ପୋଖରୀ ହୁଡାରେ ଚାଲିଥିବା ବେଳେ ସଂଘ ବଦ୍ଧ ଭାବରେ ନିକଟସ୍ଥ ପାହାଡରୁ ଡକାୟତ ମାନେ ଆସି ଭରତ ରାଉତରାୟକୁ ଗୁଳି କରି ଗୁରୁତର ଆହତ କରିଥିଲେ । ତାପରେ ତାଙ୍କୁ ବୋଲଗଡ ଡାକ୍ତରଖାନାରେ ପ୍ରାଥମିକ ଚିକିତ୍ସା ପରେ ଖୋର୍ଦ୍ଧା, ଭୁବନେଶ୍ୱର

ଡାକ୍ତରଖାନାକୁ ସ୍ଥାନାନ୍ତର କରାଗଲା । ସେଦିନ ଲେଖକ ଭରତଙ୍କୁ ବୋଲଗଡ ଏବଂ ଖୋରଧା ଡାକ୍ତରଖାନାରେ ଭେଟି ଭୁବନେଶ୍ୱର ଠାରେ ତତ୍କାଳୀନ ବିଧାୟକ କୈଳାଶ ମହାପାତ୍ରଙ୍କୁ ଘଟଣା ଅବଗତ କରିଥିଲା । ରାତ୍ର ପ୍ରାୟ ୧୦ଟା ବେଳକୁ ଯାଜପୁର ଅଞ୍ଚଳରେ ଜଣେ ଯୁବକ ତାଙ୍କର ଆତ୍ମୀୟଙ୍କୁ ନିକଟରୁ ଡାକ୍ତରଖାନାରୁ ଫେରି କୈଳାଶ ମହାପାତ୍ର ଏମ୍.ଏଲ୍. ଏ. କ୍ୱାଟରରେ ପହଞ୍ଚି ଭରତ ପାଇକରାୟଙ୍କୁ ବିଷୟରେ କହି କିଛି ପଦକ୍ଷେପ ନେବାକୁ ଅନୁରୋଧ କଲା । ସେଠାରେ ଉପସ୍ଥିତ ମହେଶ୍ୱର ତ୍ରିପାଠୀ ଶତ୍ରୁଘ୍ନ ମାନସିଂହ ପ୍ରଭୃତିଙ୍କ ସହ ମିଶି ଲେଖକ କୈଳାସ ବାବୁଙ୍କୁ ନେଇ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କୁ ସାକ୍ଷାତକରି ସମସ୍ତ ଘଟଣା କହିଥିଲା । ସ୍ୱାଧୀନତା ସଂଗ୍ରାମୀ ରଘୁନାଥ ପାହାଡାସିଂହଙ୍କ ପୁଅ ଭରତ ହୋଇଥିବାରୁ ଜାନକୀବାବୁ ବ୍ୟସ୍ତ ହୋଇ ପଡିଲେ । କାରଣ ସେ ୰ରଘୁନାଥ ପାହାଡାସିଂହଙ୍କ ସହ ଜାନକୀବାବୁଙ୍କର ପୂର୍ବରୁ ଉତ୍ତମ ସମ୍ପର୍କ ଥିଲା । ସଙ୍ଗେ ସଙ୍ଗେ ସେତେବେଳେ ଥିବା ସେଣ୍ଟ୍ରାଲ ରେଂଜ ଡି.ଆଇ.ଜି. ଦିଲ୍ଲୀପ ମହାପାତ୍ରଙ୍କୁ ଡକାଯାଇ ଡକାୟତ ଅପରେସନ ପାଇଁ ନିର୍ଦ୍ଦେଶ ଦିଆଗଲା । ରାତିପାହିଲା ବେଳକୁ ୨୨ଟି ପୋଲିସ୍ କ୍ୟାମ୍ପ ଖଣ୍ଡପଡା ଏବଂ ବୋଲଗଡ ଅଞ୍ଚଳରେ ପଡିଥିଲା । ଏହି ପୋଲିସ ଅପରେସନର ନେତୃତ୍ୱ ଡି.ଆଇ.ଜି. ଦିଲିପ ମହାପାତ୍ର ନେଇଥିଲେ । ପୁରୀ ଏସ.ପି. ବିଧୁ ଭୁଷଣ ମିଶ୍ର ଡି.ଏସ.ପି. କ୍ଷେତ୍ର ମୋହନ ମାଝି ସି.ଆଇ. ଏବଂ ଅମୁଲ୍ୟ ମହାନ୍ତି ଏସ.ଆଇ. ଏବଂ ବିଜୟ ବସନ୍ତ ସାହୁ ହାଡି ବନ୍ଧୁ ସ୍ୱାଇଁ ଏ.ଏସ.ଆଇ. ଥିଲେ । ସାଲେପୁରର ଡକାୟତ ସୁକଦେବ ରାଉତକୁ ପୋଲିସ ଗୁଳିମାରି ତାର ଗୋଡକୁ ଜଖମ କରି ତାକୁ ଗିରଫ କରିଥିଲେ । ମଧଖଣ୍ଡ ଗ୍ରାମ (ଦଶପଲ୍ଲା) ର ଡକାୟତ ଯୋଗୀ ବମ୍ ଭିଡୁଥିଲାବେଳେ ବମ୍ ବିସ୍ଫୋରଣରେ କ୍ଷତ ବିକ୍ଷତ ଅବସ୍ଥାରେ ନୂଆଗାଁ ମୁଣ୍ଡିଆରେ ଧରାହୋଇ ଡାକ୍ତରଖାନେର ମୃତ୍ୟୁ ବରଣ କରିଥିଲା । ସେତେବେଳର ଅବସ୍ଥା ଯାହା ଏ ଅଞ୍ଚଳକୁ ମିନିଚମ୍ବଲ କହିବାକୁ ଲୋକମାନେ ପଛେଇଲେ ନାହିଁ । ତା୬.୯.୧୯୮୩ରିଖରେ ପୋଲିସ୍ ବାହିନୀର ମିଳିତ ଆକ୍ରମଣରେ କୁଖ୍ୟାତ ଡାକୁ ଭୀମ ପାଇକରାୟ ମାଣିକାଗୋଡା ଠାରେ ମୃତ୍ୟୁ ବରଣ କଲା । ଏହା ପରେ ଡକାୟତ ମାନେ ଛତ୍ର ଭଙ୍ଗ ଦେଲେ । ଦୀର୍ଘ ୧୦ବର୍ଷ ଲୁଚିଛପି ରହିବା ପରେ ୧୯୯୩ ମସିହାରେ ବିଜୁବାବୁ ମୁଖ୍ୟ ମନ୍ତ୍ରୀ ଥିଲାବେଳେ ସୀତାକାନ୍ତ ବିଧାରଙ୍କ ସହାୟତାରେ ଡକାୟତମାନେ ସମାଜର ମୁଖ୍ୟ ସ୍ରୋତରେ ସାମିଲ ହେବାକୁ ସମ୍ମତି ପ୍ରକାଶ କଲେ । ବୋଲଗଡ ଥାନା ପରିସରରେ ଏକ ବିରାଟ ପେଣ୍ଡାଲ ନିର୍ମିତ ହେଲା । ସେହିଠାରେ ମୁଖ୍ୟମନ୍ତ୍ରୀ ବିଜୁବାବୁ ଓ ଓଡିଶାର ଅନ୍ୟାନ୍ୟ ମନ୍ତ୍ରୀ ଏବଂ ଉଚ୍ଚ ପଦସ୍ଥ ପୋଲିସ ଅଫିସରଙ୍କ ଉପସ୍ଥିତରେ ୧୨ ଜଣ ଡକାୟତ ଆତ୍ମ ସର୍ମପଣ କଲେ । ଫଳରେ ଏ ଅଞ୍ଚଳରେ ଶାନ୍ତି ପ୍ରତିଷ୍ଠା ହେଲା ।

ଏଥିରେ ସହଯୋଗପାଇଁ ସୀତାକାନ୍ତ ବିଧାର ଏବଂ ଗୋପୀନାଥ ଛୋଟରାୟ ପୁରସ୍କୃତ ହୋଇଥିଲେ ।

କଳାଙ୍ଗ ଗ୍ରାମପଞ୍ଚାୟତ ପୂର୍ବତନ ସରପଞ୍ଚ ଗୋଡଭଙ୍ଗା ନିବାସୀ ଗୋପୀନାଥ ଛୋଟରାୟଙ୍କ ସୌଜନ୍ୟରୁ ଏହି ତଥ୍ୟ ଆସିଅଛି । ଏ ସମ୍ପର୍କରେ ସୀତାକାନ୍ତ ବିଧାରଙ୍କ ଠାରୁ ମିଳିଥିବା ତଥ୍ୟ ଅନୁସାରେ - ୧୯୯୧ ମସିହା ମାର୍ଚ୍ଚ ମାସ ୩୦ ତାରିଖ ଦିନ ୧୨ ଜଣ ଡକାୟତ ଉପରୋକ୍ତ ବୋଲଗଡ ଥାନା ପରିସର ମଧ୍ୟରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କର ଉପସ୍ଥିତିରେ ଆତ୍ମ ସମର୍ପଣ କରିଥିଲେ । ସେ ଉକ୍ତ ଉତ୍ସବରେ ଓଡିଶା ପୋଲିସ ବିଭାଗ ମୁଖ୍ୟ (Inspector General Police CID Crime Orissa) ଙ୍କ ଠାରୁ ୫୦୦/- ପୁରସ୍କାର ପାଇଥିଲେ ।

ଏହା ଛଡା ପ୍ରାକ ସ୍ୱାଧୀନତା କାଳରେ ଗର୍ଭଣୀପଡା ଗ୍ରାମର ନାରାୟଣ ରଥ ଜଣେ କୁଖ୍ୟାତ ଚୋର ଥିଲେ ମଧ୍ୟ ତାଙ୍କର ଗରୀବ ଲୋକଙ୍କୁ ସାହାଯ୍ୟ ଆଜିକାଲି ନକ୍ସଲ ଆନ୍ଦୋଳନକାରୀଙ୍କ ସହ ସମାନ ବୋଲି ଲୋକଙ୍କ ମୁଖରୁ ଶୁଣାଯାଏ । ତାଙ୍କର ବିରୋଧୀ ମାନେ ତାଙ୍କୁ ଏକ ଅସହାୟ ଅବସ୍ଥାରେ ହତ୍ୟା କରିଥିବାର ଜଣାଯାଏ ।



# ଗ୍ରାମ ପଞ୍ଚାୟତ

ଦେଶରେ ଗ୍ରାମପଞ୍ଚାୟତ ଶାସନ ପ୍ରଚଳନ ପୂର୍ବରୁ ବ୍ରିଟିଶ ରାଜତ୍ୱରେ ଚୌକିଦାରୀ ପ୍ରେସିଡେଣ୍ଟ ପ୍ରଚଳନ ବ୍ୟବସ୍ଥା ଥିଲା । ସେମାନେ ଅଞ୍ଚଳର ଲୋକଙ୍କର ସୁବିଧା ଅସୁବିଧା ବୁଝୁଥିଲେ । 'ଖୋରଧା ଦର୍ପଣ'ରେ ଉଲ୍ଲେଖ ଥିବା ସେମାନଙ୍କର ନାମ ନିମ୍ନରେ ଦିଆଗଲା ।

| ଥାନା | ନାମ | ଇଲାକା | ଧାମ |
|---|---|---|---|
| ବୋଲଗଡ | ମୁନ୍‌ସି ସେଖ୍ ସାହାଜାହାନ | ଦଳେଇସାହି | ବୋଲଗଡ଼ |
| ,, | ବାବୁ ଘନଶ୍ୟାମ ପଟ୍ଟନାୟକ | ବୋଲଗଡ଼ | ବୋଲଗଡ଼ |
| ,, | ବାବୁ ଲିଙ୍ଗରାଜ ପଟ୍ଟନାୟକ | କାଉଁରିପାଟଣା | ଡିହଖଉରୁଣି |
| ,, | ସାରଙ୍ଗଧର ବିଧାର | ଖଣ୍ଡୁରିଆ | ଖଣ୍ଡୁରିଆ |
| ,, | ରଘୁନାଥ ଦାସ | ସାଗରଗୁଆଁ | ସାଗରଗୁଆଁ |
| ,, | ଲୋକନାଥ ପଟ୍ଟନାୟକ | ବାଙ୍କୋଇଦେଶ | କୋଟସିଙ୍ଗା |
| ବେଗୁନିଆ | ଗଙ୍ଗାଧର ସୁବୁଦ୍ଧି | ଧଳାପଥର | ଗୋପିନାଥପୁର |
| | ବ୍ରଜବନ୍ଧୁ ପଟ୍ଟନାୟକ | ପିତୁକୁଳି | ପିତୁକୁଳି |
| | ରାଧାଶ୍ୟାମ ମହାନ୍ତି | କଡବ | ଖଣନ୍ତି |

ବୋଲଗଡରେ ୧୯୫୦ ମସିହାରେ ପ୍ରଥମେ ଗ୍ରାମ ପଞ୍ଚାୟତ ଆରମ୍ଭ ହେଲା । ସେତେବେଳେ ୱାର୍ଡ ସଭ୍ୟମାନେ ସରପଞ୍ଚଙ୍କୁ ନିର୍ବାଚନ କରୁଥିଲେ । ସାଧାରଣତଃ ଗ୍ରାମର ମୁଖ୍ୟ ଏବଂ ପୁରୁଖା ଲୋକମାନେ ଏଥି ପାଇଁ ଯୋଗ୍ୟ ଭାବରେ ବିବେଚିତ ହେଉଥିଲେ । ଶ୍ରୀ ସୁଧାକର ପଣ୍ଡିମ କବାଟ ବୋଲଗଡର ପ୍ରଥମ ସରପଞ୍ଚ । ସେତେବେଳେ ସରପଞ୍ଚଙ୍କର କାର୍ଯ୍ୟକାଳ ୩ ବର୍ଷ ଅବଧି ଥିଲା । ତାହାପରେ ୰ ବଳଭଦ୍ର ସାହୁ ୨ଥର ସରପଞ୍ଚ ଭାବରେ ୨ଟି ଅବଧି ରହିଥିଲେ । ତାଙ୍କରି ସମୟରେ ଗ୍ରାମରେ ଘରପୋଡିରୁ ରକ୍ଷା ନିମନ୍ତେ ପାଣିକୁଣ୍ଡ ଗ୍ରାମରେ ଅଲୋକ ବ୍ୟବସ୍ଥା ବରପାଲ୍ଲୀ ପାଇଖାନା ପୋଖରୀ କୂଳରେ ସିମେଟ ବେଞ୍ଚ ଏବଂ ଗ୍ରାମର ପ୍ରତ୍ୟେକ ଗଳିକନ୍ଦିକୁ ମୋଟର ଯିବାଭଳି ରାସ୍ତା ନିର୍ମାଣ ହୋଇଥିଲା । ମାତ୍ର ୩୦ ହଜାର ଟଙ୍କାରେ ଏ ସମସ୍ତ କାମ ହୋଇଥିବାର ଜଣାଯାଇଅଛି । ସୁବିଧାରେ ଲୋକଙ୍କର ଧାନ ଋଣ ବ୍ୟବସ୍ଥା ପାଇଁ ଗ୍ରେନଗୋଲାର ପ୍ରଚଳନ ମଧ୍ୟ ହୋଇଥିଲା ।

ତାଙ୍କ ପରେ ୰ ପରମାନନ୍ଦ ମହାପାତ୍ର ସରପଞ୍ଚ ଥିବାବେଳେ ପୁରୀ ଜିଲ୍ଲା ସ୍ତରୀୟ ଗ୍ରାମପଞ୍ଚାୟତ ସମ୍ମିଳନୀ ବୋଲଗଡ ଠାରେ ଅନୁଷ୍ଠିତ ହୋଇଥିଲା । ସେତେବେଳେ ବୋଲଗଡ ବ୍ଲକ ଗଠନ ହୋଇ ନଥିଲା । ବୋଲଗଡ ବ୍ଲକର ବର୍ତ୍ତମାନ ପରିସର ସୀମାରେ ୧୦ଟି ଗ୍ରାମପଞ୍ଚାୟତ ଥିଲା । -

| | | |
|---|---|---|
| ୧. ବୋଲଗଡ | ୨. ଦଳେଇସାହି | ୩. ଖଣ୍ଡୁରିଆ |
| ୪. ବଡକୁମାରୀ | ୫. ବାଙ୍କୋଇ | ୬. ଆରିକମା |
| ୭. ସାଗରଗାଁ | ୮. ପିତୁକୁଳି | ୯. କଡବ |
| ୧୦. ଗେଡିଆପଲ୍ଲୀ | | |

ଏହାପରେ ମାଣିକାଗୋଡା ଏବଂ କଳାଙ୍ଗ ଗ୍ରାମର ରାଜନୈତିକ କନ୍ଦଳକୁ ନେଇ କଳାଙ୍ଗ ଗ୍ରାମ ପଞ୍ଚାୟତ ଗଠନ ହୋଇଥିଲା । ଏହାପରେ ବୋଲଗଡ ପଞ୍ଚାୟତକୁ ୨ଭାଗକରି ପଶ୍ଚିମ ପାଖ ଗ୍ରାମକୁ ନେଇ ଫାସିଓଦା ଗ୍ରାମପଞ୍ଚାୟତ ଗଠନ ହେଲାବେଳେ ବଡକୁମାରୀ ଏବଂ ଖଣ୍ଡୁରିଆ ଗ୍ରାମପଞ୍ଚାୟତରୁ କେତେକ ଗ୍ରାମକୁ ନେଇ ଡାବରଧୁଆପାଟଣା ଗ୍ରାମପଞ୍ଚାୟତର ସୃଷ୍ଟିହେଲା । ୰ ବାଙ୍କନିଧି ପରିଡାଙ୍କର ଏଥିରେ ମୁଖ୍ୟ ଅବଦାନ ଥିଲା । ଦଳୀୟ ରାଜନୈତିକ ଦ୍ୱନ୍ଦ ଯୋଗୁଁ କଡବ ଗ୍ରାମପଞ୍ଚାୟତକୁ ୨ ଭାଗକରି ଗୋପାଳପୁର ପଞ୍ଚାୟତ ଗଠନ ହେଲା । ଦେଉଳି ଏବଂ ତାଳତୁମ୍ବ ଏହି ଗ୍ରାମପଞ୍ଚାୟତର ୨ଟି ମୁଖ୍ୟ ଗ୍ରାମ । ସତ୍ୟାନନ୍ଦ ଚମ୍ପତିରାୟ ସେତେବେଳେ ବୋଲଗଡ ବେଗୁନିଆଁର କଂଗ୍ରେସ ଦଳର ସର୍ବମାନ୍ୟ ନେତା ଥିଲାବେଳେ ୰ଗଙ୍ଗାଧର ପାଇକରାୟ କମ୍ୟୁନିଷ୍ଟ ଦଳର ସର୍ବମାନ୍ୟ ନେତା ଥିଲେ । ଦେଉଳି ଗ୍ରାମ କଂଗ୍ରେସ ଦୁର୍ଗ ଥିଲା ବେଳେ ତାଳତୁମ୍ବ କମ୍ୟୁନିଷ୍ଟ ଦୁର୍ଗ ଥିଲା । ଗ୍ରାମ ପଞ୍ଚାୟତ ସଦର ସହକୁମାକୁ ନେଇ ବହୁ ଦିନ ଗୋଳମାଳ ଲାଗିବା ପରେ ପଞ୍ଚାୟତ ରାଜ କମିଶନର ଆସି ଦେଉଳି ଏବଂ ତାଳତୁମ୍ବକୁ ବାଦ ଦେଇ ଗ୍ରାମପଞ୍ଚାୟତର ମଧ୍ୟ ବର୍ତ୍ତୀ ସ୍ଥଳ ଗୋପାଳପୁର ଗ୍ରାମକୁ ଗ୍ରାମପଞ୍ଚାୟତ ସଦର ମହକୁମା ଭାବରେ ନିର୍ଣ୍ଣୟ କରିଥିଲେ ଏବଂ ଗ୍ରାମପଞ୍ଚାୟତର ନାମ ଗୋପାଳପୁର ଗ୍ରାମପଞ୍ଚାୟତ ହେଲା । ୧୯୬୨ ମସିହାଠାରୁ ଗ୍ରାମ ପଞ୍ଚାୟତ ସମିତି ନିୟନ୍ତ୍ରଣରେ ପରିଚାଳିତ ହେଲା ଗ୍ରାମ ପଞ୍ଚାୟତ ମଧ୍ୟରେ ଗ୍ରାମ ବିବାଦର ଅପୋଷ ସମାଧାନ, ପିଇବା ପାଣି ପାଇଁ କୂଅ ସହ ପୋଖରୀ ଖୋଳାଇବା ରାସ୍ତାଘାଟ ଏବଂ ପ୍ରାଥମିକ ଶିକ୍ଷାପାଇଁ ସ୍କୁଲ ଘର ନିର୍ମାଣ କରିବା ମୁଖ୍ୟ କାଯ୍ୟଥିଲା । ଏହି ବ୍ଲକ ତରଫରୁ ରାଜ୍ୟସ୍ତରୀୟ ଗ୍ରା.ପ. ପ୍ରତିଯୋଗିତାରେ ଯୋଗଦେଇ କଳାଙ୍ଗ ଗ୍ରା.ପ. ରେ ରାଜ୍ୟରେ ୧ମ ଗ୍ରା.ପ. ତାପରେ ବର୍ଷ ଦଳଇସାହି ଗ୍ରା.ପ. ରାଜ୍ୟରେ ପ୍ରଥମ ସ୍ଥାନ ଅଧିକାର କରି ବୋଲଗଡ ବ୍ଲକର ମର୍ଯ୍ୟାଦା ବୃଦ୍ଧି କରିଥିଲେ । ପ୍ରମୁଖ ସରପଞ୍ଚମାନଙ୍କ

ମଧ୍ୟରେ ୰ପତିତପାବନ ହୋତା ଖଣ୍ଡୁରିଆ ୰ସୁଦର୍ଶନ ମହାପାତ୍ର କଳାଙ୍ଗ ପର୍ଶୁରାମ ପଦାତିକ ରାୟ ବଣ୍ଡେଇସାହି ବଳଭଦ୍ର ସାହୁ ବୋଲଗଡ଼ ବାଙ୍କନିଧିଘରିତା ବଡକୁମାରୀ ବାଙ୍କନିଧି ସୁବୁଦ୍ଧି ପିତୁକୁଳିଙ୍କ ନାମ ଲୋକ ମୁଖରେ ଶୁଣାଯାଏ । ୧୯୯୦ ମସିହାରେ ଏଠାର ଜନତାଦଳ ତରଫରୁ ସୁରେନ୍ଦ୍ର ମିଶ୍ର ବିଧାୟକ ଭାବରେ ନିର୍ବାଚିତ ହୋଇଥିଲେ । ତାଙ୍କ ସମୟରେ ଗ୍ରା.ପ. ପୁନଃଗଠନ କରିବାକୁ ସରକାରୀ ଘୋଷଣା ପ୍ରକାଶ ପାଇଲାପରେ ଗେଡିଆପଲ୍ଲୀକୁ ୩ ଭାଗ୍‌କରି ମାଣିବନ୍ଧ ଏବଂ ଧଳାପଥର ଗ୍ରାମ ପଞ୍ଚାୟତ ହେବାସହ ପିତୁକୁଳୀ ଗ୍ରା.ପ.କୁ ୨ ଭାଗକରି ସାନପଦର ଗ୍ରା.ପ. ନୂତନ ଭାବରେ ଗଠନ କରାଗଲା । ଏହାର କିଛି ବର୍ଷପରେ ଅସରଳା ଗ୍ରାମପଞ୍ଚାୟତ ଆରମ୍ଭ ହୋଇଥିଲା । ଏହାପରେ ଏଠାରୁ ୨୦୦୦ମସିହାରେ ବିଜେପି ବିଧାୟକ ଭାବରେ ପ୍ରଶାନ୍ତ ନନ୍ଦ ନିର୍ବାଚିତ ହୋଇଥିଲା ବେଳେ ସରକାର ପୁର୍ନବାର ଗ୍ରା.ପ. ପୁର୍ନଗଠନ କଲେ । ଶ୍ରୀନନ୍ଦଙ୍କ ପ୍ରଚେଷ୍ଟାରେ ପାଟପୁର ଶାସନ ଗ୍ରାମ ପଞ୍ଚାୟତ ଗଠନ କରାଗଲା । ଏଥିରୁ ଆରିକମା ଏବଂ ଧଳାପଥର ଗ୍ରା.ପ.ର କେତେକ ଗ୍ରାମ ସାମିଲ ହେଲା । ଏହାର ସଦର ମହକୁମା ପାଇଁ ଦ୍ୱନ୍ଦ ଲାଗିଅଛି । ଏହିପରି ୧୯ ପଞ୍ଚାୟତ କାର୍ଯ୍ୟକ୍ଷମ ହେଲା । ଖଣ୍ଡୁରିଆ ଗ୍ରା.ପ.ର ବଡ ଗ୍ରାମ ସଂପୁର ଠାରେ ଏକ ଗ୍ରା.ପ. ଗଠନ କରିବାକୁ ସରକାରୀ ସ୍ତରରେ ପ୍ରୟାସ ଜାରି ରଖାଯାଇଅଛି ।



## ବୋଲଗଡ ପଞ୍ଚାୟତ ସମିତି

୧୯୬୦ରେ ବୋଲଗଡ ପଞ୍ଚାୟତ ସମିତି ସ୍ଥାପନ କରାଗଲା । ପୂର୍ବରୁ ପିତୁକୁଳି, ବଡକୁମାରୀ ଏବଂ ବୁଢା ଗ୍ରାମର ବିସ୍ତିର୍ଣ୍ଣ ପଡିଆରେ ଏହି ବ୍ଲକର ମୁଖ୍ୟ କାର୍ଯ୍ୟାଳୟ କରିବାକୁ ରାଜନୈତିକ ସ୍ତରରେ ଆଲୋଚନା ଚାଲିଥିବା ବେଳେ ବୋଲଗଡ ଗ୍ରାମର ୰ଗିରିଧାରୀ ସାହୁ, ୰ ଡମ୍ବରୁଧର ସିଂହ ଏବଂ ୰ ଦାମୋଦର ଚମ୍ପତି, ୰ ଗୋପୀନାଥ ମହାପାତ୍ର ଏବଂ ଘୋରଡିଆ ଗ୍ରାମର ସୁର୍ଦଶନ ମହାପାତ୍ର ସେମାନଙ୍କର ଆୟତୋଟା ଏଥି ନିମନ୍ତେ ମଗଣାରେ ଦାନ କରିଥିଲେ । ଏହି ଜମି ଉପରେ ବୋଲଗଡର ବର୍ତ୍ତମାନ ଦୃଶ୍ୟମାନ ବ୍ଲକ କାର୍ଯ୍ୟାଳୟ ଏବଂ ସରକାରୀ ପଶୁଡାକ୍ତରଖାନା ନିର୍ମାଣ ହେଲା । ଏଥିରେ ସ୍ୱାଧୀନତା ସଂଗ୍ରାମୀ ଚକ୍ରଧର ମହାପାତ୍ର, ବଳଭଦ୍ର ସାହୁ, ପତିତପାବନ ହୋତା ଓ ଦାମଦୋର ସାହୁଙ୍କର ଏକନିଷ୍ଠ ଉଦ୍ୟମ

ବିଶେଷ ପ୍ରଶଂସନୀୟ । ସର୍ବୋପରି ୧୯୬୧-୬୨ ରେ କଂଗ୍ରେସ ମୁଖ୍ୟମନ୍ତ୍ରୀ ଥିବା ୰ ବିଜୁ ପଟ୍ଟନାୟକ ଏବଂ ତତକାଳୀନ କଂଗ୍ରେସ ବିଧାୟକ ସତ୍ୟାନନ୍ଦ ଚମ୍ପତିରାୟଙ୍କର ବୋଲଗଡ ବ୍ଲକ ଗଠନ ପାଇଁ ଗ୍ରହଣ କରିଥିବା ଭୂମିକା ବିଶେଷ ପ୍ରଣିଧାନ ଯୋଗ୍ୟ । ୧୯୬୨ ମସିହା ଅଗଷ୍ଟ ୧୬ ତାରିଖ ଦିନ ତତକାଳୀନ ପୁରୀ ଜିଲ୍ଲାପାଳ ଟି.ଏନ. ସରାଫ ଆନୁଷ୍ଠାନିକ ଭାବରେ ବୋଲଗଡ ବ୍ଲକର କାର୍ଯ୍ୟାଳୟ ଭିତ୍ତିପ୍ରସ୍ତର ଉପରୋକ୍ତ ବଦ୍ୟାନ ବ୍ୟକ୍ତିଙ୍କ ଆୟତୋଟାରେ ସ୍ଥାପନ କରିଥିଲେ ।

ବର୍ତ୍ତମାନ ସୁଦ୍ଧା ବୋଲଗଡ ବ୍ଲକର ସଂକ୍ଷିପ୍ତ ବିବରଣୀ ବ୍ଲକ କାର୍ଯ୍ୟାଳୟରୁ ସଂଗୃହିତ ହୋଇ ଏଠାରେ ସ୍ଥାନିତ ହେଲା

ଆରମ୍ଭ - ୧୪-୧-୧୯୬୦ ୧୯ ଗ୍ରାମପଞ୍ଚାୟତ

କ୍ଷେତ୍ରଫଳ - ୨୬୪ ବର୍ଗ. ମାଇଲ ୨୩୩ ଗ୍ରାମ, ୩୩ ବେଚ୍ଛାପରି ଗ୍ରାମ

୨୦୦୧ ଜନଗଣନା - ୧୦୬୧୧୫ ଚାଷଜମି ୧୫.୯୨୮ ହେକ୍ଟର

୨୮ଟି ରାସ୍ତା ମୋଟ ୧୪୮୧ କିଲୋମିଟର

State High No.- 1 (NH) 21 km.

College -4 High School - 16

Primary School - 102 Minor School - 44

ସେବାଶ୍ରମ - 1 P.H.C.- 1

C.H.C.- 1 New PHC- 1

Add PHC- 1 Homeo Hospital - 1

Ayurvedic Hospital - 2 Tubwell - 521

I. T. Centre -6 Co-Operative Society - 24

ଖାଉଟି ସହଯୋଗ ସମିତି -୧ ଶ୍ରମିକ ସହଯୋଗ ସମିତି - ୧

ମୋଟ ପରିବାର - ୨୧୪୬୦ ଛୋଟ ଚାଷୀ (ଏସ) - ୧୧୭୯

Marginal Farmer (MF) - 9069 Agricultural Labourer - 4571

Non-agricultural Labourer - 1812 Rural Artisan - 218

BPL - 16849



# ବୋଲଗଡ ତହସିଲ

ତା ୧୬.୦୮.୧୯୯୬ରିଖରେ ବୋଲଗଡରେ ନୂତନ ତହସିଲ ଆରମ୍ଭ ହୋଇଥିଲା । ଏହାକୁ ମାନ୍ୟବର ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏବଂ ରାଜସ୍ୱମନ୍ତ୍ରୀ କାହ୍ନୁଚରଣ ଲେଙ୍କା ଉଦଘାଟନ କରିଥିଲେ । ଏହା ଏକ ଭଡାଘରେ ଆରମ୍ଭ ହେଲାପରେ ୨୦୦୭ ମସିହାରେ ଶ୍ରୀ ରମାକାନ୍ତ ସେଠୀ (ଓ.ଏ.ଏସ.) ବୋଲଗଡ ତହସିଲଦାର ଥିଲାବେଳେ ତାଙ୍କର ଆନ୍ତରିକ ଉଦ୍ୟମ ଯୋଗୁ ପୂର୍ବରୁ ବୋଲଗଡରେ ଥିବା ସାମାଜିକ ବନ ପ୍ରକଳ୍ପ ରେଞ୍ଜ ଅଫିସ୍ ଗୃହକୁ ସ୍ଥାୟୀ ଭାବରେ ସ୍ଥାନାନ୍ତର କରାଯିବା ସହ ଖୋର୍ଦ୍ଧାରୁ ରେକର୍ଡ ରୁମ ଏଠାକୁ ଆସିଲ । ଏହି କାର୍ଯ୍ୟରେ ଖୋର୍ଦ୍ଧାର ସବ-କଲେକ୍ଟର ଶ୍ରୀମତୀ ରୂପା ମିଶ୍ର (ଆଇ.ଏ.ଏସ.) ଏବଂ ଜିଲ୍ଲାପାଳ ଶ୍ରୀ ନାରାୟଣ ଚନ୍ଦ୍ର ଜେନାଙ୍କର ସହଯୋଗ ପ୍ରଶଂସନୀୟ । ପୂର୍ବରୁ ସାମାଜିକ ବନ ପ୍ରକଳ୍ପ କାର୍ଯ୍ୟ ଏଠାରେ ବନ୍ଦ ହୋଇଯାଇଥିବାରୁ ଏହି ଅଫିସ ଗୃହ ଖାଲି ପଡିଥିଲା । ଏଠାରେ ଅବସ୍ଥାପିତ ଥିବା ତହସିଲଦାରମାନେ ହେଲେ - ସତ୍ୟବ୍ରତ ମହାନ୍ତି, ସଞ୍ଜୁଲତା ବେହେରା, ବ୍ରଜବନ୍ଧୁ ବେହେରା, ଗୋବର୍ଦ୍ଧନ ବଳ, ଅଯୋଧ୍ୟା କାନ୍ତ ଶତପଥି, ରମାକାନ୍ତ ସେଠୀ ଏବଂ ବର୍ତ୍ତମାନ ଶ୍ରୀ ଦିଲ୍ଲୀପ କୁମାର ମହାପାତ୍ର କାର୍ଯ୍ୟରତ ଅଛନ୍ତି । ଶ୍ରୀ ସୁଧାକର ସାମନ୍ତରାୟ ଅତିରିକ୍ତ ତହସିଲଦାର ଭାବରେ କାର୍ଯ୍ୟ ତୁଲାଉଛନ୍ତି ଏବଂ ଶ୍ରୀ ରୁଦ୍ରନାରାୟଣ ଆଚାର୍ଯ୍ୟ ଏହି ତହସିଲର ଅତିରିକ୍ତ ତହସିଲଦାର ଭାବରେ ଅବସ୍ଥାପିତ ହୋଇ ରେକର୍ଡ ରୁମ ଦାୟୀତ୍ୱରେ ଅଛନ୍ତି ।

ବୋଲଗଡ ବ୍ଲକର ପ୍ରଥମ ନୋଟାରୀ ଭାବରେ ଶ୍ରୀ ନବକିଶୋର ରାଉତରାୟ, ଗ୍ରାମ- ମର୍ଦ୍ଦାବାଡି କାର୍ଯ୍ୟ କରୁଛନ୍ତି ।



# ସମବାୟ ଆନ୍ଦୋଳନ

ଖୋର୍ଦ୍ଧା ଅଞ୍ଚଳରେ ସର୍ବପ୍ରଥମେ ଟରାବୋଇ, ଧଳାପଥର, ବୋଲଗଡ ଅଞ୍ଚଳରେ ପ୍ରାଥମିକ ସମବାୟ ମାନ ଗଢ଼ି ଉଠିଥିଲା । ଧଳାପଥର ଅଞ୍ଚଳର ସ୍ୱନାମଧନ୍ୟ ବ୍ୟକ୍ତି ରାୟ ବାହାଦୂର ଗଙ୍ଗାଧର ସୁବୁଦ୍ଧି ସେତେବେଳେ ଜଣେ ବିଶିଷ୍ଟ ସମବାୟ ପ୍ରେମୀ ବ୍ୟକ୍ତି ଥିଲେ । ୧୯୧୬ ମସିହାରେ ୰ ଜଗନ୍ନାଥ ପଟ୍ଟନାୟକ ବୋଲଗଡରେ ପ୍ରାଥମିକ ସହଯୋଗ ସମିତି ଗଠନ କରିଥିଲେ । ଏହାପରେ ଖୋର୍ଦ୍ଧାରେ କେନ୍ଦ୍ର ସମବାୟ ବ୍ୟାଙ୍କ ସ୍ଥାପନ ପରେ ସମସ୍ତ ପ୍ରାଥମିକ ସମବାୟ ସମିତିକୁ ସେଥିରେ ପଞ୍ଜିକରଣ କରାଗଲା । ଏହାଦ୍ୱାରା ସାଧାରଣ ଚାଷୀମାନେ ମହାଜନ ମାନଙ୍କ କବଳରୁ ଉଦ୍ଧାର ପାଇଥିଲେ । ୧୯୪୫ ମସିହାର ଦ୍ୱିତୀୟ ବିଶ୍ୱ ଯୁଦ୍ଧ ପରେ ଗରିବ ବୁଣାଳି ମାନଙ୍କୁ ମାରୱାଡି ଏବଂ ଅନ୍ୟାନ୍ୟ ବ୍ୟବସାୟୀଙ୍କ ଠାରୁ ରକ୍ଷା କରିବା ନିମନ୍ତେ ଶସ୍ତା ଦରରେ ସୂତା ଯୋଗଇବା ପାଇଁ ବୋଲଗଡ ଠାରେ ଏକ ସୂତା ବଣ୍ଟନ ସମିତି ଗଠନ କରାଗଲା । ଗୋବର୍ଦ୍ଧନପୁରର ୰ ରଘୁନାଥ ପାହାଡସିଂହ ସ୍ୱାଧୀନତା ଆନ୍ଦୋଳନ ବେଳେ ରଣପୁର ରାଜାଙ୍କ ଦ୍ୱାରା ନିର୍ବାସିତ ବିଶିଷ୍ଟ କମ୍ୟୁନିଷ୍ଟ ନେତା ୰ ଗଙ୍ଗାଧର ମିଶ୍ର ଏକ ସୂତା ବଣ୍ଟନ ସମିତି ଗଠନ କରିଥିଲେ । ପରେ ୰ ପରଶୁରାମ ପଦାତିକରାୟ ଏବଂ କାହ୍ନୁଚରଣ ଯତି ଏଥିରେ ମୁଖ୍ୟ ସହଯୋଗୀ ହୋଇ ସମଗ୍ର ବୋଲଗଡ ଅଞ୍ଚଳର ବୁଣାଳି ମାନଙ୍କୁ ଏକାଠି କରି ଆଗେଇ ନେଇଥିଲେ । ପରେ ଏହି ସଂସ୍ଥା ମାଧମରେ ରାଜ୍ୟର ଶୀର୍ଷ ତନ୍ତୁବାୟ ସମବାୟ ସଂସ୍ଥାର ମୁଖ୍ୟ ରୂପେ ୰ କାହ୍ନୁଚରଣ ଯତି ନିଜକୁ ଅବସ୍ଥାପିତ କରିପାରିଥିଲେ । ବର୍ତ୍ତମାନ ବୋଲଗଡ ବ୍ଲକରେ ସର୍ବମୋଟ ୨୪ଟି ପ୍ରାଥମିକ ସେବା ସମବାୟ ସମିତି ଥିଲା ବେଳେ ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କର ମୁଖ୍ୟ ଶାଖା ଏହି ଅଞ୍ଚଳ ପାଇଁ ରାଜସୁନାଖଳା ଏବଂ ବୋଲଗଡ ଠାରେ ଖୋଲିଅଛି । ଖୋର୍ଦ୍ଧା ସମବାୟ ବ୍ୟାଙ୍କର ପରିଚାଳନା ବୋର୍ଡକୁ ବୋଲଗଡ ବ୍ଲକରୁ ୰ କାହ୍ନୁଚରଣ ଯତି, ପ୍ରଫୁଲ ଚନ୍ଦ୍ର ମହାନ୍ତି, ଗଙ୍ଗାଧର ପରିଡା, ରବୀନ୍ଦ୍ର କୁମାର ପରିଡା, ଅକ୍ଷୟ ପଟ୍ଟନାୟକ, ଗୋବିନ୍ଦ ନାୟକ ପ୍ରଭୃତି ନିର୍ବାଚିତ ହୋଇ ଅଛନ୍ତି । ବର୍ତ୍ତମାନ ୩ କୋଟିରୁ ଉର୍ଦ୍ଧ୍ୱ ଟଙ୍କା ବ୍ଲକ ଅଞ୍ଚଳରେ ଚାଷୀଙ୍କୁ ଋଣ ଆକାରରେ ଦିଆଯାଇଅଛି । ଏହାଛଡା ଏକ ଖାଉଟି ଏବଂ ଫଳ ସମବାୟ ସମିତି ରହିଅଛି । ଧଳାପଥର ଗ୍ରାମନିବାସୀ ବାଙ୍କୀର ପୂର୍ବତନ ବିଧାୟକ ଶ୍ରୀ ଘନଶ୍ୟାମ ସାହୁ ବାଙ୍କୀ କେନ୍ଦ୍ର ସମବାୟ ବ୍ୟାଙ୍କ ଏବଂ ରାଜ୍ୟ ସମବାୟ ବ୍ୟାଙ୍କର ସଭାପତି ଭାବରେ ଆସୀନ ହୋଇ ରାଜ୍ୟର ଜଣେ ପ୍ରମୁଖ ସମବାୟ ପ୍ରେମୀ ଭାବରେ ନାମ କରିଥିଲେ ।



# ଖେଳ କସରତ

ପୂର୍ବକାଳରେ ଶରୀର ଚର୍ଯ୍ୟା ଉପରେ ଅଧିକଗୁରୁତ୍ୱ ଦିଆଯାଉଥିଲା । ଶରୀରକୁ ଅଧିକ କାର୍ଯ୍ୟକ୍ଷମ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ପାଇକ ଆଖଡା ମୁଖ୍ୟତଃ ଏଥିପାଇଁ ହେଉଥିଲା । ପାଇକ ଆଖଡା ଛଡା ମାଲକୁସ୍ତି ମେଣ୍ଢା ଲଢେଇ ଡୁଡୁ ଖେଳ କବାଡି ଖେଳ ଗ୍ରାମ୍ୟ ସଂସ୍କୃତିରେ ମୁଖ୍ୟ ସ୍ଥାନ ପାଇଥିଲା । ମଲ୍ଲଯୋଦ୍ଧାଙ୍କ ମଧରେ ବୋଲଗଡ ଦଳବେହେରା ବଂଶର ଯୋଗୀବର ପଶ୍ଚିମ କବାଟ ଜଣେ ପ୍ରଖ୍ୟାତ ମଲ୍ଲ ଯୋଦ୍ଧା ଥିଲେ । ବୋଲଗଡ ମଠ ଠାକୁରଙ୍କୁ ଗଜପତି ବୀରକିଶୋର ଦେବ ଦର୍ଶନ କରିବାପାଇଁ ୧୭୪୮ ମସିହାରେ ବୋଲଗଡ ଆଗମନ କରିଥିଲେ । ସେହି ସମୟରେ ବର୍ତ୍ତମାନ ବାମନ ହାଇସ୍କୁଲ ସାମନାରେ ଥିବା ରାସ୍ତା ଉପରକୁ ଲମ୍ୱିଯାଇଥିବା ଏକ ବର ଡାଳକୁ ଗୋଟିଏ ଖଣ୍ଡା ଚୋଟରେ ହାଣି ଦେଇ ରାସ୍ତା ପରିଷ୍କାର କରି ଥିଲେ । ଏଥିରେ ଗଜପତି ଆନନ୍ଦିତ ହୋଇ ତାଙ୍କ ମୁଣ୍ଡରେ ପାଟଶାଢୀ ବାନ୍ଧିଦେଇ ଥିଲେ । ସେହି ଦିନଠାରୁ ପାଟଶାଣୀ ଭାବରେ ଦଳବେହେରା ବଂଶର ଗୋଟିଏ ଅଂଶର ଉପାଧି ହୋଇଅଛି । ଏହି ବଂଶର ପଦ୍ମଚରଣ ଦଳବେହେରା ପଶ୍ଚିମ କବାଟ ପୁରୀରେ ସିପାହୀ ବିଦ୍ରୋହ ନେତା (ଚାଖୀଖୁଣ୍ଟିଆ) ଚନ୍ଦନ ହଜୁରୀଙ୍କର ସଙ୍ଗାତ ଥିଲେ । ଉଭୟ ସମକକ୍ଷ ମଲ୍ଲ ଯୋଦ୍ଧା ଥିଲେ । ବୋଲଗଡ ଗ୍ରାମ ତୃତୀୟାପଡାର ଊନବିଂଶ ଶତାବ୍ଦୀ ପ୍ରଥମ ପାଦରେ ୰ଜଗନ୍ନାଥ ପରିଡା (ଲେଖକର ବଡବାପା) ଜଣେ ସୁବିଖ୍ୟାତ ମଲ୍ଲ ଯୋଦ୍ଧାଥିଲେ । ସେ ଖଣ୍ଡପଡାର ଏକ ହାତୀର ଲାଙ୍ଗୁଳ ଧରି ଅଟକାଇବା ସହ କାଖରେ ଜାକି ଏବଂ ମୁଣ୍ଡରେ ପିଟି ନଡିଆ ଭାଙ୍ଗୁଥିବାର କଥା ଅଦ୍ୟାପି ଲୋକ ମୁଖରୁ ଶୁଣାଯାଏ । ମାଣିକଗୋଡାର ୰ ପଞ୍ଚୁ ଖାଁ ଜଣେ ପ୍ରସିଦ୍ଧ ମଲ୍ଲ ଯୋଦ୍ଧାଥିଲେ । ସେତେବେଳେ ବହୁ ଯୁବକଙ୍କୁ କୁସ୍ତି କସରତ ଶିକ୍ଷା ଦେଉଥିଲେ । ଘୋରଡିଆ ଗଂଗାଧର ବିଧାର ତାଙ୍କର ଶିଷ୍ୟଥିଲେ ।

## କବାଡି

ଗ୍ରାମାଞ୍ଚଳରେ ପ୍ରଚଳିତ ଡୁ ଡୁ ଖେଳର ଆଧୁନିକ ନାମ କବାଡି ଅଟେ । ଏହା ଏକ ଜାତୀୟ ସ୍ୱୀକୃତ ଖେଳ ଭାବରେ ଖ୍ୟାତି ଅର୍ଜନ କରିଅଛି । ମାଣିକାଗୋଡା ଗ୍ରାମର ୰ରମେଶ ଚନ୍ଦ୍ର ପଟ୍ଟନାୟକ, ୰ରାଘବ ଚନ୍ଦ୍ର ସ୍ୱାଇଁ, ୰ ଗୋବିନ୍ଦ ଚନ୍ଦ୍ର ସ୍ୱାଇଁ ଦିବ୍ୟସିଂହପୁର ଗ୍ରାମର ତ୍ରିଲୋଚନ ନନ୍ଦ ଏହି କବାଡି ଖେଳରେ ବିଶେଷ ପାରଦର୍ଶିତା ଲାଭକରି ରାଜ୍ୟ ସ୍ତରରେ ଏବଂ ବମ୍ବେ ଠାରେ ଜାତୀୟ ସ୍ତରରେ ପ୍ରତିଯୋଗିତାରେ ଯୋଗଦେଇ ପ୍ରଶଂସିତ ହୋଇଥିଲେ । ଏହି କବାଡି ଖେଳର ରାଜ୍ୟ ସ୍ତରୀୟ ଏବଂ

ଜାତୀୟ ସ୍ତର ପ୍ରତିଯୋଗିତାରେ  ଯୋଗଦାନ ପଛରେ ସ୍ଥାନୀୟ ପୂର୍ବତନ ଶିକ୍ଷକ ଶ୍ରୀରାଜ ପଟ୍ଟନାୟକ ଏବଂ ବିଶେଷ ଖେଳ ପ୍ରେମୀ ୰ବୀରକିଶୋର ପଟ୍ଟନାୟକଙ୍କ ଯଥେଷ୍ଟ ଅବଦାନ ଥିଲା । ବାଙ୍କୋଇ ଗଡଠାରେ ସ୍ଥାନିୟ ଯୁବକଙ୍କ ସହଯୋଗରେ ପ୍ରତିବର୍ଷ ଜିଲ୍ଲାସ୍ତରୀୟ କବାଡି ପ୍ରତିଯୋଗିତା ଅନୁଷ୍ଠିତ ହେଉଅଛି ।

<u>ପଶାଖେଳ</u>

ପଶାଖେଳ ଏକ ସଂଭ୍ରାନ୍ତ ଏବଂ ସାମନ୍ତ  ବାଦ ଖେଳ ଅଟେ । ପୁରାଣରେ ଦ୍ୱାରିକା ନଗରୀରେ  ଭଗବାନ  ଶ୍ରୀକୃଷ୍ଣଙ୍କ ସହ ଅଷ୍ଟପାଟ ବଂଶୀଙ୍କର ପଶା ଖେଳର ବର୍ଣ୍ଣନା ସହ ମହାଭାରତ  ଯୁଦ୍ଧର ଉତ୍ପତ୍ତି କୌରବ ପାଣ୍ଡବମାନଙ୍କର ପଶା ଖେଳରୁ ସୃଷ୍ଟି ହୋଇଥିଲା । ଓଡିଶାର ପ୍ରାଚୀନ କବିମାନେ ଏହି ପଶା ଖେଳକୁ ନେଇ "କପଟପାଶା" କାବ୍ୟ ଲେଖିଛନ୍ତି । ବର୍ତ୍ତମାନ କପାସିଆ ଗ୍ରାମରେ ବହୁ ବର୍ଷ ହେଲା ପଶାଖେଳ ପ୍ରତିଯୋଗିତା  ହେଉଅଛି । ହରିପୁର ଶାସନର ସଂଭ୍ରାନ୍ତ ତ୍ରିପାଠୀ ପରିବାରର ଚାରି ଭାଇ ଶ୍ରୀ ବାଇଧର ତ୍ରିପାଠୀ, ୰ ଜଗନ୍ନାଥ ତ୍ରିପାଠୀ, ୰ ନାଥ ତ୍ରିପାଠୀ ଏବଂ ଶ୍ରୀ କୃଷ୍ଣ ତ୍ରିପାଠୀଙ୍କର ପଶାଖେଳ ଏ ଅଞ୍ଚଳରେ  ଏକ ଚର୍ଚ୍ଚାର ବିଷୟ ଥିଲା । ଗୋପାଳିପଡା ଗ୍ରାମର ଶ୍ରୀ  ଉଲ୍ଲାସ ମାନସିଂହ ବର୍ତ୍ତମାନ ଯୁଗର ଜଣେ ପେଶାଦାର ପଶା ଖେଳାଳୀ ଭାବେ ବିଖ୍ୟାତ ।  ପଶାଖେଳ ତାଙ୍କର ଏକ ନିଶାରେ ପରିଣତ ହୋଇଅଛି । ସେ ସମଗ୍ର ଅବିଭକ୍ତ ପୁରୀ ଏବଂ କଟକ ଜିଲ୍ଲାର ବହୁ ସ୍ଥାନରେ ପଶାଖେଳି କୃତିତ୍ୱ ଅର୍ଜନ କରିଛନ୍ତି । ପୂର୍ବତନ ପଞ୍ଚାୟତ ସମିତି  ଚେୟାରମ୍ୟାନ ଶ୍ରୀ ବାନାମ୍ବର ମାଝି ଗ୍ରାମ ଟାଙ୍ଗିସାହି  ଏବଂ ଦିବ୍ୟସିଂହପୁର ଶାସନର ଶ୍ରୀ କୃଷ୍ଣଚନ୍ଦ୍ର ହୋତା ସୁପ୍ରସିଦ୍ଧ ପଶା ଖେଳାଳି ।

<u>ଫୁଟବଲ ଖେଳ</u>

ବୋଲଗଡ ଅଞ୍ଚଳ ଏକଦା ଫୁଟବଲ ଖେଳପାଇଁ ସୁଖ୍ୟାତି ଅର୍ଜ୍ଜନ କରିଥିଲା । ବୋଲଗଡର ୰ ଦୟାନିଧି ଚଉଧୁରୀ ଓ ବିଜୁ ପଟ୍ଟନାୟକଙ୍କ ସହପାଠୀ ଥିଲେ । ଉଭୟ ବିଶିଷ୍ଟ ଫୁଟବଲ ଖେଳାଳୀ ଥିଲେ । ସେତେବେଳେ କଟକରେ ଅବସ୍ଥାପିତ ଇଂରେଜୀ ଏସ.ପି. ବିଜୁବାବୁଙ୍କୁ ସ୍ୱାଧୀନତା ଆନ୍ଦୋଳନ ବେଳେ ମାରିଥିବାରୁ ତାର ପ୍ରତିଶୋଧ ନେବାକୁ ଯାଇ ଦୟାନିଧି ଚଉଧୁରୀ ଏବଂ ବିଜୁବାବୁ ରେଭେନ୍ସା ସ୍କୁଲ ଖେଳ ପଡିଆରେ ତାଙ୍କର ସହପାଠୀ ସେହି  ଇଂରେଜ ଏସ.ପି. ଙ୍କର ପୁଅର ଗୋଡ ଫୁଟବଲ ଖେଳରେ ଭାଙ୍ଗି ଦେଇଥିଲେ । ପ୍ରବାଦ ଅଛି  ବି.ଏ. ପଢୁଥିଲା ବେଳେ ଫୁଟବଲ ଖେଳ ଯୋଗୁଁ ସିଧାସଳଖ ଭାବରେ ଦୟାନିଧି ଚଉଧୁରୀ ଫରେଷ୍ଟ

ଡି.ଏଫ.ଓ. ଚାକିରୀରେ ନିଯୁକ୍ତି ପାଇଥିଲେ । ବିଗତ ୪୦ ରୁ ୫୦ ଦଶକରେ ବୋଇଗଡରେ ୰ଅଭିରାମ ପଟ୍ଟନାୟକ ହାଇସ୍କୁଲ ସ୍ତରୀୟ ଫୁଟବଲ ଖେଳାଳି ଭାବେ (ଶେଷ ଏକାଦଶ) ମର୍ଯ୍ୟାଦା ଲାଭ କରିଥିଲେ । ୬୦ ଦଶକରେ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ପୁରୀ କଲେଜର ଛାତ୍ର ଘୋରଡିଆ ଗ୍ରାମର ସୀତାକାନ୍ତ ବିଧାର ସ୍ଥାନ ପାଇ ହାଇଦ୍ରାବାଦ ଠାରେ ଅନୁଷ୍ଠିତ ଜାତୀୟ ବିଶ୍ୱ ବିଦ୍ୟାଳୟ ଫୁଟବଲ ଖେଳ ପ୍ରତିଯୋଗିତାରେ ଉତ୍କଳ ବିଶ୍ୱ ବିଦ୍ୟାଳୟର ପ୍ରତିନିଧିତ୍ୱ କରି ସୁନାମ ଅର୍ଜନ କରିଥିଲେ । ଫୁଟବଲ ଖେଳରେ ମାଣିକାଗୋଡା, ବୋଇଗଡ, କଳାଙ୍ଗ, ଆରିକମା ଅରଖପଲ୍ଲୀ, ଜଡବ ବିଶେଷ ଆଗୁଆ ଥିଲା । କଳାଙ୍ଗର ଐତିହାସିକ ଗୋଛାବାରୀ ପଡିଆରେ ବହୁବାର ରାଜ୍ୟସ୍ତରୀୟ ଫୁଟବଲ ଖେଳ ଅନୁଷ୍ଠିତ ହୋଇଅଛି । ଦୀର୍ଘ ପାଞ୍ଚ ଦଶନ୍ଧି ଧରି ବୋଇଗଡ ଅଞ୍ଚଳର ବିଶିଷ୍ଟ ଫୁଟବଲ ଖେଳାଳୀଙ୍କ ମଧରେ ଉଦୟନାଥ ସୁବୁଦ୍ଧି, ଭଗବାନ ପ୍ରଧାନ, ଉପେନ୍ଦ୍ର ସିଂହ, ଆଦମ ଅଲ୍ଲୀ ବେଗ, ଅମଜଦ୍ ଅଲ୍ଲୀ ବେଗ, ଅବଦୁଲ ହଲୀମ ଖାନ୍, ପରମାନନ୍ଦ ସୁବୁଦ୍ଧିଙ୍କ ପରେ ଗୌରାଙ୍ଗ ଚରଣ ସୁବୁଦ୍ଧି, ଦୟାନିଧି ମହାପାତ୍ର, ଶତ୍ରୁଘ୍ନ ପ୍ରଧାନ, ଅହମଦ ଅବଦୁଲ ରଜାକ, ବାନାୟର ବଙ୍କିୟାରସିଂହ, ଅନମୁର ରହମାନ ତାଙ୍କର ଅନୁସରଣ କରିଥିଲେ । ତାଙ୍କ ପରେ ବସନ୍ତ କୁମାର ଚୌଧୁରୀ, ରବୀନ୍ଦ୍ର କୁମାର ଚୌଧୁରୀ, ସାଧୁଚରଣ ମହାପାତ୍ର, ହରିବନ୍ଧୁ ସାହୁ, ଲକ୍ଷ୍ମୀଧର ସାହୁ, ସୁଦର୍ଶନ ମହାପାତ୍ର, ଜୟକୃଷ୍ଣ ପରିଡା, କୃଷ୍ଣଚନ୍ଦ୍ର ପ୍ରଧାନ, ସୁବାସ ମଙ୍ଗରାଜ, କୈଳାସ ରାଉତ ପ୍ରଭୃତି ବିଶିଷ୍ଟ ଫୁଟବଲ ଖେଳାଳି ଭାବରେ ନାମ କରିଥିଲେ ।

କ୍ରିକେଟ -

ବର୍ତ୍ତମାନ କ୍ରିକେଟ ଖେଳର ନିଶା ସମାଜରେ ବହୁଳ ଭାବରେ ପ୍ରଚଳିତ । ମଫସଲ ଅଞ୍ଚଳରେ ଛୋଟ ଛୋଟ ପିଲା ମାନେ ଏଥିରେ ଅଭ୍ୟସ୍ତ । କ୍ରିକେଟ ବ୍ୟାଟ ଏବଂ ବଲ ଏକ ବିଶେଷ ଉପହାର ସାମଗ୍ରୀ ରୂପେ ପିଲାଙ୍କ ପାଇଁ ସମାଜରେ ଗୃହିତ ହୋଇସାରିଛି । ବୋଇଗଡରେ ବିଭିନ୍ନ ସମୟରେ କ୍ରିକେଟ ଖେଳ ଆୟୋଜନ କରି ନାମ ରଖିଛନ୍ତି ।

ଭଲିବଲ -

୩୦ ବର୍ଷ ତଳେ ଫୁଟବଲ ପରେ ଭଲି ବଲ ପ୍ରତିଯୋଗିତା ଏକ ପ୍ରଧାନ ଖେଳ ଥିଲା । ଖଣ୍ଡପଡା, ନୟାଗଡ, ଖୋର୍ଦ୍ଧା ଅଞ୍ଚଳରୁ ଭଲି ଖେଳାଳି ମାନଙ୍କୁ ଡକାଯାଇ ଏଠାରେ ଭଲି ବଲ ଟୁର୍ଣ୍ଣାମେଣ୍ଟ କରାଯାଉଥିଲା ।



# ଗମନା ଗମନ ବ୍ୟବସ୍ଥା

ବୋଲଗଡ ବ୍ଲକ ଦେଇ ରାଜଧାନୀ ଭୁବନେଶ୍ୱରରୁ ପଶ୍ଚିମ ଓଡିଶାକୁ ମୁଖ୍ୟ ସଂଯୋଗକାରି ରାଜପଥ ଭାବରେ ପୂର୍ବରୁ ରାଜ୍ୟ ୧ ନମ୍ବର ରାଜପଥ ନିକଟରେ ୨୨୪ ନମ୍ବର ଜାତୀୟ ରାଜପଥର ମାନ୍ୟତା ପାଇଅଛି । ଏହାଛଡା ବାଘମାରି ଠାରୁ ସିମର ଦେଇ କଣ୍ଟିଲୋ ଆଡକୁ ଯାଉଥିବା ରାସ୍ତା ଗେଡିଆପଲ୍ଲୀ, ଧଳାପଥର ଗ୍ରାମପଞ୍ଚାୟତ ଦେଇ ଯାଇଅଛି । ବ୍ଲକର ମୁଖ୍ୟ ରାସ୍ତା ମଧ୍ୟରେ ରାଜସୁନାଖଳା ଠାରୁ ଧଳାପଥର ଭାୟା ବାଙ୍କୋଇ ଏବଂ ଏହି ରାସ୍ତା ବାଙ୍କୋଇ ଠାରୁ ସାଗର ଗାଁ ଦେଇ ଖଣ୍ଡପଡା ଅଞ୍ଚଳକୁ ଯାଇଅଛି । ପିଚୁକୁଳି ଗୋପଳପୁର ରାସ୍ତା, ଟିକାତାଳ ଠାରୁ ଭାୟା କଡବ ଚଟୁଆ ରାସ୍ତା, କଡବ ଠାରୁ ଦେଉଳି ଏବଂ ଦେଉଳି ଠାରୁ ଚାଳଡୁମ୍ବ ଦେଇ ବୋଲଗଡ ଠାରୁ ଖଗୁରିଆ ଦେଇ କଳାଙ୍ଗ ହାଟବସ୍ତ ଠାରୁ ଅରଖପଲ୍ଲୀ ଘୋରଡିଆ ଦେଇ ବୋଲଗଡ ଏବଂ ଏଠାରୁ ଦଳେଇ ସାହି ଭାୟା ମାଳିସାହି ରାସ୍ତା ଖଗୁରିଆ ଠାରୁ ସଂପୁର ରାସ୍ତା ବ୍ଲକ ଅଞ୍ଚଳର ପ୍ରମୁଖ ସଂଯୋଗକାରୀ ଗମନାଗମନ ପଥ ଅଟେ । ଏହାଛଡା ପ୍ରତ୍ୟେକ ଗ୍ରାମକୁ ଛୋଟ ପିଚୁ ରାସ୍ତାମାନ ଅଛି । ଏହି ସବୁ ରାସ୍ତାର ଅଧିକାଂଶ ଭାଗ ଆର.ଡି ଅଧିନରେ ରହିଲା ବେଳେ ବହୁ ରାସ୍ତା ପଞ୍ଚାୟତ ସମିତି ଅଧୀନରେ ରହିଅଛି । ଜାନକୀ ବାବୁ ଏଠାରୁ ମୁଖ୍ୟ ମନ୍ତ୍ରୀ ଥିଲା ବେଳେ ଅଧିକାଂଶ ରାସ୍ତା ପିଚୁରାସ୍ତାରେ ପରିଣତ ହୋଇଥିଲା । ପ୍ରଶାନ୍ତ ନନ୍ଦ ମନ୍ତ୍ରୀ ଥିଲା ବେଳେ କେତେକ ରାସ୍ତାକୁ ପ୍ରଧାନ ମନ୍ତ୍ରୀ ଗ୍ରାମ୍ୟ ସଡକ ଯୋଜନାରେ ଅନ୍ତର୍ଭୁକ୍ତ କରାଯାଇଥିଲା । ସୁରେନ୍ଦ୍ର ମିଶ୍ର ବିଧାୟକ ଥିଲାବେଳେ ପ୍ରଥମେ ଗ୍ରାମ୍ୟରାସ୍ତାକୁ ପିଚୁରାସ୍ତାରେ ପରିଣତ କରାଯାଇଥିଲା ।



# ପରିଶିଷ୍ଟ

**ବୋଇଗଡର ଐତିହାସିକ  ଆମ୍ବତୋଟା -**

ବୋଇଗଡର ପୂର୍ବଦିଗରେ ବିରାଟ ଆମ୍ବତୋଟା ଅଛି । ଏହି ଆମ୍ବ ତୋଟା ମଧ୍ୟରେ  ପୂର୍ବରୁ  କୌଣସି କାର୍ଯ୍ୟାଳୟ କିମ୍ବା ଘରନଥିଲା । ଏହାର ଆୟତନ  ପ୍ରାୟ ୧୦୦ ଏକର ପରିମିତ ଥିଲା । ପୂର୍ବରେ  ବର୍ତ୍ତମାନ ସରକାରୀ ଉଚ୍ଚ ବାଳିକା ବିଦ୍ୟାଳୟ ଏବଂ ଶିଆଳିଆ ନୂଆସାହି ଠାରୁ ପଶ୍ଚିମ ଦିଗରେ ଗ୍ରାମ ପଞ୍ଚାୟତ କାର୍ଯ୍ୟାଳୟ ନିକଟସ୍ଥ କରୁଣୀଗାଡିଆ ପୋଖରୀ ପର୍ଯ୍ୟନ୍ତ  ଏବଂ ରଜପଡିଆ ଆଖଡା ବର ପର୍ଯ୍ୟନ୍ତ ଥିଲା । ଏହି ତୋଟାରେ ପ୍ରାୟ ୨୦୦୦ ହଜାର ପର୍ଯ୍ୟନ୍ତ ଆମ୍ବ ଗଛଥିଲା ଏଠାରେ ଥିବା ଆମ୍ବର ନାମ କଞ୍ଚାସୁଆଦୀ, ସୁନ୍ଦରୀ, ଅମୃତଭଣ୍ଡା, ମଇଁଷିଆ, ଗିରିଡି ଭାଲୁ ଖାଇ ଗିରଡି, ଚେରେଇ, ଧାନଶିଁସା, ମଣିଷ ମୁଣ୍ଡିଆ, ଶିଳୁପୁଆ, ଭେଲେଇ, ନାକୀ, ଚମ୍ପଇନଳୀ, ଖଟେଇ, ନଡିଆ, କଉରୀ, କଳାକୃଷ୍ଣ, ଅମୃତ ମଣୋହି, ନଇମଡା, ଚୋପା ଛଡା, ଚୋପାବହଳିଆ, କାକୁଡିଆ ଓ କଦଳୀଆ ଅଟେ। ୧୫୦ବର୍ଷ ପୂର୍ବରୁ ଏହି ତୋଟାରେ ବୋଇଗଡର ସମସ୍ତ ମୁଖ୍ୟ ଠାକୁର ରାମଚଣ୍ଡୀ, ତୃତୀୟାଦେବ (ଜଗନ୍ନାଥ) ବ୍ରଜମୋହନ ଦେବ ଏବଂ ବାଲୁଙ୍କେଶ୍ୱରଦେବଙ୍କ ସମାବେଶରେ ପ୍ରସିଦ୍ଧ 'ତୋଟା ଭାବଗତ ମାଘମାସରେ ୭ଦିନ  ବ୍ୟାପୀ ହେଉଥିଲା । ଏଥିରେ  ବାରପଲ୍ଲୀର ସମସ୍ତ ଲୋକମାନଙ୍କର ଅମାପ ସମାଗମ  ହେଉଥିଲା । ଇଂରେଜ ଶାସନ ସମୟରେ ସର୍ବପ୍ରଥମ  ୨ଟି ସରକାରୀ  ଦପ୍ତର ମଧ୍ୟରେ  ଫରେଷ୍ଟ (ବନବିଭାଗ) ଦପ୍ତର କାର୍ଯ୍ୟାଳୟ ଏହି  ତୋଟାର ପଶ୍ଚିମ  ପାର୍ଶ୍ୱରେ ନିର୍ମିତ ହୋଇଥିଲା ତାହାପରେ ଜିଲ୍ଲା ବୋର୍ଡ ଗଠନ  ହେଲା ପୂର୍ବରୁ ଡାକ  ବଙ୍ଗଳା  ଏହି  ତୋଟା  ଭିତରେ  ତିଆରି ହେଲା । ପ୍ରଥମେ ଏହା ଚାଳଘର ଥିଲା ଏବଂ ବୋଲଗଡ ଗ୍ରାମ ଭିତର ଦେଇଯାଇଥିବା ଖୋରଧା ନୟାଗଡ  ମୁଖ୍ୟ ରାସ୍ତାରୁ  ଏକ କରକଟା ସଡକ ନିଧି ସୁବୁଦ୍ଧିଙ୍କ ଘରୋଇ ତୋଟା  ଦେଇ ଯାଇ ଡାକବଙ୍ଗଳାର  ଉତ୍ତର ପଶ୍ଚିମ କୋଣ ଦେଇ ଯାଇଥିଲା । ଡାକ ବଙ୍ଗଳା ଏବଂ ଫରେଷ୍ଟ ଅଫିସର କୂଅପାଣି ଅତ୍ୟନ୍ତ ସୁସ୍ୱାଦୁ । ବୋଲଗଡ ବାମନ ମହାପାତ୍ର , ରଘୁନାଥ ମହାପାତ୍ର ଏବଂ ରଘୁନାଥ ସାହୁଙ୍କ ପରିବାର  ପ୍ରତିଦିନ ସଂଧ୍ୟାରେ ଗରାରେ ଏହି କୂଅର ପାଣି ଆଣି ପିଇବା ପାଣି ରୂପେ  ୩୦ ବର୍ଷ ପୂର୍ବରୁ ବ୍ୟବହାର କରୁଥିଲେ । ଏହାପରେ ୧୯୩୫ ମସିହାରେ  ବର୍ତ୍ତମାନର ଦୃଶ୍ୟମାନ ପୋଲିସ ଥାନାର ପକ୍କାଗୃହ ଏହି ତୋଟାରେ ନିର୍ମିତ ହେଲାପରେ  ବହୁ ପୂର୍ବରୁ ବର୍ତ୍ତମାନ ବୋଇଗଡ ବାମନ ହାଇସ୍କୁଲ ପଡିଆରେ  ଥିବା ପୋଲିସ ଥାନା  ସେଠାକୁ

ଉଠିଯାଇଥିଲା । ଜିଲ୍ଲା ବୋର୍ଡ ଦ୍ୱାରା ନିର୍ମିତ ଡାକ୍ତରଖାନା ଏହି ତୋଟା ମଧ୍ୟରେ ନିର୍ମିତ ହୋଇଥିଲା । ୧୯୪୫ ମସିହା ପର୍ଯ୍ୟନ୍ତ ଏହି ୪ଗୋଟି ସରକାରୀ ଦପ୍ତର ଛଡ଼ା ଏହା ଘଞ୍ଚ ଆମ୍ବ ଗଛରେ ପରିପୂର୍ଣ୍ଣ ଥିଲା । ଏହି ଆମ୍ବ ତୋଟା ଇତିହାସ ସମ୍ପର୍କରେ ଲୋକ ମୁଖରୁ ଜଣାଯାଏ, ରାଜପୁତ୍ରମାନଙ୍କର ମୁଖ୍ୟ ହଜାରୀ ସିଂହ ଆକବରଙ୍କ ସମୟରେ ଓଡ଼ିଶା ଆସିଲା ବେଳେ ବୋଲଗଡ ଠାରେ ତାଙ୍କର ସହଯୋଗୀମାନଙ୍କ ସହ ବସତି ସ୍ଥାପନ କରିଥିଲେ । ସେହି ସମୟରୁ ବୋଲଗଡ ଗଡ ସାହିରେ ରାଜପୁତମାନେ ରହିଛନ୍ତି । ହଜାରୀ ସିଂହଙ୍କର କେତକ ବଂଶଧର ଯାଇ ନିକଟସ୍ଥ ପଙ୍କାଳସାହି (ଗୋଠଗୋପାଳିଆ) ଗ୍ରାମରେ ବସବାସ କରିଥିଲେ । ସେଠାରେ ମଧ୍ୟ ସେମାନେ ଶାଳବଣୀ ଜଙ୍ଗଲକୁ ଲାଗି ବହୁ ଆମ୍ବ ଗଛ ଲଗାଇଥିଲେ, ଯାହା ଅଦ୍ୟାବଧି ରହିଅଛି । ବୋଲଗଡର ଏହି ବିରାଟ ଆମ୍ବତୋଟା ହଜାରୀ ସିଂହଙ୍କର ଅକ୍ଷୟକୀର୍ତ୍ତି ଏହି ତୋଟାର କିଛି ଅଂଶ ତାଙ୍କ ବଂଶଧର ବଳିଆରସିଂହ ପରିବାରର ଥିଲା । ଏହି ତୋଟାକୁ ହଜାରୀ ସିଂହ ଗ୍ରାମର ସବୁ ଠାକୁର ସବୁ ଜାତି ଏବଂ ମୁଖ୍ୟ ସାହିମାନଙ୍କୁ ବାଣ୍ଟି ଦେଇଥିଲେ ।

ବର୍ତ୍ତମାନ ବ୍ରଜମୋହନ ଦେବଙ୍କ ତୋଟା, ତୃତୀୟା ଦେବ (ଜଗନ୍ନାଥ) ଏବଂ ବାଲୁଙ୍କେଶ୍ୱର ଦେବ (ମହାଦେବ)ଙ୍କ ତୋଟା ରହିଅଛି । ଏହାଛଡା ମହାପାତ୍ର ପରିବାର ଦ୍ୱାରା ପ୍ରତିଷ୍ଠିତ କୁଞ୍ଜବିହାରୀ ଦେବଙ୍କର ଏକ ବିରାଟ ଆମ୍ବ ତୋଟା ମଧ୍ୟ ରହିଅଛି । ମଠତୋଟା ଏବଂ ଜଗନ୍ନାଥଙ୍କ ତୋଟାରେ ତୃତୀୟାପଡା ନୂଆସାହି (ଗାନ୍ଧୀନଗର) ଥିଲାବେଳେ ବୋଲଗଡ ଗୋପବନ୍ଧୁ ଛକପାଖ ମହାଦେବଙ୍କ ତୋଟା ଅଦ୍ୟାବଧି ରହିଅଛି । ତାପାଖରେ ଥିବା ଜଗନ୍ନାଥ ତୋଟା ୧୯୮୦ ମସିହାରେ ବିକ୍ରୀ କରାଯାଇ ଜଗନ୍ନାଥଙ୍କ ବର୍ତ୍ତମାନର ଦୃଶ୍ୟମାନ ମନ୍ଦିର ପୂର୍ଣ୍ଣାଙ୍ଗ କରାଯାଇଛି । ଏହାଛଡା ବନ୍ଧସାହି, ବଢେଇସାହିର ତୋଟା ମଧ୍ୟ ଥିଲା । ବଢେଇ ସାହି ତୋଟା ବର୍ତ୍ତମାନ ବସଷ୍ଟାଣ୍ଡ ନିକଟରେ ବଜାର ଏବଂ କେତେକ ଘରୋଇ ଲୋକ ନେଇ ବାସଗୃହ ନିର୍ମାଣ କରିଥିବା ବେଳେ ବନ୍ଧସାହି ତୋଟାରେ ଘରୋଇ କୁକୁଡା ଫାର୍ମ ଏବଂ କେତେକ ଘରୋଇ ବାସଗୃହ ନିର୍ମିତ ହୋଇଅଛି । ହଜାରୀ ସିଂହଙ୍କ ବଂଶଧର ବଳିଆରସିଂହ ପରିବାର ତୋଟାକୁ ଚଉରାବାଗ କୁହାଯାଏ । ଘନଶ୍ୟାମ ପଟ୍ଟନାୟକ ସର୍ବରାକାର ଥିଲାବେଳେ ସେହି ଚଉରାବାଗରୁ ଚଉରାଟି ଆଣି ତାଙ୍କ ଦ୍ୱାରା ନିର୍ମିତ ବୋଲଗଡ ଗ୍ରାମର ସର୍ବପ୍ରଥମ ଭାଗବତ ଗୋସ୍ୱାମୀଙ୍କ ମନ୍ଦିର ସାମନାରେ ଏକମଣ୍ଡପ କରି ସ୍ଥାପନ କରିଥିବା କଥା ବଳିଆରସିଂହ ବଂଶର ବୀର ବଳିଆରସିଂହଙ୍କ ଠାରୁ ଶୁଣାଯାଏ । ଏହି ତୋଟାରେ ପାଇକ ବିଦ୍ରୋହ ବେଳେ ଐତିହାସିକ ତୋଟାମେଳୀରେ ସଦାଶିବ ଦେୱାନଙ୍କୁ ହତ୍ୟା କରାଯିବା ସଂପର୍କରେ ଏହି ମେଳୀର ମୁଖ୍ୟ ବାଙ୍କୋଇ

ଗ୍ରାମର କାଳିଆ ମଙ୍ଗରାଜଙ୍କୁ ଫାସି ଦିଆଯିବା କଥା ପୂର୍ବରେ ବର୍ଣ୍ଣିତ ହୋଇଅଛି । ଏହାଛଡା ୧୯୨୫ ରେ ଉତ୍କଳ ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ଏବଂ ୧୯୨୭ରେ ମହାତ୍ମାଗାନ୍ଧୀଙ୍କର ସଭା ଏହି ତୋଟାର ଉତ୍ତର ପାର୍ଶ୍ୱ ବର୍ତ୍ତମାନ କାଚରାସାହି ନିକଟରେ ହୋଇଥିବାର ଜଣାଯାଏ । ବୋଲଗଡର ପାଇକଗୁରୁ ଖଳି ବଳବନ୍ତରାୟ ଏହି ଠାରେ ଜହ୍ନ ଆଲୁଅ ରାତିରେ ପାଇକ ଚାଲିର ଅଭ୍ୟାସ କରୁଥିବାର କଥା ପରବର୍ତ୍ତୀ ପାଇକଗୁରୁ ଭାଗବତ ଡିଆଁ ବାଘଙ୍କ ନାତି ଲକ୍ଷ୍ମୀଧର ବାଘଙ୍କଠାରୁ ଶୁଣିବାକୁ ମିଳେ । ଏହାପରେ ୧୯୬୨ ମସିହା ବୋଲଗଡ ବ୍ଲକ ନିର୍ମାଣ ପାଇଁ ୰ କ୍ଷେତ୍ରବାସୀ ସାହୁ ୰ଗିରିଧାରୀ ସାହୁ, ୰ ଡମ୍ବରୁଧର ଫତେସିଂହ, ୰ ଗୋପୀନାଥ ମହାପାତ୍ର, ଦାମୋଦର ଚମ୍ପତି ଏବଂ ସୁଦର୍ଶନ ମହାପାତ୍ର (ଘୋରଡିଆ) ସେମାନଙ୍କର ତୋଟା ବିନା ମୂଲ୍ୟରେ ଦାନ କରିଥିଲେ ଏବଂ ଏଠାରେ ପଶୁଡାକ୍ତରଖାନା ମଧ ନିର୍ମାଣ କରାଯାଇ ଥିଲା । ୧୯୬୫ରେ ସରକାରୀ ବାଳିକା ହାଇସ୍କୁଲ ନିର୍ମାଣ ହେବା ପୂର୍ବରୁ ୰ ବଳଭଦ୍ର ସାହୁ (ଗୁଡିଆ) ନାରୀ ଶିକ୍ଷାର ପ୍ରସାର ପାଇଁ ଆରମ୍ଭ ହୋଇଥିବା ବାଳିକା ମାଇନର ସ୍କୁଲରୁ ବଳଭଦ୍ର ବାଳିକା ବିଦ୍ୟାପୀଠର ୨ବଖରା ଘର ବର୍ତ୍ତମାନ ସରକାରୀ ବାଳିକା ବିଦ୍ୟାଳୟର ପରିସର ମଧରେ ନିର୍ମାଣ କରିଥିଲେ । ତାପରେ ପୂର୍ବତନ ଶିକ୍ଷକ ୰ ସାନନ୍ଦ ମହାରଣାଙ୍କ ଉଦ୍ୟମରେ ଏହି ତୋଟାରେ ବୋଲଗଡ ନୂଆସାହି ପ୍ରାଥମିକ ସ୍କୁଲ ଆରମ୍ଭ ହେଲା । ୧୯୮୦ରେ ବୋଲଗଡ କଲେଜ ଏହି ତୋଟାରେ ପୂର୍ବରୁ ବ୍ୟବହୃତ ଗଡ ଭିତର ମଶାଣୀ (ଜଖଲା ତୋଟା) ରେ ନିର୍ମାଣ ହେଲା । ତାପରେ ଏହି ମଶାଣୀ ନୂଆ ପୋଖରି ହୁଡାକୁ ଉଠିଗଲା । ଏହି ତୋଟାର ମୁଖ୍ୟ ଅଂଶ ପରିଡା ଘର, ମହାପାତ୍ର ଘର, ପଟ୍ଟନାୟକ ଘର, ବଳିଆରସିଂହ, ଦିବ୍ୟସିଂହ ରାଉତରାୟ, ବୈରୀଗଞ୍ଜନ ପରିବାର, ଫତେସିଂହ ପରିବାର, ପାଲଟାସିଂହ ପରିବାର, ପାଟଶାଣୀ ପରିବାର, ମାର୍ଥା ପରିବାର, ସୁବୁଦ୍ଧି ପରିବାର ଏବଂ ସିଂହ ପରିବାରର ତୋଟା ଥିଲା । ଘୋରଡିଆ ଚଉଧୁରୀ ଘର, ବିଧାର ଏବଂ ମହାପାତ୍ର ପରିବାରର ଘରୋଇ ତୋଟା ଏହି ବିରାଟ ଆମ୍ବ ତୋଟାର ଅଂଶ ଥିଲା । ଏହାଛଡା ବୋଲଗଡ ଅଂଚଳର ସମସ୍ତ ମୁଖ୍ୟ ସର୍ବରାକାର ମାନଙ୍କର ୯ଏକର ତୋଟା କଲେଜକୁ ଲାଗି ରହିଥିଲା । ଭାସ୍କର ମହାପାତ୍ରଙ୍କ ଦ୍ୱାରା ଦାନ ତୋଟାରେ ନନ୍ଦିଘୋଷ ଭବନ ଓ କଲେଜ ହଷ୍ଟେଲ ଦଣ୍ଡାୟମାନ । ଏଥି ପାଇଁ ଅକ୍ଷୟ ପଟ୍ଟନାୟକ ତାଙ୍କ କୋଠ ତୋଟାରୁ ୨୦୦ ଡିସିମିଲ ଜମି ରାସ୍ତା ପାଇଁ ଦାନ କରିଥିଲେ ଏବଂ କଲେଜ ନାମରେ ତାଙ୍କର କୋଠ ସର୍ବାରାକାରୀ ତୋଟାକୁ ବିନା ମୂଲ୍ୟରେ ରେଜେଷ୍ଟ୍ରି କରିଦେଇଥିଲେ । ଏହି ତୋଟାରେ ୧୯୫୫ ମସିହାରେ ବାଇପାସ୍ ରାସ୍ତା ଯିବାପରେ ୰ଗଙ୍ଗାଧର ବିଧାର ମହାପାତ୍ରଙ୍କ ଦାନ ଜମିରେ ବସଷ୍ଟାଣ୍ଡ ଗୃହ ନିର୍ମିତ ହୋଇଥିଲା । ଏଥିରେ

ଭାସ୍କର ମହାପାତ୍ରଙ୍କ ଉଦ୍ୟମ ପ୍ରଶଂସନୀୟ । ବୋଲଗଡର ବର୍ତ୍ତମାନ ଦୃଶ୍ୟମାନ ଡାକଘର ପୂର୍ବରେ ହାଇସ୍କୁଲ ପଡିଆରେ ଥିଲା ଏବଂ ଡାକଘରର ନିଜସ୍ୱ ଜମି ଥିଲା । ୰ ଚିନ୍ତାମଣି ପାଣିଗ୍ରାହୀ କେନ୍ଦ୍ରରେ ଗୃହ ରାଷ୍ଟ୍ର ମନ୍ତ୍ରୀ ଥିଲାବେଳେ ବାମନ ହାଇସ୍କୁଲର ନିଜସ୍ୱ ତୋଟାକୁ ଡାକଘର ଉଠାଇ ନିଆ ଯିବାପାଇଁ ବ୍ୟବସ୍ଥା ହୋଇଥିଲା । ୧୯୮୮ ମସିହାରେ ଏହି ନୂତନ ଡାକଘର ନିର୍ମାଣ ଆରମ୍ଭ ହୋଇ ୧୯୮୯ରେ ପୂର୍ଣ୍ଣାଙ୍ଗ ହେଲା । ସେତିକି ବେଳେ ବୋଲଗଡ ଡାକ୍ତରଖାନା ସାମନାରେ ଥିବା ସରକାରୀ P.W.D. ଜମିରୁ ଅଧିଗ୍ରହଣ କରି କେନ୍ଦ୍ର ସରକାରଙ୍କ ଟେଲିଫୋନ ବିଭାଗ ଟେଲିଫୋନ ଏକ୍ସଚେଞ୍ଜ ନିର୍ମାଣ କରାଯାଇଥିଲା । ୧୯୪୫ ମସିହାରେ ୨ୟ ବିଶ୍ୱଯୁଦ୍ଧ ପରେ ସ୍ଥାନୀୟ ଗରିବ ତନ୍ତୀ କୁଳର ସୁବିଧାପାଇଁ ଗୋବର୍ଦ୍ଧନପୁର ରଘୁନାଥ ପାହାଡସିଂହ (ରଣପୁର) ନିବାସୀ ୰ ଗଙ୍ଗାଧର ମିଶ୍ରଙ୍କ ଉଦ୍ୟମରେ ସୂତାବଣ୍ଟନ ସମିତି ଏବଂ କମ୍ୟୁନିଷ୍ଟପାର୍ଟି ଅଫିସ ଫରେଷ୍ଟ ଅଫିସ୍ ପୂର୍ବ ପାର୍ଶ୍ୱରେ ତିଆରି ହୋଇଥିଲା । ସର୍ବପ୍ରଥମେ କଳାମାଟିଆ ଗ୍ରାମରୁ ଆସି ସଉରୀ ଦେଇ ମଠ ତୋଟାରୁ ଅଳ୍ପ ଯାଗା କିଣି ଏକ କୁଡିଆ କରି ରହିଥିଲେ । ଏଣୁ ତାଙ୍କ ବଡପୁଅ ବଳଭଦ୍ର ସାହୁଙ୍କୁ ଅଧାବଧି ଲୋକମାନେ ତୋଟା ବଳିଆ ବୋଲି ଡାକୁଛନ୍ତି । ଏହାପରେ ପରମାନନ୍ଦ ମହାପାତ୍ର ତାଙ୍କର ବର୍ତ୍ତମାନର ବାସଗୃହ ଏବଂ ଧାନମିଲି ଏହି ତୋଟାରେ ଆରମ୍ଭ କରିଥିଲେ । ତାର କିଛି ବର୍ଷ ପରେ ଘୋରଡିଆର ଶଙ୍କର ସାହୁ ଏହି ମଠ ତୋଟାରେ ତାଙ୍କର ବାସଗୃହ ଏବଂ ବିରାଟ ମିଲ ଗୃହ ନିର୍ମାଣ କରି ଏହାର ଏକ ଅଂଶକୁ ଇଣ୍ଡିୟାନ ଓଭରସିଜ୍ ବ୍ୟାଙ୍କକୁ ଭଡା ସୂତ୍ରରେ ଦେଇଆସୁଛନ୍ତି । ୧୯୩୫ ମସିହାରେ ଏହି ତୋଟାରେ ନିର୍ମିତ ଡାକ୍ତରଖାନାକୁ ଏଠାରୁ ୧୯୯୫ରେ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଥାଇ ଉପନିର୍ବାଚନ ବିଧାୟକ ହେଲାପରେ ୩୦ ଶଯ୍ୟା ବିଶିଷ୍ଟ ଡାକ୍ତରଖାନାର ଭିତ୍ତିପ୍ରସ୍ତର ସ୍ଥାପନ କରିବା ଅବସରରେ, ପୂର୍ବ ପାର୍ଶ୍ୱରେ ଥିବା ବାମନ ହାଇସ୍କୁଲର ଆୟତୋଟାକୁ ଡାକ୍ତରଖାନାକୁ ହସ୍ତାନ୍ତର ହୋଇଥିଲା । ସେଠାରେ ଡାକ୍ତରଙ୍କର କ୍ୱାର୍ଟସ ନିର୍ମାଣ କରାଯାଇଥିଲା । ୧୯୬୭ ମସିହାରେ ନିର୍ବାଚନ ପ୍ରଚାର ପାଇଁ ତତ୍‌କାଳୀନ ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ବୋଲଗଡ ଆସି ଏହି ପଡିଆରେ ବିରାଟ ସାଧାରଣ ସଭାରେ ଉଦ୍‌ବୋଧନ ଦେଇଥିଲେ । ତାଙ୍କ ସଭା ମଞ୍ଚର ଭଗ୍ନାବଶେଷ ବର୍ତ୍ତମାନ ସୁଦ୍ଧା ଅଛି । ୧୯୮୪ ମସିହାରେ "ସମାଜ" ସଂପାଦକ ଡଃ ରାଧାନାଥ ରଥ ଗୋପବଂଧୁଙ୍କ ପ୍ରତିମୂର୍ତ୍ତି "ଇଷ୍ଟର୍ଣ୍ଣ କଲଚୁରାଲ ଆସୋସିଏସନ" ସହଯୋଗରେ ବୋଲଗଡ ଗୋପବନ୍ଧୁ ଛକରେ ସ୍ଥାପନ କରିଥିଲେ । ବୋଲଗଡର ୰ ଦୟାନିଧି ଚୌଧୁରୀ ଚିଫ କଞ୍ଜରଭେଟର (ମୁଖ୍ୟ ସଂରକ୍ଷକ) ଥିଲାବେଳେ ବିଗତ ୭୦ ଦଶକରେ ସାମାଜିକ ବନ ପ୍ରକଳ୍ପର ରେଂଜ ଅଫିସ ଏହି ଗୋପବନ୍ଧୁ ଛକରେ

ନିର୍ମାଣ କରାଯାଇଥିଲା । ଏଠାରେ ବନବିଭାଗ ଦ୍ୱାରା ସାମାଜିକ ବନ ପ୍ରକଳ୍ପ କାର୍ଯ୍ୟ ବନ୍ଦ ହୋଇଥିବା ପରେ ଉକ୍ତ ରେଞ୍ଜ ଅଫିସ ସ୍ଥାନୀୟ ତହସିଲ କାର୍ଯ୍ୟାଳୟ ରୂପେ ୨୦୦୭ ମସିହା ଅଗଷ୍ଟ ୧୫ ତାରିଖ ଠାରୁ ପରିଣତ ହୋଇଅଛି । ଏହି କାର୍ଯ୍ୟରେ ସ୍ଥାନୀୟ ତହସିଲଦାର ଶ୍ରୀ ରମାକାନ୍ତ ସେଠୀଙ୍କ ଉଦ୍ୟମ ବିଶେଷ ପ୍ରଂଶସନୀୟ ।ଏହାକୁ ଲାଗି କେତେକ ପରିବାର ଘୋରଡିଆରୁ ଆସି ବସବାସ କରୁଛନ୍ତି । ୧୯୮୦ ରେ ବୋଲଗଡରେ କଲେଜ ଆରମ୍ଭ ହେଲା ପରେ ବୋଲଗଡ ଡୋଟାର ମୂଲ୍ୟ ବୃଦ୍ଧି ହେବା ସଙ୍ଗେ ବସଷ୍ଟାଣ୍ଡ ବଜାର ବଢ଼ିଗଲା ଏଠାରେ ବ୍ୟବସାୟ ଅଭିବୃଦ୍ଧିକୁ ଲକ୍ଷରଖି ବୋଲଗଡ ବସ୍‌ଷ୍ଟାଣ୍ଡରେ ଚୂଡା ଗ୍ରାମର ୰କୁଞ୍ଜବନ ସ୍ୱାଇଁ ପୂର୍ବରୁ ନିର୍ମିତ କରିଥିବା ସିନେମା ହଲ ଉଦ୍ଦେଶ୍ୟରେ ଗୃହକୁ ତାଙ୍କ ପୁଅ ବିଶ୍ୱଜିତ ସ୍ୱାଇଁ ବିରାଟ କୁଞ୍ଜବନ ମାର୍କେଟ କମ୍ପ୍ଲେକ୍ସ ଏଠାରେ ନିର୍ମାଣ କରିଛନ୍ତି ଏବଂ ଏହି ମାର୍କେଟ କମ୍ପ୍ଲେକ ପରିସରରେ ଚାରୋଟି ମୋବାଇଲ ଟାୱାର ବର୍ତ୍ତମାନ କାର୍ଯ୍ୟ କରୁଅଛି । ବୋଲଗଡ ବସଷ୍ଟାଣ୍ଡରେ ଗତ ୬୦ ଦଶକରେ ପ୍ରଥମ ଜଳଖିଆ ଦୋକାନ ଦୁର୍ଯ୍ୟୋଧନ ସାହୁ (ଗାଣ୍ଟୁ) ଏବଂ ପାନ ଓ ସର୍ବତ ଦୋକାନ ଆରମ୍ଭ କରିଥିବା ୰ ହାଡୁ ସିଂହଙ୍କର ବଂଶଧର ମାନେ ସେଠାରେ ଦୋକାନ କରି ଚଳନ୍ତି । ଧନେଶ୍ୱର ପରିଡାଙ୍କର ହାଡଭଙ୍ଗା ଚିକିତ୍ସାଳୟ ଏବଂ ଲକ୍ଷ୍ମଣ ପାଲଟାସିଂହଙ୍କର ଢାବା ହୋଟେଲ ଏହି ଡୋଟାର ବର୍ତ୍ତମାନ ମୁଖ୍ୟ ଆକର୍ଷଣ । ଇତି ମଧ୍ୟରେ ୧୯୯୯ ମହାବାତ୍ୟା ପରେ ବୋଲଗଡ ଡାକବଙ୍ଗଳା ପାଖରେ ୧୦ ଲକ୍ଷ ଟଙ୍କାରେ ରାଜ୍ୟ ସରକାର ଏକ ଯୋଗାଣ ବିଭାଗ ଗୋଦାମ ଘର ନିର୍ମାଣ କରିଛନ୍ତି । ବର୍ତ୍ତମାନ ନୂଆ ପୋଖରିକୁ ଲାଗି ଥିବା ସରକାରୀ ଜମିରେ ବୋଲଗଡ ଦମକଳ କେନ୍ଦ୍ର ନିଜସ୍ୱ ସ୍ଥାୟୀ ଗୃହରେ ପରିଚାଳିତ ହେଉଛି ।

ପୂର୍ବକାଳରେ ଏହି ନିର୍ଜନ ଡୋଟାରେ ଏକ ବ୍ରହ୍ମ ରାକ୍ଷସ ଥିବାର ୰ ବାଞ୍ଛାନିଧି ପରମଗୁରୁଙ୍କଠାରୁ ଟାଙ୍ଗୀସାହି ଗ୍ରାମର ଶିକ୍ଷକ ସତ୍ୟବାଦୀ ଦାଶ ଶୁଣିଥିବା କଥା ଲେଖକଙ୍କ ଆଗରେ ପ୍ରକାଶ କରିଥିଲେ । ଏକଦା ଦିବ୍ୟସିଂହପୁର ଶାସନର ଡଃ. ବୈଦ୍ୟନାଥ ମିଶ୍ରଙ୍କର ପୂର୍ବଜ ୰ ଦଣ୍ଡଧର ମିଶ୍ର ତୀର୍ଥରୁ ଫେରିବା ସମୟରେ ବୋଲଗଡ ଡୋଟାରେ ବ୍ରହ୍ମ ରାକ୍ଷାସ ହାବୁଡେ ପଡିଥିଲେ । ବ୍ରହ୍ମ ରାକ୍ଷାସ ୰ ମିଶ୍ରଙ୍କୁ ବହୁ ଜଟୀଳ ପ୍ରଶ୍ନ ପଚାରିବାରେ ୰ ମିଶ୍ର ସେ ସବୁର ସଠିକ୍ ଉତ୍ତର ଦେଇ ଏହି ବ୍ରହ୍ମ ରାକ୍ଷାସ କବଳରୁ ରକ୍ଷା ପାଇଥିବା କଥା ସତ୍ୟବାଦୀ ଦାସ କହନ୍ତି । ଏହା ଛଡା ଲେଖକଙ୍କର ବଡ ବାପା ୰ ବଳଭଦ୍ର ପରିଡା ଏହି ଡୋଟାକୁ ତାଙ୍କ ଜୀବଦ୍ଦଶାରେ ଖରାଦିନେ ପବନରେ ଝଡିଥିବା ଆମ୍ବ ପାଇଁ ଯିବାବେଳେ ଡାବରଧୂଆକୁ ଯିବା ଡୋଟା ଭିତର ରାସ୍ତା ସାମୁକା କୋଣ ଠାରେ ଏକ ଭୁତ ଡାକରେ ଚମକିପଡି ମୃତ୍ୟୁବରଣ କରିଥିଲେ । ବୋଲଗଡ ହାଡି ସାହିର ୰ ଝୁଲ କିଶୋର ଘଡେଇଙ୍କ ଜେଜେବାପା

ଶଗଡରେ ହାଡ ନେଇ ଜଟଣୀ ବିକ୍ରୀକରିବାକୁ ଯାଇ ଫେରିବା ବେଳେ ଖାଲି ଶଗଡର ୨ ଚକକୁ ଭୂତ ବର୍ତ୍ତମାନର ଗୋପବନ୍ଧୁ ଛକର ନୂତନ ତାରିଣୀ ମନ୍ଦିର ନିକଟରେ ସେତେବେଳେ ଥିବା ଓସ୍ତ ଗଛ ଠାରେ ରଖିଦେଇ ଥିଲା । ଖାଲି ଶଗଡ ଦଣ୍ଡାକୁ ବଳଦ ଟାଣି ଟାଣି ଆଣିଥିଲେ । ସେତେବେଳେକୁ ପାହାନ୍ତା ପହରା ଚନ୍ଦନ ଯାତ୍ରା ସମୟ । ଲୋକମାନେ ଦେଉଳ ଦୁଆରୁ ଚନ୍ଦନ ଯାତ୍ରା ଦେଖି ଫେରିଲା ବେଳେ ଶଗଡରେ ୨ଟି ଚକ ନଥିବା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ ଓ ପରେ ବହୁତ ଲୋକ କୌତୂହଳ ସହ ତୋଟା ମଝିରେ ପହଞ୍ଚି ଦେଖିଲା ବେଳକୁ ରାସ୍ତାକଡ ଓସ୍ତ ଗଛ ପାଖରେ ଅଖ ସହ ୨ଟି ଶଗଡ ଚକ ଅଛି । ଏହା ୭୦/୮୦ବର୍ଷ ତଳ ଘଟଣା । ଏହା ଛଡା ଡାକବଙ୍ଗଳା ପାଖ କୁଞ୍ଜବିହାରୀ ଦେବଙ୍କ ଆମ୍ବ ତୋଟାରେ ଭୂତ ଥିବାରୁ ସେ ରାସ୍ତା ଦେଇ ଯିବାକୁ ଲୋକମାନେ ସେତେବେଳେ ଭୟକରୁଥିଲେ । ବର୍ତ୍ତମାନ ଯେପରି ଏହି ତୋଟାର ଅବକ୍ଷୟ ଚାଲିଛି ଆଉ ୧୦ ବର୍ଷ ବେଳକୁ ଏଠାରୁ ଆମ୍ବ ଗଛ ଶୂନ୍ୟ ହୋଇଯିବ । ଏହି ତୋଟାରେ ଦକ୍ଷିଣ ପୂର୍ବ କୋଣର ଗାଈ ଦଣ୍ଡା ନିକଟରେ ଡଃ ପ୍ରସନ୍ନ ତ୍ରିପାଠୀ ୨୦୦୨ ମସିହାରେ ନିଜସ୍ୱ ଚନ୍ଦ୍ରଶେଖର ହନୁମାନ ମନ୍ଦିର ନିର୍ମାଣ କରିଛନ୍ତି । ଏହା ଛଡା ଗୋପବନ୍ଧୁ ଛକରେ ସ୍ଥାନୀୟ ସହଯୋଗୀଙ୍କ ଉଦ୍ୟମରେ ମା ତାରିଣୀ ପୀଠ ନିର୍ମିତ ହୋଇ ଅଛି । ଏହି ତୋଟା ପୂର୍ବ ପାଖରେ ଶିଆଳିଆପଲ୍ଲୀ ମୌଜାରେ ଶିଆଳିଆ ବନ୍ଧ ଦକ୍ଷିଣ ପାଖରେ ନୂଆ ପୋଖରି ଏବଂ ତାହାର ହୁଡାରେ ବାବାଜୀ ୰ ଘନଶ୍ୟାମ ଦାସଙ୍କ ମଠ ଅଛି । ଉତ୍ତର ଦିଗରେ ମାଟି ଗାଡିଆ କଦମ୍ବ ଗାଡିଆ ରହିଅଛି । ମାଟିଗାଡିଆ ହୁଡାରେ ଦୁମଣୀ ଠାକୁରାଣୀଙ୍କ ପୀଠ ଅଛି । ପୂର୍ବ ଦିଗରେ ଶିଆଳିଆ ନୂଆସାହି ନିବାସୀଙ୍କ ଦ୍ୱାରା ପ୍ରତିଷ୍ଠିତ ରାମଚଣ୍ଡୀ ଠାକୁରାଣୀ ପୀଠ ବିଦ୍ୟମାନ । ଏଠାରେ ନୂତନ ଜନବସତିର ନାମ ଗୋପବନ୍ଧୁ ବିହାର ଓ ହନୁମାନ ବିହାର ନାମରେ ନାମିତ । କଛି ବର୍ଷ ହେଲା ବୋଲଗଡରେ ଜବର ଦଖଲ ଚରମ ସୀମାରେ ପହଞ୍ଚିଛି । କୃଷ୍ଣ ପାଲଟାସିଂହଙ୍କ ଉଦ୍ୟମରେ ଗଡଭିତର ଅଧିବାସୀଙ୍କ ସହଯୋଗରେ ବଙ୍ଗଳା ପାଖ ସରକାରୀ ଜମିରେ ରାଜ୍ୟ ଯୋଗାଣ ବିଭାଗ ଦ୍ୱାରା ଏକ ପ୍ରକାଣ୍ଡ ଗୋଦାମ ଘର ଏବଂ ଲେଖକଙ୍କର ଉଦ୍ୟମରେ ବୃତୀୟାପଡା ଅଧିବାସୀଙ୍କ ସହଯୋଗରେ ଡାକ୍ତରଖାନା ସାମନା ସରକାରୀ ଜମିରେ ଟେଲିଫୋନ ଏକ୍ସଚେଞ୍ଜ ସ୍ଥାପନ ସମ୍ଭବ ହୋଇ ପାରିଅଛି । ଏହି ଖାଦ୍ୟ ଗୋଦାମ ଗୃହ ଯୋଗୁଁ ବହୁ ପୂର୍ବରୁ ରାମଚଣ୍ଡୀ ଠାକୁରାଣୀଙ୍କର ରଜଯାତ୍ରାର ଫେରିବା ବେଳର ରାସ୍ତାରେ ପରିବର୍ତ୍ତନ ହୋଇଛି । ବସଷ୍ଟାଣ୍ଡ ପଛପଟ ବିରାଟ କରଞ୍ଜଟା ଗାଡିଆ ମଧ୍ୟରେ ସ୍ଥାନୀୟ ଡମ ଜାତି ଲୋକଙ୍କର ଶ୍ମଶାନ ପୂର୍ବକାଳରୁ ରହିଅଛି ।

ଏହି ଆମ୍ବ ତୋଟା ଛଡା ବୋଲଗଡ ବ୍ଲକର ଅଧିକାଂଶ ଗ୍ରାମରେ ଘରୋଇ ଆମ୍ବ ତୋଟା ସହ ସରକାରୀ ଜାଗାରେ ସ୍ଥାନୀୟ ଲୋକମାନଙ୍କର ଆମ୍ବ ବଗିଚା ରହିଅଛି । ଧଳାପଥରସ୍ଥ ରାଧା ବଲ୍ଲଭ ଦେବଙ୍କ ଆମ୍ବ ତୋଟାରେ ଗୋରୁହାଟ ପ୍ରତିବର୍ଷ ହୁଏ ।

ବୋଲଗଡ ଅଞ୍ଚଳରେ ତିନି ବର୍ଷ କ୍ରମାଗତ ମରୁଡି :-

୧୯୭୨, ୭୩ ଓ ୭୪ ମସିହାରେ ତିନିବର୍ଷ ଲାଗିଲାଗି କ୍ରମାଗତ ଭାବରେ ହୋଇଥିବା ଭୀଷଣ ମରୁଡିର ଶୀକାର ଏ ଅଞ୍ଚଳ ହୋଇଥିଲା । ଏହା ପୂର୍ବରୁ ମଧ ୧୯୫୫ ମସିହାରେ ଥରେ ଭୀଷଣ ମରୁଡି ହୋଇଥିଲା । ମାତ୍ର ପରବର୍ତ୍ତି ତିନିବର୍ଷର ମରୁଡି ଅବସ୍ଥା ଏ ଅଞ୍ଚଳର ଅର୍ଥନୈତିକ ପରିସ୍ଥିତିକୁ ସମ୍ପୂର୍ଣ୍ଣ ରୂପେ ଦୋହଲାଇ ଦେଇଥିଲା । ଏଥିରେ ସାଗରଗୁଆଁ ଅଞ୍ଚଳ ସବୁଠାରୁ ବେଶୀ କ୍ଷତିଗ୍ରସ୍ତ ହୋଇଥିଲା । ସେତେବେଳେ ଲେଖକ ବୋଲଗଡ ବ୍ଲକର ଉପାଧକ୍ଷ ଭାବରେ ଏକ ବର୍ଷ ଅଧକ୍ଷ ଦାୟିତ୍ୱ ତୁଲାଇଥିଲା । ସାଗରଗାଁର ତତକାଳୀନ ସରପଞ୍ଚ ଶ୍ରୀ ସଦାଶିବ ରାୟଗୁରୁ ଲେଖକର ପରାମର୍ଶ ଅନୁସାରେ ତତକାଳୀନ ବିଧାୟକ ଗଙ୍ଗାଧର ପାଇକରାୟଙ୍କ ସହାୟତାରେ ରାଜ୍ୟପାଳ ଆକବର ଅଲ୍ଲୀ ଖାନ ଏବଂ ସମାଜ ସଂପାଦକ ଡକ୍ଟର ରାଧାନାଥ ରଥ ପ୍ରଭୃତି ନେତୃବୃନ୍ଦଙ୍କୁ ସାଗରଗାଁ ଅଞ୍ଚଳକୁ ମରୁଡି ପରିସ୍ଥିତି ପରିଦର୍ଶନ କରିବାକୁ ଆଣିବାରେ ସଫଳ ହୋଇଥିଲେ । ରାଜ୍ୟପାଳ ମହୋଦୟ ସାଗରଗାଁ ଅଞ୍ଚଳରୁ ଫେରି ବୋଲଗଡ ଡାକବଙ୍ଗଳାରେ ମରୁଡି ପରିସ୍ଥିତିର ପ୍ରତିକାର ପାଇଁ ସ୍ଥାନିୟ ସରକାରୀ କର୍ମଚାରୀଙ୍କ ସହ ଆଲୋଚନା କରିଥିଲେ ଏବଂ ବ୍ଲକ ତରଫରୁ ସମଗ୍ର ବ୍ଲକର ମରୁଡି ସ୍ଥିତି ଉପରେ ଏକ ସ୍ମାରକୀ ରାଜ୍ୟପାଳଙ୍କୁ ଦିଆଯାଇଥିଲା । ଏହାପରେ ପ୍ରଚୁର ପରିମାଣରେ ଖାଦ୍ୟଶସ୍ୟ ଏବଂ ଲୋକମାନଙ୍କୁ କାମ ଯୋଗାଇବାକୁ ଟଙ୍କା ସରକାରଙ୍କ ତରଫରୁ ବ୍ଲକରେ ପହଞ୍ଚିଥିଲା । ଓଡିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ୰ ବିନାୟକ ଆଚାର୍ଯ୍ୟ ସେତେବେଳେ କଂଗ୍ରେସ ରିଲିଫ ପାଣ୍ଠିର ଅଧକ୍ଷ ଥିଲେ । ତତକାଳୀନ ଏମ.ପି. ୰ ଚିନ୍ତାମଣି ପାଣିଗ୍ରାହୀଙ୍କ ସହ ବିନାୟକ ଆଚାର୍ଯ୍ୟ ବୋଲଗଡ ଅଞ୍ଚଳ ଗସ୍ତ କରି କଂଗ୍ରେସ ରିଲିଫ ପାଣ୍ଠିରୁ ଦେଇଥିବା ଗହମ ଜରିଆରେ ସ୍ଥାନୀୟ ପଞ୍ଚୁକୋଟ ଗ୍ରାମର ଭଣ୍ଡାରୀ ହାଡିଆ ଏବଂ ଅନ୍ୟକେତେକ ପୋଖରି ଖୋଳାଯାଇଥିଲା । ଲୋକଙ୍କ ଘରେ ସୁନା ଟିକିଏ ରହିଲା ନାହିଁ । ଲୋକମାନେ ବିଭିନ୍ନ ଗ୍ରାମ୍ୟବ୍ୟାଙ୍କରେ ସୁନା ବନ୍ଧା ପକାଇ ସେଥିରେ ନିଜର ଗୁଜୁରାଣ ଚଳାଇଲେ । ପରିସ୍ଥିତି ଏପରି ହୋଇଥିଲା ଯେ, ଖୋଦ ପୁରୀ ଜିଲ୍ଲାପାଳ ଭାଦ୍ରବ ମାସରେ ପିତୁକୁଳି ଡାକବଙ୍ଗଳାକୁ ବ୍ଲକ ଅନ୍ତର୍ଗତ ସମସ୍ତ ସେବା ସମବାୟ ସମିତିର ସଭାପତି, ସଂପାଦକ ଓ ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କ

କର୍ମକର୍ତ୍ତାଙ୍କର ମିଳିତ ବୈଠକ ଡକାଇ ଋଣନୀତି କୋହଳ କରି ପ୍ରର୍ଯ୍ୟାପ୍ତ ପରିମାଣରେ ଖରିପ ଋଣ ଦେବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ଏଥିରେ ଫପୁର ସେବାସମବାୟ ସମିତି ସଭାପତି ଶ୍ରୀ ସୁଦର୍ଶନ ପରିଡା ଅମଙ୍ଗ ହେବାରୁ ଏହା କାର୍ଯ୍ୟକାରୀ ନହେଲେ ଗିରଫ ହେବାକୁ ଜିଲ୍ଲାପାଳ ଧମକ ଦେଇଥିଲେ । ଏଥିରୁ ଜଣାପଡୁଛି ମରୁଡି ପରିସ୍ଥିତି କେତେ ଭୟାବହ ଥିଲା । ସେହି ସମୟରୁ ଏ ଅଞ୍ଚଳର ଲୋକେ ଚାଉଳ ଅଭାବରେ ଗହମ ରୁଟି ଖାଇବାରେ ଅଭ୍ୟସ୍ତ ହେଲେ ।



## ବିଗତ ୧୦୦ ବର୍ଷ ମଧ୍ୟରେ
## ବୋଲଗଡ ଅଞ୍ଚଳର ପ୍ରମୁଖ ଘଟଣାବଳୀ

୧୮୮୪- ବୋଲଗଡ ଠାରେ ଡାକଘର ପ୍ରତିଷ୍ଠା । (କୁଞ୍ଜବିହାରୀ ରାୟ ପ୍ରଥମ ପୋଷ୍ଟ ମାଷ୍ଟର)

୧୮୮୫- ଭର୍ତ୍ତାକୁଲର ସ୍କୁଲ ଆରମ୍ଭ

୧୯୦୨- କୁଞ୍ଜ ବିହାରୀ ଦେବଙ୍କ ମନ୍ଦିର ପ୍ରତିଷ୍ଠା

୧୯୦୪- ଦଶଦୋଳ ଯାତ୍ରାର ଶୁଭାରମ୍ଭ ।

୧୯୦୫- ଗ୍ରାମ ଗୋଳମାଳ ଯୋଗୁଁ ବହୁପୂର୍ବରୁ ପ୍ରଚଳିତ ବ୍ରଜମୋହନ ଦେବ ଓ ତୃତୀୟା ଦେବଙ୍କର ନେଳିଆ ପୋଖରୀ ଚନ୍ଦନ ଯାତ୍ରାର ପରିସମାପ୍ତି ।

୧୯୦୬- ଐତିହାସିକ ବୋଲଗଡ ଚନ୍ଦନଯାତ୍ରା ଗୋଳମାଳ ମକଦ୍ଦମାର ରାୟ ପ୍ରକାଶ ।

୧୯୦୭- ବୋଲଗଡ ପୂର୍ବ ବ୍ରହ୍ମରମ ଘର ପୋଡିରେ ଚୌଧୁରୀ ସାହି ବ୍ୟତୀତ ସମଗ୍ର ଗ୍ରାମ ଧ୍ୱଂସ ।

୧୯୧୦- କୁଞ୍ଜବିହାରୀ ଦେବଙ୍କ ଚନ୍ଦନ ଯାତ୍ରା ମହାସମାରୋହରେ ଆରମ୍ଭ ।

୧୯୧୪- ରଜଯାତ୍ରା ଆରମ୍ଭ । ଦଶପଲ୍ଲା ମେଳି ବେଳେ ବୋଲଗଡ ଡାକବଙ୍ଗଳାରେ ଦଶପଲ୍ଲାର ତତକାଳୀନ ଦେୱାନ ବ୍ୟାସକବି ଫକୀର ମୋହନଙ୍କ ଅବସ୍ଥାନ ।

୧୯୧୬- ପ୍ରାଥମିକ ସମବାୟ ସମିତି ଗଠନ ।

୧୯୧୯- ୨୬ସାଲ ଅପାଳକ ଯୋଗୁଁ ସ୍ଥାନୀୟ ଲୋକମାନଙ୍କ ଦୁର୍ଦ୍ଦଶା ।

୧୯୨୧- ଅଖିଳ ଭାରତ ଚରଖା ସଂଘ ସ୍ଥାପନ ।

୧୯୨୨- ଖଣ୍ଡପଡାର ପୂର୍ବତନ ରାଜା ୰ ନଟବର ସିଂହଙ୍କର ନରହତ୍ୟା ମକଦ୍ଦମାରେ ଲଢୁଥିବା ଉତ୍କଳ ଗୌରବ ମଧୁସୂଦନଙ୍କର ବୋଲଗଡ ଡାକବଙ୍ଗଳାରେ ଅବସ୍ଥାନ ଓ ଏଠାରୁ ହାତୀରେ ଖଣ୍ଡପଡା ଗମନ ।

୧୯୨୫- ପ୍ରାଥମିକ ବିଦ୍ୟାଳୟ, ମଧ ଇଂରାଜୀ ବିଦ୍ୟାଳୟ ଏବଂ ଶ୍ରୀମତୀ ସଂସ୍କୃତ ଟୋଲ ସ୍ଥାପନ ।

୧୯୨୫- ନଭେମ୍ବର ୨୫ ତାରିଖରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ଦ୍ୱିତୀୟ ପ୍ରାଦେଶିକ ସମ୍ମିଳନୀ ଆରମ୍ଭ ।

୧୯୨୭- ମହାତ୍ମାଗାନ୍ଧୀଙ୍କ ବୋଲଗଡ ଆଗମନ ଓ ଏଠାରେ ତିନି ଦିନଧରି ଅବସ୍ଥାନ ।(ଡିସେମ୍ବର ୯,୧୦,୧୧ତାରିଖ)

୧୯୩୦- ଲବଣ ସତ୍ୟାଗ୍ରହରେ ବୋଲଗଡ ଅଞ୍ଚଳର ବହୁ ସ୍ୱାଧୀନତା ସଂଗ୍ରାମୀଙ୍କ ଯୋଗଦାନ ଏବଂ ବୋଲଗଡ ଛଞ୍ଚାଣିଆ ବନ୍ଧ ସ୍ୱର୍ଗତ ବାମନ ମହାପାତ୍ର ଓ ସ୍ୱର୍ଗତ ରଘୁନାଥ ସାହୁଙ୍କ ଦ୍ୱାରା ପୁନରୁଦ୍ଧାର । (ଖର୍ଚ୍ଚର ପରିମାଣ ମହାପାତ୍ର ପରିବାର-ଟ.୧୦,୦୦୦ଙ୍କା, ସାହୁ ପରିବାର-ଟ.୩,୦୦୦ଙ୍କା)

୧୯୩୨- ବୋଲଗଡ ଅଞ୍ଚଳର ବିଶିଷ୍ଟ ବାଗ୍ମୀ ଓ ଶିକ୍ଷକ ପଣ୍ଡିତ ଜଗନ୍ନାଥ ପରିଡାଙ୍କ ପରଲୋକ ଏବଂ ଜାନୁୟାରୀ ୨୬ରେ କଂଗ୍ରେସ ଶପଥପାଠ ଓ ତ୍ରିରଙ୍ଗୀ ପତାକା ଉତ୍ତୋଳନ ଅଭିଯୋଗରେ ମାଣିକାଗୋଡା ଗ୍ରାମରୁ ସୁଦର୍ଶନ ମହାପାତ୍ର, ଚମ୍ପଇଲୋ ଗ୍ରାମରୁ ବିଶ୍ୱନାଥ ସାମନ୍ତ, ଅର୍ଜ୍ଜୁନ ସତେସିଂହ ଏବଂ ସାନପଦର ଗ୍ରାମରୁ ଗଙ୍ଗାଧର ପାଇକରାୟ ଗିରଫ ।

୧୯୩୪- ଘନଶ୍ୟାମ ପଟ୍ଟନାୟକଙ୍କର ପରଲୋକ ।

୧୯୩୫- ବୋଲଗଡ ହାଇସ୍କୁଲ ପଡିଆରୁ ବୋଲଗଡ ଥାନାର ସ୍ଥାନାନ୍ତର ଏବଂ ବୋଲଗଡ ସରକାରୀ ଡାକ୍ତରଖାନା ସ୍ଥାପନ ।

୧୯୩୮- ରଣପୁରରେ ବେଜେଲ୍‌ଗେଟ୍ ହତ୍ୟା ପରେ ବୋଲଗଡ ଅଞ୍ଚଳରେ ବହୁ ରଣପୁର ବାସୀଙ୍କ ଆତ୍ମଗୋପନ । ଓଡିଶାର ପ୍ରଥମ ରାଜ୍ୟପାଳ ସାର୍ ଅଷ୍ଟିନ ହବାକ୍‌ଙ୍କ ବୋଲଗଡ ଆଗମନ । ଓଡିଶାରେ ଅନୁଷ୍ଠିତ ପ୍ରଥମ ସାଧାରଣ ନିର୍ବାଚନରେ ତତକାଳୀନ ପଶ୍ଚିମ ଖୋରଧା ନିର୍ବାଚନ ମଣ୍ଡଳୀର ବିଧାନ ସଭା ସଭ୍ୟ ଭାବରେ ଏଠାରୁ ପଣ୍ଡିତ ଗୋଦାବରୀଶ ମିଶ୍ର ନିର୍ବାଚିତ ।

୧୯୩୯- ଡଃ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ବୋଲଗଡ ଡାକ ବଙ୍ଗଳାଠାରେ ଗଡଜାତ ଅତ୍ୟାଚାର ଅନୁସନ୍ଧାନ କମିଟିର ରଣପୁର, ଖଣ୍ଡପଡା, ନୟାଗଡ ପ୍ରଜାଙ୍କଠାରୁ ସାକ୍ଷ୍ୟଗ୍ରହଣ ।

୧୯୪୨- ଖଦୀକେନ୍ଦ୍ର ତାଲା ଭାଙ୍ଗିବା ଅଭିଯୋଗରେ ପତିତପାବନ ହୋତା ଏବଂ ଜଗନ୍ନାଥ ମିଶ୍ରଙ୍କ କାରାବରଣ ।

୧୯୪୩- ବାମନ ଉଚ୍ଚ ବିଦ୍ୟାଳୟ ପ୍ରତିଷ୍ଠା ।

୧୯୪୫- ବୋଲଗଡରେ ସୂତା ବଣ୍ଟନ ସମିତି (ତନ୍ତୁବାୟ ସହଯୋଗ ସମିତି) ଗଠନ ମୁଖ୍ୟ ସହଯୋଗୀ ୰ ରଘୁନାଥ ପାହାଡସିଂହ (ଗୋବର୍ଦ୍ଧନପୁର) ୰ ସାରଙ୍ଗଧର ମିଶ୍ର(ରଣପୁର) ।

୧୯୪୮- ସାକ୍ଷୀଗୋପାଳ ଅଞ୍ଚଳର ସତ୍ୟବାଦୀ ନନ୍ଦ ବୋଲଗଡ ବେଗୁନିଆରୁ ପ୍ରଥମ କଂଗ୍ରେସ ବିଧାୟକ ଭାବେ ମନୋନିତ । ବାପୁଜୀ ପାଠାଗାର ପ୍ରତିଷ୍ଠା ।

୧୯୫୦- ଗ୍ରାମ ପଞ୍ଚାୟତ ଗଠନ । (ବୋଲଗଡ, ପିତୁକୁଳି, କଡବ, ବଙ୍କୋଇ, ସାଗରଗାଁ, ଦଳେଇସାହି, ବଡକୁମାରୀ, ଆରିକମା, ଗେଡିଆପଲ୍ଲୀ, ଖଙ୍ଗୁରିଆ )

୧୯୫୧- ମାଣିକାଗୋଡା ବଞ୍ଚାନିଧି ହାଇସ୍କୁଲ (ପରେ ଗଦାଧର ଏକାଡେମୀ ଭାବରେ ନାମ କରଣ) ସ୍ଥାପନ ।

୧୯୫୨- ଦେଶର ପ୍ରଥମ ସାଧାରଣ ନିର୍ବାଚନରେ ଗଙ୍ଗାଧର ପାଇକରାୟ କମ୍ୟୁନିଷ୍ଟ ବିଧାୟକ ଭାବେ ନିର୍ବାଚିତ ।

୧୯୫୩- ମୁଖ୍ୟ ମନ୍ତ୍ରୀ ନବକୃଷ୍ଣ ଚୌଧୁରୀଙ୍କ ବୋଲଗଡ ଆଗମନ ଏବଂ ଏଠାରେ ମାସାଧିକ କାଳ ଅନୁଷ୍ଠିତ ସୈନ୍ୟ ବାହିନୀ ଦ୍ୱାରା ଗ୍ରାମ୍ୟ ସ୍ୱେଚ୍ଛାସେବୀ ଶିବିର ଉଦଯାପନୀ ଦିବସରେ ଅଭିଭାଷଣ ।

୧୯୫୫- ବର୍ଷାଭାବ ଯୋଗୁଁ ବୋଲଗଡ ଅଞ୍ଚଳରେ ଭୟାବହ ମରୁଡି ପରିସ୍ଥିତି, ବିନୋବାଜୀଙ୍କର ବୋଲଗଡ ଆଗମନ ଏବଂ ନୂତନ ବାଇପାସ୍ ରାସ୍ତା ନିର୍ମାଣ ।

୧୯୫୭- ସତ୍ୟାନନ୍ଦ ଚମ୍ପତିରାୟ କଂଗ୍ରେସ ବିଧାୟକ ନିର୍ବାଚିତ ଏବଂ ବିଶିଷ୍ଟ କମ୍ୟୁନିଷ୍ଟ ନେତା ଇ.ଏମ୍.ଏସ୍. ନମ୍ବୁଦ୍ରି ପଦଙ୍କ ବୋଲଗଡ ଆଗମନ ।

୧୯୫୮- ବାମନ ମହାପାତ୍ରଙ୍କ ପରଲୋକ ।

୧୯୬୦- ଜନତା କ୍ଲବ (ବର୍ତ୍ତମାନର ଟାଉନ୍ କ୍ଲବ) ଗଠନ । ରାଜ୍ୟସ୍ତରୀୟ ଗ୍ରାମ ପଞ୍ଚାୟତ ସମ୍ମିଳନୀ ଆରମ୍ଭ ।

୧୯୬୨- ବୋଇଗଡ ବ୍ଲକ ଓ ପଶୁ ଡାକ୍ତରଖାନା ପ୍ରତିଷ୍ଠା ।

୧୯୬୩- ବୋଇଗଡରେ ବଳଭଦ୍ର ବାଳିକା ମ.ଇ. ସ୍କୁଲ ସ୍ଥାପନ । ଗୌରୀଶ୍ୟାମ ପଟ୍ଟନାୟକ (ବାଙ୍କୋଇ) ବୋଲଗଡ ବ୍ଲକର ପ୍ରଥମ ଅଧ୍ୟକ୍ଷ ଏବଂ ବାଙ୍କନିଧି ପରିଡା (ଡାବରଧୂଆ ପଟଣା) ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୧୯୬୪- ଭାଗଚାଷୀ ଆନ୍ଦୋଳନ ଏବଂ ବୋଲଗଡକୁ ପ୍ରଥମ ବିଦ୍ୟୁତ ସଂଯୋଗ । ଓଡିଶା ଐତିହାସିକ ଛାତ୍ର ଆନ୍ଦୋଳନରେ କଟକ ମଧୁ ସୂଦନ ଆଇନ କଲେଜ ଛାତ୍ରନେତା ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ସାନପଦର) ଅଜ୍ଞାତବାସ । ବ୍ରହ୍ମପୁର ଇଂଜିନିୟରିଙ୍ଗ ସ୍କୁଲର ଛାତ୍ର ପ୍ରଫୁଲ କୁମାର ସିଂହ (ଗ୍ରାମ ପଙ୍କାଳସାହି)ଙ୍କ କାରାବରଣ ।

୧୯୬୫- ବୋଇଗଡରେ ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟ ସ୍ଥାପନ ।

୧୯୬୭- ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ବୋଲଗଡ ଆଗମନ । ପର୍ଶୁରାମ ପଦାତିକରାୟ (ମାଣିକାଗୋଡା) ବୋଲଗଡ ବ୍ଲକର ଦ୍ୱିତୀୟ ଅଧ୍ୟକ୍ଷ ଏବଂ ଶ୍ରୀ ବାଙ୍କନିଧି ସୁବୁଦ୍ଧି (ସାନପଦର) ଦ୍ୱିତୀୟ ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୧୯୬୮- ଉତ୍କଳମଣୀ ଖଦୀ କେନ୍ଦ୍ର ସ୍ଥାପନ ଏବଂ ସେହି ବର୍ଷ କାର୍ତ୍ତିକମାସ ଝଡ ବାତ୍ୟାରେ ବ୍ୟାପକ କ୍ଷୟକ୍ଷତି ।

୧୯୬୯- ମହାତ୍ମାଗାନ୍ଧୀଙ୍କ ପ୍ରତିମୂର୍ତ୍ତି ସ୍ଥାପନ । (ଗାନ୍ଧୀ ଜନ୍ମ ଶତବାର୍ଷିକ ଅବସରରେ ଉଦଘାଟନ - ଚିନ୍ତାମଣି ପାଣିଗ୍ରାହୀ)

୧୯୭୦- ନୂଆସାହି ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ପ୍ରତିଷ୍ଠା ।

୧୯୭୧- ଶ୍ରୀ ସୀତାକାନ୍ତ ବିଧାର ମହାପାତ୍ର ବୋଇଗଡ ବ୍ଲକର ତୃତୀୟ ଅଧ୍ୟକ୍ଷ ଏବଂ ରବୀନ୍ଦ୍ର କୁମାର ପରିଡା ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୧୯୭୨,୭୩,୭୪- ମସିହାରେ କ୍ରମାଗତ ମରୁଡି ଯୋଗୁଁ ସ୍ଥାନୀୟ ଜନସାଧାରଣ ବିଶେଷ କ୍ଷତିଗ୍ରସ୍ତ ।

୧୯୭୫- ଜରୁରୀ ପରିସ୍ଥିତିରେ ରଘୁନାଥସେଠୀ(ବୋଲଗଡ), ବ୍ରଜବନ୍ଧୁ ମହାପାତ୍ର (କଳାଙ୍ଗ)ଙ୍କର ୧୮ମାସ କାରାବାସ ଏବଂ ହରିହର ସାହୁ(ବୋଇଗଡ)ଙ୍କୁ ଭୁବନେଶ୍ୱର ଠାରେ ଗିରଫ । ବୋଇଗଡରେ ପୁରୀ ଗ୍ରାମ୍ୟ ବ୍ୟାଙ୍କ ପ୍ରତିଷ୍ଠା । ଆର. ଏସ. ଏସ. କାର୍ଯ୍ୟକଳାପରେ ସମ୍ପୃକ୍ତ ଅଭିଯୋଗରେ ରବୀନ୍ଦ୍ର କୁମାର ପରିଡାଙ୍କ ଘର ଖାନତଲାସ । ଶ୍ରୀ ଭାସ୍କର ଚନ୍ଦ୍ର ମହାପାତ୍ର (ବୋଲଗଡ) ବ୍ଲକର ଚତୁର୍ଥ ଅଧ୍ୟକ୍ଷ ଏବଂ ଶ୍ରୀ

ବ୍ରଜକିଶୋର ରାୟ ମହାପାତ୍ର (ଖଇଁରିଆ) ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୧୯୭୭- ଚିନ୍ତାମଣି ପାଣିଗ୍ରାହୀ ବିଧାୟକ ଓ ରାଜ୍ୟ ବିଧାନସଭାର ବିରୋଧୀ ଦଳର ନେତା ନିର୍ବାଚିତ ଏବଂ ଉପ-ପ୍ରଧାନ ମନ୍ତ୍ରୀ ୱାଇ.ଭି. ଚୌହ୍ୱାନଙ୍କର ବୋଲଗଡ ଗସ୍ତ ।

୧୯୭୮- ରାଜ୍ୟର ଅଗ୍ରଣୀ ସାଂସ୍କୃତିକ ଅନୁଷ୍ଠାନ 'ନନ୍ଦିଘୋଷ' ଗଠନ । ଦଶଦୋଳ ପରିବର୍ତ୍ତେ ପନ୍ଦର ଦୋଳ ଯାତ୍ରା ଆରମ୍ଭ ।

୧୯୮୦- ଓଡିଶାର ଘରୋଇ ସ୍ତରରେ ପ୍ରଥମ ବି.ଇଡି. କଲେଜ ସ୍ଥାପନ ଓ ତୃତୀୟାଦେବଙ୍କ ବର୍ତ୍ତମାନ ମନ୍ଦିର ନିର୍ମାଣ । କୈଳାସ ମହାପାତ୍ର କଂଗ୍ରେସ ବିଧାୟକ ରୂପେ ନିର୍ବାଚିତ ।

୧୯୮୧- ଯୁକ୍ତ ଦୁଇ କଳା ଓ ବିଜ୍ଞାନ କଲେଜ ପ୍ରତିଷ୍ଠା (ପରମାନନ୍ଦ କଲେଜ) ।

୧୯୮୪- ଇଣ୍ଡିଆନ ଓଭରସିଜ୍ ବ୍ୟାଙ୍କ ପ୍ରତିଷ୍ଠା ଓ ଇଷ୍ଟର୍ଣ୍ଣ କଲ୍‌ଚୁରାଲ ଆସୋସିଏସନ ଦ୍ୱାରା ଗୋପବନ୍ଧୁଙ୍କ ପ୍ରତିମୂର୍ତ୍ତି ସ୍ଥାପନ । ଶ୍ରୀ ଅକ୍ଷୟ କୁମାର ପଟ୍ଟନାୟକ(ବୋଲଗଡ) ବ୍ଲକର ପଞ୍ଚମ ଅଧ୍ୟକ୍ଷ ଏବଂ ଶ୍ରୀ ଗଙ୍ଗାଧର ପରିଡା (ଡାବରଧୁଆ ପଟଣା) ଉପାଧ୍ୟକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୧୯୮୫- ଗଡ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ ।

୧୯୮୯- ଅବିଭକ୍ତ ପୁରୀ ଜିଲ୍ଲା ସ୍ୱାଧୀନତା ସଂଗ୍ରାମୀ ସମ୍ମିଳନୀ ।

୧୯୯୦- ସୁରେନ୍ଦ୍ର ମିଶ୍ର ଜନତାଦଳର ବିଧାୟକ ନିର୍ବାଚିତ ଓ ଭୂୟାଁ ଠାକୁରାଣୀଙ୍କ ପ୍ରସିଦ୍ଧ ଧନୁଯାତ୍ରା ଆରମ୍ଭ । ବିବେକାନନ୍ଦ ଶିକ୍ଷାକେନ୍ଦ୍ର ସ୍ଥାପନ ।

୧୯୯୧- ଶ୍ରୀ ବାନମ୍ବର ମାଝୀ (ଟାଙ୍ଗିସାହି) ବ୍ଲକର ଷଷ୍ଠ ଅଧ୍ୟକ୍ଷ ଭାବରେ ଏବଂ ଶ୍ରୀମତୀ ପ୍ରମୋଦିନୀ ପାଇକରାୟ (ସାନପଦର) ଉପାଧ୍ୟକ୍ଷା ଭାବରେ ଦାୟିତ୍ୱ ଗ୍ରହଣ ।

୧୯୯୩- ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକଙ୍କ ଉପସ୍ଥିତିରେ ଏ ଅଞ୍ଚଳର ଡକାୟତଙ୍କ ଆତ୍ମ ସମର୍ପଣ (ମୁଖ୍ୟ ସହଯୋଗୀ ସୀତାକାନ୍ତ ବିଧାର, ସତ୍ୟପ୍ରିୟ ବିଧାର ଏବଂ ବିଧାୟକ ସୁରେନ୍ଦ୍ର ନାଥ ମିଶ୍ର ।)

୧୯୯୫- ହରିହର ସାହୁଙ୍କର ସ୍ୱଳ୍ପକାଳ ବିଧାୟକ ପରେ ରାଜ୍ୟ ମୁଖ୍ୟମନ୍ତ୍ରୀ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ବିଧାୟକ ଭାବେ ନିର୍ବାଚିତ ଓ ରାଷ୍ଟ୍ରୀୟ ବି.ଜେ.ପି. ନେତା ପ୍ରମୋଦ ମହାଜନଙ୍କର ବୋଲଗଡ ନିର୍ବାଚନ ମଣ୍ଡଳୀକୁ ଆଗମନ ।

୧୯୯୫- ସବ୍ ରେଜିଷ୍ଟ୍ରେସନ୍ ଅଫିସ୍ ସ୍ଥାପନ ଓ ୩୦ ଶଯ୍ୟା ବିଶିଷ୍ଟ ଡାକ୍ତରଖାନାର ଶୁଭାରମ୍ଭ ଓ ଡାକ ବଙ୍ଗଳାର ସଂପ୍ରସାରଣ ।

୧୯୯୬- ତହସିଲ ଅଫିସ୍ ସ୍ଥାପନ । ଉଦଘାଟକ - ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ଏବଂ ରାଜସ୍ୱ ମନ୍ତ୍ରୀ କାହ୍ନୁଚରଣ ଲେଙ୍କା । ଭୀଷଣ ମରୁଡି ପରିସ୍ଥିତି ଏବଂ ଜଳ ଆନ୍ଦୋଳନ ଆରମ୍ଭ । ଶ୍ରୀ ଚନ୍ଦ୍ର ଶେଖର ସାହୁ (ଗେଡିଆପଲ୍ଲୀ) ଅଧକ୍ଷ ଏବଂ ଶ୍ରୀମତୀ ତିଳୋତମା ସୁବୁଦ୍ଧି (ହରିପୁର ପାଟଣା) ଉପାଧକ୍ଷା ।

୧୯୯୭- ବୋଲଗଡ ସନ୍ନିକଟ ଗ୍ରାମକୁ ପାନୀୟ ଜଳ ଯୋଗାଣ ।

୧୯୯୮- ଇଲେକ୍ଟ୍ରି ଷ୍ଟକଚର ସ୍ଥାପନ ।

୧୯୯୯- ମହାବାତ୍ୟାରେ ବହୁ ଧନଜୀବନ ନଷ୍ଟ । (ବୋଲଗଡ ବ୍ଲକରୁ ୧୧ ଜଣଙ୍କ ମୃତ୍ୟୁବରଣ)

୨୦୦୦- ପ୍ରଖ୍ୟାତ ଚଳଚିତ୍ର ଅଭିନେତା ଓ ନିର୍ଦ୍ଦେଶକ ପ୍ରଶାନ୍ତ ନନ୍ଦ ବିଜେପି ବିଧାୟକ ରୂପେ ନିର୍ବାଚିତ ଏବଂ ସରସ୍ୱତୀ ଶିଶୁ ମନ୍ଦିର ସ୍ଥାପନ ।

୨୦୦୧- ରଥାଯାତ୍ରା ଓ ଶୀତଳଷଷ୍ଠୀ ଯାତ୍ରା ଆରମ୍ଭ । ରାଜ୍ୟରେ ୧୪ ବର୍ଷଧରି ଅବସ୍ଥାପିତ ମୁଖ୍ୟ ବନ ସଂରକ୍ଷକ ଦୟାନିଧି ଚଉଧୁରୀଙ୍କ ପରଲୋକ ।

୨୦୦୨- ଶ୍ରୀମତୀ ମିନତୀ ମହାପାତ୍ର ଗବଡିହ ଶାସନ (କଡବ) ବ୍ଲକ ଅଧକ୍ଷା ଏବଂ ଶ୍ରୀମତୀ ରାଜେଶ୍ୱରୀ ଖୁଣ୍ଟିଆ (ମାଣୀବନ୍ଧ) ଉପାଧକ୍ଷା ଭାବରେ ଦାୟିତ୍ୱ ଗ୍ରହଣ ।

୨୦୦୩- ଦଶଦୋଳ ଶତବାର୍ଷିକ ଅମୃତ ବାର୍ଷିକୀ ମହୋତ୍ସବ ପାଳିତ । ଉଦଘାଟନର ମୁଖ୍ୟ ଅତିଥି - ବିଶ୍ୱଭୂଷଣ ହରିଚନ୍ଦନ (ମାନ୍ୟବର ରାଜସ୍ୱ ମନ୍ତ୍ରୀ, ଓଡିଶା), ସଭାପତି - ପ୍ରଶାନ୍ତ ନନ୍ଦ (ବିଧାୟକ) । ଉଦ୍‌ଯାପନ ଉତ୍ସବର ମୁଖ୍ୟ ଅତିଥି - ରଣେନ୍ଦ୍ର ପ୍ରତାପ ସ୍ୱାଇଁ (କ୍ରୀଡା ମନ୍ତ୍ରୀ, ଓଡିଶା) ସଭାପତି - ସୁରେନ୍ଦ୍ର ନାଥ ମିଶ୍ର (ପୂର୍ବତନ ବିଧାୟକ)

୨୦୦୪- ଅଖିଳ ଭାରତ କଂଗ୍ରେସ ସଭାନେତ୍ରୀ ଶ୍ରୀମତୀ ସୋନିଆ ଗାନ୍ଧୀଙ୍କ ବୋଲଗଡ ନିର୍ବାଚନ ଗସ୍ତ (ରୋଡ ଶୋ) ଏବଂ ସାଧାରଣ ନିର୍ବାଚନରେ ଜାନକୀ ବଲ୍ଲଭ ପଟ୍ଟନାୟକ ଏଠାରୁ ୨ୟ ଥରପାଇଁ କଂଗ୍ରେସ ବିଧାୟକ ଭାବରେ ନିର୍ବାଚିତ ଏବଂ ରାଜ୍ୟ ବିରୋଧିଦଳ ନେତା ଭାବରେ ଅଧିଷ୍ଠିତ ।

-ଶ୍ରୀ ଜାନକୀ ବଲ୍ଲବ ପାଢୀଙ୍କ ପ୍ରଚେଷ୍ଟା ଏବଂ ବୋଲଗଡ ବ୍ଲକର ସମସ୍ତ ଜନସାଧାରଣଙ୍କ ସହଯୋଗରେ ବହୁ ପ୍ରତିକ୍ଷିତ ପ୍ରଥମ ବୋଲଗଡ

ମହୋତ୍ସବ-୨୦୦୪ ମହା ସମାରୋହରେ ସମ୍ପୂର୍ଣ୍ଣ ।

-ପ୍ରଳୟଙ୍କାରୀ ସାମୁଦ୍ରିକ ଝଡ (ସୁନାମୀ) ରେ ବୋଲଗଡ ବ୍ଲକର କଡବ ଗ୍ରାମ ପଞ୍ଚାୟତ ଅଧିନସ୍ଥ ଗୋଡି ପାଟଣା ଗ୍ରାମର ବହୁ ଶ୍ରମିକ ଅଣ୍ଡାମାନ ନିକୋବର ଦ୍ୱୀପରୁ ନିରାପଦରେ ଗ୍ରାମକୁ ପ୍ରତ୍ୟାବର୍ତ୍ତନ ।

୨୦୦୬- - ବୋଲଗଡ ଦମକଳ କେନ୍ଦ୍ରର ସ୍ଥାୟୀ ଗୃହ ନିର୍ମାଣ ଆରମ୍ଭ ।

୨୦୦୭- ଶ୍ରୀଯୁକ୍ତ ରଘୁନାଥ ଷଡଙ୍ଗୀ (ଘୋରଡିଆ) ବୋଲଗଡ ପଞ୍ଚାୟତ ସମିତିର ଅଧ୍ୟକ୍ଷ ଏବଂ ଶ୍ରୀମତୀ ବାସନ୍ତୀ ରଥ (ପିଟୁକୁଳି) ଉପଧ୍ୟାକ୍ଷ ଭାବରେ ଦାୟିତ୍ୱ ଗ୍ରହଣ ।

୨୦୦୮- ସଂସ୍କାରବାଦୀ ପୁରୁଷ ୰ ରଘୁନାଥ ସେଠୀଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ । ମୁଖ୍ୟ ଅତିଥି - ସ୍ୱାମୀ ଲକ୍ଷ୍ମଣାନନ୍ଦ ସରସ୍ୱତୀ, ସଭାପତି - ଭୂପେନ୍ଦ୍ର କୁମାର ବସୁ ।



# ସହାୟକ ଗ୍ରନ୍ଥସୂଚୀ


୧. ମାଦଳା ପାଞ୍ଜୀ — ୰ ଡଃ. ଆର୍ତ୍ତବଲ୍ଲଭ ମହାନ୍ତି
୨. ଶ୍ରୀ ରାମଲୀଳା — ୰ ଅନଙ୍ଗ ନରେନ୍ଦ୍ର
୩. ଶ୍ରୀ କୃଷ୍ଣଲୀଳା — ୰ ଗୌରଚରଣ ଅଧିକାରୀ
୪. ଖୁଦୁରୁକୁଣୀ — ୰ ବୈଶ୍ୟ ଦୁଷର
୫. ଗୌର ସନ୍ନ୍ୟାସ କୀର୍ତ୍ତନ — ୰ ସଦାନନ୍ଦ ସାହୁ
୬. ଦଣ୍ଡ ଜନ୍ମ ଇତିହାସ (ପୋଥି) — ୰ ପଠାଣୀ ସାମନ୍ତ
୭. ଗରୁଡ଼ ପୁରାଣ — ୰ ଘନଶ୍ୟାମ ପଟ୍ଟନାୟକ
୮. ବୋଲଗଡ ଇତିହାସ (ପାଣ୍ଡୁଲିପି ) — ୰ ସାଧୁଚରଣ ଚୌଧୁରୀ
୯. ଖୁରୁଧା ଦର୍ପଣ — ୰ ଦିଗମ୍ବର ଶ୍ରୀଚନ୍ଦନ
୧୦. ଖୁରୁଧା ଇତିହାସ — ୰ କେଦାରନାଥ ମହାପାତ୍ର
୧୧. ପ୍ରାଚୀନ ଉତ୍କଳ — ୰ ଜଗବନ୍ଧୁ ସିଂହ
୧୨. ଉତ୍କଳ ଇତିହାସ — ୰ କୃପାସିନ୍ଧୁ ମିଶ୍ର
୧୩. ଓଡିଶା ଇତିହାସ — ୰ ଡଃ. ହରେକୃଷ୍ଣ ମହତାବ
୧୪. History of Orissa — Dr. H. K. Mahatab
୧୫. ପାଇକ ବିଦ୍ରୋହ — ପଣ୍ଡିତ ସୂଯ୍ୟ ନାରାୟଣ ଦାସ
୧୬. ଓଡିଶା ସ୍ୱାଧୀନତା ସଂଗ୍ରାମର ଇତିହାସ — ପଣ୍ଡିତ ସୂର୍ଯ୍ୟ ନାରୟଣ ଦାସ
୧୭. ପାଇକ ଖେଦା — ୰ କହ୍ନେଇ ଚମ୍ପତିରାୟ
(ସଂପାଦନା- ପଣ୍ଡିତ ୰ ସଦାଶିବ ରଥ ଶର୍ମା)
୧୮. ଓଡିଶା ଇତିହାସ — ୰ ପ୍ୟାରିମୋହନ ଆଚାର୍ଯ୍ୟ
୧୯. Lord Jagannath — Dr. H. S. Pattanaik (HOD,History, Utkal University)
୨୦. Puri Gazettear — Editor - Dr. D. Kuanar
୨୧. ଖୋର୍ଦ୍ଧା ଇତିହାସର ଅନ୍ତରାଳେ — ଶ୍ରୀ ଫକୀର ହରିଚନ୍ଦନ
୨୨. Cultural Heritage of Khurda
୨୩. ଲାଲ ମାଟିର ସୌରଭ — ମୁରଲୀ ଧର ପ୍ରଧାନ
୨୪. ଇତିହାସର ଝଲକ — ମୁରଲୀ ଧର ପ୍ରଧାନ
୨୫. ଦେଶ କାଳ ପାତ୍ର — ଡ. ଜଗନ୍ନାଥ ଦାସ (ଓ.ଇ.ଝ.)
୨୬. ସ୍ମୃତି ଅନୁଭୂତି — ୰ ନୀଳମଣି ରାଉତରାୟ

୨୭. ଗାନ୍ଧିଜୀ ଓ ଓଡ଼ିଶା — ଡଃ. ହରେକୃଷ୍ଣ ମହତାବ
୨୮. ଓଡ଼ିଶା ଓ ଗାନ୍ଧିଜୀ — ପାବକ କାନୁନଗୋ
୨୯. Life & Works of M. Gandhi — Publication Divison, Minstry of I & B, Govt.of India
୩୦. ବାଙ୍କୀ ଇତିହାସ — କବି କେଶରୀ ନବକିଶୋର ମହାରଣା
୩୧. ନୟାଗଡ ଇତିହାସ — ଇ. ପ୍ରାଣକୃଷ୍ଣ ଆଚାର୍ଯ୍ୟ
୩୨. ଖଣ୍ଡପଡା ଇତିହାସ — ଉଦୟନାଥ ଦାସ
୩୩. ନୟାଗଡ ପ୍ରଜାମଣ୍ଡଳ ଇତିହାସ — ଶ୍ରୀଧର ଦାସ
୩୪. ଖଣ୍ଡପଡା ପ୍ରଜାମଣ୍ଡଳ ଇତିହାସ — ରଘୁନାଥ ସିଂହ ସାମନ୍ତ
୩୫. ସ୍ୱାଧୀନତା ସଂଗ୍ରାମରେ ବାନର ସେନା (ପ୍ରଥମ ଓ ଦ୍ୱିତୀୟ ଖଣ୍ଡ) — ୰ ପୁରୁଷୋତ୍ତମ ସିଂହ
୩୬. ପତିତପାବନ ହୋତାଙ୍କ ସ୍ମରଣୀକା, ସଂପାଦନା-ବାସୁଦେବ ପଟ୍ଟନାୟକ
୩୭. ଆଗାମୀ ସ୍ୱାଧୀନତା ସଂଗ୍ରାମର ସହଜ ସୂତ୍ର, ରଘୁନାଥ ପଟ୍ଟନାୟକ
୩୮. ମୁକ୍ତି ସଂଗ୍ରାମ ଓ ଓଡ଼ିଶା(୧୮୦୩-୧୯୪୭), ବିଶ୍ୱମ୍ଭର ପରିଡା
୩୯. ଝଙ୍କାର (କବିତା ଗୁଚ୍ଛ) — ୰ ମାଧବ ଚନ୍ଦ୍ର ଚୈଧୁରୀ
୪୦. ବୀର ଭୂମିର ମହାନାୟକ — ସ୍ମରଣୀକା (୰ ଗଙ୍ଗାଧର ପାଇକରାୟଙ୍କ ପ୍ରଥମ ଶ୍ରାଦ୍ଧ ବାର୍ଷିକୀ)
୪୧. ଅନିର୍ବାଣ ଦୀପଶିଖା (ବିପ୍ଳବୀ ଗଙ୍ଗାଧର) — ସୋମନାଥ ପାତ୍ର
୪୨. ସ୍ମୃତୀ ତୀର୍ଥ — ଡଃ. ବୈଦ୍ୟନାଥ ମିଶ୍ର
୪୩. ଦଶଦୋଳ ଶତବାର୍ଷିକୀ ଅମୃତ ମହୋତ୍ସବ ସ୍ମରଣୀକା - ୨୦୦୩ (ମୁଖ୍ୟ ସଂପାଦକ - ରବୀନ୍ଦ୍ର କୁମାର ପରିଡା)
୪୪. Guide to the Orissan Records (Vol-II & Vol- III) — Editor - Susil Ch. Dey
୪୫. BAKSHI JAGABANDHU — Dr. Bhabani Charan Ray
୪୬. The Oriya Movement — Niranjan Pattanaik & Chakramani Pradhan
୪୭. ନୀଳ ଶୈଳ ଏବଂ ନୀଳାଦ୍ରି ବିଜୟ — ସୁରେନ୍ଦ୍ର ନାଥ ମହାନ୍ତି
୪୮. The Forgotten Chapter of Orissan History — Dr. P. K. Pattanaik
୪୯. ଯଶୋଦେହେ ଅୟୁଷ୍ମାନ — ଡଃ. ପ୍ରଫୁଲ ପଟ୍ଟନାୟକ

୫୦. ନବଦୁର୍ଗ ଦର୍ପଣ — ଘନଶ୍ୟାମ ମହାପାତ୍ର
୫୧. ଖଣ୍ଡପଡା ମାଣ୍ଡୁ (ତାଳ ପତ୍ର ପୋଥି) — ✓ ଭିକାରୀ କର
୫୨. ହେ ସାଥୀ ହେ ସାରଥୀ — ଡକ୍ଟର ନିତ୍ୟାନନ୍ଦ ଶତପଥୀ
(ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଜୀବନୀ)
୫୩. କାଳୀ କଲମ — ବାଙ୍କୋଇ କଲେଜ ମୁଖପତ୍ର
୫୪. ସୁବର୍ଣ୍ଣ ଜୟନ୍ତୀ ସ୍ମରଣୀକା (୨୦୦୩)ଗଦାଧର ଏକାଡେମୀ ଏବଂ
ବାଞ୍ଛାନିଧି ମ.ଇ. ସ୍କୁଲ, ମାଣିକାଗୋଡା
୫୫. Orissa Historical Research Journal Vol.-3, No.-3,
December-1954.
୫୬. ଭାରତର ପ୍ରଥମ ଗଣ ବିପ୍ଲବ — ଡଃ. ଲକ୍ଷ୍ମୀନାରାୟଣ ରାୟସିଂହ
୫୭. ଓଡିଆ ସମର ସାହିତ୍ୟ — ଡଃ. ଲକ୍ଷ୍ମୀନାରୟଣ ରାୟିସିଂହ
୫୮. ଖୁର୍ଦ୍ଧା ଦର୍ପଣ (୨ୟ ୨ ୩ୟ ଭାଗ)
ସଂପାଦନା -ଡଃ. ଲକ୍ଷ୍ମୀନାରାୟଣ ରାୟସିଂହ
୫୯. କେତେ ବ୍ୟଥା, କେତେ ଗାଥା — ଶ୍ରୀ ମୁରଳୀଧର ପ୍ରଧାନ
୬୦ ବାସ୍ତୁ ପ୍ରକାଶ — ବିଶ୍ୱକର୍ମା

ସମ୍ବାଦ ପତ୍ର - ସମାଜ, ସମ୍ବାଦ, ପ୍ରଜାତନ୍ତ୍ର, ମାତୃଭୂମି, ସମୟ, ପ୍ରଗତିବାଦୀ

ଅନ୍ୟାନ୍ୟ - ପ୍ରଜାତନ୍ତ ସାପ୍ତାହିକୀ, ଉତ୍କଳ ପ୍ରସଙ୍ଗ, ବାମନ ପ୍ରଦୀପ, ଶିକ୍ଷା ପ୍ରଦୀପ, ନବରବି, ସମାଜ ସାପ୍ତାହିକୀ, ପ୍ରତିଭା, ପୌରୁଷ, ସହକାର, ରାଷ୍ଟ୍ରଦ୍ୱୀପ ସାପ୍ତାହିକି,ସଂପର୍କ (ପରମାନନ୍ଦ ମହାବିଦ୍ୟାଳୟର ମୁଖପତ୍ର), ନନ୍ଦିଘୋଷ ସାରସ୍ୱତ ବକ୍ତୃତା ମାଳା, ବୋଲଗଡ ବ୍ରଜମୋହନ ଦେବଙ୍କ ମଠର ଦାନପତ୍ର (ସନନ୍ଦ), ଚନ୍ଦନ ଯାତ୍ରାର ମକଦ୍ଦମାର ରେକର୍ଡ (ଭାସ୍କର ଚନ୍ଦ୍ର ମହାପାତ୍ରଙ୍କ ଠାରୁ ପ୍ରାପ୍ତ), ବୋଲଗଡ ମହୋତ୍ସବ ସ୍ମରଣୀକା (୨୦୦୪, ୨୦୦୫ ଏବଂ ୨୦୦୬), ସ୍ୱାଧୀନତା ଆନ୍ଦୋଳନ ବେଳେ ବୋଲଗଡ ଥାନା ରେକର୍ଡ ରୁମ୍ ଏବଂ ରାଜ୍ୟ ଅଭିଲେଖାଗାରରୁ ସଂଗୃହୀତ ତଥ୍ୟ ।

